# ବନ୍ୟ ପ୍ରାଣୀ

ପ୍ରଫେସର ବସନ୍ତ କୁମାର ବେହୁରା

ଓଡ଼ିଶା ରାଜ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ବନ୍ୟ ପ୍ରାଣୀ

ଲେଖକ :

ଡକ୍ଟର ବସନ୍ତ କୁମାର ବେହୁରା, ଏମ୍. ଏସ୍‌ସି, ପିଏଚ୍.ଡି.,

ପ୍ରଫେସର ଓ ବିଭାଗୀୟ ମୁଖ୍ୟ, ପ୍ରାଣୀବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ,

ଭୁବନେଶ୍ୱର,

୧୯୮୦



ପ୍ରକାଶକ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର

# WILD LIFE

Published under the scheme of Production of books and literature in Regional Languages at the University level by the Government of India in the Ministry of Education & Social welfare ( Department of Education ), New Delhi.

Written by :

Dr. Basanta Kumar Behura, M Sc., Ph.D(Edin), F. Z. S. I., F. E. S. I,

Professor & Head of the Department of Zoology, Utkal University, Vanivihar, Bhubaneswar,

Reviewed by :

Sri U. C. Panda, M. Sc.
Vice-Principal, S. C. S. College,

Language Scrutinised by ·

Late Professor J. K. Misra,
U. G. C. Professor of Oriya,
Ravenshaw College, Cuttack.

*First Edition 1980/1,100 Copies*

Published by :

THE ORISSA STATE BUREAU OF TEXT BOOK PREPARATION AND PRODUCTION, Bhubaneswar.



Publication No—

Paper used for the printing of the book was made available by the Government of Orissa at Concessional rate,

**Printed at :**

**Udyog Printers** **Price Rs 31 / –**

Unit-III, Bhubaneswar

# ପ୍ରସ୍ତାବନା

ବିଶ୍ୱବିଦ୍ୟାଳୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ପାଇଁ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାଟି ଉର୍ଦ୍ଦିଷ୍ଟ । ଏହାର ଆନୁକୂଲ୍ୟରେ ବିଭିନ୍ନ ବିଷୟରେ ଅଦ୍ୟାବଧି ଶତାଧିକ ଉପାଦେୟ ବିଶ୍ୱବିଦ୍ୟାଳୟ ସ୍ତରୀୟ ପୁସ୍ତକ ପ୍ରକାଶିତ ହେଲଣି । ଆଲୋଚ୍ୟ "ବନ୍ୟପ୍ରାଣୀ" ପୁସ୍ତକଟିକୁ ରଚନା କରିଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ପ୍ରାଣୀବିଜ୍ଞାନ ବିଭାଗର ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରା ଓ ଏହାର ସମୀକ୍ଷା କରିଛନ୍ତି ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ଉପାଧ୍ୟକ୍ଷ ଶ୍ରୀ ଉପେନ୍ଦ୍ର ଚନ୍ଦ୍ର ପଣ୍ଡା । ଏହାର ଭାଷା ସଂଶୋଧନ କରିଛନ୍ତି ଅବସରପ୍ରାପ୍ତ ପ୍ରଫେସର ଜୟକୃଷ୍ଣ ମିଶ୍ର । ମୁଁ ସଂସ୍ଥା ତରଫରୁ ଲେଖକ, ସମୀକ୍ଷକ ଓ ଭାଷା ବିଶେଷଜ୍ଞଙ୍କୁ ଧନ୍ୟବାଦ ଜଣାଉଛି ।

ପରିଶେଷରେ ଆମର ବିଶ୍ୱାସ, ଏ ପୁସ୍ତକଟି ଓଡ଼ିଆ ଭାଷାରେ ଅଧ୍ୟୟନ ଓ ଅଧ୍ୟାପନା ପାଇଁ ଯଥେଷ୍ଟ ସହାୟକ ହେବ ।

ଭୁବନେଶ୍ୱର
ଏପ୍ରିଲ ୨୧, ୧୯୮୦

ଅଶୋକ ଶଙ୍କର ମିତ୍ର
ନିର୍ଦ୍ଦେଶକ

# ଭାରତର ବନ୍ୟ ପ୍ରାଣୀ

## ସୂଚୀ

# ପ୍ରାକ୍‌କଥନ

ଭାରତରେ ବନ୍ୟ ପ୍ରାଣୀମାନଙ୍କ ସମ୍ବନ୍ଧରେ ଇଂରାଜୀରେ ତଥ୍ୟସମ୍ବଳିତ ପ୍ରାମାଣିକ ଗ୍ରନ୍ଥର ଘୋର ଅଭାବ । ଯେଉଁ କେତୋଟି ବହି ପ୍ରକାଶିତ ହୋଇଅଛି, ପ୍ରାୟ ସେ ସବୁ ପ୍ରକୃତିବିଜ୍ଞାନବିତ୍ ଓ ଅରଣ୍ୟ ବିଜ୍ଞାନବିତ୍‌ମାନଙ୍କ ଦ୍ୱାରା ବିଭିନ୍ନ ଦୃଷ୍ଟିକୋଣରୁ ଲିଖିତ । ଏହି ପୁସ୍ତକଗୁଡ଼ିକ ମଧ୍ୟରୁ ନିମ୍ନଲିଖିତ ତିନୋଟି ପ୍ରଧାନ ।

Gee, E. P. 1964. The Wild Life of India—Collins, London.

Prater, S. H. 1971. The book of Indian Animals, ତୃତୀୟ ପରିବର୍ତ୍ତିତ ସଂସ୍କରଣ,-Bombay Natural History Society, Bombay

Seshadri, B. 1969. The twilight of India's wild life,—Oxford University Press, Bombay.

ଏ ପୁସ୍ତକଟି ସଙ୍କଳନ କରିବାରେ ଉପରୋକ୍ତ ବହି ସବୁ ଏବଂ ବିଭିନ୍ନ ବୈଜ୍ଞାନିକ ପୁସ୍ତକ ଓ ପତ୍ରିକାରେ ଭାରତର ବନ୍ୟ ପ୍ରାଣୀମାନଙ୍କ ସମ୍ବନ୍ଧରେ ପ୍ରକାଶିତ ପ୍ରବନ୍ଧରୁ ବିଷୟବସ୍ତୁ ସଂଗ୍ରହ କରାଯାଇଅଛି । ବିଶେଷ କରି ଉପର ଉଲ୍ଲିଖିତ ଦ୍ୱିତୀୟ ପୁସ୍ତକଟିର ସବୁଠାରୁ ବେଶୀ ସାହାଯ୍ୟ ନିଆଯାଇଅଛି ।

ଲେଖକ ପ୍ରଥମେ "ଓଡ଼ିଶାର ବନ୍ୟଜନ୍ତୁ" ନାମରେ ଏକ ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ । ଏହା 1966-67 ସାଲର କଥା । "ଓଡ଼ିଶା—ପ୍ରାଣୀବିଜ୍ଞାନ—ସମିତି" ଭାରତ ସରକାରଙ୍କ ଆର୍ଥିକ ସାହାଯ୍ୟରେ ପ୍ରକାଶ କରିବାର କଥା

ହେଲା । ଭାରତ ସରକାର ବିଶେଷଜ୍ଞମାନଙ୍କ ଦ୍ୱାରା ପାଣ୍ଡୁଲିପିଟିକୁ ପଢ଼ାଇ ଛପା ହେବା ଲାଗି ସ୍ୱୀକୃତି ଦେଇଥିଲେ । ସ୍ୱନାମଧନ୍ୟ ଜୀବବିଜ୍ଞାନବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା ପାଣ୍ଡୁଲିପି ପାଠ କରି ସଂଶୋଧନ କରିଥିଲେ । ସ୍ୱର୍ଗତ ମାୟାଧର ମାନସିଂହ ଲେଖକର ବିଶେଷ ଅନୁରୋଧରେ ଆମୂଳଚୂଳ ପାଠ କରି କେବଳ ଯେ ସଂଶୋଧନ କରିଥିଲେ ତାହା ନୁହେଁ, ବହୁ ବିଷୟବସ୍ତୁର ଉଲ୍ଲେଖ ନିମିତ୍ତ ଗଠନମୂଳକ ଉପଦେଶ ଦେଇଥିଲେ । ବିଧିର ବିଡମ୍ବନା, ସମସ୍ତ ଉଦ୍ୟମ ସତ୍ତ୍ୱେ 'ଓଡିଶା–ପ୍ରାଣୀ ବିଜ୍ଞାନ–ସମିତି' ଓଡିଶା ସରକାରଙ୍କ ମାଧ୍ୟମରେ ରାଷ୍ଟ୍ରପତିଙ୍କ ଦପ୍ତର ଦ୍ୱାରା ମଞ୍ଜୁରୀ ପ୍ରାପ୍ତ ଅର୍ଥ ପାଇ ପାରିଲା ନାହିଁ । ପାଣ୍ଡୁଲିପି ପଡି ରହିଥିଲା । 'ଓଡିଶା ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା' ଲେଖକକୁ "ଭାରତର ବନ୍ୟ ଜୀବନ" ସମ୍ବନ୍ଧରେ ଏକ ପାଣ୍ଡୁଲିପି ପ୍ରସ୍ତୁତ କରିବାକୁ ବରାଦ କଲେ । ତଦନୁସାରେ "ଓଡିଶାର ବନ୍ୟଜନ୍ତୁ" ପାଣ୍ଡୁଲିପିକୁ ମୂଳରୁ ଶେଷଯାଏ ଯୋଗ ବିଯୋଗ କରି ଆଉଥରେ ଲେଖି ସମୟୋପଯୋଗୀ କରିବାକୁ ଚେଷ୍ଟା କରିଅଛି । ବହୁ ବର୍ଷ ପରେ ପୁଣି ଥରେ ଲେଖିଲାବେଳକୁ ଉତ୍ସାହ ବାଧା ପାଇଲା । ଯାହା ହେଉ, ଧାରାବାହିକ ଭାବେ, ପୁଣି ମଝିରେ ମଝିରେ ନାନା କାରଣରୁ ବାଧା ପାଇ, ଦୁଇବର୍ଷ ପରିଶ୍ରମ ପରେ ଏବେ ଲେଖା ସମାପ୍ତ ହୋଇ ପାରିଲା ।

ଓଡିଶାର ବନ୍ୟଜୀବନ ସମ୍ବନ୍ଧରେ ଆମର ଜ୍ଞାନ ସୀମିତ । ଯେଉଁ କେତେକ ବ୍ୟକ୍ତି ଏ ପ୍ରଦେଶର ଜଙ୍ଗଲ ଓ ଜଙ୍ଗଲ ଜୀବ ବିଷୟରେ ଅଭିଜ୍ଞତା ବର୍ଣ୍ଣନା କରି ଅଛନ୍ତି, ସେମାନେ ମୁଖ୍ୟତଃ ଭିନ୍ନ ବିଭାଗରେ ଅବସ୍ଥାପିତ ସରକାରୀ କର୍ମଚାରୀ ବା ଚିତ୍ତବିନୋଦନ ପାଇଁ ଶିକାରୀ । ଅନେକ କ୍ଷେତ୍ରରେ ପ୍ରକୃତିବିଜ୍ଞାନ ସମ୍ବନ୍ଧରେ ମୂଳଜ୍ଞାନ ସୀମିତ ଥିବାରୁ ସେମାନଙ୍କର ବିବରଣୀ ବୈଜ୍ଞାନିକ ଦୃଷ୍ଟିକୋଣରୁ ସମ୍ପୂର୍ଣ୍ଣରୂପେ ଗ୍ରହଣ କରିବା ସମ୍ଭବ ନୁହେଁ । ଏଣୁ ଓଡିଶାର ପ୍ରାଣୀମାନଙ୍କ ସମ୍ବନ୍ଧରେ ଅଧ୍ୟୟନ ଓ ଗବେଷଣା ଅତ୍ୟନ୍ତ ପ୍ରୟୋଜନ । ଦୁଃଖର କଥା, ଆମ ଦେଶରେ ଯେ ରକ୍ଷକ ସେ ଭକ୍ଷକ । ଆଜି ଭାରତ ଓ ଓଡିଶାରେ ବନ୍ୟଜୀବନ ଲୁପ୍ତ ପ୍ରାୟ । ଲେଖକର ଆଶା, ଏହି ପୁସ୍ତକ ପ୍ରାଣୀବିଜ୍ଞାନର ଛାତ୍ର ତଥା ପ୍ରକୃତି-ବିଜ୍ଞାନି ପ୍ରତି ଆଗ୍ରହ ଥିବା

ପାଠକମାନଙ୍କୁ ଓଡିଶାର ବନ୍ୟ ପ୍ରାଣୀମାନଙ୍କ ସମ୍ବନ୍ଧରେ ତଥ୍ୟ ସଂଗ୍ରହ ଓ ତାହା ଲିପିବଦ୍ଧ କରିବା ପାଇଁ ପ୍ରେରଣା ଯୋଗାଇବ । ଉଦାହରଣ ସ୍ୱରୂପ ଓଡିଶାର ଜଙ୍ଗଲରେ ଉଡ଼ନ୍ତା ଗୁଣ୍ଡୁଚି ମୂଷା ଦେଖାଯା'ନ୍ତି ! ମାତ୍ର କେଉଁ କେଉଁ ଜଙ୍ଗଲରେ ? ପ୍ରାଣୀ ବିଶେଷଜ୍ଞ ମଧ୍ୟ ଏ ପ୍ରଶ୍ନର ଉତ୍ତର ଦେବା ସମ୍ଭବ ନୁହେଁ । ପ୍ରାମାଣିକ ଗ୍ରନ୍ଥମାନଙ୍କରେ ଏମାନେ ଓଡିଶାରେ ମିଳନ୍ତି ବୋଲି କୌଣସି ବିବରଣୀ ନାହିଁ ।

ପୁସ୍ତକଟିକୁ ସଙ୍କଳନ କରିବାବେଳେ ବହୁ ବନ୍ଧୁଙ୍କ ଉତ୍ସାହ ପାଇ ଅଛି । ଓଡିଶାର ବନ୍ୟ ଜୀବନ ସମ୍ବନ୍ଧରେ ଲେଖକର ଅଭିଜ୍ଞତା ପ୍ରାୟ କିଛି ନାହିଁ । ସେ ଯାହା ପଢିଛି, ଯେତିକି ତଥ୍ୟ ସଂଗ୍ରହ କରି ପାରିଛି ଓ ଯେଉଁ ଟିକିଏ ଦେଖିଛି, ସେ ସବୁକୁ ନିଜ ଭାଷାରେ ପ୍ରକାଶ କରିବାକୁ ଚେଷ୍ଟା କରିଛି ମାତ୍ର । ମନୁଷ୍ୟର ଶିକ୍ଷା ଓ ଅଭିଜ୍ଞତାର ଶେଷ ନାହିଁ । ଲେଖକର ବିଶ୍ୱାସ, ବନ୍ୟଜୀବ ସମ୍ବନ୍ଧରେ ଅଭିଜ୍ଞ ପ୍ରାଣୀବିଜ୍ଞାନବିତ୍ ଏ ପ୍ରଦେଶରେ ବାହାରିବେ ଏବଂ ଓଡିଶାର ପ୍ରାଣୀମାନଙ୍କ ସମ୍ବନ୍ଧରେ ତଥ୍ୟମୂଳକ ପ୍ରାମାଣିକ ପୁସ୍ତକ ପ୍ରକାଶିତ ହେବ । ସେ ପର୍ଯ୍ୟନ୍ତ ଓଡିଶାର ବନ୍ୟ ପ୍ରାଣୀକୁଳ ଘାତକମାନଙ୍କ ହସ୍ତରୁ ବଂଶରକ୍ଷା କରି ପାରିଥିଲେ ତାହା ଅବଶ୍ୟ ସମ୍ଭବ ହେବ । ଆମେ ଯେଉଁ ଗତିରେ ଆମର ଅମୂଲ୍ୟ ସମ୍ପଦଗୁଡିକର ଧ୍ୱଂସ ପାଇଁ ବିଭିନ୍ନ ଭାବେ ଉଦ୍ୟମ କରୁଥାଇଁ, ସେଥିରେ ପାହାଡ, ପର୍ବତ, ଜଙ୍ଗଲ, ନଦୀ ସରୋବର, ହ୍ରଦାଦି ବିମଣ୍ଡିତ ମନୋରମ ଓଡିଶାର ସୁନ୍ଦର ଓ ବିଚିତ୍ର ପ୍ରାଣୀ ଆଜି ଅବଲୁପ୍ତି ପଥରେ ଦ୍ରୁତ ବେଗରେ ଆଗେଇ ଗ୍ଲିଛନ୍ତି । ସେମାନଙ୍କ ସମ୍ବନ୍ଧରେ ଜ୍ଞାନ ଓ ସେମାନଙ୍କର ସଂରକ୍ଷଣ ଅବଶ୍ୟ ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ ।

ଯେତେ ଭଲ ଜିନିଷ ତାର ଶେଷ ଅଛି । ମେଳା, ମହୋତ୍ସବ, ସଂଗୀତ, ନାଟକ, ପୁସ୍ତକ — ସବୁର ଆରମ୍ଭ ଓ ଶେଷ ଥାଏ । ମାତ୍ର ପ୍ରକୃତି ରାଜ୍ୟ ଆମକୁ ଯେଉଁ ଆନନ୍ଦ ଦିଏ ତାହା ଅସରନ୍ତି । ଆମେ ସେହି ଅସରନ୍ତି ଭଣ୍ଡାରକୁ ଉଜାଡି ଦେବା କି ? ପଣ୍ଡିତ ଜହରଲାଲ ନେହରୁ କହିଥିଲେ, "ଏହି ଐଶ୍ୱର୍ଯ୍ୟମୟ ପ୍ରାଣୀ ଓ ପକ୍ଷୀ ନ ଥିଲେ ଆମର ଜୀବନ ସତେ କେତେ ନିରସ ଓ ମାଧୁର୍ଯ୍ୟହୀନ ନ ହୁଅନ୍ତା "।

"ମଣିଷ ସବୁଠାରୁ ବଡ଼ ଯେଉଁ ଅପରାଧଟି କରିପାରେ ତାହା ହେଉଛି କୌଣସି ଗୋଟିଏ ହେଲେ ବନ ଜୀବର ଧ୍ୱଂସସାଧନ । ଯେ କୌଣସି ପ୍ରକାର ବନ୍ୟଜୀବ ସୃଷ୍ଟିପ୍ରକ୍ରିୟାର ଏକ ଅଭିନବ କୃତି । ଏହା ଯୁଗ ଯୁଗ ଧରି ପ୍ରକୃତିର ବିବିଧ ପ୍ରଭବର କ୍ରିୟାରୁ ଜାତ । ଥରେ ଗୋଟିଏ ଜାତିର ବନ୍ୟଜୀବର ଉଚ୍ଛେଦ ଘଟିଲେ, ସେହି କ୍ଷତିର ଆଉ ପୂରଣ ହୋଇ ନ ପାରେ" ।

Jra N. Gabrielsson

ଲେଖକ

(ବସନ୍ତ କୁମାର ବେହୁରା)

ବାଣୀବିହାର, ଭୁବନେଶ୍ୱର

ଅକ୍ଟୋବର 2, 1978



# ପ୍ରାରମ୍ଭିକ

ସହରକୁ ସର୍କସ ଆସିଲେ ଘୁରିଆଡେ ଖବରଟା ବଡ ବେଗି ଖେଳି ଯାଏ । ସର୍କସର ବାଘ ସିଂହ ଓ ଆଉ ଆଉ ଜୀବଜନ୍ତୁଙ୍କୁ ଦେଖିବାକୁ ଭରି ଗହଳି ହୁଏ । ପାଖରେ ପଇସା ନ ଥିଲେ ଲୋକେ ଧାର ଉଧାର କରି ମଧ୍ୟ ପିଲା କବିଲଙ୍କୁ ଧରି ସର୍କସ ଦେଖିଯାଆନ୍ତି । ଲୋକେ ନୂଆ କରି କଲିକତା ଗଲେ ଯେଉଁ ସବୁ ସ୍ଥାନ ବୁଲିକରି ଦେଖନ୍ତି ତା' ଭିତରେ ଚିଡିଆଖାନା ନିଶ୍ଚୟ ଥାଏ ।

ବଣର ଜୀବଜନ୍ତୁଙ୍କୁ ଦେଖିବା ପାଇଁ ଓ ସେମାନଙ୍କ ସମ୍ବନ୍ଧରେ ଜାଣିବା ପାଇଁ ଏହି କୌତୁହଳ ମଣିଷର ରକ୍ତ, ମାଂସ, ମଜ୍ଜା ଭିତରେ ମିଶି କରି ରହିଛି । ମଣିଷ ନିଜେ ଗୋଟିଏ ପ୍ରାଣୀ । ଆଦିମ କାଳରେ ଲୋକଙ୍କର ଘର ନ ଥିଲା, ଦ୍ୱାର ନ ଥିଲା, ଚାଷ କରି ଜାଣି ନ ଥିଲେ; ବଣର ଅନ୍ୟ ପ୍ରାଣୀମାନଙ୍କ ପରି ଫଳମୂଳ ଖାଉଥିଲେ, ଝରଣାର ପାଣି ପିଉଥିଲେ, ଗଛ ମୂଳେ ଗଛ ଡାଳରେ ବା ରୁମ୍ପାରେ ଶୋଉଥିଲେ । ଏବେ ଆମେ ଯେତେ ପ୍ରକାର ଜୀବଜନ୍ତୁ ଦେଖୁଛେଁ, ସେତେବେଳେ ଅର୍ଥାତ୍ ପନ୍ଦର ବର୍ଷ ତଳେ, ଆଜିର ବନ୍ୟ ପ୍ରାଣୀଙ୍କଠାରୁ ଅନେକ ବଡ଼ ବଡ଼ ଓ ଅଧିକ ହିଂସ୍ର ଜନ୍ତୁ ଥିଲେ । ଏବ ପରି ଫସଲ କିଆରି କି ସହର ବଜାର ନ ଥିଲା । ଘୁରିଆଡ଼େ ବଣଜଙ୍ଗଲମୟ ଥିଲା । ଆଉ ସେଥିପାଇଁ ବନ୍ୟ ଜନ୍ତୁଙ୍କ ସଂଖ୍ୟା ମଧ୍ୟ ବହୁତ ବେଶୀ ଥିଲା । ସେତେବେଳେ ଆଦିମ ଲୋକମାନଙ୍କୁ ହିଂସ୍ର ବନ୍ୟଜନ୍ତୁମାନଙ୍କ ସହିତ କେତେ ଲଢିବାକୁ ହୋଇ ନ ଥିବ ।

କ୍ରମେ ମଣିଷ ଚାଷ କରି ଶିଖିଲା । ଘର ତୋଳି ସେଥିରେ ରହିବାକୁ ଶିଖିଲା । ବଣର ଜୀବକୁ ପୋଷା ମନାଇ ଲଙ୍ଗଳ ବୁଲାଇଲା, ପିଠିରେ ବୋଝ ବୋହିଲା । କାହା ପିଠିରେ ଚଢି ଦୂର ସ୍ଥାନକୁ ଗଲା, କାହାକୁ ଗାଡ଼ି ଦେହରେ ଯୋଚି ଫସଲ, କାଠ, ଜିନିଷ ପତ୍ର ତଥା ପିଲାପିଲିଙ୍କି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଆ ଆଣ କଲା । କୌଣସି କୌଣସି ପ୍ରାଣୀଙ୍କୁ ପୋଷା ମନାଇ ତାଙ୍କଠାରୁ କ୍ଷୀର ଦୁହିଁ ସାରବାନ୍ ଖାଦ୍ୟ ପାଇଲା । ପୁଣି ଅନ୍ୟ ବନ୍ୟ ଜନ୍ତୁ ଓ ଘୋର

ତସ୍କରଙ୍କ ଦାଉରୁ ଘର ଓ ନିଜକୁ ରକ୍ଷା କରିବା ପାଇଁ କୁକୁରକୁ ଜଗୁଆଳି ରୂପେ ବ୍ୟବହାର କଲା । ମେଣ୍ଢାଙ୍କୁ ପୋଷି ତାଙ୍କ ଲୋମରେ ପିନ୍ଧିବା ଜିନିଷ ପ୍ରସ୍ତୁତ କଲା । ଶେଷକୁ ପିଲପିଲି ଓ ନିଜେ ଆନନ୍ଦ ପାଇବାପାଇଁ ବିଲେଇ ଓ ଅନ୍ୟ କେତେକ ପ୍ରାଣୀଙ୍କୁ ଆଣି ପୋଷିଲା ।

ମଣିଷର ଶିକ୍ଷା, ସଭ୍ୟତା, ସଂସ୍କୃତି ଯେତିକି ଯେତିକି ଆଗେଇ ଚାଲିଲା ତାହା ବଣର ଜୀବଜନ୍ତୁ ମାନଙ୍କପାଇଁ ସେତିକି ସେତିକି କାଳ ହେଲା । ଲକ୍ଷ ଲକ୍ଷ ବର୍ଷ ତଳେ ପୃଥିବୀରେ ଯେତିକି ଜାଗା ଥିଲା ଏବେବି ସେତିକି ଅଛି । କେଉଁଠି ପାହାଡଟାଏ ଥିଲା, ସେଠି ଏବେ ଅଗାଧ ପାଣି, ପୁଣି କେଉଁଠି ସମୁଦ୍ରତଳ ଆଗ୍ନେୟଗିରିର କ୍ରିୟା ଯୋଗୁ ବଡ ପାହାଡରେ ପରିଣତ ହେଇଛି । କେଉଁଠି ସମୁଦ୍ର ମାଡି ଯାଇଛି, କେଉଁଠ ଅବା ଛିଡି ଯାଇଛି । କିନ୍ତୁ ପୃଥିବୀର ଆୟତନ ବଢି ନାହିଁ । ଅଥଚ 1650 ମସିହାରେ ପୃଥିବୀର ଜନସଂଖ୍ୟା ଥିଲା 54 କୋଟି 50 ଲକ୍ଷ । 1950 ମସିହାକୁ ଏହା ହେଲା 240 କୋଟି ଓ 1975 ମସିହାକୁ ଚାରିଶହ କୋଟି । ଏବେ 600 କୋଟି । ତିନିଶହ ବର୍ଷ ଭିତରେ ଜନସଂଖ୍ୟା ପ୍ରାୟ ଚାରିଗୁଣ ବଢିଗଲା । ଏତେ ଲୋକଙ୍କର ରହିବା, ଖାଇବା ଓ କାମ କରିବାପାଇଁ ଜଙ୍ଗଲ ସଫା କରି ବିଲବାଡି, ଘରଦ୍ୱାର, ରାସ୍ତାଘାଟ, କଳ କାରଖାନା ଇତ୍ୟାଦି ବସାଇବାକୁ ପଡିଛି ଓ ପଡୁଛି । ଫଳରେ ବଣର ଜୀବଜନ୍ତୁ ଗହନ ଅଞ୍ଚଳକୁ ପଳାଇ ପଳାଇ ଯାଉଛନ୍ତି । କେତେକଙ୍କର ବଂଶ ଲୋପ ପାଇଗଲାଣି, ଏବଂ କେତେକଙ୍କର ସଂଖ୍ୟା ଏତେ କମି ଗଲାଣି ଯେ, ସେମାନେ ଲୋପ ପାଇବା ଉପରେ ।

ବର୍ତ୍ତମାନ ପୃଥିବୀର ବିଭିନ୍ନ ଦେଶରେ, ଯେଉଁ କେତେକ ବନ୍ୟ ପ୍ରାଣୀ ଏବେ ବି ବଞ୍ଚି ରହି ଅଛନ୍ତି, ସେମାନଙ୍କର ସଂଖ୍ୟା କମି ଯାଉଥିଲେ ମଧ୍ୟ କିପରି ସେମାନେ ଲୋପ ପାଇ ନ ଯିବେ ସେ ବିଷୟରେ ବିଭିନ୍ନ ବ୍ୟବସ୍ଥାମାନ କାର୍ଯ୍ୟକାରୀ କରାଯାଉଛି । ଭାରତ ତଥା ଓଡିଶାରେ ମଧ୍ୟ କିଛି କାର୍ଯ୍ୟ ହେଲାଣି । ଏହି ପୁସ୍ତକରେ ଭାରତ, ବିଶେଷ କରି ଓଡିଶାର ପ୍ରଧାନ ପ୍ରଧାନ ପ୍ରାଣୀମାନଙ୍କ ପ୍ରତି ପାଠକ ମାନଙ୍କର ଆଗ୍ରହ ଜନ୍ମାଇବା ପାଇଁ ସାମାନ୍ୟ ଚେଷ୍ଟା କରାଯାଇଅଛି ମାତ୍ର ।

●

# ପ୍ରଥମ ଅଧ୍ୟାୟ

# ସ୍ତନ୍ୟପାୟୀ ପ୍ରାଣୀ

ଯେଉଁ ପ୍ରାଣୀମାନେ ପିଲାବେଳେ ମା'ର ସ୍ତନରୁ କ୍ଷୀର ପିଇ ବଢନ୍ତି ସେମାନଙ୍କୁ ସ୍ତନ୍ୟପାୟୀ କହନ୍ତି । ମନୁଷ୍ୟ, ଗାଈ, ଘୋଡା, ଛେଳି, ବାଘ, ହାତୀ, ମୂଷା, ତିମି ଓ ବାଦୁଡି ଆଦି ସମସ୍ତେ ସ୍ତନ୍ୟପାୟୀ । ଏମାନଙ୍କ ଦେହରେ ଲୋମ ଅଛି । ଆମ ଦେହ ଭିତରକୁ ଗୋଟିଏ କୋଠରୀ ସହିତ ତୁଳନା କରଯାଇ ପାରେ । କୌଣସି କୋଠରୀ ଭିତରେ ଗୋଟିଏ ପରଦା ଝୁଲାଇ ଦେଲେ ତାହା ଦୁଇଟି କୋଠରୀ ହୋଇଯିବ । ସ୍ତନ୍ୟପାୟୀ ପ୍ରାଣୀଙ୍କର ଶରୀର ଭିତରେ କନାର ତ ପରଦା ନାହିଁ, ମାତ୍ର ମାଂସର ଗୋଟିଏ ପର୍ଦା ଥିବାରୁ ତାହା ଦୁଇଟି କୋଠରୀରେ ବିଭକ୍ତ । ଆମେ ଛାତି କହିଲେ ଯାହା ବୁଝୁଁ ତା' ତଳେ ପଞ୍ଜରା ହାଡ ଏବଂ ପଞ୍ଜର ଗହ୍ୱର ମଧ୍ୟରେ ଫୁସ୍ ଫୁସ୍ ଓ ହୃତପିଣ୍ଡ ଥାଏ । ପେଟ କହିଲେ ଯାହା ବୁଝାଏ ତା' ଭିତରେ ଖାଦ୍ୟ–ନଳୀର ଉପର ଅଂଶକୁ ଛାଡ଼ି ଦେଲେ ବାକୀ ସବୁ ଅଂଶ, ଯଥା– ପାକସ୍ଥଳୀ, ଅନ୍ତ ବୁଜୁଳା ଇତ୍ୟାଦି, ଯକୃତ୍ (Liver), ଅଗ୍ନ୍ୟାଶୟ (Pancreas), ମୂତ୍ରଯନ୍ତ୍ର ଏବଂ ପ୍ରଜନନ ଅଙ୍ଗ (Organs of reproduction) ରହିଥାଏ । ଦେହ ଭିତରେ ଯେଉଁ ପର୍ଦା ଥାଏ ବୋଲି ଉପରେ କୁହାଗଲା ତାକୁ ମଧ୍ୟଚ୍ଛଦା (diaphragm) କହନ୍ତି । ଛାତି ତଳେ ଥିବା ଅଂଶ ଏହାର ଉପର କୋଠରୀ ଓ ପେଟ ଭିତରେ ଥିବା ଅଂଶ ତଳ କୋଠରୀ । ଅନ୍ୟ ପ୍ରାଣୀମାନଙ୍କର ଛାତି ଓ ପେଟ ଥିଲେ ମଧ୍ୟ, ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ଛାଡିଦେଲେ ଆଉ କୌଣସି ପ୍ରାଣୀର ମଧ୍ୟଚ୍ଛଦା ନାହିଁ ।

ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ହୃତ୍‌ପିଣ୍ଡ ଚାରିଟି କୋଠରୀରେ ବିଭକ୍ତ ।




ଉପର ଦୁଇଟି କୋଠରୀକୁ ବାମ ଓ ଦକ୍ଷିଣ ଅଳିନ୍ଦ (auricle) କହନ୍ତି । ତଳ ଦୁଇଟି କୋଠରୀକୁ ବାମ ଓ ଦକ୍ଷିଣ ନିଳୟ (ventricle) ବୋଲାଯାଏ । ବାମ ଅଳିନ୍ଦ କେବଳ ବାମ ନିଳୟକୁ ଓ ଦକ୍ଷିଣ ଅଳିନ୍ଦ କେବଳ ଦକ୍ଷିଣ ନିଳୟକୁ ଖୋଲିବା ପାଇଁ ତା' ଭିତରେ କପାଟିକା (valve) ଅଛି । ଶରୀରର ବିଭିନ୍ନ ସ୍ଥାନରୁ ଅପରିଷ୍କୃତ ରକ୍ତ ଆସି ଦକ୍ଷିଣ ଅଳିନ୍ଦରେ ପହଞ୍ଚେ । ସେଠାରୁ ତାହା ଦକ୍ଷିଣ ନିଳୟକୁ ଯାଏ । ଦକ୍ଷିଣ ନିଳୟରୁ ରକ୍ତ ଫୁସ୍‌ଫୁସ୍‌ରେ ଯାଇ ପହଞ୍ଚେ । ଶ୍ୱାସକ୍ରିୟା ଫଳରେ ଫୁସ୍‌ଫୁସ୍‌ରେ ସେହି ରକ୍ତ ପରିଷ୍କୃତ ହୋଇ ବାମ ଅଳିନ୍ଦକୁ ଆସେ । ବାମ ଅଳିନ୍ଦରୁ ରକ୍ତ ବାମ ନିଳୟକୁ ଯାଏ ଏବଂ ସେଠାରୁ ଧମନୀ (artery) ମାନଙ୍କରେ ଶରୀରର ବିଭିନ୍ନ ସ୍ଥାନକୁ ଯାଏ । ଶରୀରର ସମସ୍ତ ଅଂଶ ସବୁ ସମୟରେ ପରିଷ୍କୃତ ରକ୍ତ ପାଇ ପାରିବା ପାଇଁ ଏହା ଏକ ସୁନ୍ଦର ବ୍ୟବସ୍ଥା । ପକ୍ଷୀମାନଙ୍କର ମଧ୍ୟ ହୃତ୍‌ପିଣ୍ଡରେ ଚାରିଟି କୋଠରୀ । ଅନ୍ୟ କୌଣସି ପ୍ରାଣୀଠାରେ ଏ ବିଶେଷତ୍ୱ ଦେଖାଯାଏ ନାହିଁ । ଅନ୍ୟ ପ୍ରାଣୀମାନଙ୍କର ହୃତ୍‌ପିଣ୍ଡ ତିନୋଟି ବା ତା'ଠାରୁ

କମ୍ କୋଠରୀରେ ବିଭକ୍ତ । ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଆଉ ଗୋଟିଏ ବିଶେଷ ଗୁଣ ଅଛି । ବାହାରେ ମୁଣ୍ଡଫଟା ଖରା ହେଉ ବା ହାଡ଼କୋରା ଶୀତ ହେଉ ଏମାନଙ୍କର ଦେହର ଉତ୍ତାପରେ ବିଶେଷ ପରିବର୍ତ୍ତନ ହୁଏ ନାହିଁ । ମାତ୍ର ଅନ୍ୟ ସବୁ ପ୍ରାଣୀଙ୍କର ଯଥା – ସାପ, ବେଙ୍ଗ, ମାଛ, ଗେଣ୍ଡା, ଶାମୁକା, ଜିଆ, କୀଟ ପତଙ୍ଗ ଇତ୍ୟାଦିଙ୍କର ଦେହର ଉତ୍ତାପ ବାହାରର ଉତ୍ତାପ ଅନୁସାରେ ବଦଳେ । ବାହାରେ ବରଫ ପଡୁଥିଲେ ସାପ ବା ବେଙ୍ଗ ବାହାରିଲେ ତାଙ୍କ ଦେହରେ ରକ୍ତ ବରଫ ପାଲଟିଯିବ ଓ ମୃତ୍ୟୁ ଘଟିବ । ଏହି କାରଣରୁ ପକ୍ଷୀ ଓ ସ୍ତନ୍ୟପାୟୀମାନଙ୍କୁ ସମତାପୀ ଏବଂ ଅନ୍ୟ ପ୍ରାଣୀମାନଙ୍କୁ ଅସମତାପୀ ବୋଲଯାଏ ।

ରହିବା, ଖାଇବା ଏବଂ ଜଳବାୟୁ–ଅନୁସାରେ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ଠାରେ ବହୁତ ପ୍ରଭେଦ ଦେଖାଯାଏ । ଅଧିକାଂଶ ସ୍ତନ୍ୟପାୟୀ ଭୂମି ଉପରେ ରହନ୍ତି । ପୁଣି କେତେକ ପାଣିରେ, ଗଛରେ ବା ଭୂମିରେ ଗାତ କରି ରହନ୍ତ । ତିମି, ଶିଶୁମାର, ସମୁଦ୍ରଗାଈ ଆଦି ଜଳବାସୀ । ମାଙ୍କଡ, ଗୁଣ୍ଡୁଚିମୂଷା ପ୍ରଭୃତି ଗଛରେ ରହନ୍ତି । ମୂଷା ଭୂମିରେ ଗାତ କରି ରହେ । ପୁଣି ବାଦୁଡ଼ି ଦିନବେଳେ ଗଛରେ ବା ଅନ୍ୟ କୌଣସି ସ୍ଥାନରେ ଝୁଲି ରହେ, ରାତିରେ ଉଡ଼େ । ଉଡ଼ିବା ପାଇଁ ସେମାନଙ୍କର ଡେଣା ଅଛି ।

ସ୍ତନ୍ୟପାୟୀ ପ୍ରାଣୀମାନେ ସମତାପୀ ହେଲେ ମଧ୍ୟ ପ୍ରବଳ ଥଣ୍ଡାରୁ ଶରୀରକୁ ରକ୍ଷା କରିବା ପାଇଁ ସେମାନଙ୍କଠାରେ କେତେକ ବିଶେଷତ୍ୱ ଦେଖାଯାଏ । ତିମିମାନେ ସମୁଦ୍ରର ଯେଉଁ ଅଞ୍ଚଳରେ ରହନ୍ତି ତାହା ଖୁବ ଥଣ୍ଡା । ଦେହର ଉତ୍ତାପ ଧରି ରଖିବା ପାଇଁ ତାଙ୍କ ଚମଡ଼ା ତଳେ ଚର୍ବିର ଏକ ମୋଟା ସ୍ତର ଥାଏ । ମେରୁ ଅଞ୍ଚଳରେ ଯେଉଁ ପ୍ରାଣୀମାନେ ରହନ୍ତି ସେମାନଙ୍କ ଦେହରେ ବହଳିଆ ଲମ୍ବ ଲୋମ ଥାଏ । ଲୁହା ଖଡ଼ିକାକୁ ଚୂଲୀର ନିଆଁରେ ଗରମ କଲେ ଆରପଟ ଶୀଘ୍ର ଗରମ ହୋଇଯାଏ । ତାର ଅର୍ଥ, ଉତ୍ତାପ ଲୁହା ଖଣ୍ଡରେ ଶୀଘ୍ର ଗତି କରିପାରେ । ଏଥିପାଇଁ ଲୁହା ଉତ୍ତାପର ସୁପରିବାହୀ ବୋଲି କୁହାଯାଏ । ଲୁଗାଖଣ୍ଡର ଗୋଟିଏ ପାଖ ଗରମ କଲେ ଆରପାଖ ଗରମ ହୁଏ ନାହିଁ । ଏଣୁ ଲୁଗା ଉତ୍ତାପର କୁପରିବାହୀ । ସେହିପରି ବାୟୁ ଉତ୍ତାପର କୁପରିବାହୀ । ଘନ ଲୋମ ଭିତରେ ବାୟୁକଣା

ଯାଏ । ସେଥିପାଇଁ ଦେହର ଉତ୍ତାପ ଶୀଘ୍ର ବାହାରି ଯାଇପାରେ ନାହିଁ ଓ ଦେହ ଉଷୁମ ରହେ ।

ଲୋମ ଯେ କେବଳ ଦେହର ଉତ୍ତାପ ରକ୍ଷା କରେ ତା'ନୁହେଁ, ଘନ ଲୋମ ଦେହକୁ ଆଘାତରୁ ମଧ୍ୟ ରକ୍ଷା କରେ । ମଣିଷର ପାଦର ତଳିପା ଓ ହାତର ପାପୁଲି ଛଡ଼ା ଦେହର ଅନ୍ୟ ସବୁଠାରେ ଲୋମ ଥିଲେ ମଧ୍ୟ କେବଳ ମୁଣ୍ଡର ବହଳ କେଶ ଆବରଣ ରୂପେ କାର୍ଯ୍ୟ କରେ । ଝିଙ୍କର କେଶ ମୁନିଆ କଣ୍ଟାରେ ପରିଣତ ହୋଇଥିବାରୁ ତାକୁ ଶତ୍ରୁ କବଳରୁ ରକ୍ଷା କରେ ଓ ଶତ୍ରୁକୁ ଆକ୍ରମଣ କରିବାରେ ସାହାଯ୍ୟ କରେ । ବଜ୍ରକାପ୍ତାର ଲୋମ କାତିରେ ରୂପାନ୍ତରିତ ହୋଇଥିବାରୁ ଦେହର ଚର୍ମ ରୂପେ କାର୍ଯ୍ୟ କରେ ।

ସାଧାରଣତଃ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ବର୍ଣ୍ଣ ଖୁବ ଚକଚକ ନୁହେଁ । ହେଲେ ହେଁ ବିଭିନ୍ନ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଦେହର ବର୍ଣ୍ଣରୁ ସେମାନଙ୍କୁ ଚିହ୍ନି ହୁଏ । ବାଘ ଦେହର ପଟା ପଟା କଳା ଗାର, କଲରା ପତ୍ରିଆ ବାଘ ଦେହର ଚିହ୍ନ ଇତ୍ୟାଦିରୁ ସେମାନଙ୍କୁ ଆମେ ସହଜରେ ଚିହ୍ନିପାରୁ । ଆହୁରି ମଧ୍ୟ ଦେହରେ ଏହି ସବୁ ଚିହ୍ନ ଥିବାରୁ ସ୍ତନ୍ୟପାୟୀ ପ୍ରାଣୀମାନେ ଯେଉଁଠି ରହନ୍ତି, ସେଠାର ଗଛପତ୍ର, ଭୂମି ଇତ୍ୟାଦି ସହତ ତାଙ୍କ ବର୍ଣ୍ଣରୂପ ଏପରି ଖାପ ଖାଇଯାଏ ଯେ ସେମାନଙ୍କର ଉପସ୍ଥିତି ଆଦୌ ଜଣା ପଡେ ନାହିଁ ।

ଶତ୍ରୁ ହସ୍ତରୁ ନିଜକୁ ରକ୍ଷା କରିବା ପାଇଁ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ନାନା ପ୍ରକାର ଅଙ୍ଗ ଅଛି, ଯଥା – ଦାନ୍ତ, ଆଞ୍ଚୁଡ଼ିବା ପାଇଁ ବଙ୍କା ନଖ, ଶିଙ୍ଗ ଓ ଖୁରା ଇତ୍ୟାଦି । ହରିଣମାନଙ୍କର ପ୍ରତିବର୍ଷ ପୁରୁଣା ଶିଙ୍ଗ ଖସିପଡେ ଓ ନୂଆ ଶିଙ୍ଗ ଉଠେ । ମାତ୍ର ଗାଈ, ଛେଳିଙ୍କର ଶିଙ୍ଗ ସାଧାରଣତଃ ଖସି ପଡେ ନାହିଁ ।

ସ୍ତନ୍ୟପାୟୀ ପ୍ରାଣୀର ଅଙ୍ଗସଞ୍ଚାଳନା ବା ଗତିଶୀଳତା ତା'ର ପ୍ରକୃତି ଉପରେ ନିର୍ଭର କରେ । ତିମି ଜଳରେ ରହେ । ସେଥିପାଇଁ ସେମାନଙ୍କର ଗୋଡ ଆହୁଲା ପରି ହୋଇଥାଏ । ମାତ୍ର ସ୍ଥଳରେ ସେପରି ଗୋଡ ପୁରାପୁରି ଅକାମୀ । ଘୋଡାର ଗୋଡ ପୁରାପୁରି ଖୁରା ଉପରେ ଭର ଦିଏ ଏବଂ ଖୁରା

ବେଗରେ ଦୌଡ଼ିବା ଲାଗି ଉପଯୋଗୀ । ଗାଈ, ମଇଁଷିଙ୍କ ଖୁରା ଦି'ଫାଳ ଓ କାଦୁଅରେ ଚାଲିବା ପାଇଁ ଉପଯୁକ୍ତ । ଅଧିକାଂଶ ସ୍ତନ୍ୟପାୟୀ ପ୍ରାଣୀ ଭୂମି ଉପରେ ଚାଲନ୍ତି ବା ଦୌଡନ୍ତି । ଉଡନ୍ତା ଗୁଣ୍ଡୁଚିମୂଷା ପବନ ମୁହାଁ ହୋଇ ଏକ ଡାଳରୁ ଅନ୍ୟ ଡାଳକୁ ଭସି ଯାଇପାରେ ଏବଂ ବାଦୁଡି ମନ ଇଚ୍ଛା ଯେଣେତେଣେ ଉଡ଼ି ପାରେ ।

ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଦାନ୍ତ ସେମାନଙ୍କର ଏକ ଅମୂଲ୍ୟ ସମ୍ପଦ । ଏଗୁଡିକ ବିଭିନ୍ନ ପ୍ରକାରର । ଭିନ୍ନ ଭିନ୍ନ ସ୍ତନ୍ୟପାୟୀ ପ୍ରାଣୀ-ମାନଙ୍କର ଦାନ୍ତ ଭିନ୍ନ ଏବଂ ଦାନ୍ତ ପରୀକ୍ଷା କରି ସେମାନେ କି ପ୍ରକାର ଖାଦ୍ୟ ଖା'ନ୍ତି ଜାଣିହୁଏ । ଅଧିକାଂଶ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଦାନ୍ତ ଅଛି । କେବଳ "ହଂସଚଞ୍ଚୁ" (ଏମାନଙ୍କ କଥା ପରେ କୁହାଯାଇ ଅଛି), ଏକ ଜାତି ତିମି (whalebone whale) ଓ ବଜ୍ରକାପ୍ତାମାନଙ୍କର ଦାନ୍ତ ନାହିଁ । ଦାନ୍ତ ସାଧାରଣତଃ ଚାରି ପ୍ରକାରର, ଯଥା – (୧) ଛାମୁଦାନ୍ତ ବା ବଟାଳି ଆକାରର କର୍ତ୍ତନ ଦାନ୍ତ (incisor); (୨) ମୁନିଆ ଶ୍ୱାଦନ୍ତ (canine); (୩) ଚର୍ବଣ (pre-malar) ଦାନ୍ତ ଓ (୪) ପେଷଣ ଦାନ୍ତ (molar) । ଦାନ୍ତଗୁଡ଼ିକର ମୂଳ ମାଢ଼ି ଉପରେ ରହିଥାଏ । ବାହାରକୁ ଜଣା ପଡିବାକୁ ସିନା ମାଢ଼ି, ପ୍ରକୃତପକ୍ଷେ ଉପର ଓ ତଳ ପାଟିର ହାଡ ଭିତରେ ଥିବା କୋଟର ଭିତରେ ଦାନ୍ତ ଯୋଖି ହୋଇ ରହିଥାଏ । ଯେଉଁ ଦାନ୍ତ ଖାଦ୍ୟ ପଦାର୍ଥକୁ କାଟି ଛୋଟ ଛୋଟ କରେ ତାକୁ କର୍ତ୍ତନ ଦାନ୍ତ କହନ୍ତି । ସେହିପରି ଯେଉଁ ଦାନ୍ତ ବଟାଳି ପରି ମୁନିଆ ଓ ଯାହା ଫଳରେ ଅନ୍ୟ ଜନ୍ତୁର ମାଂସ ଓଟାରି ଛିଣ୍ଡାଯାଏ ତାକୁ ଶ୍ୱାଦନ୍ତ, ଯେଉଁ ଦାନ୍ତରେ ଚୋବାଯାଏ ତାକୁ ଚର୍ବଣ ଦାନ୍ତ ଓ ଯେଉଁ ଦାନ୍ତରେ ଖାଦ୍ୟ ପଦାର୍ଥ ପେଷି ଗୁଣ୍ଡ କରି ଦିଆଯାଏ ତାକୁ ପେଷଣ ଦାନ୍ତ କୁହାଯାଏ । ଅଧିକାଂଶ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ପିଲଦିନେ ଯେଉଁ ଦାନ୍ତ ଉଠେ ତାହା ବଡ଼କାଳକୁ ରହେ ନାହିଁ । ଦୁଧଦାନ୍ତ ପଡିଯାଏ ଓ ତା' ସ୍ଥାନରେ ସ୍ଥାୟୀ ଦାନ୍ତ ଉଠେ । ଜଣେ ପ୍ରାପ୍ତ ବୟସ ଲୋକର ଉପର ପାଟିରେ ଷୋଳଟି ଓ ତଳ ପାଟିରେ ଷୋଳଟି – ମୋଟ ବତିଶଟି ଦାନ୍ତ । ଉପର ପାଟିର ବାମ ବା ଡାହାଣ (ଅଧ) ପାଖରେ ଆଠଟି ଓ ତଳ ପାଟିରେ ବାମ ବା ଡାହାଣ (ଅଧ) ପାଖରେ ଆଠଟି ଦାନ୍ତ ।

ପ୍ରତ୍ୟେକ (ଅଧ) ପାଖରେ ଦୁଇଟି କର୍ତ୍ତନ (ଛାମୁ) ଦାନ୍ତ, ଗୋଟିଏ




ଚିତ୍ର ନଂ ୨ । ମନୁଷ୍ୟର ଉପରପାଟି ଦନ୍ତ-ସଜ୍ଜାର ନକସା ଚିତ୍ର ଭିତର ଅଂଶରେ ଶିଶୁମାନଙ୍କର ଦୁଗ୍ଧ ଦନ୍ତ; କଡରେ କେଉଁ ମାସ ବା ବର୍ଷରେ ଦାନ୍ତଉଠେ ତାହା ସଂଖ୍ୟା ଦ୍ୱାରା ଦର୍ଶା ଯାଇଅଛି ।

ଶ୍ୱାଦନ୍ତ, ଦୁଇଟି ଚର୍ବଣ ଦନ୍ତ ଓ ତିନୋଟି ପେଷଣ ଦନ୍ତ ଥାଏ । ଶିଶୁମାନଙ୍କର ଦୁଧ ଦାନ୍ତ ମାତ୍ର କୋଡିଏଟି । ପାଟିର ପ୍ରତ୍ୟେକ ଅଧ ପାଖରେ କର୍ତ୍ତନ ଦନ୍ତ ଦୁଇଟି, ଶ୍ୱାଦନ୍ତ ଗୋଟିଏ, ଚର୍ବଣ ଦନ୍ତ ଦୁଇଟି ଓ ପେଷଣ ଦନ୍ତ ନାହିଁ ।

ଏଥର ଦାନ୍ତ ସହିତ ଖାଦ୍ୟର କି ସମ୍ପର୍କ ତାହା ବିଗ୍ଭର କରିବା । କେତୋଟି ଉଦାହରଣ ଦେଲେ ବିଷୟଟି ସ୍ପଷ୍ଟ ହେବ । ଶିଶୁମାର ପାଣିରେ ରହନ୍ତି ଓ ମାଛ ଖା'ନ୍ତି । ଏଣୁ ତାଙ୍କୁ ଖାଦ୍ୟକୁ ଗିଳିବାକୁ ପଡେ । ତାକୁ ଯଦି ମାଛ ପାଟିରେ ଧରି ଗ୍ଭେବାଇବାକୁ ପଡନ୍ତା, ତେବେ ସେ ଗୋଟିଏ ମାଛ ପିଛା ଧରି ତାକୁ ଶେଷରେ ପାଟିରେ କାମୁଡ଼ି ଗ୍ଭେବାଇ ଗିଳିଲ-ପରେ ଆଉ ଗୋଟିଏ ମାଛ ପଛରେ ଦୌଡ଼ିବାକୁ ପଡ଼ନ୍ତା । ଏଥିରେ ପେଟ ତ ପୂରନ୍ତା ନାହିଁ, ଦୌଡ଼ି ଦୌଡ଼ି ହାଲିଆ ହେବା ସା'ର ହୁଅନ୍ତା । ଏଣୁ ଏମାନଙ୍କର ଦାନ୍ତ ଅନେକଗୁଡ଼ାଏ, ମୁନିଆଁ ଓ ଏକା ପ୍ରକାରର । ଏ ଭଳି ଦାନ୍ତର ଏକମାତ୍ର ଉପଯୋଗିତା ହେଉଛି, ମାଛ ଥରେ ପାଟିରେ ଧରା ପଡିଲେ ଆଉ ଖସି ଯାଇପାରନ୍ତି ନାହିଁ । କୁକୁର, ବାଘ, ସିଂହ, ହେଟା, ଗଧିଆ ଆଦି ପ୍ରାଣୀ ମାଂସ ଖାଇ ବଞ୍ଚନ୍ତି । ଏଣୁ ଏମାନଙ୍କର ଶ୍ୱାଦନ୍ତ ବଡ଼

ଏବଂ ଖାଦ୍ୟ-ଜୀବ ଧରି ମାରି ବିଦାରି ଖାଇବା ପାଇଁ ଅତି ଉପଯୋଗୀ । ଖାଦ୍ୟକୁ କାଟି କାଟି ଛୋଟ କରିବା ଏମାନଙ୍କର ଦରକାର ନାହିଁ । ସେଥିପାଇଁ କର୍ତ୍ତନ-ଦାନ୍ତ ଛୋଟ ଓ ଅକାମୀ କହିଲେ ଚଳେ । ହାଡମିଶା ମାଂସକୁ ପେଷି ପକାଇବା ପାଇଁ ପେଷଣ ଦାନ୍ତ ବେଶ୍ ବଡ ଏବଂ କାଟିବା ଓ ପେଷିବା ପାଇଁ ସେଥିରେ ଆବଡ଼ା ଖାବଡ଼ା ଧାର ଅଛି । ଗାଈ, ମଇଁଷି













ଚିତ୍ର ନଂ 3 । ଖାଦ୍ୟାନୁସାରେ କେତୋଟି ସ୍ତନ୍ୟପାୟୀ ପ୍ରାଣୀର ଦାନ୍ତ ।

ପ୍ରଭୃତି ପ୍ରାଣୀ ଘାସ, କୁଟା ଆଦି ଖାନ୍ତି । ଏ ସବୁକୁ କାଟି ଛିଣ୍ଡାଇ ପକାଇବା ପାଇଁ ସେମାନଙ୍କର କର୍ତ୍ତନ ଦାନ୍ତ ଓସାରିଆ, ଶ୍ୱାଦନ୍ତ ଆଦୌ ନାହିଁ, ଏବଂ ପେଷଣ ଦାନ୍ତ ବଡ଼ । ମୂଷା, ଠେକୁଆ ଆଦି ପ୍ରାଣୀ ଶସ୍ୟ ଓ ଘାସକୁ କୁଟୁକୁଟୁ କରି କୋରି ଖା'ନ୍ତି । ଏଣୁ ଏମାନଙ୍କର କର୍ତ୍ତନ-ଦାନ୍ତ

ଲମ୍ବା ଓ ଦାଢ଼ୁଆ । ଜୀବନକାଳଯାକ ଏ ଦାନ୍ତ ବଢ଼ୁଥାଏ; ମାତ୍ର ସବୁବେଳେ ବ୍ୟବହାର ହେଉଥିବାରୁ ତାହା ଘୋରି ହୋଇ ଯାଉଥାଏ; ବଢ଼େ ଯେତେ ଘୋରି ହୁଏ ସେତେ, ବଢ଼ୁଛି ବୋଲି ଆମକୁ ଜଣା ପଡ଼େ ନାହିଁ । ଚୁଚୁନ୍ଦ୍ରା କୀଟ ପତଙ୍ଗ ଖାଏ । ସେଥିପାଇଁ ତା'ର କର୍ତ୍ତନ ଦାନ୍ତ ବାହାର ଆଡ଼କୁ ପ୍ରସାରିତ (ମୁଷାର ଭିତର ଆଡ଼କୁ) । ଏତଦ୍ଵାରା ତାକୁ ଛାମୁଦାନ୍ତ ଦ୍ଵାରା ପୋକ ଧରିବାକୁ ସୁବିଧା ହୁଏ । ଏମାନଙ୍କର ଚର୍ବଣ ଓ ପେଷଣ ଦାନ୍ତର ଉପର ଗୋଜିଆ ଗୋଜିଆ ହୋଇ ବାହାରିଥିବାରୁ ପୋକକୁ ଚୋବାଇ ଓ ପେଷି ଖାଇବାକୁ ସୁବିଧା ହୁଏ । ଯେଉଁ ସ୍ତନ୍ୟପାୟୀ ପ୍ରାଣୀମାନେ ଫଳମୂଳ-ମାଛମାଂସ ସବୁ ଖା'ନ୍ତି ସେମାନଙ୍କର ଦାନ୍ତ ତଦନୁଯାୟୀ ଉଭୟ ପ୍ରକାର ଖାଦ୍ୟ ଖାଇବା ପାଇଁ ଉପଯୋଗୀ । ଉଦାହରଣ,—ଭାଲୁ ।

ପୃଥିବୀର କ୍ଷେତ୍ରଫଳ ପ୍ରାୟ 518,000,000 ବର୍ଗ କିଲୋମିଟର (କୋଡ଼ିଏ କୋଟି ବର୍ଗ ମାଇଲ) । ଏହାର ଆଠ ଭାଗରୁ ପାଞ୍ଚ ଭାଗ ସମୁଦ୍ର । ସ୍ଥଳ ବା ଜଳଭାଗର ସବୁ ସ୍ଥାନ ଏକା ପ୍ରକାରର ନୁହେଁ । ଏଣୁ ବିଭିନ୍ନ ପ୍ରକାର ସ୍ଥାନରେ ବିଭିନ୍ନ ସ୍ତନ୍ୟପାୟୀ ପ୍ରାଣୀ ଦେଖିବାକୁ ମିଳନ୍ତି । ଯେଉଁ ପ୍ରଧାନ ପ୍ରଧାନ ପ୍ରାକୃତିକ କାରଣଗୁଡ଼ିକ ପାଇଁ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ପ୍ରକାର ପ୍ରାଣୀ ଦେଖାଯାନ୍ତି, ସେଗୁଡ଼ିକ ହେଲା, ଉତ୍ତାପ, ଜଳ, ଆଲୋକ ଓ ଖାଦ୍ୟ ।

ପ୍ରାଣ ଧାରଣ କରିବା ପାଇଁ ଜୀବମାନଙ୍କର କେତେକ ପରିମାଣରେ ଜଳ ଆବଶ୍ୟକ । କାରଣ ସେମାନଙ୍କର ଦେହର ଶତକଡ଼ା 55 ରୁ 95 ଭାଗ ଜଳ । ଯେଉଁ ସ୍ତନ୍ୟପାୟୀ ପ୍ରାଣୀମାନେ ଗରମ ଜାଗାରେ ରହନ୍ତି, ସେମାନଙ୍କର ଚମ ମୋଟା । ତା' ଫଳରେ ଜଳୀୟ ବାଷ୍ପ ଦେହରୁ ସହଜରେ ବାହାରି ଯାଏ ନାହିଁ । କେତେକ ସ୍ତନ୍ୟପାୟୀ ଦିନବେଳେ ଚରବୁଲ କରନ୍ତି ପୁଣି କେତେକ ରାତିରେ । ଯେଉଁ ପ୍ରାଣୀ ଦିନରେ ଲୁଚି ରହନ୍ତି ସେମାନେ ଦିନ ଆଲୁଅରେ ବାହାରିଲେ ଶତ୍ରୁ ଦ୍ଵାରା ଆକ୍ରାନ୍ତ ହୋଇ ପ୍ରାଣ ହରାନ୍ତେ । ଆହୁରି ମଧ୍ୟ, ଦିନବେଳେ ଖାଦ୍ୟ-ଜୀବ ଶତ୍ରୁକୁ ଦେଖି ପକାଇବା ଫଳରେ ସହଜରେ ଧରା ପଡ଼ନ୍ତେ ନାହିଁ । ଅନ୍ୟ ସବୁ ସୁବିଧା ଥିଲେ ମଧ୍ୟ, ଖାଦ୍ୟ ନ ଥିଲେ କୌଣସି ପ୍ରାଣୀ ସେ ସ୍ଥାନରେ ରହିବ ନାହିଁ । ଯେଉଁଠି ଘାସ, ଗଛ, ଲତା ଆଦି ନାହିଁ ସେଠି ହରିଣ ପରି ତୃଣଭୋଜୀ ପ୍ରାଣୀ ରହିବେ ନାହିଁ, ଯେଉଁଠି

ହରିଣ ଆଦି ଖାଦ୍ୟ-ଜୀବ ନାହାନ୍ତି, ସେଠି ବାଘ, କଲରା ପତିଆ ବାଘ ରହିବେ ନାହିଁ ।

ଦୁଇ ଜାତି ସ୍ତନ୍ୟପାୟୀ ପ୍ରାଣୀ ଅଣ୍ଡା ପ୍ରସବ କରନ୍ତି । ଏମାନେ ସବୁଠାରୁ ଆଦିମ ସ୍ତନ୍ୟପାୟୀ ପ୍ରାଣୀ । 'ହଂସଚଞ୍ଚୁ' (Duck Bill ବା Platypus ) ଓ କଣ୍ଟକ ଦେହୀ ପିପୀଲିକା ଖାଦକ (Spiny Anteater ବା Echidna) ନାମକ ଦୁଇ ଜାତି ଅଣ୍ଡପ୍ରସବୀ ସ୍ତନ୍ୟପାୟୀ ପ୍ରାଣୀ ଅଷ୍ଟ୍ରେଲିଆରେ ଦେଖାଯା'ନ୍ତି ।

ଆଉ କେତେକ ସ୍ତନ୍ୟପାୟୀଙ୍କର ପିଲା ଜନ୍ମବେଳେ ଏତେ ଅଳ୍ପ ବର୍ଦ୍ଧିତ ହୋଇଥାଏ ଯେ, ଜନ୍ମ ପରେ ପରେ, ମା ପେଟରେ ଥିବା ଏକ ଥଳିରେ ରହି ବଢ଼େ । ଏପରି ସ୍ତନ୍ୟପାୟୀ ପ୍ରାଣୀ ପ୍ରଧାନତଃ ଅଷ୍ଟ୍ରେଲିଆରେ ଦେଖାଯା'ନ୍ତି । କଙ୍ଗାରୁ ଏଇ ଜାତୀୟ ।

ବାକି ସମସ୍ତ ପ୍ରକାର ସ୍ତନ୍ୟପାୟୀ ପ୍ରାଣୀ ମା' ସହିତ 'ଫୁଲ' (Placenta) ଓ ନାଡ଼ ଦ୍ୱାରା ସଂଯୁକ୍ତ ଥାଇ ମା'ଦେହରୁ ଖାଦ୍ୟ ପାଇ ବଢ଼ୁଥାନ୍ତି । ଶିଶୁ ଜାତହେଲେ 'ଫୁଲ'ର ଆଉ ଆବଶ୍ୟକତା ନଥାଏ ଓ ତାହା ବାହାରି ଆସେ ଏବଂ ଶିଶୁପାଖରୁ ନାଡ଼ କାଟି ଦିଆଯାଏ । ଏଣୁ ଯେଉଁ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର 'ଫୁଲ' ଅଛି ସେମାନେ ଉପରେ ଦିଆ-ଯାଇଥିବା ଅଣ୍ଡ-ପ୍ରସବୀ ଓ କଙ୍ଗାରୁ ଜାତୀୟ ସ୍ତନ୍ୟପାୟୀମାନଙ୍କ ଠାରୁ ଉଚ୍ଚ ଶ୍ରେଣୀର ବୋଲି ଧରାଯା'ନ୍ତି । କାରଣ, 'ଫୁଲ' ଥିବା ସ୍ତନ୍ୟପାୟୀମାନଙ୍କର ଶିଶୁ ଜାତ ହେବା ସମୟକୁ ଅପେକ୍ଷାକୃତ ଉତ୍ତମ ଭାବରେ ବର୍ଦ୍ଧିତ ହୋଇ-ଯାଇଥାଏ ।

ପୃଥିବୀରେ ପ୍ରାୟ ପନ୍ଦର ହଜାର ବିଭିନ୍ନ ଜାତିର ସ୍ତନ୍ୟପାୟୀ ପ୍ରାଣୀ ଦେଖାଯାନ୍ତି । ଏହା ବାଦ୍ ଗତ ବାରକୋଟି ବର୍ଷ ଭିତରେ ବହୁ ଜାତିର ସ୍ତନ୍ୟପାୟୀ ପ୍ରାଣୀ ଜନ୍ମ ହୋଇଛନ୍ତି, ପୁଣି ପ୍ରକୃତିର ନିୟମ ଅନୁସାରେ ସେମାନଙ୍କର ବଂଶ ଲୋପ ପାଇଅଛି । ଏବେ ଯେଉଁ ସ୍ତନ୍ୟପାୟୀ ପ୍ରାଣୀ ଦେଖାଯାନ୍ତି, ସେମାନଙ୍କ ମଧ୍ୟରେ ଚୂଟିଆ ମୂଷା ସବୁଠାରୁ ଛୋଟ ସ୍ତନ୍ୟପାୟୀ ପ୍ରାଣୀ । ଏମାନେ ଲମ୍ବରେ 50.8 ମିଲିମିଟର (2 ଇଞ୍ଚ) ଓ ଓଜନରେ 28 ଗ୍ରାମ୍ (ଏକ ଆଉନ୍‌ସ)ରୁ କମ୍ ହୁଅନ୍ତି । ନୀଳ ତିମି (Blue whale, ବୈଜ୍ଞାନିକ ନାମ –Balaenoptera musculus) ପ୍ରାଣୀମାନଙ୍କ ମଧ୍ୟରେ



ଚିତ୍ର ନଂ 4 । ପୃଥିବୀର ବୃହତ୍ତମ ପ୍ରାଣୀ ନୀଳ ତିମି (32 ମିଟାର) ସହିତ ମନୁଷ୍ୟ (1.8 ମିଟାର) ଓ କ୍ଷୁଦ୍ରତମ ସ୍ତନ୍ୟପାୟୀ ପ୍ରାଣୀ ଚୁଟିଆମୂଷା ( 50.8 ମିଲି ମିଟାର) ର ତୁଳନାତ୍ମକ ନକ୍ସା ଚିତ୍ର ।

ବୃହତ୍ତମ । ଏହା ଲମ୍ବରେ 32 ମିଟର (105 ଫୁଟ) ଯାଏ ବଢ଼େ ଓ ଓଜନରେ 120,904 କିଲୋଗ୍ରାମ (119 ଟନ୍) ହୁଏ ।

ଘୋଡ଼ା ଓ ଗଧର କଙ୍କାଳ ନେଇ ପରୀକ୍ଷା କଲେ ବିଶେଷଜ୍ଞମାନେ ମଧ୍ୟ ବିଶେଷ ତଫାତ୍ ବାରି ପାରନ୍ତି ନାହିଁ । ସେହିପରି ବାନର, ସିମ୍ପାଞ୍ଜି, ଗରିଲ ଓ ମନୁଷ୍ୟମାନଙ୍କ ମଧ୍ୟରେ ଅନେକ ଲକ୍ଷଣରେ ମେଳ ଦେଖାଯାଏ । ନିକଟ ଓ ଦୂର ସମ୍ପର୍କ ଅନୁସାରେ ପ୍ରାଣୀବିଜ୍ଞାନବିତ୍‌ମାନେ ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ତିନୋଟି ଉପ-ବିଭାଗ (ଉପଶ୍ରେଣୀ)ରେ ବିଭକ୍ତ କରି ଅଛନ୍ତି । ଯଥା – (1) ଅଣ୍ଡପ୍ରସବୀ (ଯେଉଁମାନେ ଅଣ୍ଡା ଦିଅନ୍ତି) ; (2) ସଥଳୀ (ପିଲା ବଡ଼ ହେଲଯାଏ ମା' ପେଟରେ ଥିବା ଏକ ଥଳୀରେ ବାସ କରେ) ; (3) ସଫୁଲ (ଭ୍ରୁଣ ମା' ଦେହରୁ ଫୁଲବାଟେ ଖାଦ୍ୟ ପାଏ ଓ ପୂର୍ଣ୍ଣ ବର୍ଦ୍ଧିତ ହୋଇ ଭୂମିଷ୍ଠ ହୁଏ) । ଏହି ତିନୋଟି ଉପଶ୍ରେଣୀର ପ୍ରାଣୀଙ୍କୁ ଷୋହଳଟି ବର୍ଗରେ ବିଭକ୍ତ କରାଯାଇଛି । ପନ୍ଦର ହଜାର ସ୍ତନ୍ୟପାୟୀ ପ୍ରାଣୀ ଏହି 16ଟି ବର୍ଗର ଅନ୍ତର୍ଭୁକ୍ତ ।

# ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ବର୍ଗୀକରଣ

ଭିନ୍ନ ଭିନ୍ନ ଜାତିର ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ସେମାନଙ୍କର ପରସ୍ପର ସହିତ ଜ୍ଞାତିତ୍ୱ ଅନୁସାରେ ନିମ୍ନଲିଖିତ ମତେ ୧୬ଟି ବିଭାଗରେ ବିଭକ୍ତ କରାଯାଇ ଅଛି ।

ଶ୍ରେଣୀ (Class)—ମାମାଲିଆ (Mammalia) (ସ୍ତନ୍ୟପାୟୀ ପ୍ରାଣୀ)

(କ) ଉପଶ୍ରେଣୀ (Subclass) ପ୍ରୋଟୋଥେରିଆ (Prototheria)— ଅଣ୍ଡାପ୍ରସବୀ ସ୍ତନ୍ୟପାୟୀ ପ୍ରାଣୀ । ଅଣ୍ଡାରୁ ଛୁଆ ଫୁଟିଲେ ଶାବକ ମା'ଠାରୁ କ୍ଷୀର ପିଇ ବଡ ହୁଅନ୍ତି । ମା'ର ଛାତିଉପରେ ଥିବା ବହୁ ରନ୍ଧ୍ର ଦେଇ କ୍ଷୀର ବାହାରେ । ଏମାନଙ୍କର ଥନ ବେଣ୍ଟ ନାହିଁ । କେବଳ ଅଷ୍ଟ୍ରେଲିଆରେ ଦେଖାଯାଆନ୍ତି ।

୧ । ମନୋଟ୍ରିମାଟା (Monotremata) ବର୍ଗ—ଉଦାହରଣ :— ହଂସଚଞ୍ଚୁ (Duckbill), କଣ୍ଟା ଦେହ ପିମ୍ପୁଡ଼ିଖାଇ (Spiny anteater)

(ଖ) ଉପଶ୍ରେଣୀ ମେଟାଥେରିଆ (Metatheria)— ଥଳିଥିବା ସ୍ତନ୍ୟପାୟୀ ପ୍ରାଣୀ । ଶିଶୁ ଜନ୍ମ ହେବା ସମୟରେ ଭଲ କରି ବଢ଼ି ନ ଥାଏ । ଜନ୍ମ ହେବା ସଙ୍ଗେ ସଙ୍ଗେ ମା' ପେଟରେ ଥଳିରେ ଆସି ପଶି ରହେ । ଥଳି ଭିତରେ ଥନ ବେଣ୍ଟ ଥାଏ । ତାକୁ ପାଟିରେ ଘୁପି ସେ ଲାଖି ରହିଥାଏ । ପ୍ରଧାନତଃ ଅଷ୍ଟ୍ରେଲିଆରେ ଏମାନେ ଦେଖାଯାନ୍ତି ।

୨ । ପଲିପ୍ରୋଟୋଡନ୍‌ସିଆ (Polyprotodontia) ବର୍ଗ— ଏମାନେ ମାଂସାଶୀ ଏବଂ ଏମାନଙ୍କର ଦାନ୍ତ ଗୋଳିଆ ଓ ତୀକ୍ଷ୍ଣ । ଉଦାହରଣ—ଅପୋସାମ୍, ବେଣ୍ଡିକୁଟ୍, ଟାସମାନିଆ ଦ୍ୱୀପର 'ହେଟା' ।

୩ । ଡାଇପ୍ରୋଟୋଡ଼ନ୍‌ସିଆ (Diprotodontia) ବର୍ଗ—ଏମାନେ ତୃଣ ଭୋଜୀ । ଏମାନଙ୍କର ଛାମୁଦାନ୍ତ ବଟାଳି ପରି ଓ ଶ୍ୱାଦନ୍ତ ଛୋଟ ।

ଉଦାହରଣ :—କଙ୍ଗାରୁ, ଓ୍ୱାଲବି, ଉମ୍‌ବାଟ୍, ଫେଲେନ୍‌ଜାର, କୋଆଲା 'ଭାଲୁ' ।

(ଗ) ଉପଶ୍ରେଣୀ ୟୁଥେରିଆ (Eutheria)—କଙ୍ଗାରୁମାନଙ୍କ ପରି ଏମାନଙ୍କ ପେଟରେ ଥଳି ନଥାଏ ଓ ଭ୍ରୂଣ ମା' ଦେହରେ ଫୁଲ ସହିତ ଜଡିତ ହୋଇ ରହିଥାଏ । ଉପରେ ଦିଆ ଯାଇଥିବା ଦୁଇଟି ଉପଶ୍ରେଣୀର ପ୍ରାଣୀମାନେ କେବଳ ପ୍ରାୟ ଅଷ୍ଟ୍ରେଲିୟାରେ ମିଳୁଥିବା ବେଳେ ୟୁଥେରିଆ ପ୍ରାଣୀମାନେ ପୃଥିବୀର ସବୁଠାରେ ଦେଖାଯାନ୍ତି ।

4 ଇନ୍‌ସେକ୍ଟିଭୋର (Insectivora) (ପୋକଖିଆ) ବର୍ଗ—ଏହି ସ୍ତନ୍ୟପାୟୀ ପ୍ରାଣୀମାନେ କ୍ଷୁଦ୍ର । ଏମାନେ ଝିଆ, ତେଲୁଣୀ ପୋକ, କୀଟ ପତଙ୍ଗ ଆଦି ଖାନ୍ତି । ଏଥିପାଇଁ ଏମାନଙ୍କର ଅନେକ ଗୁଡିଏ ତୀକ୍ଷଣ ଦାନ୍ତ ଅଛି । ଉଦାହରଣ :—ଚୁଚୁନ୍ଦ୍ରା ଓ ଶଲ୍ଲକୀ ମୂଷିକ (hedgehog) ।

5 କାଇରପ୍‌ଟେରା (Chiroptera) (ଉଡନ୍ତା ସ୍ତନ୍ୟପାୟୀ) ବର୍ଗ—ଏମାନଙ୍କର ବାହୁ ଓ ଆଙ୍ଗୁଠି ବେଶ ଲମ୍ବା । ପତଳା ଚମଡ଼ା ଦେହ, ବାହୁ ଓ ଆଙ୍ଗୁଠି ସହିତ ମିଶି ଉଡି ପାରିବା ପାଇଁ ଡେଣା ଗଠନ କରେ । ଚମଡାର ଡେଣା ବାହୁରୁ ଗୋଡ଼ଯାଏ ଲମ୍ବିଥାଏ । ପୃଥିବୀର ସବୁଠାରେ ଦେଖାଯାନ୍ତି । ଉଦାହରଣ :—ବାଦୁଡି, ଚେମେଣି ।

6 ପ୍ରାଇମେଟ୍‌ସ୍ (Primates) (ବାନର) ବର୍ଗ—ଏମାନଙ୍କର ପାଟିର (ଉପର ପାଟି, ତଳ ପାଟି) ପ୍ରତ୍ୟେକ ପାଖ ଅଧାରେ ଦୁଇଟି କରି କର୍ତ୍ତନ ଦାନ୍ତ । ହାତ ଓ ଗୋଡରେ ପାଞ୍ଚଟି କରି ଅଙ୍ଗୁଳି । ସବୁ ବା କେତେକ ଅଙ୍ଗୁଳିରେ ନଖ ଅଛି । ହାତର ବୁଢା ଆଙ୍ଗୁଠି ଅନ୍ୟ ଆଙ୍ଗୁଠି ଗୁଡିକର ସାମନା ସାମନି ଥିବାରୁ ହାତରେ ଧରି ପାରିବା ଓ ଚଢି ପାରିବା ପାଇଁ ଉପଯୋଗୀ । ସାଧାରଣତଃ ଥରକେ ଗୋଟିଏ ସନ୍ତାନ ଜାତ ହୁଏ । ଏହି ବର୍ଗର ବେଶୀ ଭାଗ ପ୍ରାଣୀ ଗଛରେ ରହନ୍ତି ଏବଂ ସାଧାରଣତଃ ଫଳ ଓ ମଞ୍ଜି ଆହାର କରନ୍ତି । ଅନ୍ୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ତୁଳନାରେ ଏମାନେ ସବୁଠାରୁ ବେଶୀ ବୁଦ୍ଧିମାନ । ଉଦାହରଣ —ଲେମୁର, ଟାରସିଆର, ବାନର ଓ ମନୁଷ୍ୟ ।

7. ଇଡେନଟାଟା (Edentata) ବର୍ଗ ଏମାନେ ଭୂମିରେ ବା ଗଛରେ ରହନ୍ତି । ଏମାନଙ୍କର ଦାନ୍ତ ନାହିଁ । କାହାର କେମିତି ଥିଲେ ସବୁ ଦାନ୍ତ ନ ଥାଏ, କେବଳ ପେଷଣ ଦାନ୍ତ ଥାଏ । ଦାନ୍ତ ଉପରେ ଏନାମେଲ ନ ଥାଏ । ଉଦାହରଣ –ବଜ୍ରକାପ୍ତା, ଆମେରିକାର ଆର୍ମାଡିଲେ, ଆଫ୍ରିକାର ଆର୍ଡଭର୍କ ।

8 ଲଗୋମରଫା (Lagomorpha) ବର୍ଗ–ଏବର୍ଗର ପ୍ରାଣୀମାନେ ତୃଣଭୋଜୀ । ଏମାନଙ୍କର ଉପର ପାଟିର ପ୍ରତ୍ୟେକ ପାଖରେ ଦୁଇଟି କରି କର୍ତ୍ତନ ଦାନ୍ତ ଅଛି । ମାତ୍ର ଏ ଦୁଇଟି ଦାନ୍ତ ଗୋଟିଏ ଧାଡ଼ିରେ ନ ଥାଇ, ଗୋଟିଏ ଗୋଟିକ ପଛରେ ଥାଏ । ଗୋଡ ଏପରି ଗଠିତ ଯେ ଏମାନେ ସ୍ୱଚ୍ଛନ୍ଦରେ ଡେଇଁ ପାରନ୍ତି । ଲାଞ୍ଜ ଖୁବ୍ ଛୋଟ । ଉଦାହରଣ–ଠେକୁଆ ।

9 ରଡେନସିଆ (Rodentia) ବର୍ଗ–ଏମାନେ ଘାସ, ପତ୍ର, ପୋକ ଜୋକ ଆଦି ଖାନ୍ତି । ଉପର ଓ ତଳ ପାଟିରେ ଦୁଇଟି କରି ବଟାଳି ପରି ତୀକ୍ଷଣ କର୍ତ୍ତନ ଦାନ୍ତ ଅଛି । ଶ୍ୱାଦନ୍ତ ନାହିଁ । ଲାଞ୍ଜ ସାଧାରଣତଃ ଲମ୍ବା ଓ କାତିଆ । ଉଦାହରଣ–ବିଭିନ୍ନ ଜାତିର ମୂଷା (ଚୁଟିଆ ମୂଷା, ମୂଷା ଇତ୍ୟାଦି), ଗୁଣ୍ଡୁଚି ମୂଷା, ଝଙ୍କ, ସ୍କୁରେଲ ଓ ଆମେରିକାର (Bea.er) ।

10. କାରନିଭୋରା (Carnivora) ବର୍ଗ–ଏମାନେ ମାଂସାଶୀ । ଏମାନଙ୍କର କର୍ତ୍ତନ ଦାନ୍ତ ଦୁର୍ବଳ, ମାତ୍ର ଶ୍ୱାଦନ୍ତ ବଡ଼, ଶକ୍ତ ଓ ପଦାକୁ ବାହାରି ଥାଏ । ଏହା ସାହାଯ୍ୟରେ ଏମାନେ ଖାଦ୍ୟ ଜୀବର ମାଂସକୁ ଚିରି ଖାନ୍ତି । ଚର୍ବଣ ଦାନ୍ତ ମାଂସ ଖାଦ୍ୟକୁ ଟୁକୁରା ଟୁକୁରା କରି କାଟି ପକାଇବାରେ ଏବଂ ପେଷଣ ଦାନ୍ତ ପେଷିବାରେ ବ୍ୟବହୃତ ହୁଏ । ଉଦାହରଣ –କୁକୁର, ବିଲେଇ ବାଘ, କଲରା ପତ୍ରିଆ, ସିଂହ, ଭାଲୁ, ହେଟା ସିଲମାଛ, ସମୁଦ୍ର ସିଂହ, ଓ୍ୱାଲରସ ଇତ୍ୟାଦି ।

11. ସିଟେସିଆ (Cetacea) ବର୍ଗ–ଏମାନେ ପାଣିରେ ରହନ୍ତି । ଏଥିପାଇଁ ମୁଣ୍ଡର ଉପରିଭାଗରେ ଗୋଟିଏ ବା ଦୁଇଟି ନାକ ରନ୍ଧ୍ର ଥାଏ । ପାଣିରେ ଗତି କରି ପାରିବାପାଇଁ ଏମାନଙ୍କର ଆଗଗୋଡ଼ କାଳକ୍ରମେ ଆହୁଲା ପରି ହୋଇଯାଇଅଛି । ଏବଂ ପଛ ଗୋଡ ପ୍ରାୟ ଉଭେଇ ଯାଇଛି କହିଲେ ଚଳେ । ଲାଞ୍ଜ ଚଟାଳିଆ ଓ ନାଆର ମଙ୍ଗ ପରି କାମ ଦିଏ । କେତେକଙ୍କର

ଦାନ୍ତ ନାହିଁ, କେତେକଙ୍କର ମୁନିଆଁ ଦାନ୍ତ ଅଛି । ଉଦାହରଣ —ତିମି, ଶିଶୁମାର ଇତ୍ୟାଦି ।

12. ଆରଟିଓଡେକ୍ଟାଇଲ (Artiodactyla) ବର୍ଗ—ଏମାନଙ୍କର ଗୋଡରେ ଦୁଇଟି କରି ଅଙ୍ଗୁଳି ଏବଂ ଅଙ୍ଗୁଳିରେ ବଡ ବଡ ନଖ ବା ଖୁରା ଅଛି । ଏମାନେ ତୃଣଭୋଜୀ । ଯେଉଁ ପ୍ରାଣୀମାନେ (ଯଥା – ଗାଈ) ଖାଇଲାବେଳେ ତର ତର କରି ଗିଳି ପକାନ୍ତି ଓ ପରେ ବିଶ୍ରାମ କରିବା ସମୟରେ ତାହା ପାଟିକୁ ଆଣି ଭଲକରି ଚୋବାଇ ଖାଆନ୍ତି ସେମାନଙ୍କୁ ରୋମନ୍ଥକ ପ୍ରାଣୀ କହନ୍ତି । ଖାଦ୍ୟ ଥରେ ଗିଳି ପୁଣି ଥରେ କାଢି ଚୋବାଇ ପାରିବା ପାଇଁ ଏପରି ପ୍ରାଣୀମାନଙ୍କର ପାକସ୍ଥଳୀ ଚାରିଗୋଟି କୋଠରୀରେ ବିଭକ୍ତ । ଆରଟିଓଡେକଟାଇଲ ବର୍ଗର ଅନେକ ପ୍ରାଣୀ ରୋମନ୍ଥକ । ଘୁଷୁରି, ଜଳହସ୍ତୀ, ଗାଈ, ହରିଣ, ଓଟ, ଜିରାଫ ଆଦି ପ୍ରାଣୀ ଏହି ବର୍ଗ ଅନ୍ତର୍ଭୁକ୍ତ । ଘୁଷୁରି ଓ ଜଳହସ୍ତୀମାନଙ୍କର କର୍ତ୍ତନ ଓ ଶ୍ୱାଦନ୍ତ ବଡ ଓ ଉଭୟ ପାଟିରେ ଥାଏ । ଗାଈ, ମଇଁଷି, ମେଣ୍ଢା, ଓଟ, ନୀଳଗାଈ, ଜିରାଫ ପ୍ରଭୃତି ପ୍ରାଣୀ ମାନଙ୍କର ଶ୍ୱାଦନ୍ତ ଛୋଟ ଓ କେତେକଙ୍କର ଆଦୌ ନାହିଁ । ଏମାନଙ୍କର କେବଳ ତଳ ପାଟିରେ କର୍ତ୍ତନ ଦାନ୍ତ ଥାଏ ।

13 ପେରିସୋଡେକ୍ଟାଇଲ (Perisodectyla) ବର୍ଗ—ବଡ ବଡ ତୃଣ-ଭୋଜୀ ପ୍ରାଣୀ, ଯଥା – ଘୋଡା, ଆଫ୍ରିକାର ଜେବ୍ରା, ଆମେରିକାର ଟେପିର୍ ଓ ଗଣ୍ଡାର ଆଦି ଏହି ବର୍ଗର ଅନ୍ତର୍ଭୁକ୍ତ । ଏମାନଙ୍କର ଖୁରା ଅଛି , ମାତ୍ର ଗାଈ ବା ଓଟମାନଙ୍କ ପରି ପ୍ରତ୍ୟେକ ଗୋଡରେ ଦୁଇଟି ଅଙ୍ଗୁଳି ପରିବର୍ତ୍ତେ ଗୋଟିଏ ଅଙ୍ଗୁଳି ଥାଏ , ଖୁରା ଉତ୍ତମ ଭାବରେ ବର୍ଦ୍ଧିତ ଓ ତାରି ଉପରେ ଭର ଦେଇ ଏମାନେ ଚାଲନ୍ତି । ଅନ୍ୟ ଅଙ୍ଗୁଳି ଥିଲେ ମଧ୍ୟ ଓ ଭୂଇଁରେ ଲାଗୁଥିଲେ ମଧ୍ୟ ମଝି ଅଙ୍ଗୁଳିର ଟିପ ଉପରେ ଦେହର ସମସ୍ତ ଭାର ପଡେ । ଘୋଡା, ଜେବ୍ରା ଓ ଟେପିରମାନଙ୍କର ଉଭୟ ପାଟିରେ କର୍ତ୍ତନ—ଦାନ୍ତ ଉତ୍ତମରୂପେ ବର୍ଦ୍ଧିତ , ମାତ୍ର ଗଣ୍ଡାରମାନଙ୍କର କର୍ତ୍ତନ ଦାନ୍ତ ଛୋଟ ।

14 ପ୍ରୋବୋସିଡିଆ (Proboscidia) ବର୍ଗ – ହାତୀ ଏହି ବର୍ଗର ପ୍ରାଣୀ । ଏମାନଙ୍କର ନାକ ବହୁତ ଲମ୍ବ ଓ ଏହା ସାହାଯ୍ୟରେ ସେ

ଗଛର ଡାଳକୁ ଗୁଡ଼ାଇ ଧରିପାରେ । ହାତୀର ଉପର ପାଟିର ଲମ୍ବା ଦାନ୍ତ ଅର୍ଥାତ୍ କର୍ତ୍ତନ ଦନ୍ତ ବଢ଼ି ସେପରି ହୋଇଥାଏ ।

15. ହାୟିରକୋଇଡ଼ିଆ (Hyracoidea) ବର୍ଗ – ଆଫ୍ରିକାର ହାଇରାକସ (Hyrax) ଏହି ବର୍ଗର ଅନ୍ତର୍ଭୁକ୍ତ । ଏମାନେ ଦେଖିବାକୁ ଓ ଆକାରରେ ମୂଷା ପରି । ମାତ୍ର ଗଣ୍ଡାର ଓ ହାତୀମାନଙ୍କର କେତେକ ବିଶେଷ ଲକ୍ଷଣ ଏମାନଙ୍କ ଠାରେ ଦେଖିବାକୁ ମିଳେ ।

16. ସାଇରେନିଆ (Sirenia) ବର୍ଗ – ଏମାନେ ସମୁଦ୍ରରେ ବାସ କରନ୍ତି । ଏମାନଙ୍କର ପଛଗୋଡ଼ କାଳକ୍ରମେ ଉଭେଇ ଯାଇଛି ଓ ଆଗଗୋଡ଼ ଆହୁଲା ପରି, ଲଞ୍ଜ ଚଟାଳିଆ, ନାକ ଓସାରିଆ ଓ ଥୋମଣିର ଉପରଆଡ଼କୁ ଅବସ୍ଥିତ । ଉଦାହରଣ – ସମୁଦ୍ର ଗାଈ ।



# ଦ୍ୱିତୀୟ ଅଧ୍ୟାୟ

# ଭୌଗୋଳିକ ଭାରତ

ଭାରତ ରାଷ୍ଟ୍ର ଅର୍ଥାତ୍ ରାଜନୈତିକ ଭାରତ ଉପଗ୍ରୀଷ୍ମ ମଣ୍ଡଳୀୟ ଅଞ୍ଚଳ ମଧ୍ୟରେ ଅବସ୍ଥିତ । ଉତ୍ତର ଅକ୍ଷାଂଶ 8°4′ ଏବଂ 37°6′ ଏବଂ ପୂର୍ବ ଦ୍ରାଘିମା 68°7′ ଓ 97°25′ ମଧ୍ୟରେ ଏହାର ଅବସ୍ଥିତି । ଭାରତ ରାଷ୍ଟ୍ରର ଭୂମି ଅଞ୍ଚଳର ମୋଟ କ୍ଷେତ୍ରଫଳ ତିରିଶ ଲକ୍ଷ ବର୍ଗ କିଲୋମିଟରରୁ ଅଧିକ । ବଙ୍ଗୋପସାଗର ମଧ୍ୟରେ ଥିବା ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଏବଂ ଆରବସାଗର ମଧ୍ୟରେ ରହିଥିବା ଲକ୍ଷାଦ୍ୱୀପ, ମିନିକୟ ଓ ଆମିନ୍‌ଦ୍ୱିଭି ଦ୍ୱୀପପୁଞ୍ଜ ଏଥିର ଅନ୍ତର୍ଭୁକ୍ତ । ଭୌଗୋଳିକ ଦୃଷ୍ଟି-କୋଣରୁ ଭାରତ ରାଷ୍ଟ୍ର, ପାକିସ୍ଥାନ, ନେପାଳ, ବର୍ମା ଓ ଶ୍ରୀଲଙ୍କା ଏକ । ତଦନୁସାରେ ଏହି ଭୌଗୋଳିକ ଅଭିନ୍ନ ଅଞ୍ଚଳରେ ପ୍ରାଣୀମାନେ ମଧ୍ୟ ମୁଖ୍ୟତଃ ଏକା ପ୍ରକାରର ।

ପ୍ରାଣୀମାନେ ସେମାନଙ୍କର ଖାଦ୍ୟ ପାଇଁ ଉଦ୍ଭିଦ ଉପରେ ନିର୍ଭର କରନ୍ତି । ଏଣୁ କୌଣସି ଅଞ୍ଚଳର ପ୍ରାଣୀମାନେ ସେ ଅଞ୍ଚଳରେ ଜନ୍ମୁଥିବା ଉଦ୍ଭିଦ ଦ୍ୱାରା ମୁଖ୍ୟତଃ ପ୍ରଭାବିତ ହୋଇଥାନ୍ତି । ପୁଣି, କୌଣସି ଅଞ୍ଚଳର ଜଳବାୟୁ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଭୌତିକ ବିଭବ (Physical features) ବା ଭୂ-ଆକୃତି ଦ୍ୱାରା ଜଳବାୟୁ ପ୍ରଭାବିତ ହୁଏ । ଭୌତିକ ବିଭବ କହିଲେ ବୁଝାଏ, ଭୂମିର ଗଠନ, ପର୍ବତମାଳାର ଉପସ୍ଥିତି ବା ଅନୁପସ୍ଥିତି ଏବଂ ସେମାନଙ୍କର ଉଚ୍ଚତା ଓ ଅବସ୍ଥିତି । ଭୌତିକ ବିଭବ, ତାପକ୍ରମ (temperature) ଓ ଜଳବାୟୁ ଦୃଷ୍ଟିକୋଣରୁ ଭୌଗୋଳିକ

ଭାରତ ବା ଭାରତବର୍ଷ ଏକ ଅଭିନବ ଅଞ୍ଚଳ । ଉତ୍ତରରେ ଦୀର୍ଘ ତୁଷାରକିରୀଟ ହିମାଳୟ ପର୍ବତମାଳା, ପଶ୍ଚିମରେ ରାଜପୁତାନା ଓ ସିନ୍ଧର ବାଲୁକାମୟ




ଚିତ୍ର ନଂ ୫। ଭୌତିକ ବିଭାଗ ଅନୁଯାୟୀ ଭୌଗୋଳିକ ଭାରତର ମାନଚିତ୍ର ।

ମରୁଭୂମି, ପୂର୍ବ ଓ ଦକ୍ଷିଣ ପଶ୍ଚିମରେ ସଦା ବର୍ଷାପ୍ଲାବିତ ଆସାମ ଓ ମାଲବାର କୂଳର ଜଙ୍ଗଲ ଏବଂ ଉତ୍ତର ଓ ଦକ୍ଷିଣ ପଶ୍ଚିମ ଅଞ୍ଚଳରେ ଚିର ହିମ ଓ ଶୁଷ୍କ ଲଦାଖ ଓ ତିବ୍ବତ ମାଳଭୂମି ଅବସ୍ଥିତ । ଏକ ଦିଗରେ ଉତ୍ତରରେ ପୃଥିବୀର ସବୁଠାରୁ ଉଚ୍ଚ ହିମାଳୟ ପର୍ବତମାଳା ଥିଲାବେଳେ ଅପର ଦିଗରେ କୁମେରୁ (Antarctic) ପର୍ଯ୍ୟନ୍ତ ବିସ୍ତୃତ ଭାରତ ସାଗର ତା'ର କୂଳରେ ପିଟି ହେଉଥାଏ । ଏ ସବୁ ଉଲ୍ଲେଖର କାରଣ ଏହି ଯେ ଭୂ ଆକୃତି ଅନୁସାରେ ଜଳବାୟୁ ଓ ଉଦ୍ଭିଦ ନିୟନ୍ତ୍ରିତ ହେବା ସଙ୍ଗେ ସଙ୍ଗେ ଜୀବଜନ୍ତୁମାନଙ୍କର ବିବର୍ତ୍ତନ, ବିସ୍ତୃତି ଓ ବିଲୁପ୍ତି ଘଟି ଅଛି ।

କୌଣସି ଅଞ୍ଚଳର ଭୂ-ଆକୃତି ଚିରସ୍ଥାୟୀ ନୁହେଁ । ପ୍ରାୟ ପାଞ୍ଚଶ କୋଟି ବର୍ଷ ପୂର୍ବେ ଏକ ଗ୍ୟାସୀୟ ଗୋଲକ ରୂପେ ପୃଥିବୀର ଜନ୍ମ ହୋଇଥିଲା । କ୍ରମେ ଏହା ଶୀତଳ ହେବାକୁ ଲାଗିଲା । ପ୍ରାୟ ତିନିଶକୋଟି ବର୍ଷ ପୂର୍ବେ ପ୍ରଥମ କରି ଦେଖାଦିଏ ପାଣି, ମାଟି ଓ ପାହାଡ଼ । ଏହି ତିନିଶହ କୋଟି ବର୍ଷ ମଧ୍ୟରେ କେତେ ପରିବର୍ତ୍ତନ ଘଟିଛି, ତାହା ଗଭୀର ଅନୁଧ୍ୟାନର ବିଷୟ । ଯେଉଁଠି ଅତଳ ସମୁଦ୍ର ଥିଲା ସେଠି ମହୋଚ୍ଚ ପର୍ବତମାଳା ମୁଣ୍ଡ ଟେକିଛି, ପୁଣି ଯେଉଁଠି ଆକାଶ-ଚୁମ୍ବି ପର୍ବତ ଥିଲା ତାହା ଆଜି ସାଗରର ଅତଳ ଗର୍ଭରେ ନିମଗ୍ନ ହୋଇ ରହିଛି । ଏଣୁ ଭୂ-ଆକୃତିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରାଣୀମାନଙ୍କର ମଧ୍ୟ ପରିବର୍ତ୍ତନ ଘଟିଛି । କେତେ ପ୍ରାଣୀଙ୍କର ଉଦ୍ଭବ ଓ ବିଲୁପ୍ତି ହୋଇଛି, ପୁଣି ନୂଆ ନୂଆ ପ୍ରାଣୀ ଦେଖା ଦେଇଛନ୍ତି ।

ପ୍ରାୟ ସାତକୋଟି ବର୍ଷ ପୂର୍ବେ ପ୍ରଥମ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଉଦ୍ଭବ ହୋଇଥିଲା । ତାହା ଭୂତତ୍ତ୍ୱବିତ୍‌ମାନଙ୍କ ଭାଷାରେ ତୃତୀୟକ କଳ୍ପ (Tertiary period)ର ଆରମ୍ଭ । ସାତକୋଟି ବର୍ଷ ପୂର୍ବ ସମୟ ଠାରୁ ଦଶଲକ୍ଷ ବର୍ଷ ପର୍ଯ୍ୟନ୍ତ ସମୟକୁ ତୃତୀୟକ କଳ୍ପ କହନ୍ତି । ଭୂତତ୍ତ୍ୱବିତ୍‌ମାନଙ୍କର ବିଶ୍ୱାସ, ଯେ, ଏହି କଳ୍ପର ପ୍ରଥମ ଭାଗରେ କେନ୍ଦ୍ର ଭାରତରୁ କୁମାରିକା (କନ୍ୟାକୁମାରୀ) ଅନ୍ତରୀପ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଏକ ବିରାଟ ଦ୍ୱୀପ ଥିଲା । ତା'ପୂର୍ବେ ସମ୍ଭବତଃ ଏହା ଆଫ୍ରିକା ସହିତ ଏକ ଭୂଖଣ୍ଡ ରୂପେ ସଂଯୁକ୍ତ ରହିଥିଲା । ତୃତୀୟକ କଳ୍ପରେ ଏହି ଅଂଶ ମୂଳ ଏସିଆ ଭୂ-ଭାଗଠାରୁ ସମୁଦ୍ର ଦ୍ୱାରା ବିଛିନ୍ନ ହେଲା । ସେହି ସମୟରେ କେନ୍ଦ୍ର ଭାରତର ଉତ୍ତରାଂଶ ଓ ସମଗ୍ର କାଶ୍ମୀର ଅଞ୍ଚଳ ଅଗଭୀର ସମୁଦ୍ର ଥିଲା । ହିମାଳୟ ପର୍ବତମାଳା ଓ ତିବ୍ବତ ଯାହାକି ପୂର୍ବେ ସମୁଦ୍ର ଥିଲା, ତୃତୀୟକ କଳ୍ପର ପ୍ରଥମ ଭାଗରେ ଅଳ୍ପ ଉଚ୍ଚ ସାଧାରଣ ଭୂମିରୂପେ ଦେଖା ଦେଲା । ତାହା ମଧ୍ୟ ଦେଇ ବଡ ବଡ଼ ନଦୀଗୁଡିକ ବହିଯାଇ ପୂର୍ବ ଓ ପଶ୍ଚିମାଞ୍ଚଳରେ ପଟମାଟି ଜମା କରୁଥିଲେ । ଲକ୍ଷ ଲକ୍ଷ ବର୍ଷ ବିତିଗଲା ପରେ ଆସାମ ଅଞ୍ଚଳ, ଯାହାକି ସମୁଦ୍ର ଥିଲା, ଉପରକୁ ଉଠି ହିମାଳୟ ପର୍ବତମାଳାର ପୂର୍ବାଞ୍ଚଳ ଗଠନ କଲା । ଏହା ଫଳରେ ଏସିଆ ମହାଦେଶ ସହିତ ଭାରତୀୟ ଉପଦ୍ୱୀପ ଗଠନ କରୁଥିବା ବିରାଟ ଦ୍ୱୀପର ପ୍ରଥମ ଭୂମିସଂଯୋଗ ଘଟିଲା । ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣ ।

କାରଣ, ଏହି ଭୂମି ସଂଯୋଗ ଫଳରେ କେନ୍ଦ୍ର ଏସିଆର ପ୍ରାଣୀ ଏଥର ଭାରତୀୟ ଉପଦ୍ୱୀପକୁ ଆସିପାରିଲେ । ପୁଣି ଲକ୍ଷ ଲକ୍ଷ ବର୍ଷ ପରେ ଆଉ ଏକ ଭୂ-ଆନ୍ଦୋଳନ ଘଟିଲା । ଏହା ଫଳରେ ହିମାଳୟ ପାଦଦେଶର ସମତଳ ଭୂମି ଉପରକୁ ଉଠି ଯାଇ ହିମାଳୟର ବାହାର ପର୍ବତମାଳା ଗଠନ କଲା । ଏହା ଜାମ୍ମୁ, କାଶ୍ମୀର ଓ ପଞ୍ଜାବ ଅଞ୍ଚଳରେ ଅବସ୍ଥିତ ଏବଂ ସିଓ୍ୱାଲିକ୍ ପର୍ବତମାଳା ନାମରେ ପରିଚିତ । ଏହିପରି ବିଭିନ୍ନ ସମୟରେ ତିନି ତିନିଥର ଭୂ-ଆନ୍ଦୋଳନ ଫଳରେ ଶେଷରେ ଆଜିର ଭାରତ ଉପ ମହାଦେଶ ଗଠିତ ହୋଇଅଛି । ବିସ୍ତୃତ ଭାରତ ଉପ ମହାଦେଶକୁ ମୁଖ୍ୟତଃ ଦୁଇଟି ଅଂଶରେ ବିଭକ୍ତ କରାଯାଇପାରେ । ଯଥା - (1) ହିମାଳୟ ଉପାଞ୍ଚଳ ଓ (2) ମୁଖ୍ୟ ଭାରତୀୟ ଅଞ୍ଚଳ । ପୁଣି ଏହି ଦୁଇଟି ଅଞ୍ଚଳକୁ ବହୁଖଣ୍ଡ, ମଣ୍ଡଳ ବା କ୍ଷେତ୍ରରେ ବିଭକ୍ତ କରାଯାଇପାରେ । ଗୋଟିଏ ମଣ୍ଡଳ ଅନ୍ୟ ମଣ୍ଡଳ ସହିତ ଅବିଚ୍ଛିନ୍ନ ଓ ସେମାନଙ୍କ ମଧ୍ୟରେ ନିର୍ଦ୍ଦିଷ୍ଟ କୌଣସି ସୀମାରେଖା ନାହିଁ । ତେଣୁ ଏ ସବୁକୁ ମାନଚିତ୍ରରେ ନିର୍ଦ୍ଦିଷ୍ଟ ଭାବେ ଚିହ୍ନିତ କରାଯାଇ ନପାରେ ।

## ହିମାଳୟ ଉପାଞ୍ଚଳ (Himalayan Sub-Region)

ପଶ୍ଚିମରେ ସିନ୍ଧୁନଦୀ ଓ ପୂର୍ବରେ ବ୍ରହ୍ମପୁତ୍ର ନଦୀ ମଧ୍ୟରେ ବିସ୍ତୃତ ବିସ୍ତୀର୍ଣ୍ଣ ହିମାଳୟ ପର୍ବତମାଳା ଏହି ଉପାଞ୍ଚଳର ଅନ୍ତର୍ଭୁକ୍ତ । ପର୍ବତମାଳାର ବିଭିନ୍ନ ଅଂଶରେ ଉଚ୍ଚତାରେ ବିଭିନ୍ନତା ଅନୁସାରେ ଜଳବାୟୁ ତଥା ଉଦ୍ଭିଦରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ହିମାଳୟର ଉପାଞ୍ଚଳକୁ ତିନୋଟି ଖଣ୍ଡରେ ବିଭକ୍ତ କରାଯାଏ । ଯଥା – ଅରଣ୍ୟ ଖଣ୍ଡ, ପଶ୍ଚିମ ଖଣ୍ଡ ଓ ତିବ୍ବତୀୟ ମାଳଭୂମି ଖଣ୍ଡ । ହିମାଳୟର ପୂର୍ବ ସୀମାନ୍ତ ଅଞ୍ଚଳରୁ କାଶ୍ମୀର ପର୍ଯ୍ୟନ୍ତ ବିସ୍ତୃତ ଢାଲୁ ଜଙ୍ଗଲ ଅଞ୍ଚଳ ଅରଣ୍ୟ ଖଣ୍ଡ । ହିମାଳୟ ପାଦଦେଶର ଏହି ଅଞ୍ଚଳ ଶାଳ, ଶିମିଳି, ବିଗଟ ବାଉଁଶ ଆଦି ଗଛର ଘନ ଜଙ୍ଗଲରେ ପରିପୂର୍ଣ୍ଣ । 1525 ରୁ 1830 ମିଟାର (5000 ରୁ 6000 ଫୁଟ) ଉଚ୍ଚତା ପରେ ଜଙ୍ଗଲର ଉଦ୍ଭିଦରେ ପାର୍ଥକ୍ୟ ଦେଖାଯାଏ । 1830 ମିଟାରରୁ 2745 ମିଟାର (6000 ଫୁଟରୁ 9000 ଫୁଟ) ଉଚ୍ଚତାରେ ଓକ୍, ଜୟ ପତ୍ର (laurel) ଓ ବିରଚ୍ (birth) ଆଦି ଗଛର ଜଙ୍ଗଲ ଦେଖାଯାଏ ।

ଏ ପର୍ଯ୍ୟନ୍ତ ଅର୍ଥାତ୍ 2745 ମିଟାର (9000 ଫୁଟ) ପର୍ଯ୍ୟନ୍ତ ଗ୍ରୀଷ୍ମମଣ୍ଡଳୀୟ (tropical) ଜଳବାୟୁ ଥିଲାବେଳେ ଏହାଠାରୁ ଅଧିକ ଉଚ୍ଚତାରେ ସମଶୀତୋଷ୍ଣ (temperate) ଜଳବାୟୁ ଅଞ୍ଚଳ ଆରମ୍ଭ ହୁଏ ଓ ତଦନୁସାରେ ଉଦ୍ଭିଦର ପରିବର୍ତ୍ତନ ଘଟେ । 2755 ରୁ 3660 ମିଟାର (9000 ରୁ 12000 ଫୁଟ) ଉଚ୍ଚତାରେ ଦେଖିବାକୁ ମିଳେ ପାଇନ୍ ଓ ଦେବଦାରୁ ଜଙ୍ଗଲ ଏବଂ ବାମନ ଜାତୀୟ ବାଉଁଶ ଝାଟି ଓ ରୋଡ଼ୋଡେନ୍ଡ୍ରନ (rhododendron) ଗଛସବୁ । ଅରଣ୍ୟ ଖଣ୍ଡର ଉଚ୍ଚତା, ଉଦ୍ଭିଦ ଓ ଜଳବାୟୁ ଅନୁସାରେ ବିଭିନ୍ନ ସ୍ତରରେ ବିଭିନ୍ନ ବନ୍ୟଜନ୍ତୁ ବାସ କରନ୍ତି । ସେ ଯାହାହେଉ, ଅରଣ୍ୟ ଖଣ୍ଡରେ ମୁଖ୍ୟ ଭାରତୀୟ ଅଞ୍ଚଳର ପ୍ରାଣୀ ଯଥା – ବାଘ, ହାତୀ, ଗୟଳ, ସମ୍ବର, କୁଟ୍ରା ଇତ୍ୟାଦି ଦେଖାଯାନ୍ତି । ପୂର୍ବାଞ୍ଚଳର ସନ୍ତସନ୍ତିଆ ତରାଇ ଅଞ୍ଚଳରେ ଏ ସବୁ ପ୍ରାଣୀ ପରିବର୍ତ୍ତେ ଅରଣା ମଇଁଷି, ଚିତଳ ହରିଣ, ଘୁଷୁରି ହରିଣ (Hog deer), ବାରଶିଙ୍ଗା ଆଦି ଦେଖିବାକୁ ମିଳେ । ସମଶୀତୋଷ୍ଣ ଅଞ୍ଚଳର ପ୍ରାଣୀ ଉପଦ୍ୱୀପ–ଅଞ୍ଚଳର ପ୍ରାଣୀଠାରୁ ଭିନ୍ନ । ଏଠାରେ ଆମେ ଦେଖିବାକୁ ପାଉଁ ପାଣ୍ଡା (Panda), ସାରୋ (Serow) ଆଦି ପ୍ରାଣୀ । ଏ ଅଞ୍ଚଳର ପ୍ରାଣୀମାନଙ୍କର ଆସାମ, ବର୍ମା ଓ ଦକ୍ଷିଣ ଚୀନର ପ୍ରାଣୀମାନଙ୍କ ସହିତ ସାମଞ୍ଜସ୍ୟ ଅଧିକ ପରିଲକ୍ଷିତ ହୁଏ ।

କାଶ୍ମୀର ଓ ପଶ୍ଚିମ ଲଦାଖରୁ ଚିତ୍ରାଲ ପର୍ଯ୍ୟନ୍ତ ବିସ୍ତୃତ ହିମାଳୟର ପାର୍ବତ୍ୟ ଅଞ୍ଚଳ ପଶ୍ଚିମ ଖଣ୍ଡ ଅନ୍ତର୍ଭୁକ୍ତ । ହିମାଳୟର ମଧ୍ୟ ଓ ପୂର୍ବାଞ୍ଚଳର ନାତିଶୀତୋଷ୍ଣ ଅଞ୍ଚଳରେ ଯେଉଁ ଭାରତ-ଚୈନିକ (Indo-chinese) ପ୍ରାଣୀ ଦେଖାଯାନ୍ତି, ସେ ସବୁ (ପାଣ୍ଡା, ସାରୋ ଆଦି) ଏ ଅଞ୍ଚଳରେ ଦେଖାଯାନ୍ତି ନାହିଁ । ବରଂ ଏଠାର ପ୍ରାଣୀମାନଙ୍କର ୟୁରୋପ ଓ ଉତ୍ତର ଏସିଆର ପ୍ରାଣୀମାନଙ୍କ ସହିତ ମେଳ ଅଧିକ । ଏ ଅଞ୍ଚଳର କାଶ୍ମୀର ସିଙ୍ଗାଳ (Kashmir stag) ୟୁରୋପୀୟ ଲାଲ-ହରିଣର (red deer)ର ଏକ ଜାତି । ଉରିଆଲ (Urial or Shapu) ପଞ୍ଜାବ, ବେଲୁଚିସ୍ଥାନ ଓ ଆଫଗାନିସ୍ଥାନ ଦେଇ ପାରସ୍ୟର ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଦେଖିବାକୁ ମିଳେ । ଭାରତୀୟ ଉପଦ୍ୱୀପରେ ଦେଖାଯାଉଥିବା କେତେକ ପ୍ରାଣୀ ଯଥା – କୁଟ୍ରା (muntjac), କୃଷ୍ଣସାର, ଚିଙ୍କାର (chinkara)

ଆଦି ଏ ଅଞ୍ଚଳରେ ପୂର୍ବେ ଦେଖା ଯାଉଥିଲେ । ଏଠାରେ ସମ୍ବର ବାସ କରନ୍ତି ନାହିଁ । କାଶ୍ମୀରର ପ୍ରାଣୀକୁଳ ଭାରତୀୟ ଉପଦ୍ୱୀପ ଏବଂ ଏହାର ଉତ୍ତର ଓ ପଶ୍ଚିମରେ ଅବସ୍ଥିତ ପ୍ରାଣୀମାନଙ୍କର ଏକ ମିଶ୍ରଣ କହିଲେ ଠିକ ହେବ ।

ଲଦାଖ ଓ ତିବ୍ବତର ଶୁଷ୍କ ମାଳଭୂମି ଅଞ୍ଚଳ ତୃତୀୟ ବା ତିବ୍ବତୀୟ ମାଳଭୂମି ଖଣ୍ଡ ଅନ୍ତର୍ଭୁକ୍ତ । ପୂର୍ବ ଲଦାଖ ଓ ତିବ୍ବତର ପ୍ରାଣୀ ସ୍ୱତନ୍ତ୍ର । ତିବ୍ବତର ପୂର୍ବାଞ୍ଚଳର ନିମ୍ନଭୂମି ଆମର ତୃତୀୟ ଖଣ୍ଡର ଅନ୍ତର୍ଗତ ନୁହେଁ । ତିବ୍ବତୀୟ ମାଳଭୂମି ଅଞ୍ଚଳରେ ବର୍ଷା ପ୍ରାୟ ହୁଏ ନାହିଁ, ପ୍ରବଳ ଶୀତ ଓ ପ୍ରଚଣ୍ଡ ପବନ ହୁଏ ଏବଂ ଏହା ଅତି ଉଚ୍ଚ ଅଞ୍ଚଳ । ଏସିଆର ମରୁଭୂମିମାନଙ୍କରେ ଦେଖା ଯାଉଥିବା ବନ୍ୟ ଗଧ (wild ass) ଏ ଅଞ୍ଚଳରେ ଦେଖାଯାଏ । ତା' ଛଡା କସ୍ତୁରୀ ମୃଗ (musk deer), ଚମରୀ ଗାଈ (yak) ଓ ତିବ୍ବତୀୟ ମେଣ୍ଢା ଭରଲ (Bharal) ଆଦି ପ୍ରାଣୀ ଏ ଅଞ୍ଚଳର ବିଶେଷତ୍ୱ ।

ପ୍ରାଣୀଭୂଗୋଳ ବିଚାର ଦୃଷ୍ଟିରୁ ଆସାମ ଓ ବର୍ମା ଅଞ୍ଚଳ ହିମାଳୟର ଅରଣ୍ୟ ଅଞ୍ଚଳ ସହିତ ସମାନ । ଏ ଅଞ୍ଚଳ ସବୁରେ ଗ୍ରୀଷ୍ମ ମଣ୍ଡଳର ଜଳବାୟୁରୁ ନାତିଶୀତୋଷ୍ଣ ଜଳବାୟୁର ପରିବର୍ତ୍ତନ, ତଦନୁସାରେ ଉଦ୍ଭିଦର ପରିବର୍ତ୍ତନ ଓ ତହିଁ ସଙ୍ଗେ ସଙ୍ଗେ ଅନୁରୂପ ପ୍ରାଣୀ ଦେଖିବାକୁ ମିଳେ । କେବଳ ବର୍ମାର ଦକ୍ଷିଣାଞ୍ଚଳରେ ଅବସ୍ଥିତ ଟେନାସେରିମ୍ ଅଞ୍ଚଳରେ ସେଠାରୁ ଆସାମର ପାର୍ବତ୍ୟ ଅଞ୍ଚଳ ଯାଏଁ ମାଳୟ ଅଞ୍ଚଳଭଳି ପ୍ରାଣୀ ଦେଖିବାକୁ ମିଳନ୍ତି । ଅବଶ୍ୟ ବର୍ମାରେ ଦେଖାଯାଉଥିବା ସମ୍ବର ଓ ଟାମିନ ବା ସଙ୍ଗାଇ ଆଦି ପ୍ରାଣୀ ଭାରତୀୟ ପ୍ରାଣୀମାନଙ୍କର ପ୍ରତିରୂପ ବୋଲି ଧରଯାଏ ।

## ମୁଖ୍ୟ ଭାରତୀୟ ଅଞ୍ଚଳ

ହିମାଳୟର ପାଦଦେଶଠାରୁ କନ୍ୟାକୁମାରୀ ଅନ୍ତରୀପ (cape comorin) ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ମୁଖ୍ୟ ଭାରତୀୟ ଅଞ୍ଚଳ ଏବଂ ଏହାକୁ ଭାରତୀୟ ଉପଦ୍ୱୀପ ଉପାଞ୍ଚଳ (Indian Peninsular Sub—Region) କହନ୍ତି । ଅବଶ୍ୟ ଭୌଗୋଳିକ ଦୃଷ୍ଟିରୁ ମାଲବାର ସମୁଦ୍ରତୀର ଅଞ୍ଚଳ ଏଥିର ଅନ୍ତର୍ଭୁକ୍ତ ନୁହେଁ । ମୁଖ୍ୟ ଭାରତୀୟ ଉପଦ୍ୱୀପ

ଉପାଞ୍ଚଳର ଉତ୍ତରାଂଶ ଗଙ୍ଗା, ସିନ୍ଧୁ (Indus) ଓ ବ୍ରହ୍ମପୁତ୍ର ନଦୀ ଓ ସେମାନଙ୍କର ଶାଖାନଦୀ ସବୁର ସ୍ରୋତଦ୍ୱାରା ପ୍ରବାହିତ ପଟୁମାଟି ଦ୍ୱାରା ଗଠିତ ସମତଳ ଅଞ୍ଚଳ ଅଟେ । ଏହି ଅଞ୍ଚଳ ଆସାମ, ପଶ୍ଚିମ ବଙ୍ଗ, ବଙ୍ଗଳା ଦେଶ ବିହାର, ଉତ୍ତର ପ୍ରଦେଶ, ପୂର୍ବ ଓ ପଶ୍ଚିମ ପଞ୍ଜାବ ଏବଂ ସିନ୍ଧର ମୁଖ୍ୟ ଅଂଶକୁ ନେଇ ଗଠିତ । ଏହା ପଶ୍ଚିମରୁ ପୂର୍ବ ପର୍ଯ୍ୟନ୍ତ 90ରୁ 300 ମାଇଲ (145 ରୁ 485 କିଲୋମିଟାର) ଓସାର ଓ ଦୈର୍ଘ୍ୟରେ 1400 ମାଇଲ (2255 କିଲୋମିଟାର) । ଏହି ସମତଳ ଭୂମି ଏକ ଦିଗରେ ହିମାଳୟ ପର୍ବତମାଳା ଓ ଅପରଦିଗରେ ଭାରତୀୟ ଉପଦ୍ୱୀପ ମଧ୍ୟରେ ଅବସ୍ଥିତ । ଗାଙ୍ଗେୟ ସମତଳ ଭୂମି (Gangetic Plain)ର ଦକ୍ଷିଣକୁ ଅବସ୍ଥିତ ଉପଦ୍ୱୀପ ଅଞ୍ଚଳ ଏକ ତ୍ରିକୋଣାକୃତି ମାଳଭୂମିର ରୂପ ନେଇ ଅଛି । ଏହାର ଉଚ୍ଚତା 305 ରୁ 915 ମିଟାର (1000 ରୁ 3000 ଫୁଟ) । ମଧ୍ୟେ ମଧ୍ୟେ ମାଳଭୂମି ମଧ୍ୟ ଦେଇ ନଦୀ ପ୍ରବାହିତ । ମାଳଭୂମିର ଓ ଉତ୍ତରାଂଶ ବିନ୍ଧ୍ୟ ପର୍ବତ ମାଳା, ପୂର୍ବାଞ୍ଚଳରେ ପୂର୍ବଘାଟ ପର୍ବତ ମାଳା ଓ ପଶ୍ଚିମାଞ୍ଚଳରେ ପଶ୍ଚିମଘାଟ ପର୍ବତମାଳା ଦ୍ୱାରା ଗଠିତ ।

ମୁଖ୍ୟ ଭାରତୀୟ ଅଞ୍ଚଳରେ ଯେଉଁ ବନ୍ୟ ଜନ୍ତୁ ଦେଖାଯାନ୍ତି ସେମାନେ ସ୍ୱତନ୍ତ୍ର ହିମାଳୟର ଅରଣ୍ୟରେ ଦେଖାଯାଉଥିବା ଭାରତ–ଚୈନିକ ପ୍ରାଣୀ ଏ ଅଞ୍ଚଳରେ ମିଳନ୍ତି ନାହିଁ । ଏ ଅଞ୍ଚଳ ପ୍ରକୃତ ଭାରତୀୟ ବନ୍ୟ ପ୍ରାଣୀ ମାନଙ୍କର ନିବାସ କହିବା ଠିକ୍ ହେବ । ପ୍ରକୃତ ଭାରତୀୟ ପ୍ରାଣୀ ହେଲେ ଚିତଳ ହରିଣ, ନୀଳଗାଈ, କୃଷ୍ଣସାର, ଚଉଶିଙ୍ଗା ଓ ଭାଲୁ ଇତ୍ୟାଦି ବୁଝାଏ । ଏ ସବୁ ପ୍ରାଣୀ ଅନ୍ୟ କୌଣସିଠାରେ ଦେଖାଯାନ୍ତି ନାହିଁ । ଗୟଳ, ସମ୍ବର, କୁଟ୍ରା ଆଦି ଭାରତୀୟ ଉପଦ୍ୱୀପ ଓ ମାଳୟ ଦେଶ ଉଭୟତ୍ର ଦେଖାଯାନ୍ତି ।

ମୁଖ୍ୟ ଭାରତୀୟ ଅଞ୍ଚଳକୁ ନିମ୍ନଲିଖିତ ଭୂଖଣ୍ଡରେ ବିଭକ୍ତ କରାଯାଇପାରେ । ଯଥା – ଭାରତୀୟ ମରୁଭୂମି ଖଣ୍ଡ, ଗାଙ୍ଗେୟ ସମତଳ ଭୂମି ଓ ମୁଖ୍ୟ ଉପଦ୍ୱୀପ ଅଞ୍ଚଳ ।

**ଭାରତୀୟ ମରୁଭୂମି ଖଣ୍ଡ**–ପୃଥିବୀର ମାନଚିତ୍ର ଉପରେ ଦୃଷ୍ଟି ନିକ୍ଷେପ କଲେ ଦେଖାଯିବ ଯେ ବେଲୁଚିସ୍ଥାନ, ସିନ୍ଧର ପଶ୍ଚିମାଞ୍ଚଳ, ପଞ୍ଜାବ

ଓ ରାଜସ୍ଥାନର ମରୁଭୂମି ଅଞ୍ଚଳ ଏକ ବିସ୍ତୀର୍ଣ୍ଣ ମରୁଭୂମିର ଏକ ଅଂଶ ମାତ୍ର । ଏହା ଉତ୍ତର ଆଫ୍ରିକା ଠାରୁ ମେସୋପୋଟାମିଆ, ଆରବ, ପାରସ୍ୟ ଓ ଭାରତୀୟ ମରୁଖଣ୍ଡ ଦେଇ କେନ୍ଦ୍ର ଏସିଆର ଗୋବି ମରୁଭୂମି ସହିତ ଲାଗିଛି । ସମତଳ, ଅରଣ୍ୟ ବା ପାର୍ବତୀୟ ମାଳଭୂମିର ପ୍ରାଣୀ ମରୁଭୂମିରେ ଦେଖାଯାନ୍ତି ନାହିଁ । କେବଳ ଯେଉଁ ପ୍ରାଣୀମାନେ ମରୁଭୂମିର ଶୀତ ଓ ଥଣ୍ଡା, ଜଳହୀନ ବାଲୁକାମୟ ଭୂମିରେ ବାସକରି ପାରିବେ ସେ ଭଳି ପ୍ରାଣୀ ମରୁ ଖଣ୍ଡରେ ଦେଖାଯାନ୍ତି ।

**ଗାଙ୍ଗେୟ ସମତଳ ଭୂମି**—ଏହି ସମତଳ ଭୂମି ପଶ୍ଚିମରେ ପଶ୍ଚିମ—ଓ ପୂର୍ବ—ପଞ୍ଜାବ ଠାରୁ ପଶ୍ଚିମ-ରାଜପୁତାନା ଦେଇ ପୂର୍ବରେ ପଶ୍ଚିମବଙ୍ଗର ସୁନ୍ଦରବନ ପର୍ଯ୍ୟନ୍ତ ବିସ୍ତୃତ । ମୃର୍ତ୍ତିକା, ଜଳବାୟୁ, ଉଦ୍ଭିଦ ତାପକ୍ରମ ଅନୁସାରେ ଏହି ସମତଳ ଭୂମିର ବିଭିନ୍ନ ଅଂଶରେ ବନ୍ୟ ପ୍ରାଣୀମାନଙ୍କର ବିଭିନ୍ନତା ପରିଲକ୍ଷିତ ହୁଏ । ସମତଳ ଭୂମିର ପଶ୍ଚିମାଞ୍ଚଳରେ, ମରୁଭୂମି ଅଞ୍ଚଳର କେତେକ କୋକିଶିଆଳି, ଠେକୁଆ ଓ ବିଲେଇ ଜାତୀୟ ପ୍ରାଣୀ ଦେଖା ଯାଉଥିଲା ବେଳେ, ଏହି ଭୂଖଣ୍ଡର ମଧ୍ୟାଞ୍ଚଳରେ ଦଳ ଦଳ କୃଷ୍ଣସାର ଜାତୀୟ ପ୍ରାଣୀ (ଏଣ୍ଟିଲୋପ) ଓ ଦଳ ଦଳ ଗେଜେଲ (gazelle) ଦେଖାଯାନ୍ତି । ପୁଣି ସୁନ୍ଦରବନର ସନ୍ତସନ୍ତିଆ କାଦୁଆ ଟାପୁ ଅଞ୍ଚଳରେ ଭାରତୀୟ ଉପଦ୍ୱୀପର ଜଙ୍ଗଲରେ ଦେଖାଯାଉଥିବା ଅନେକ ପ୍ରାଣୀ ମିଳନ୍ତି ।

**ମୁଖ୍ୟ ଉପଦ୍ୱିପ ଅଞ୍ଚଳ**—ମୁଖ୍ୟ ଉପଦ୍ୱୀପ ଅଞ୍ଚଳର ମାଳଭୂମିର ବିଭିନ୍ନ ଅଂଶରେ ସୁଉଚ୍ଚ ପର୍ବତମାଳା ଓ ସମତଳଭୂମି ଦେଖିବାକୁ ମିଳେ । ଏହି ମାଳଭୂମିର ଏକ ଅଂଶ — ମଧ୍ୟଭରତର ପଶ୍ଚିମାଂଶ — ଅର୍ଥାତ୍ ଗୁଜରାଟ ଓ ଦାକ୍ଷିଣାତ୍ୟ (ଡେକାନ୍) ପଶ୍ଚିମଘାଟ ପର୍ବତମାଳା ଯୋଗୁ ମୌସୁମୀ ବର୍ଷା ପାଏ ନାହିଁ । ଏଣୁ ଏହି ଅଞ୍ଚଳ ଶୁଷ୍କ ଓ ଏଠାରେ ବୃଷ୍ଟି ପ୍ରବଳ ନ ହୋଇ ମଧ୍ୟମ । ଏ ଅଂଶର ନିମ୍ନକୁ ଓ ଚଳକୁ କର୍ଣ୍ଣାଟକ ଅଞ୍ଚଳ ଦକ୍ଷିଣ ପର୍ବତମାଳାର ଅବସ୍ଥିତି ଯୋଗୁ ମୌସୁମୀ ବର୍ଷା ପାଇ ପାରନ୍ତି ନାହିଁ । ବମ୍ବେ ସମୁଦ୍ର କୂଳଠାରୁ, ନାଗପୁର, ବେଲଗାଓଁର ଦକ୍ଷିଣାଞ୍ଚଳରୁ ମଧ୍ୟଭରତର ଗୁନା ଅଞ୍ଚଳଯାଏ 518,000 ବର୍ଗ କିଲୋମିଟର (200,000 ବର୍ଗ ମାଇଲ)

ଅଞ୍ଚଳର ମୁଖ୍ୟ ଅଂଶରେ କୃଷ୍ଣ କପା ମୃତ୍ତିକା (Black cotton soil) ଦେଖିବାକୁ ମିଳେ । ଏହି ଅଂଶର ଭୂଗର୍ଭରେ ଡେକାନ୍ ଟ୍ରାପ (Deccan trap) ଆଗ୍ନେୟ ଶିଳାସ୍ତର ଅବସ୍ଥିତ । ଏ ଅଞ୍ଚଳରେ ବାବୁଲ ଜାତୀୟ କଣ୍ଟକ ଗଛ, ବିଭିନ୍ନ ଜାତୀୟ କୋଳି, କ୍ଷୁଦ୍ର ବୁଦାଗଛ ଏବଂ ଯେଉଁଠି ଜଙ୍ଗଲ ଅଛି ସେଠି ମୁଖ୍ୟତଃ ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ଗଛ, ଖର୍ବାକୃତି ସାଗୁଆନ୍, ବାଉଁଶ ଓ ଅନ୍ୟାନ୍ୟ ଗଛ ଦେଖିବାକୁ ମିଳେ । ଖୋଲା ତୃଣ-ଭୂମିରେ ଦଳ ଦଳ ଗେଜେଲ ଓ ଏଣ୍ଟିଲୋପ ଦେଖାଯାନ୍ତି । ଖୋଲା ଜଙ୍ଗଲ-ଞ୍ଚଳରେ ବଣ ବିରାଡ଼ି, କୋକିଶିଆଳି, ଗୁଣ୍ଡୁଚି ମୂଷା ଠେକୁଆ ଓ ବିଭିନ୍ନ ପ୍ରକାର ମୂଷା ବାସ କରନ୍ତି । ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ପାର୍ବତ୍ୟ ଜଙ୍ଗଲାଞ୍ଚଳରେ ଗୟଳ, ସମ୍ବର, ଚିତଳ ହରିଣ, ଭାଲୁ ଓ ବଣୁଆ କୁକୁର ଆଦି ରହନ୍ତି । ଡେକାନ ଟ୍ରାପ୍ ଅଞ୍ଚଳ ଛାଡ଼ି ନାଗପୁରର ଉତ୍ତର ଓ ପଶ୍ଚିମ ଆର୍ଦ୍ର ଅଞ୍ଚଳରେ ପ୍ରବେଶ କଲେ, ବାଙ୍ଗଲାଦେଶ ଓ ପଶ୍ଚିମବଙ୍ଗ ଅନୁରୂପ ମୃତ୍ତିକା ଓ ଉଦ୍ଭିଦ ଦେଖିବାକୁ ମିଳେ । ଏଠାରେ ସାଗୁଆନ୍ ପରିବର୍ତ୍ତେ କ୍ରମେ ଶାଳଗଛର ଜଙ୍ଗଲ ପରିଦୃଶ୍ୟ ହୁଏ । ଏ ସବୁ ଜଙ୍ଗଲରେ ହାତୀ, ବଣ ମଇଁଷି, କରଶିଙ୍ଗା ଆଦି ପ୍ରାଣୀ ବାସ କରନ୍ତି ।

**ମାଲବାର୍ କୂଳ ଖଂଡ**—ନିକଟସ୍ଥ ଡେକାନର ଶୁଷ୍କ ଅଞ୍ଚଳ ପରିବର୍ତ୍ତେ ପଶ୍ଚିମ ଘାଟ ପର୍ବତମାଳା ଅଞ୍ଚଳରେ ପ୍ରଭୂତ ବର୍ଷା ହୁଏ ଓ ଆର୍ଦ୍ରତା ପ୍ରଚୁର । ପଶ୍ଚିମ ଘାଟ ପର୍ବତମାଳାର ପଶ୍ଚିମ ଢାଲୁ ଅଞ୍ଚଳରେ ମଧ୍ୟେ ମଧ୍ୟେ ଘନ ଜଙ୍ଗଲ ପରିପୂର୍ଣ୍ଣ ଅଞ୍ଚଳ ଦେଖିବାକୁ ମିଳେ । ସେ ସବୁ ସ୍ଥାନରେ ପ୍ରଚୁର ବାଉଁଶ ଗଛ ହୁଏ । ମଝିରେ ମଝିରେ କଳ କଳ ନାଦିନୀ ସ୍ରୋତସ୍ୱିନୀ ପ୍ରବାହିତ ।

ନୀଳଗିରି ପାର୍ବତ୍ୟ ଭୂମି ପଶ୍ଚିମ ଘାଟ ପର୍ବତମାଳାର ଏକ ପ୍ରଶାଖା । ଏହି ସୁଉଚ୍ଚ ପର୍ବତ ଭୂମିରେ ତୃଣଭୂମି ତଥା ଘନ ଜଙ୍ଗଲ ପରିପୂର୍ଣ୍ଣ ଗିରିପଥ ପରିଦୃଶ୍ୟ ହୁଏ । ଏଠାର ଜଙ୍ଗଲ ଚିର ଶ୍ୟାମଳ ଉଚ୍ଚ ବୃକ୍ଷ ପରିପୂର୍ଣ୍ଣ । ନୀଳଗିରି ପରି ଆନାମଲଇ, ପାଲନି ଓ ଅନ୍ୟ ଦକ୍ଷିଣ ଭାରତୀୟ ଗିରିମାଳା ଅଞ୍ଚଳରେ ସେହିପରି ଘନ ଜଙ୍ଗଲ ପୂର୍ଣ୍ଣ ଗିରିପଥ ଦେଖାଯାଏ । ଏ ସବୁ

ଜଙ୍ଗଲରେ ହାତୀ, ଗୟଳ ଓ ଅନ୍ୟ ବଡ ବଡ ପ୍ରାଣୀ ବାସ କରନ୍ତି । ନୀଳଗିରି ଅଞ୍ଚଳର ଉଚ୍ଚ ପାର୍ବତ୍ୟ ଭୂମିର ଆକର୍ଷଣୀୟ ବିଷୟ ହେଲା ଏହି ଯେ ଏହି ସ୍ଥାନର ଜଙ୍ଗଲର ଆସାମର ଜଙ୍ଗଲଞ୍ଚଳ ସହିତ ସାମଞ୍ଜସ୍ୟ ଅଧିକ । ଆସାମର ଜଙ୍ଗଲରେ ବାସ କରୁଥିବା କେତେକ ଜାତୀୟ ପ୍ରାଣୀ ଏଠାରେ ମଧ୍ୟ ଦେଖାଯାନ୍ତି । ପଶ୍ଚିମ ଘାଟ ପର୍ବତମାଳା ଓ ଦକ୍ଷିଣ ଭାରତ ପାର୍ବତ୍ୟ ଅଞ୍ଚଳର ଜଙ୍ଗଲରେ ଦେଖାଯାଉଥିବା ବନ୍ୟ ପ୍ରାଣୀଙ୍କୁ ଭାରତୀୟ ଉପଦ୍ୱୀପର ଅନ୍ୟାନ୍ୟ ପ୍ରାଣୀମାନଙ୍କ ସହିତ ତୁଳନା କଲେ ଦେଖାଯାଏ ଯେ ସେମାନେ (ପ୍ରଥମୋକ୍ତ) ବିଭିନ୍ନତା ଓ ସଂଖ୍ୟାଦୃଷ୍ଟିରୁ ଅଧିକ । କେବଳ ଏ ସବୁ ଅଞ୍ଚଳରେ ଯେଉଁ ପ୍ରାଣୀ ଦେଖାଯାନ୍ତି ଓ ଅନ୍ୟତ୍ର ଦେଖାଯାନ୍ତି ନାହିଁ ସେମାନେ ହେଲେ ନୀଳଗିରି ହନୁମାନ (Nilagiri langur), ସିଂହା ପାତି (Lion tailed macaque), ସାରେ ନେଉଳ (stripnecked mongoose), ନୀଳଗିରି ବାଦାମୀ ନେଉଳ (Nilagiri brown mongoose) ମାଲବାର ଶାଳିଆପତନୀ ଓ କଣ୍ଟାଳିଆ ପଡିଆ ମୂଷା (spiny mouse) । ନୀଳଗିରି ଓ ଆନାମଲାଇ ପର୍ବତମାଳାର ଉଚ୍ଚତର ଅଞ୍ଚଳରେ ହିମାଳୟ ଅଞ୍ଚଳ ପରି ପ୍ରାଣୀ ଯଥା — ନୀଳଗିରି ମେଷ (Nilagiri tahr) ମୃଗଘ ନାଇ (Pine-marten) ଓ ୟୁରୋପୀୟ ଓଧ (European otter) ବାସ କରନ୍ତି । ବୈଜ୍ଞାନିକମାନଙ୍କର ଅନୁମାନ, ତୁଷାର ଯୁଗ (ice age) *ରେ ହିମାଳୟ ଅଞ୍ଚଳ ତୁଷାରବୃତ ହେବା ଫଳରେ ଟେହର (tahr) ଓ ଅନ୍ୟାନ୍ୟ ପ୍ରାଣୀ ହିମରୁ ରକ୍ଷା ପାଇବା ଲାଗି ଦକ୍ଷିଣର ଭାରତୀୟ ଉପଦ୍ୱୀପ ଅଞ୍ଚଳକୁ ପଳାଇ ଆସିଲେ । ସେତେବେଳେ ଉପଦ୍ୱୀପ ଅଞ୍ଚଳ ସମଶୀତୋଷ୍ଣ ଥିଲା । ଏ ଅଞ୍ଚଳରେ ପୁଣି ଗ୍ରୀଷ୍ମ ମଣ୍ଡଳୀୟ ଜଳବାୟୁ ଦେଖା ଦେବାରୁ ଏହି ପ୍ରାଣୀମାନେ ଲୋପ ପାଇଗଲେ । ମାତ୍ର

---

* ଗତ ଛଅ (600,000) ଲକ୍ଷ ବର୍ଷ ମଧ୍ୟରେ ଉତ୍ତର ଗୋଲାର୍ଦ୍ଧରେ ମଧ୍ୟ–ଅକ୍ଷାଂଶ ଯାଏ ଚାରିଥର ତୁଷାର କୁଜ୍ଝଟିକା ମାଡି ଆସିଥିଲା ଓ ପ୍ରତି ଦୁଇ ହିମାବସ୍ଥା ମଧ୍ୟକାଳୀନ ପରିସ୍ଥିତିରେ ଜଳବାୟୁ ଉଷ୍ଣ ହେଉଥିଲା । ଏହି ଆଲୋଡନ ଫଳରେ ଉଦ୍ଭିଦ ଓ ପ୍ରାଣୀମାନଙ୍କର ଧ୍ୱଂସ ଓ ନବଜନ୍ମ ଘଟିଥିଲା ।

ଯେଉଁମାନେ ନୀଳଗିରି ଓ ଆନାମଲାଇର ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ସମଶୀତୋଷ୍ଣ ଜଳବାୟୁରେ ଆଶ୍ରୟ ନେଇଥିଲେ ସେମାନେ ରକ୍ଷା ପାଇଗଲେ । କାଳକ୍ରମେ ଏମାନେ ସେମାନଙ୍କର ମୂଳ ବଂଶଧର ହିମାଳୟବାସୀ ଟେହରଙ୍କ ଠାରୁ ପରିବର୍ତ୍ତିତ ହୋଇଗଲେ । ଆମେ ନୀଳଗିରି ଓ ଆନାମଲାଇ ପାର୍ବତ୍ୟ ଅଞ୍ଚଳରେ ଯେଉଁ ଟେହର ଦେଖୁ ସେମାନେ ସେହି ଆଦିମ ଟେହରମାନଙ୍କର ଆଧୁନିକ ବଂଶଧର ।



# ଭାରତର ପ୍ରାଚୀନ ପ୍ରାଣୀ

ଏବର ବନ୍ୟ ଜନ୍ତୁମାନଙ୍କୁ ଦେଖି ସ୍ୱତଃ ମନରେ ପ୍ରଶ୍ନ ଉଠେ, ପୂର୍ବେ ଏ ଦେଶ କ'ଣ ଏଇପରି ଥିଲା ? ସେତେବେଳେ କଣ ଆଜିପରି ପ୍ରାଣୀ ବଣ ଜଙ୍ଗଲ, ନଦୀ, ଜୋର, ଜଳାଭୂମି ଆଦିରେ ବାସ କରୁଥିଲେ ?

ତୃତୀୟକ (Tertiary) କଳ୍ପର ପରିସୀମା ପ୍ରାୟ ସତୁରିଲକ୍ଷ ବର୍ଷ । ଆଜିଠାରୁ ପ୍ରାୟ ଅଶିଲକ୍ଷ ବର୍ଷ ତଳେ ଏହାର ଆରମ୍ଭ ଓ ପ୍ରାୟ ଦଶଲକ୍ଷ ବର୍ଷ ପୂର୍ବେ ଶେଷ ହୋଇଥିଲା । ଏହି କଳ୍ପରେ ଭରତର ସନ୍ତସନ୍ତିଆ ଜଳାଭୂମିରେ ଏକଜାତି ଅଧୁନା ଲୁପ୍ତ ଅତିକାୟ ହାତୀ (ମାଷ୍ଟୋଡନ—Mastodon) ଓ ବିଭିନ୍ନ ଜାତିର ହାତୀ ପଲ ପଲ ହୋଇ ବିଚରଣ କରୁଥିଲେ । ଆଉ ତାଙ୍କ ସହିତ ଥିଲେ ଅନେକ ଜାତିର ଜଳହସ୍ତୀ (hippopotamus), ଗଣ୍ଡାର (rhinoceros) ଓ ଏକ ଜାତି ଅତିକାୟ ଚାରିଶୃଙ୍ଗବିଶିଷ୍ଟ ରୋମନ୍ଥକ ପ୍ରାଣୀ । ବୈଜ୍ଞାନିକମାନେ ଏହି ପ୍ରାଣୀଟିର ନାମ କରଣ କରିଛନ୍ତି "ଶିବଥେରିୟମ" (Sivatherium) । ଆଉ ମଧ୍ୟ ପଲ ପଲ ଜିରଫ୍,



ଚିତ୍ର ନଂ 6 । ଜିରଫ୍ ବଂଶୀୟ ପ୍ରାଣୀ 'ସିଭଥେରିୟମ ଜାଇଗେନ୍ଟିୟମ୍' (Sivatherium giganteum)ର ମୁଣ୍ଡ ଅଂଶର ଚିତ୍ର । ଏହାର ଫସିଲ ପଞ୍ଜାବର ଚଣ୍ଡୀଗଡ଼ ଓ କାଲ୍‌କା ଅଞ୍ଚଳରେ ମିଳିଅଛି । ଏହା ପୃଥିବୀର ବୃହତ୍ତମ ରୋମନ୍ଥକ ପ୍ରାଣୀ ଥିଲା ।

ବଡ଼ ଓ ଖର୍ବାକୃତି ଘୋଡ଼ା, ଓଟ, ବନ୍ୟ ଗାଇ, ବନ୍ୟ ମହିଷ, ଗୟଳ, ହରିଣ, ବହୁ ଜାତିର ଏଣ୍ଟିଲୋପ୍ (କୃଷ୍ଣସାର, ଚଉରିଶିଙ୍ଗା, ନୀଳଗାଈ ଆଦି), ବନ୍ୟ ଶୂକର ଓ ବନ୍ୟ ଶୂକରରୂପୀ ପ୍ରାଣୀ ବୁଲୁଥିଲେ । ଜାମ୍ମୁ ଓ କାଶ୍ମୀର ଏବଂ ପଞ୍ଜାବ ଅଞ୍ଚଳରେ ଥିବା ସିଓ୍ୱାଲିକ ପର୍ବତମାଳାରେ ଓ ଭାରତର ଅନ୍ୟତ୍ର ପ୍ରାଗୈତିହାସିକ ପ୍ରାଣୀମାନଙ୍କର ଯେଉଁ ସବୁ ଜୀବାଶ୍ମ (fossil) ମିଳିଛି ଓ ମିଳୁଛି ସେ ସବୁ ସମ୍ବନ୍ଧରେ ଯେତେ ଅନୁସନ୍ଧାନ, ପରୀକ୍ଷା ଓ ଗବେଷଣା ହେବା କଥା ତାହା ହୋଇପାରି ନାହିଁ । ସେ ଯାହାହେଉ, ଅତୀତ କାଳର ଜୀବାଶ୍ମ ପରୀକ୍ଷାରୁ ଜଣାପଡେ, ତୃତୀୟକ କଳ୍ପରେ ଭାରତରେ ସିମ୍ପାଞ୍ଜି, ଓରାଂ ଉଟାନ୍, ବେବୁନ୍ (Baboon), ଆଦି ମନୁଷ୍ୟାକୃତି ବାନର ଏବଂ ହନୁମାନ ପାତି ଆଦି ବାନର ବାସ କରୁଥିଲେ । ମାଂସାଶୀ ପ୍ରାଣୀମାନଙ୍କ ମଧ୍ୟରେ ଥିଲେ ଖଡ୍ଗଦନ୍ତୀ ବ୍ୟାଘ୍ର (Sabre-toothed-tiger), ଚିତା ବାଘ (Cheetah or hunting leopard), ବହୁଜାତି ବଡ ଓ କ୍ଷୁଦ୍ର ବାଘ ପରି ପ୍ରାଣୀ, ବିଲୁଆ ବା ଶୃଗାଳ (jackal), ହେଟା ବାଘ (wolf), କୋକିଶିଆଳି (fox), ଗନ୍ଧ ମାର୍ଜାର (civet), ମାର୍ଟେନ (marten), ଗାଡ଼ ଭାଲୁ (ratel) ଓ ଅନ୍ୟାନ୍ୟ ଅନେକ ଜାତିର ପ୍ରାଣୀ । ସେମାନଙ୍କ ସାଙ୍ଗକୁ ଥିଲେ ଏବର କଳା ଭାଲୁପରି ଭାଲୁ, ଝିଙ୍କ (porcupine), ଠେକୁଆ ଏବଂ ନାନା ଜାତି ମୂଷିକ ।

ଏବର ଓ ସେବର ବନ୍ୟ ଜନ୍ତୁମାନଙ୍କ ବିଷୟ ଆଲୋଚନା କଲେ, ଗୋଟିଏ କଥା ସ୍ପଷ୍ଟ ଫୁଟି ଉଠେ । ସେହି ଅତୀତ କାଳରେ ଆଜି ତୁଳନାରେ ବହୁ ବେଶୀ ଜାତି ପ୍ରାଣୀ ବାସ କରୁଥିଲେ । ଉଦାହରଣ ସ୍ୱରୂପ, ଆଜି କେବଳ ଗୋଟିଏ ଜାତିର ହାତୀ ଆମ ଜଙ୍ଗଲରେ ଦେଖା ଯାଉଥିଲା ବେଳେ, ସେହି କଳ୍ପରେ ଅନ୍ତତଃ ଏଗାର ଜାତି ହାତୀ ଓ ମାଷ୍ଟୋଡନ ବିଚରଣ କରୁଥିଲେ ସେ ସବୁ ପ୍ରାଣୀଙ୍କର ଜୀବାଶ୍ମ ସିଓ୍ୱାଲିକ ପାହାଡ଼ରୁ ମିଳିଅଛି । ସେ ସମୟରେ ଅନ୍ତତଃ ସାତଟି ଜାତିର ଗଣ୍ଡାର ଓ ବହୁ ଜାତିର ବରାହ (wild boar) ବାସ କରୁଥିଲେ ବୋଲି ପ୍ରମାଣ ମିଳୁଛି । କେତେକ ଜାତି ବରାହଙ୍କର ବପୁ ଅତି ବିରାଟ ଥିଲା । ସେ କାଳର ବହୁ ପ୍ରାଣୀମାନଙ୍କର ବଂଶ ଲୋପ ହେବା ଫଳରେ ଏବ ଯୁଗରେ ଅଳ୍ପ ଜାତି ପ୍ରାଣୀ ଦେଖା ଯାଉଛନ୍ତି ।

ଏପରି ଅବସ୍ଥା ଯେ କେବଳ ଭାରତରେ ଘଟିଅଛି ତା' ନୁହେଁ । ସମଗ୍ର ପୃଥିବୀରେ ତୃତୀୟକ କଳ୍ପରେ ବହୁ ଜାତି ପ୍ରାଣୀ ବାସ କରୁଥିଲେ । ୟୁରୋପ, ଏସିଆ, ଉତ୍ତର ଆମେରିକା ପ୍ରଭୃତି ବିଭିନ୍ନ ଦେଶରେ ସେ କାଳରେ ବହୁ ପ୍ରକାର ପ୍ରାଣୀ ବାସ କରୁଥିଲେ ବୋଲି ଜୀବାଶ୍ମ ପରୀକ୍ଷା ଦ୍ୱାରା ଜଣା ପଡୁଅଛି । ଏବକୁ ଅନେକ ଲୋପ ପାଇ ଯାଇଛନ୍ତି ।

ସ୍ୱତଃ କୌତୂହଳ ଜାତ ହୁଏ, ସେବ କାଳରେ ଯେଉଁ ପ୍ରାଣୀ ବାସ କରୁଥିଲେ, ସେଭଳି କେତେ ପ୍ରାଣୀ ଏବେ ମଧ୍ୟ ଆମ ଭାରତରେ ବାସ କରନ୍ତି । ଏବର ହନୁମାନ, ପାତିମାଙ୍କଡ଼, ବିଭିନ୍ନ ଜାତିର ବାଘ, ବିରଡ଼ି ଜାତିର ପ୍ରାଣୀ, ଗଧିଆ (hyaena), କୋକିଶିଆଳି, ଭାଲୁ, ଗାଡ଼ଭାଲୁ (ratel), ଝିଙ୍କ, ଠେକୁଆ, ଗଣ୍ଡାର, ଗୟଳ, ହାତୀ ଆଦି ପ୍ରାଣୀ ତୃତୀୟକ କଳ୍ପରେ ବାସ କରୁଥିବା ପ୍ରାଣୀମାନଙ୍କର ବଂଶଧର । ସେ କାଳରେ କେତେକ ପ୍ରାଣୀ ଭାରତରେ ଦେଖା ଯାଉଥିଲେ, ଯେଉଁମାନଙ୍କର ବଂଶଧର ଆମ ଦେଶରେ ଆଉ ଦେଖାଯାନ୍ତି ନାହିଁ ; ମାତ୍ର ସେମାନଙ୍କର ବଂଶଧର ଏବେ ମଧ୍ୟ ଅନ୍ୟ ଦେଶରେ ବାସ କରନ୍ତି । ସିମ୍ପାଞ୍ଜି, ବେବୁନ, ଜଳହସ୍ତୀ (hyppopotamus), ଏବଂ ଜିରାଫ ଇଲାଣ୍ଡ (eland) କୁଡୁ (kudus) ଆଦି ବିଭିନ୍ନ ଜାତି ଏଣ୍ଟିଲୋପ ଭାରତରୁ ଲୋପ ପାଇଥିଲେ ମଧ୍ୟ ଆଫ୍ରିକାରେ ବାସ କରନ୍ତି । ସିଓ୍ୱାଲିକ ପାହାଡ଼ରେ ମିଳିଥିବା ପ୍ରାଣୀମାନଙ୍କର ଜୀବାଶ୍ମର ଏବର ଆଫ୍ରିକାବାସୀ ପ୍ରାଣୀମାନଙ୍କ ସହିତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଗଣ୍ଡାର, ହାତୀ, ଏଣ୍ଟିଲୋପ, ବିଭିନ୍ନ ଜାତି ବିରଡ଼ି, ଚିତାବାଘ ଆଦି ଗଧିଆ, ଶୃଗାଳ (jackal), କୋକିଶିଆଳ, ଗାଡ଼ଭାଲୁ, ନେଉଳ ଓ ବିଭିନ୍ନ ରଡେଣ୍ଟ ଏବେ ମଧ୍ୟ ଭାରତ ଓ ଆଫ୍ରିକା ଉଭୟ ଦେଶରେ ଦେଖାଯାନ୍ତି । ଦୁଇ ମହାଦେଶରେ ବିଚ୍ଛିନ୍ନ ହୋଇ ରହିଯିବା ଫଳରେ ସେମାଙ୍କର ଠାରୁ କାଳକ୍ରମେ ବିଭିନ୍ନ ଜାତି ପ୍ରାଣୀମାନଙ୍କର ଉଦ୍ଭବ ହୋଇଥିଲେ ମଧ୍ୟ ସେମାନଙ୍କର ପୂର୍ବ ବଂଶଧର ଏକ । ପୁଣ, ଏହି ପୂର୍ବ ବଂଶଧର ହୁଏତ ପ୍ରାଗୈତିହାସିକ ଯୁଗରେ ୟୁରୋପ ଓ ମଧ୍ୟ ଏସିଆରୁ ଆଫ୍ରିକା ଓ ଭାରତକୁ ଆସି ବାସ କରିଥିଲେ, କାରଣ, ଜୀବାଶ୍ମ ପରୀକ୍ଷା ଦ୍ୱାରା ଜଣାପଡୁଛି ଯେ ତୃତୀୟକ କଳ୍ପରେ ୟୁରୋପ ଓ ମଧ୍ୟ ଏସିଆ (Central Asia)ରେ ହାତୀ, ଗଣ୍ଡାର,

ଜଳହସ୍ତୀ, ଟେପିର (tapir), ଏଣ୍ଟିଲେପ, ସିଂହ ଓ ବ୍ୟାଘ୍ର ବାସ କରୁଥିଲେ । ବୈଜ୍ଞାନିକମାନଙ୍କର ଧାରଣା, ସେ ସମୟରେ ପୃଥିବୀର ଉତ୍ତରାଞ୍ଚଳରେ ଜଳବାୟୁ ପ୍ରାୟ ଗ୍ରୀଷ୍ମମଣ୍ଡଳୀୟ ଜଳବାୟୁ ପରି ଥିଲା । ଜଳବାୟୁ ହିମ ଶୀତଳ ହେବାରୁ ଓ ଅନ୍ୟାନ୍ୟ ପରିବର୍ତ୍ତନ ହେବା ଫଳରେ ପ୍ରାଣୀମାନେ ମରି ହଜିଗଲେ ବା ନୂତନ ଅନୁକୂଳ ବାସ ଉଦ୍ଦେଶ୍ୟରେ ଦକ୍ଷିଣକୁ ପଳାଇ ଆସିଲେ ।

ତୃତୀୟକ କଳ୍ପର ଶେଷ ଆଡ଼କୁ ୟୁରୋପୀୟ ଅଞ୍ଚଳର ଜଳବାୟୁ ଶୀତଳରୁ ହିମଶୀତଳ ହୋଇ ହିମଯୁଗ (Ice age) ଆସିଲା । ଉତ୍ତରାଞ୍ଚଳରେ ସୁମେରୁ ଅଞ୍ଚଳର ଅତି ଶୀତଳ ଜଳବାୟୁ ଦେଖା ଦେଲା । ଫଳରେ ଉତ୍ତର ଗୋଲାର୍ଦ୍ଧ ଓ ହିମାଳୟର ଉତ୍ତରାଞ୍ଚଳର ବହୁ ଜାତି ପ୍ରାଣୀ କାଳର କରାଳ କବଳରେ ପଡ଼ି ଧ୍ୱଂସ ହେଲେ । ଯେଉଁମାନେ ଦକ୍ଷିଣର ଉଷ୍ଣ ଜଳବାୟୁକୁ ପଳାଇ ଆସିଲେ ସେମାନଙ୍କର ବଂଶଧରମାନଙ୍କୁ ଏବେ ଭାରତ ଓ ଆଫ୍ରିକାରେ ଦେଖିବାକୁ ମିଳନ୍ତି ।

ଏହିପରି ଭାବେ ପୁରାକାଳର ବହୁପ୍ରାଣୀ ଅବଲୁପ୍ତ ହୋଇ ଅଛନ୍ତି ଓ ସେମାନଙ୍କ ସ୍ଥାନରେ ଅନ୍ୟ ସ୍ଥାନର ପ୍ରାଣୀ ଆସି ବସ ବାସ କରି ଅଛନ୍ତି । ବଙ୍ଗୋପସାଗରର ପୂର୍ବକୁ ଅବସ୍ଥିତ ଦେଶ ସମୂହରୁ ଅର୍ଥାତ୍ ଆସାମର ପାହାଡ଼ ଅଞ୍ଚଳ ଓ ତା'ର ପୂର୍ବକୁ ଥିବା ଅଞ୍ଚଳରୁ ବନ୍ୟ ପ୍ରାଣୀ ଆସି ମୁଖ୍ୟତଃ ହିମାଳୟର ପୂର୍ବାଞ୍ଚଳରେ ବାସ କଲେ । ଅନ୍ୟ କେତେକ ସମଗ୍ର ଭାରତୀୟ ଉପଦ୍ୱୀପର ବିଭିନ୍ନ ଅଞ୍ଚଳକୁ ଖେଦି ଗଲେ । ସେଥିପାଇଁ ଆମେ ହିମାଳୟ-ପର୍ବତମାଳାର ପୂର୍ବାଞ୍ଚଳରେ ବହୁ ଭାରତ ଚୈନିକ ପ୍ରାଣୀ ଦେଖିବାକୁ ପାଉଁ । କାଶ୍ମୀର ଓ ଭୁଟାନ ମଧ୍ୟରେ ହିମାଳୟର ଜଙ୍ଗଲାଞ୍ଚଳରେ ଯେଉଁ ପ୍ରାଣୀ ଦେଖାଯାନ୍ତି ସେମାନଙ୍କ ମଧ୍ୟରୁ ଶତକଡ଼ା 70 ଭାଗ ଆସାମ, ବର୍ମା ଓ ଚୀନର ଦକ୍ଷିଣାଞ୍ଚଳରେ ଦେଖିବାକୁ ମିଳନ୍ତି । ପୁଣି ମାଲୟ ଅଞ୍ଚଳର କେତେକ ପ୍ରାଣୀ ଯଥା ଝୁରଣ୍ଡି (mouse-deer) ଏବଂ ଲରିସ (loris) ଭାରତୀୟ ଉପଦ୍ୱିପର କେତେକ ଅଞ୍ଚଳରେ ଦେଖାଯାନ୍ତି ।

ଭାରତର ପଶ୍ଚିମରୁ ମଧ୍ୟ ପ୍ରାଣୀମାନେ ଏ ଦେଶ ମଧ୍ୟରେ ପ୍ରବେଶ କରି ବସବାସ କରି ଅଛନ୍ତି । ଏ ପରି ପ୍ରାଣୀମାନଙ୍କର ଉଦାହରଣ ହେଲା

ଭାରତୀୟ ସିଂହ, ଚିଙ୍କାର (Indian Gazelle) ଏବଂ ପଞ୍ଜାବ ଓ କାଶ୍ମୀରର ଯୁରିଆଲ ।

ଏଥିରୁ ଦେଖାଯିବ ଭାରତର ବନ୍ୟ ପ୍ରାଣୀ ଭାରତର ଆଦିମ ପ୍ରାଣୀ ତଥା ପୂର୍ବ ଓ ପଶ୍ଚିମ ପଟେ ଏ ଦେଶରେ ପ୍ରବେଶ କରି ଏ ଦେଶକୁ ସ୍ଥାୟୀ ବାସ ଭୂମି ରୂପେ ଗ୍ରହଣ କରିଥିବା ପ୍ରାଣୀମାନଙ୍କର ଆଧୁନିକ ବଂଶଧର । ଅନ୍ୟ କଥାରେ ଭାରତର ପ୍ରାଣୀ ଭାରତୀୟ, ମାଳୟ, ଆଫ୍ରିକୀୟ ଓ ୟୁରୋପୀୟ ପ୍ରାଣୀମାନଙ୍କର ସମାହାର । ଆମ ଦେଶର ଯେଉଁ ସ୍ଥାନ ଜଳବାୟୁ, ବାସ, ନିରାପତ୍ତା ଓ ଖାଦ୍ୟ ଦୃଷ୍ଟିରୁ ଅଧିକ ଅଧିକ ଉପଯୋଗୀ ସେହି ସ୍ଥାନ ଗୁଡ଼ିକରେ ଆଗନ୍ତୁକ ପ୍ରାଣୀମାନଙ୍କର ପ୍ରାଧାନ୍ୟ ପରିଦୃଷ୍ଟ ହୁଏ । ମାଳୟର ପ୍ରାଣୀ ପର୍ବ ହିମାଳୟ ଅଞ୍ଚଳର ଆର୍ଦ୍ର, ଜଙ୍ଗଲ ଉପତ୍ୟକା ଏବଂ ମାଲବାର ସମୁଦ୍ର କୂଳର ବର୍ଷାଧୌତ ଜଙ୍ଗଲରେ ଦେଖାଗଲାବେଳେ କାଶ୍ମୀର ଓ ହିମାଳୟର ଉଚ୍ଚତର ପାର୍ବତ୍ୟ ଅଞ୍ଚଳରେ ୟୁରୋପୀୟ ପ୍ରାଣୀ ଦେଖାଯାନ୍ତି । ମୁଖ୍ୟ ଉପଦ୍ୱୀପଅଞ୍ଚଳ ଭାରତୀୟ ଆଦିମ ପ୍ରାଣୀମାନଙ୍କର ଅଧିବାସ ବୋଲି ଧରାଯାଏ । ଭାରତୀୟ ମରୁଭୂମି ଅଞ୍ଚଳର ପ୍ରାଣୀ ସିନ୍ଧଠାରୁ ଉତ୍ତର ଆଫ୍ରିକା ଯାଏ ବିସ୍ତୃତ ମରୁଭୂମି ଅଞ୍ଚଳର ପ୍ରାଣୀମାନଙ୍କର ଅନୁରୂପ ।

ପ୍ରାଣୀ ବିଜ୍ଞାନବିତ୍‌ମାନେ ସମଗ୍ର ପୃଥିବୀକୁ ଛଅଟି ପ୍ରାଣୀ-ଭୌଗଳିକ ମଣ୍ଡଳରେ (zoogeographical realm) ବିଭକ୍ତ କରି ଅଛନ୍ତି । ପ୍ରାଚ୍ୟ (Oriental) ମଣ୍ଡଳ କହିଲେ ଏସିଆର ଗ୍ରୀଷ୍ମାଞ୍ଚଳ ଅର୍ଥାତ୍ ଉତ୍ତର ପଶ୍ଚିମା-ଞ୍ଚଳକୁ ବାଦ ଦେଇ ଭୌଗୋଳିକ ଭାରତର ସମସ୍ତ ଅଞ୍ଚଳ, ସିଂହଳ ଓ ପୂର୍ବରେ ବୋର୍ଣ୍ଣିଓ ଓ ଫିଲିପିନ୍ ଦ୍ୱୀପପୁଞ୍ଜପର୍ଯ୍ୟନ୍ତ ଭୂଖଣ୍ଡକୁ ବୁଝାଏ । ସେଲିବିସ୍ ଦ୍ୱୀପ ଓ ପୂର୍ବକୁ ଥିବା ଅନ୍ୟ ଅଞ୍ଚଳ ପ୍ରାଚ୍ୟ ଭୌଗୋଳିକ ମଣ୍ଡଳର ଅନ୍ତର୍ଭୁକ୍ତ ନୁହେଁ ।



# ତୃତୀୟ ଅଧ୍ୟାୟ

# ବାନର ଗୋଷ୍ଠୀ

ମନୁଷ୍ୟାକୃତି ବାନର, ମାଙ୍କଡ଼, ଲେମୁର ପ୍ରଭୃତି ପ୍ରାଣୀ ପ୍ରାଇମେଟ୍‌ସ୍ (Primates) ବର୍ଗ ଅନ୍ତର୍ଭୁକ୍ତ । ଉପର ଲିଖିତ ପ୍ରାଣୀମାନଙ୍କ ସହିତ ମନୁଷ୍ୟର ବହୁ ଗାଠନିକ ସାମଞ୍ଜସ୍ୟ ରହିଛି । ଏଣୁ ମନୁଷ୍ୟ ମଧ୍ୟ ପ୍ରାଇମେଟ୍‌ସ୍ ପ୍ରାଣୀବର୍ଗଭୁକ୍ତ । ମାତ୍ର ଆଶ୍ଚର୍ଯ୍ୟର କଥା ଏହି ଯେ ପ୍ରାଇମେଟସ ବର୍ଗର କୌଣସି ପ୍ରାଣୀଠାରେ ଦୈହିକ ଗଠନରେ ଏପରି କୌଣସି ବୈଚିତ୍ର୍ୟ ଦେଖାଯାଏ ନାହିଁ, ଯାହାପାଇଁ ପ୍ରାଣୀରାଜ୍ୟର ଅନ୍ୟ ପ୍ରାଣୀମାନଙ୍କ ଠାରୁ ସେ ଶ୍ରେଷ୍ଠ ବୋଲାଇବ । ଅପର ପକ୍ଷରେ, ଅନେକ ପ୍ରାଣୀ ଅଛନ୍ତି, ଯେଉଁମାନଙ୍କର ଶାରୀରିକ ଗଠନ ସେମାନଙ୍କର ଜୀବନ ଧାରଣ ପାଇଁ ପ୍ରାଇମେଟସ୍‌ମାନଙ୍କ ଅପେକ୍ଷା ଅଧିକ ସୁଗଠିତ । ପ୍ରାଇମେଟସ୍‌ମାନଙ୍କର ମସ୍ତିଷ୍କ ଅନ୍ୟ ସମସ୍ତ ପ୍ରାଣୀଙ୍କଠାରୁ ଉନ୍ନତ । ଏଣୁ ସେମାନେ ଅନ୍ୟମାନଙ୍କଠାରୁ ଅଧିକ ବୁଦ୍ଧିମାନ୍ । ପୁଣି, ପ୍ରାଇମେଟସ୍‌ମାନଙ୍କ ମଧ୍ୟରେ ମନୁଷ୍ୟର ମସ୍ତିଷ୍କ ସବୁଠାରୁ ଅଧିକ ଉନ୍ନତ ଓ ସେ ସର୍ବାପେକ୍ଷା ଅଧିକ ବୁଦ୍ଧିମାନ ହୋଇଥିବାରୁ, ଦୈହିକ ଗଠନରେ ବାନରମାନଙ୍କ ସଦୃଶ ହୋଇଥିଲେ ମଧ୍ୟ; ବାନର ତଥା ଜୀବ ଜଗତରେ ଅନ୍ୟ ସମସ୍ତ ପ୍ରାଣୀମାନଙ୍କ ଠାରୁ ସ୍ୱତନ୍ତ୍ର ଓ ଜୀବ-ରାଜ୍ୟରେ ଶ୍ରେଷ୍ଠ ଆସନ ଲାଭ କରିଅଛି । ବାନର ଓ ମନୁଷ୍ୟମାନଙ୍କ ମଧ୍ୟରେ ଶାରୀରିକ ଗଠନ ଓ ପ୍ରକୃତିରେ କି କି ସାମଞ୍ଜସ୍ୟ ରହିଅଛି ତାହା ବିଗ୍ଭର କରିବା ।

ମନୁଷ୍ୟ, ମନୁଷ୍ୟାକୃତି ବାନର, ମର୍କଟ ଓ ଲେମୁର—ଏ ସମସ୍ତଙ୍କର ହାତର ଗଠନ ଏକା ପ୍ରକାରର । ପାପୁଲିର ବୁଢ଼ା ଆଙ୍ଗୁଠି ଅନ୍ୟ ଆଙ୍ଗୁଠି ଗୁଡ଼ିକର ସାମନା ସାମନି ରହିଥିବାରୁ ଏମାନେ ଅନାୟାସରେ କୌଣସି ପଦାର୍ଥକୁ ଧରି ପାରନ୍ତି ଓ ଉଠାଇ ପାରନ୍ତି । ହେଲେହେଁ, ଏମାନଙ୍କର ହାତ

ଓ ପାପୁଲି ମୁଖ୍ୟତଃ ଗମନଉପଯୋଗୀ । କେତେକ ମନୁଷ୍ୟାକୃତି ବାନର ଓ ମର୍କଟମାନଙ୍କର ବୁଢ଼ା ଆଙ୍ଗୁଳି ଉତ୍ତମ ବର୍ଦ୍ଧିତ ନୁହେଁ, କେତେକ ମାଙ୍କଡ଼ଙ୍କର ଆଦୌ ବୁଢା ଆଙ୍ଗୁଳି ନାହିଁ, ପୁଣି କେତେକଙ୍କର ବୁଢା ଆଙ୍ଗୁଳି ଏତେ ଛୋଟ ଯେ ତାହା ପ୍ରାୟ କୌଣସି କାର୍ଯ୍ୟରେ ଲଗେ ନାହିଁ । ମନୁଷ୍ୟାକୃତି ବାନର ଗିବନ୍‌ର ବୁଢା ଆଙ୍ଗୁଳି ଅନ୍ୟ ଆଙ୍ଗୁଳି ଗୁଡ଼ିକର ସାମନା ସାମନି ନରହି ସମାନ୍ତରାଳ । ହନୁ ମାଙ୍କଡର ବୁଢ଼ା ଆଙ୍ଗୁଳି ଅତି କ୍ଷୁଦ୍ର । ଯେଉଁ ବାନର-ମାନଙ୍କର ବୁଢା ଆଙ୍ଗୁଠି ନାହିଁ ବା ଉତ୍ତମ ବର୍ଦ୍ଧିତ ନୁହେଁ, ତଦ୍ୱାରା ସେମାନଙ୍କର ଗମନାଗମନରେ ସୁବିଧା ହୁଏ ସିନା, କୌଣସି ଅସୁବିଧା ହୁଏ ନାହିଁ । ଗିବନ୍‌ର ଲମ୍ବା ସରୁ ଅଙ୍ଗୁଳି ଗୁଡ଼ିକ ତାକୁ ଗଛ ଡାଳରେ ଝୁଲି ରହିବାରେ ସୁନ୍ଦର ଭାବେ ସାହାଯ୍ୟ କରେ । ଅପରନ୍ତୁ, ତା'ର ବୁଢା ଆଙ୍ଗୁଠି ଲମ୍ବା, ସରୁଆ ଓ ବଙ୍କା ହୋଇ ପାରୁ ନଥିଲେ ଏବଂ ଅନ୍ୟ ଆଙ୍ଗୁଠି ଗୁଡ଼ିକ ସହିତ ସମାନ୍ତରାଳ ଭାବେ ଅବସ୍ଥିତ ନଥିଲେ, ଗିବନର ଗତି ଶିଥିଳ ହୁଅନ୍ତା ଓ ବୁଢା ଆଙ୍ଗୁଠି ଗତିରେ ବାଧା ଉପୁଜାନ୍ତା । ଯେଉଁ ମାଙ୍କଡମାନଙ୍କର ହାତ ପାପୁଲିରେ ବୁଢା ଆଙ୍ଗୁଠି ନାହିଁ, ସେମାନେ ଅନାୟାସରେ କ୍ଷିପ୍ର ବେଗରେ ଏ ଡାଳରୁ ସେ ଡାଳକୁ ଗତି କରି ପାରନ୍ତି ଓ ବୁଢା ଆଙ୍ଗୁଠି ଥିଲେ ସେମାନଙ୍କର କ୍ଷିପ୍ର ଗତିରେ ଅସୁବିଧା ହୁଅନ୍ତା । ଲେମୁରମାନଙ୍କର ବୁଢା ଆଙ୍ଗୁଠି ଉତ୍ତମ ଭାବରେ ବର୍ଦ୍ଧିତ, ମାତ୍ର କେତେକ ଜାତିର ଲେମୁରଙ୍କର ବିଶି ଆଙ୍ଗୁଠି ଅତି ଛୋଟ ।

ବାନରମାନଙ୍କର ହାତର ଏକ ବିଶେଷତ୍ୱ ଏଇ ଯେ ପାପୁଲି ଉତ୍ତମ ରୂପେ ଉପରକୁ ଓ ତଳକୁ ସଞ୍ଚାଳିତ ହୋଇ ପାରିବା ପାଇଁ ସେମାନଙ୍କର ହାତ (forearm)ର ଦୁଇଟି ହାଡ ସ୍ୱତନ୍ତ୍ର, ଅର୍ଥାତ୍ ଯୋଡି ହୋଇ ନଯାଇ ଅଲଗା ରହିଥାଏ ଏବଂ କବ୍‌ଜାସହିତ ଉପଯୋଗୀରୂପେ ସଂଯୁକ୍ତ ।

ବାନରମାନଙ୍କର ଗୋଡ ମଧ୍ୟ ହାତ ଢାଞ୍ଚରେ ଗଠିତ । ପାଦର ଆଙ୍ଗୁଠି ଲମ୍ବା ଓ ସରୁଆ । ପାଦର ବୁଢା ଆଙ୍ଗୁଠି ହାତର ବୁଢା ଆଙ୍ଗୁଠି ପରି ସୁବର୍ଦ୍ଧିତ ଓ ଅନ୍ୟାନ୍ୟ ଆଙ୍ଗୁଳିଗୁଡ଼ିକର ସାମନା ସାମନି ରହିଥାଏ । ଏଣୁ ବାନରମାନଙ୍କର ପାଦ କୌଣସି ପଦାର୍ଥକୁ ଧରି ପାରିବାପାଇଁ ଉପଯୋଗୀ । କେବଳ ସେତିକି ନୁହେଁ, ପାଦର ଗଠନକୁଶଳତା ହେତୁ, ସେମାନେ ତା' ସାହାଯ୍ୟରେ ଗଛରେ ଚଢି ମଧ୍ୟ ପାରନ୍ତି । ମନୁଷ୍ୟ ଅବଶ୍ୟ ପାଦ

ସାହାଯ୍ୟରେ ଧରି ଝୁଲି ରହି ପାରିବା ଶକ୍ତି ହରାଇଛି । ଏହାର କାରଣ ଏଇ ଯେ, ଜୀବନ ଧାରଣପାଇଁ ମନୁଷ୍ୟକୁ ମନୁଷ୍ୟାକୃତି ବାନର, ମାଙ୍କଡ ଓ ଲେମୁରମାନଙ୍କ ପରି ଗଛ ଚଢିବାକୁ ହୁଏ ନାହିଁ । ପୁଣି ଆଶ୍ଚର୍ଯ୍ୟର କଥା ଯେ କେତେକ ଆଦିମ ଜାତି ମନୁଷ୍ୟଙ୍କର ପାଦ ଧରି ଝୁଲି ପାରିବା ଶକ୍ତି ଏବେ ବି ହରାଇ ନଥିବାର ଦେଖାଯାଏ ।

ବାନରମାନଙ୍କର ଦେହ ଗଠନର ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ, ସେମାନଙ୍କର ହାତ, ଗୋଡ ଓ ଦେହ ବୃକ୍ଷବାସ ଲାଗି ଉପଯୋଗୀ ଓ ତଦନୁସାରେ ନିଖୁଣ ଭାବରେ ଗଠିତ । ସେମାନଙ୍କ ମଧ୍ୟରେ ହାତ, ଗୋଡ ଓ ଦେହର ଗଠନରେ ଯେଉଁ ପ୍ରଭେଦ ଦେଖାଯାଏ, ତାହା କେବଳ ଚଢିବାର ପ୍ରକାରଭେଦ ହେତୁରୁ ଘଟିଅଛି । ଗୋଟିଏ ମନୁଷ୍ୟାକୃତି ବାନର ସହିତ ଗୋଟିଏ ହନୁମାଙ୍କଡର ଦୈହିକ ଗଠନର ପାର୍ଥକ୍ୟ ବିଚାର କଲେ ବିଷୟଟି ସ୍ପଷ୍ଟ ହେବ । ମନୁଷ୍ୟାକୃତି ବାନରମାନେ ଗଛର ଶକ୍ତ ଶାଖାକୁ ଦୁଇ ହାତରେ ଧରି, ଦୋଳିରେ ଝୁଲିଲା ପରି ଝୁଲି ଅନ୍ୟ ଡାଳକୁ ଯାନ୍ତି । ଏଥିପାଇଁ ସେମାନଙ୍କର ବାହୁ ଅତ୍ୟନ୍ତ ଲମ୍ବା, ଛାତି ଓ କାନ୍ଧ ଶକ୍ତ, ପିଠି ଛୋଟ ଓ ଲାଞ୍ଜ ନାହିଁ । ହନୁମାଙ୍କଡ ଗୋଟିଏ ଡାଳରୁ ଅନ୍ୟ ଡାଳକୁ ଗତି କଲାବେଳର ଭଙ୍ଗୀ ଲକ୍ଷ୍ୟ କଲେ ଦେଖିବେ, ସ୍ପ୍ରିଙ୍ଗ ଗଦି ଉପରେ ଡେଇଁଲା ପରି, ସେ ଡାଳ ଉପରେ କୁଦି ଅନ୍ୟ ଡାଳକୁ ଡିଏଁ ଏବଂ ଏ ସମୟରେ ତା'ର ଲମ୍ବ ଲାଞ୍ଜ ମୁଣ୍ଡ ଆଡକୁ ଧନୁ ପରି ବଙ୍କାଇ ଯାଏ । ଏପରି ଗତି ପାଇଁ ତାର ବାହୁ ବିଶେଷ ଲମ୍ବା ନହୋଇ ଗୋଡ ହାତଠାରୁ ଅଧିକ ଲମ୍ବା, ଅଣ୍ଟା ଓ ଜଂଘ ଶକ୍ତ ଏବଂ ଡେଇଁଲାବେଳେ ଲାଞ୍ଜ ଦେହର ଭାରସାମ୍ୟ ରକ୍ଷା କରେ ।

ଉପରେ କୁହାଯାଇଅଛି, ମନୁଷ୍ୟାକୃତି ବାନରମାନଙ୍କର ଲାଞ୍ଜ ନାହିଁ । ଏଣୁ ତଳେ ବା ଗଛ ଡାଳରେ ସିଧା ଚାଲିଲା ବେଳେ ସେମାନଙ୍କର ପ୍ରସାରିତ ବାହୁ ସମତା ରକ୍ଷା କରିବାରେ ସାହାଯ୍ୟ କରେ । ଆମେ ହନୁ ଓ ପାତିଙ୍କର ଲମ୍ବା ଲାଞ୍ଜ ଦେଖାଯାଏ । ମାତ୍ର ସବୁ ମାଙ୍କଡଙ୍କର ଲାଞ୍ଜ ଲମ୍ବା ନୁହେଁ, କେତେକଙ୍କର ଛୋଟ ଓ କେତେକଙ୍କର ଆଦୌ ନାହିଁ । ଆମେରିକାରେ ଦେଖାଯାଉଥିବା ଅନେକ ମାଙ୍କଡ ଲାଞ୍ଜକୁ ଡାଳରେ ଗୁଡାଇ ଓହଳି ରହି ପାରନ୍ତି । ଲାଞ୍ଜ ଏମାନଙ୍କର ପଞ୍ଚମ ବାହୁର କାମ କରେ । ପୂର୍ବ ଗୋଲାର୍ଦ୍ଧ

(Old world) ର ମାଙ୍କଡ଼ ମାନଙ୍କର ଲାଞ୍ଜର ଏ ଶକ୍ତି ନାହିଁ । ଆମ ଦେଶରେ ଦେଖା ଯାଉଥିବା ମାଙ୍କଡ଼ ମାନଙ୍କର ପିଚ୍ଛ ଅଂଶର ଚମଡ଼ା ନିଦା । ତଦ୍ୱାରା ସେମାନଙ୍କୁ ବୃକ୍ଷ ଡ଼ାଳରେ ବସିବାକୁ ସୁବିଧା ହୁଏ । ଆମେରିକାର ମାଙ୍କଡ଼ଙ୍କର ପିଚ୍ଛରେ ଶକ୍ତ ଚମଡ଼ା ଗଦି ନଥାଏ ।

ମନୁଷ୍ୟାକୃତି ବାନର ଓ ମାଙ୍କଡ ମାନଙ୍କର ଆରୋହଣ ରୀତିରେ ବିଭିନ୍ନତା ପୂର୍ବେ କୁହାଯାଇ ଅଛି । ସେମାନଙ୍କର ଚାଲିବା ଓ ଭୂମି ଉପରେ ଦୌଡ଼ିବା ରୀତିରେ ମଧ୍ୟ ପାର୍ଥକ୍ୟ ଦେଖାଯାଏ । ଗଛ ଡ଼ାଳରେ ବା ତଳେ ଚାଲିଲା ବେଳେ ମନୁଷ୍ୟାକୃତି ବାନର ଗିବନ ପାଦରେ ଭର ଦେଇ ସିଧା ଚାଲେ ଓ ଲମ୍ବା ପ୍ରସାରିତ ବାହୁକୁ ସମତା ରକ୍ଷା କରିବାରେ ବ୍ୟବହାର କରେ । ଅନ୍ୟ ମନୁଷ୍ୟାକୃତି ବାନରମାନେ ଓଜନଦାର ପ୍ରାଣୀ ହୋଇ ଥିବାରୁ କେବଳ ପିଲା ଥିଲାବେଳେ ଗିବନ ପରି ଗତି କରି ପାରନ୍ତି । ବଡ଼ମାନେ ସିଧା ଚାଲି ପାରନ୍ତି ନାହିଁ ଓ ସାଧାରଣତଃ ଚାରିପାଦରେ ଚାଲନ୍ତି । ଏତେବେଳେ ସେମାନଙ୍କର ପାଦର ତଳିପା ପୂରା ତଳେ ଲାଗେ । ମାତ୍ର ହନୁ, ପାତି ଆଦି ମାଙ୍କଡ଼ମାନେ ମୋଟା ମୋଟି ଭାବେ କୁକୁର ଓ ଅନ୍ୟ ଚାରିଗୋଡ଼ିଆ ପ୍ରାଣୀମାନଙ୍କପରି ଚାଲନ୍ତି ଓ ଦୌଡ଼ନ୍ତି । ସେମାନଙ୍କର ପାପୁଲି ପୂରା ତଳେ ଲାଗେ, କିନ୍ତୁ ପାଦର ତଳିପା ପୂରା ତଳେ ଲାଗେ ନାହିଁ, ଗୋଇଠି ଟେକି ହୋଇ ରହେ ।

ମନୁଷ୍ୟାକୃତି ବାନର, ମର୍କଟ ଓ ଲେମୁରମାନଙ୍କର ପ୍ରଧାନ ଖାଦ୍ୟ ଗଛର ପତ୍ର, ଫୁଲ ଓ ଫଳ । ନିରାମିଷ ଭୋଜନ ଲାଗି ସେମାନଙ୍କର ଦାନ୍ତ ଉପଯୋଗୀ । ଭଲରୂପେ ଚୋବାଇବା ଲାଗି ସେମାନଙ୍କର କଳ ଦାନ୍ତ ଉତ୍ତମଭାବେ ବର୍ଦ୍ଧିତ । ଅନ୍ୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ପରି ଲେମୁରମାନେ ମୁହଁକୁ ବଢ଼ାଇ ଖାଦ୍ୟ ଖାନ୍ତି । ମନୁଷ୍ୟାକୃତି ବାନର ଓ ମର୍କଟମାନେ ମନୁଷ୍ୟଭଳି ହାତରେ ଖାଦ୍ୟଧରି ମୁହଁଠି ପହଞ୍ଚାଇ ଦିଅନ୍ତି । ଏମାନେ ବହୁ–ପରିମାଣରେ ଓ ବେଗେ ବେଗେ ଖାନ୍ତି । ଅନ୍ୟ ବନ୍ୟଜନ୍ତୁଙ୍କ ପରି, ଏମାନଙ୍କୁ କୌଣସି ଏକ ସ୍ଥାନରେ ବେଶୀ ସମୟ ଧରି ଖାଇବାର ସୁବିଧା ସୁଯୋଗ ମିଳେ ନାହିଁ । ତେଣୁ ଅଳ୍ପ ସମୟ ଭିତରେ କିପରି ବେଶୀ ଖାଇପାରିବେ, ଏଥିଲାଗି ସେମାନଙ୍କଠାରେ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ପରିଲକ୍ଷିତ ହୁଏ ।

ପାତି ମାଙ୍କଡ଼ ଓ ବେବୁନ (1) ମାନଙ୍କର କଳରେ ଗୋଟିଏ ବେଶ୍ ବଡ ମୁଣାଥାଏ । ବେଗେ ବେଗେ ଯାହା ନଖାଇ ପାରିବେ, ତାକୁ ସେମାନେ ପାଟି ବାଟେ ଏଇ ମୁଣାରେ ଭରି ଦିଅନ୍ତି । ମୁଣା ପୁରିଗଲେ ଯେ ତାଙ୍କୁ ଆଉ ଖାଇବାର ଅସୁବିଧାହୁଏ ତା' ନୁହେଁ । ତା'ପରେ ସୁବିଧା ଅଛିତ, ସେମାନେ ଖାଇବାରେ ଲଗନ୍ତି । ତା'ପରେ ଏକ ନିରାପଦ ସ୍ଥାନରେ ବସି, କଳ ମୁଣାରେ ଥିବା ଖାଦ୍ୟକୁ ବାହାର କରି ଧୀରେ ସୁସ୍ଥେ ଚୋବାଇ ଖାନ୍ତି । ହନୁମାଙ୍କଡଙ୍କର କଳରେ ମୁଣା ନାହିଁ । ଯା ବୋଲି ଯେ ସେମାନେ ଅଳ୍ପ ଖାନ୍ତି ତା' ନୁହେଁ । ଗାଈ, ଛେଳି, ମେଣ୍ଢା ଆଦି ରୋମନ୍ଥକ ଉଦ୍ଭିଦଭୋଜୀ ପ୍ରାଣୀମାନଙ୍କ ପରି ସେମାନଙ୍କର ପାକସ୍ଥଳୀ ତିନୋଟି କୋଠରୀରେ ବିଭକ୍ତ । ସେମାନେ ତରତର ଭାବରେ ଅଳ୍ପ ଚୋବାଇ ଖାଦ୍ୟକୁ ଗିଳି ପକାନ୍ତି । ସେହି ଖାଦ୍ୟ ପାକସ୍ଥଳୀର ଗୋଟିଏ କୋଠରୀରେ ଜମା ରହେ । ପରେ ଏକ ନିରାପଦ ସ୍ଥାନରେ ବିଶ୍ରାମ କରି ସେମାନେ ସେହି ଅଧା ଅଧି ଚୋବା ଖାଦ୍ୟକୁ ପାଟିକୁ ଆଣି ଭଲରୂପେ ଚୋବାଇ ଖାନ୍ତି । ପାତି ଓ ବେବୁନ୍‌ଙ୍କ ପାକସ୍ଥଳୀ ସର୍ବଭୁକ୍ ପ୍ରାଣୀଙ୍କ ପାକସ୍ଥଳୀ ପରି ଏକ କୋଠରୀ ବିଶିଷ୍ଟ, ହନୁଙ୍କ ପାକସ୍ଥଳୀ ଅନେକ ପରିମାଣରେ ତୃଣଭୋଜୀ ରୋମନ୍ଥକ ପ୍ରାଣୀ–ମାନଙ୍କପରି ବହୁ କୋଠରୀବିଶିଷ୍ଟ । ଏହାର କାରଣ ଏଇ ଯେ, ହନୁ ପୁରାପୁରି ଉଦ୍ଭିଦଭୋଜୀ, କିନ୍ତୁ ବେବୁନ୍ ଓ ପାତିମାନେ ସମ୍ପୂର୍ଣ୍ଣ ଉଦ୍ଭିଦଭୋଜୀ ନୁହଁନ୍ତି । ସେମାନେ ପତ୍ର, ଫୁଲ, ଫଳ ସାଙ୍ଗକୁ କୀଟ ପତଙ୍ଗ, ବୁଢିଆଣୀ ଆଦି ଖାନ୍ତି । କେତେକ ବେଙ୍ଗ ଓ ଏଣ୍ଡୁଅ ମଧ୍ୟ ଧରି ଆହାର କରନ୍ତି । ବର୍ମା, ଶ୍ୟାମ ଓ ମାଲୟ ପ୍ରଭୃତି ଅଞ୍ଚଳରେ ଏକ ଜାତି ପାତି ମାଙ୍କଡ଼ କଙ୍କଡ଼ା ଖାନ୍ତି ।

ମନୁଷ୍ୟାକୃତି ବାନର ଓ ମର୍କଟମାନେ କେବଳ ଦିନବେଳେ ଖାଦ୍ୟ ସଂଗ୍ରହ କରନ୍ତି । ଲେମୁରମାନେ ରାତିରେ କେତେକ ଜାତି ମାଙ୍କଡ଼ ଓ ବେବୁନ୍ ଭୂମି ଉପରେ ଖାଦ୍ୟ ସଂଗ୍ରହ କରନ୍ତି । ମାତ୍ର ଅଧିକାଂଶ ମନୁଷ୍ୟାକୃତି ବାନର ଓ ମାଙ୍କଡ଼ ଗଛଉପରେ ଖାଦ୍ୟ ସଂଗ୍ରହ କରନ୍ତି ।

---

(1) ବେବୁନ୍‌ମାନେ ଆଫ୍ରିକାରେ ବାସ କରନ୍ତି । ଏହି ମାଙ୍କଡ଼ ମାନଙ୍କର ମୁହଁ କୁକୁର ପରି । ମାଙ୍କଡ଼ ମାନଙ୍କ ମଧ୍ୟରେ ସେମାନେ ସବୁଠାରୁ ଚତୁର ।

ମନୁଷ୍ୟାକୃତି ବାନର ଓ ମାଙ୍କଡମାନେ ସାଧାରଣତଃ ଅନ୍ୟ ବନ୍ୟଜନ୍ତୁମାନଙ୍କ ସହିତ ସଦ୍‌ଭବ ରଖି ଚଳନ୍ତି । ପାଟି ଓ ହନୁ ଖାନ୍ତି ଯେତେ ଟା'ଠୁ ନଷ୍ଟ କରନ୍ତି ବହୁତ ବେଶୀ । ଏମାନେ ତଳକୁ ଫୋପାଡୁଥିବା ପତ୍ର ଫଳକୁ ଖାଇବା ଲାଗି ହରିଣ ଆଦି ବନ୍ୟଜନ୍ତୁମାନେ ଆସି ଗଛମୂଳେ ଜମା ହୁଅନ୍ତି । ବାନରମାନଙ୍କର ପ୍ରଧାନ ଶତ୍ରୁ ମନୁଷ୍ୟ ଓ ବଡ ବଡ ଶ୍ୱାପଦ । ଭାରତରେ ମର୍କଟମାନଙ୍କର ମୁଖ୍ୟଶତ୍ରୁ ହେଲା କଲରପତ୍ରିଆ ବାଘ । ମାଙ୍କଡମାନେ ଗଛର ଅତି ଉପରକୁ ଉଠି ପାରନ୍ତି । ମାତ୍ର କଲରପତ୍ରିଆ ବାଘକୁ ସେମାନଙ୍କର ବଡ ଭୟ । କଲର ପତ୍ରିଆ ଲୁଚି ଲୁଚି ଆସି ତୀବ୍ର ବେଗରେ ଗଛ ଉପରକୁ ଉଠି ଯାଏ, ନହେଲେ ଗର୍ଜନ କରେ । ଏତିକିରେ ଭୟଭୀତ ହୋଇ ମାଙ୍କଡ ଟପ ଟାପ୍ ତଳକୁ ଖସି ପଡନ୍ତି । ଆକସ୍ମିକ ଓ ଉଚ୍ଚ ଗର୍ଜନ ମାଙ୍କଡକୁ ଅତ୍ୟନ୍ତ ଭୟଭୀତ କରାଇ ଦିଏ । ଥରେ କୌଣସି ଚିଡିଆ ଖାନାରେ ହଠାତ୍ ଘଡଘଡି ଶବ୍ଦ ଶୁଣି ଗୋଟିଏ ମାଙ୍କଡ ମରିଯିବାର ଦୃଷ୍ଟାନ୍ତ ଅଛି । ଅଜଗର କୁମ୍ଭୀର ପ୍ରଭୃତି ବଡ଼ ବଡ ସରୀସୃପମାନେ ମଧ୍ୟ ମର୍କଟମାନଙ୍କର ଶତ୍ରୁ । ଅଜଗର ମାଙ୍କଡ ଦେହରେ ଗୁଡାଇ ହୋଇ ତାକୁ ମାରି ଆହାର କରେ । ମାଙ୍କଡମାନେ ଗଛରୁ ଓହ୍ଲାଇ ପାଣି ପିଇଲା ବେଳେ କୁମ୍ଭୀର ଧରି ଖାଏ । ମନୁଷ୍ୟାକୃତି ବାନର ଓ ମର୍କଟମାନେ ସାପକୁ ଭୟ କରନ୍ତି । ଆଶ୍ଚର୍ଯ୍ୟର କଥା ଯେ ଅନ୍ୟ ବନ୍ୟଜନ୍ତୁମାନେ ସାପକୁ ଭୟ କରିବାର ଦେଖାଯାଏ ନାହିଁ ।

ବାନରମାନେ ଭଲ ଦେଖି ପାରନ୍ତି, ଶୁଣି ପାରନ୍ତି, ଏବଂ ସେମାନେ ଅତ୍ୟନ୍ତ ସତର୍କ ଓ ଚଞ୍ଚଳ । ଏହା ସେମାନଙ୍କୁ ଶତ୍ରୁ କବଳରୁ ରକ୍ଷା କରିବାରେ ସହାୟକ ହୁଏ ତା' ସାଙ୍ଗକୁ ସେମାନେ ଗଛଡାଳରେ ଅନ୍ୟତ୍ର ଲୁଚି ଛପି ରହି ପାରନ୍ତି । ମାତ୍ର ବିପଦର ଆଶଙ୍କା ହେଲେ ସେମାନେ ଅତିଶୀଘ୍ର ପଳାଇ ଯିବାକୁ ଚେଷ୍ଟା କରନ୍ତି । ବୃକ୍ଷବାସୀ ବାନର ବୃକ୍ଷ ଡାଳର ନିରାପଦ ସ୍ଥାନ ଛାଡି ଗଛରୁ ତଳକୁ ଟପ୍ କରି ଖସି ପଡି ପଳାଇବାକୁ ଚେଷ୍ଟା କରି ଅଧିକ ବିପଦର ସମ୍ମୁଖୀନ ହୋଇଥାଏ । ସେମାନେ ଏପରି କାହିଁକି କରନ୍ତି, ତାହା ବୁଝା ପଡେ ନାହିଁ । ଅନ୍ୟ ପକ୍ଷରେ, ମାଙ୍କଡଟିଏ ବିପଦର ସମ୍ମୁଖୀନ ହେଲେ, ଅକ୍ଷମ ହେଲେ ବା ସାନ ମାଙ୍କଡକୁ ରକ୍ଷା କରିବାକୁ ହେଲେ,

ଅନ୍ୟ ମାଙ୍କଡ଼ମାନେ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି । କୌଣସି ମାଙ୍କଡ଼ ବିପଦରେ ଆଶଙ୍କା କଲେ ଏକ ପ୍ରକାର ଭୀତିପ୍ରଦ ଚିତ୍କାର କରେ ଓ ତାକୁ ଶୁଣି ଅନ୍ୟ ସମସ୍ତେ ସାବଧାନ ହୋଇ ଯାନ୍ତି । ହନୁ ଓ ପାତିଙ୍କର ଚିର-ଚିରିଆ ଶବ୍ଦଶୁଣି ପୋଖତ ଶିକାରୀମାନେ ବାଘ ବା କଲରପତ୍ରିଆ ବାଘର ଅବସ୍ଥିତି ଠଉରାଇ ପାରନ୍ତି । ବାନର ଦଳରେ ନିର୍ଦ୍ଦିଷ୍ଟ ବାନରମାନଙ୍କ ଉପରେ ପହରାଦାର କାମ ନ୍ୟସ୍ତ ଥାଏ ଓ ବିପଦର ସୂଚନା ପାଇଲେ ସେମାନେ ଅନ୍ୟ ମାନଙ୍କୁ ସତର୍କ କରି ଦିଅନ୍ତି ବୋଲି କେହି କେହି କହନ୍ତି । ପ୍ରକୃତପକ୍ଷେ ଏହା ଠିକ୍ ନୁହେଁ । କୌଣସି ଗୋଟିଏ ବାନର ଭୀତ ହୋଇ କୁହାଟ ମାଇଲେ ଅନ୍ୟମାନେ ଘଟଣା କ'ଣ ଦେଖିବା ପାଇଁ ଦଣ୍ଡେ ହେଲେ ସ୍ଥିର ନରହି ଖପାଖପ୍ ଡ଼େଇଁ ପଳେଇ ଯାନ୍ତି । ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ବାନର ମାନଙ୍କର ମସ୍ତିଷ୍କ ଉନ୍ନତ ହେଲେ ମଧ୍ୟ, ଆତ୍ମରକ୍ଷା ପାଇଁ ସେମାନେ ଅନ୍ୟ ନିମ୍ନସ୍ତରର ପ୍ରାଣୀମାନଙ୍କ ପରି ଆଚରଣ କରନ୍ତି । ସେମାନେ କୌଣସି ପ୍ରକାର ହତିଆର ବ୍ୟବହାର କରନ୍ତି ନାହିଁ । କେବଳ ମନୁଷ୍ୟ ହତିଆର ବ୍ୟବହାର କରେ । ଆଫ୍ରିକାର ବେବୁନମାନେ ଆକ୍ରମଣ-କାରୀଙ୍କ ଉପରକୁ ପଥର ଫୋପାଡନ୍ତି ବୋଲି କଥିତ ଅଛି । ମାତ୍ର କେତେକ ଏଥିରେ ସନ୍ଦେହ ପ୍ରକାଶ କରନ୍ତି । ଅନେକ ମନୁଷ୍ୟାକୃତି ବାନର ଓ ମର୍କଟମାନଙ୍କର ଶ୍ୱାଦନ୍ତ ବେଶ୍ ବଡ । ଏହି ଦାନ୍ତ ଆତ୍ମରକ୍ଷାର ଆୟୁଧରୂପେ ବ୍ୟବହୃତ ହୋଇଥାଏ । ଅଣ୍ଡିରା ବାନରମାନଙ୍କର ଶ୍ୱାଦନ୍ତ ଗୁଡିକ ବଡ । ମାଈ ମାଙ୍କଡ ପାଇଁ ଅଣ୍ଡିରାଙ୍କ ମଧ୍ୟରେ ଯେଉଁ ଘମାଘୋଟ ଲଢ଼େଇ ହୁଏ ସେଥିରେ ଏଇ ଦାନ୍ତ ବ୍ୟବହୃତ ହୁଏ । ଏଥିରୁ ମନେ ହୁଏ, ଅନ୍ୟପ୍ରାଣୀଙ୍କ ବିରୁଦ୍ଧରେ ବ୍ୟବହାର ପାଇଁ ସେ ଗୁଡ଼ିକ ଉଦ୍ଦିଷ୍ଟ ନୁହେଁ । ତାହା ହୋଇଥିଲେ, ଖାଲି ଅଣ୍ଡିରାଙ୍କ ଶ୍ୱାଦନ୍ତ ବଡ ହୋଇ ନଥାନ୍ତା । ପୁଣି ମାଙ୍କଡମାନେ ମାଂସାହାରୀ ହୋଇ ନଥିବାରୁ ସେମାନେ ଅନ୍ୟ ପ୍ରାଣୀମାନଙ୍କୁ ଦାନ୍ତରେ ଆକ୍ରମଣ କରନ୍ତି ନାହିଁ । ଆତ୍ମରକ୍ଷା ଓ ସନ୍ତାନକୁ ରକ୍ଷା କରିବା ପାଇଁ ସେମାନେ ଦାନ୍ତ ବ୍ୟବହାର କରନ୍ତି ଏବଂ ଏହା ଅସାଧାରଣ କଥା ନୁହେଁ । ମଣିଷ ପିଲାଏତ ରଗାରଗି ବେଳେ ଦାନ୍ତ ବି ବ୍ୟବହାର କରନ୍ତି । ମାଙ୍କଡ ମାନଙ୍କଠାରେ ସାହସ ଏକ ବ୍ୟକ୍ତିଗତ ଘଟଣା ବୋଲିବାକୁ ହେବ । କାରଣ

ଗୋଟିଏ ହନୁକୁ କୁକୁର ଆକ୍ରମଣ କଲେ ସେ ନିଜ ମୁହଁକୁ ଦୁଇ ହାତରେ ଢାଙ୍କି ପକାଏ; ଅପର ପକ୍ଷରେ ଅନ୍ୟ ଗୋଟିଏ ହନୁ ଆକ୍ରାନ୍ତ ହେଲେ ଓଲଟା ଆକ୍ରମଣ କରି କୁକୁରକୁ ଜୀବନରେ ମାରି ଦେଇପାରେ ।

ମନୁଷ୍ୟାକୃତି ବାନରମାନେ ମନୁଷ୍ୟ ସହିତ ମିଳିମିଶି ରହିପାରି ନାହାଁନ୍ତି । ସେମାନେ ମନୁଷ୍ୟଠାରୁ ଧୀରେ ଧୀରେ ଦୂରେଇ ଯାଇଛନ୍ତି ଏବଂ କ୍ରମେ ସେମାନଙ୍କର ବଂଶଲୋପ ଘଟୁଅଛି । ଅପରପକ୍ଷେ, ହନୁ ଓ ପାତି ଦଳ ଦଳ ହୋଇ ମନୁଷ୍ୟ ବସତିରେ ଓ ନିକଟରେ ବାସ କରି ତା'ର ସହବାସୀ ହୋଇଛନ୍ତି କହିଲେ ଚଳେ । ଅବଶ୍ୟ ସ୍ଥଳବିଶେଷରେ ଯେ ମନୁଷ୍ୟ ସେମାନଙ୍କୁ ନିପାତ ନ କରୁଛି, ଏମନ୍ତ ନୁହେଁ । ଉଦାହରଣ ସ୍ୱରୂପ, ପଶ୍ଚିମଘାଟ ପର୍ବତମାଳାଅଞ୍ଚଳରେ ବାସ କରୁଥିବା ହନୁ 'ମାନ୍ଥି'' (ତାମିଲ)ର ସାଉଁଳିଆ କଳା ବା କଳା-ବାଦାମୀ ଚମଡା ପାଇଁ ସେମାନଙ୍କ ବହୁ ସଂଖ୍ୟାରେ ମରହେବାରୁ ସେମାନଙ୍କ ସଂଖ୍ୟା ଅନେକ କମି ଗଲଣି । ଭାରତର ବିଭିନ୍ନ ଅଞ୍ଚଳରେ ଆଦିବାସୀମାନେ ମଧ୍ୟ ମାଙ୍କଡ଼ମାନଙ୍କର ମାଂସ ଖାନ୍ତି ।

ମନୁଷ୍ୟାକୃତି ବାନର, ମର୍କଟ ଓ ଲେମୁରମାନେ ସାଧାରଣତଃ ଉଷ୍ଣଦାପ ଅଞ୍ଚଳରେ ବାସ କରନ୍ତି । କେବଳ ଅଷ୍ଟ୍ରେଲିଆକୁ ଛାଡ଼ି ଦେଲେ, ଏହି ପ୍ରାଣୀମାନେ ମୁଖ୍ୟତଃ ସମସ୍ତ ବିଷୁବ ଓ ନିମ୍ନ ବିଷୁବ ଅଞ୍ଚଳରେ ଦେଖାଯାନ୍ତି । ଅଷ୍ଟ୍ରେଲିଆରେ ବାନର ନାହାଁନ୍ତି । ଏହାର ଅର୍ଥ ନୁହେଁ ଯେ ସେମାନେ ଶୀତ ସହି ପାରନ୍ତି ନାହିଁ । ଉଚ୍ଚ ହିମାଳୟ ଅଞ୍ଚଳରେ, ଶୀତ ଦିନେ ଯେଉଁଠି ପାଇନ୍ ଗଛ ସବୁ ବରଫରେ ଢ଼ାଙ୍କି ହୋଇଯାଏ ସେଠି ହନୁମାଙ୍କଡ ଶୀତ କଟାଇବାର ଜଣାଅଛି । ଶୀତଦିନେ ମାଙ୍କଡ଼ ମାନଙ୍କ ଦେହରେ ଲମ୍ବା ଲୋମ ଉଠେ ଏବଂ ତାହା ସେମାନଙ୍କୁ ଶୀତ ବର୍ଷାରୁ ରକ୍ଷା କରେ । ଗ୍ରୀଷ୍ମକାଳ ଆରମ୍ଭ ହେଲେ, ଏହି-ଲୋମସବୁ ଝଡିପଡ଼େ ଓ ତା' ସ୍ଥାନରେ ସାନ ସାନ ଲୋମ ଉଠେ । ଭାରତର ଉତ୍ତରାଞ୍ଚଳରେ ଶୀତ ଓ ତାପର ଆଧିକ୍ୟ ହେତୁ, ମର୍କଟମାନଙ୍କର ଦେହରେ ଶୀତ ଓ ଗ୍ରୀଷ୍ମ ଋତୁ ଅନୁସାରେ ଲୋମ ଉଠିବା ଝଡ଼ିବା ବିଶେଷ ପରିଲକ୍ଷିତ ହୋଇଥାଏ ।

ବିଭିନ୍ନ ଋତୁରେ ଓ ବିଭିନ୍ନ ସ୍ଥାନରେ ପତ୍ର ଓ ଫଳର ଆଧିକ୍ୟ ଅନୁସାରେ ବାନରମାନେ ଏକ ସ୍ଥାନରୁ ଅନ୍ୟସ୍ଥାନକୁ ଯାଇଥାନ୍ତି । ଶୀତ

କାଳରେ ଉତ୍ତରାଞ୍ଚଳରୁ ଅପେକ୍ଷାକୃତ ଅଳ୍ପ ଶୀତ ଅଞ୍ଚଳ ଦକ୍ଷିଣାଞ୍ଚଳକୁ ଏମାନେ ଗତି କରିବାର ଜଣାପଡେ ।

ମନୁଷ୍ୟାକୃତି ବାନର ଓ ମର୍କଟମାନେ ଆନନ୍ଦ, ରାଗ, ଭୟ ଇତ୍ୟାଦି ବିଭିନ୍ନ ପ୍ରତିକ୍ରିୟା ପାଇଁ ଭିନ୍ନ ଭିନ୍ନ ପ୍ରକାର ଶବ୍ଦ କରିଥାନ୍ତି । ଅନ୍ୟ କୌଣସି ପ୍ରାଣୀ ଏତେ ବିଭିନ୍ନ ଅର୍ଥବ୍ୟଞ୍ଜକ ଶବ୍ଦ କରି ପାରନ୍ତି ନାହିଁ । ଦଳର ପ୍ରାଣୀଙ୍କୁ ଏକଜୁଟ ହେବାପାଇଁ ଗୋଟିଏ ପ୍ରକାର ଶବ୍ଦ,—ଏଇପରି ସେମାଙ୍କର ନାନା ପ୍ରକାର ଶବ୍ଦ ରହିଛି । ତ' ଛାଡି, ମୁହଁର ଭଙ୍ଗିକୁ ଲକ୍ଷ୍ୟକଲେ, ସେମାନଙ୍କର ଭାବ ଜାଣି ହୁଏ ।

ବାନରମାନଙ୍କ ମଧ୍ୟରେ ସ୍ଥାୟୀ ସାମାଜିକ ଜୀବନ ଦେଖିବାକୁ ମିଳେ । ସେମାନଂକର ସମାଜ-ଜୀବନ ସହବାସ-ପ୍ରବୃତ୍ତି ଉପରେ ପ୍ରତିଷ୍ଠିତ । ଅଣ୍ଡିରା ମାଈକୁ ଆକର୍ଷଣ କରେ । ବାନର ମାନଂକ ମଧ୍ୟରେ ଯୌନ ଲିପ୍ସା କୌଣସି ନିର୍ଦ୍ଦିଷ୍ଟ କାଳପାଇଁ ସୀମାବଦ୍ଧ ନହୋଇ ଚିରସ୍ଥାୟୀ । ବାନର ଭିନ୍ନ ଅନ୍ୟ ସମସ୍ତ ପ୍ରାଣୀ ମାନଂକର ବର୍ଷର ଏକ ନିର୍ଦ୍ଦିଷ୍ଟ ଋତୁରେ ସେମାନଂକ ମଧ୍ୟରେ ବେଶୀ ଯୌନମିଳନ ଘଟିବାର ଦେଖାଯାଇ ପାରେ । ଯୌନ-ପ୍ରବୃତ୍ତିକୁ ଚରିତାର୍ଥ କରିବା ବାନରମାନଂକର ଦଳ ଗଠନର ଏକ ମୂଳ କାରଣ ହୋଇଥିବାରୁ ବିଭିନ୍ନ ଜାତିର ମନୁଷ୍ୟାକୃତି ବାନର ଓ ମର୍କଟମାନଂକର ସମାଜ-ଜୀବନରେ ପାର୍ଥକ୍ୟ ଦେଖାଯାଏ । ଅଧିକାଂଶ ବାନର ବହୁ ପତ୍ନିକ । କେବଳ ଗିବନମାନେ ଏକ ପତ୍ନୀକ । ବାନର ମାନଂକ ମଧ୍ୟରେ ଏକ ପତ୍ନିକତା ବା ବହୁ ପତ୍ନିକତା କେତେକ ଉପରେ ନିର୍ଭର କରେ । କୌଣସି ଅଣ୍ଡିରା ଯଦି ଖୁବ୍ ବଳବାନ ହୋଇଥାଏ, ତେବେ ସେ କୌଣସି ଅଞ୍ଚଳର ସବୁ ମାଈଙ୍କୁ ନିଜ ଅଧୀନରେ ରଖିପାରେ, କିନ୍ତୁ ଅଳ୍ପ ବଳବାନ ହୋ'ଇଥିଲେ ଏକ ବା ଏକାଧିକ ମାଈଙ୍କୁ ନିଜ ଅକ୍ତିଆରରେ ରଖିପାରେ । ଏ ସମସ୍ତ ତା'ର ପ୍ରତିଦ୍ୱନ୍ଦୀ ମାନଂକ ଉପରେ ନିର୍ଭର କରେ । ସାଧାରଣତଃ ପ୍ରଭବଶାଳୀ ପୁରୁଷବାନର ପତ୍ନୀ ଓ ଶିଶୁମାନଂକ ବ୍ୟତୀତ ଅନ୍ୟ କାହାରି ଉପସ୍ଥିତି ସହିପାରେ ନାହିଁ ଏବଂ ସମସ୍ତ ପ୍ରତିଦ୍ୱନ୍ଦୀ ଅଣ୍ଡିରାଙ୍କୁ ଘଉଡାଇ ଦିଏ । ଏଣୁ ଗୋଟିଏ ବାନର ଦଳ କହିଲେ ଗୋଟିଏ ଗୋଧ ସଙ୍ଗ ବା ଅଧିକ ମାଈ ଓ ଛୁଆଙ୍କୁ ବୁଝାଏ । କେତେକ ବାନର ଦଳରେ ଗୋଟିକରୁ ଅଧିକ ବୟଃପ୍ରାପ୍ତ

ପୁଂବାନର ଦେଖିବାକୁ ମିଳେ । ସେପରି ସ୍ଥଳେ ବୁଝିବାକୁ ହେବ, ସେଥିରେ ସବୁଠାରୁ ବଳବାନ ପୁଂବାନରଟି ଦଳପତି ଓ ଅନ୍ୟ ଅଣ୍ଡିରଟି ଅଯୌନ ଜୀବନ କଟାଉଥିବା ଏକ ନିର୍ଲିପ୍ତ ବାନର । ପରାଜିତ ଅଣ୍ଡିରମାନେ ସାଧାରଣତଃ ଏକାକୀ ଜୀବନ ଯାପନ କରନ୍ତି ଓ କେତେ କେତେବେଳେ ଦଳ ବାନ୍ଧି ରହନ୍ତି । ପୁଣି ଏମାନଙ୍କ ମଧ୍ୟରୁ ବଳବାନ ବାହାରି ଅନ୍ୟ ଦଳର ଦଳପତିକୁ ପରାଜିତ କରି ଦଳର ମୁଖ୍ୟ ହୁଏ । ଏକାକୀ ବାସ କରୁଥିବା ଅଣ୍ଡିର ସାଧାରଣତଃ ବୁଢ଼ା ଓ ଦେହରେ ସଂଗ୍ରାମର ଚିହ୍ନ ବହନ କରୁଥାଏ । ଗୋଟିଏ ବାନର ଦଳ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଅଧିକାରୀ ରୂପେ ଜୀବନ ଯାପନ କରନ୍ତି । ସେ ଅଞ୍ଚଳରେ ଥିବା ସମସ୍ତ ବୃକ୍ଷଲତାରୁ ଖାଦ୍ୟ ସଂଗ୍ରହର ଅଧିକାର କେବଳ ସେହି ଦଳର । ବିଭିନ୍ନ ଦଳ ଗଠନ କରୁଥିବା ଗରିଲା ଓ ଗିବନ ପରିବାର ମଧ୍ୟ ଜଙ୍ଗଲର ନିର୍ଦ୍ଦିଷ୍ଟ ଅଞ୍ଚଳକୁ ନିଜର ରାଜ୍ୟ ରୂପେ ଭୋଗ ଦଖଲ କରନ୍ତି ଓ ଗୋଟିଏ ଦଳ ଅନ୍ୟ ଦଳର ଇଲକାର ପାଖ ମାଡେ ନାହିଁ । ହନୁମାନଙ୍କ ମଧ୍ୟରେ ମଧ୍ୟ ଅନେକ ପରିମାଣରେ ତାହାହିଁ ଦେଖାଯାଏ । କାରଣ ଗୋଟିଏ ଗୋଟିଏ ଆମ୍ବ ବଗିଚାର ଦଖଲ ପାଇଁ ଦୁଇ ଦଳଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ହେବାର ଦେଖାଯାଏ ।

ସମୟ ସମୟରେ ଗୋଟିଏ ଗୋଟିଏ ହନୁ ବା ପାତି ଦଳ ଦେଖାଯାଏ ଯେଉଁଥିରେ ବହୁତ ଅଣ୍ଡିର ଓ ମାଈ ରହିଥାନ୍ତି । ମନୁଷ୍ୟର ବାସ ନିକଟରେ ଏମାନେ ରହନ୍ତି ଓ ବାଡ଼ି ବଗିଚାର ଫସଲ ବିଭିନ୍ନ ଦଳଙ୍କୁ ଏକାଠି କରିଥିବାର ମନେ ହୁଏ ।

ବାନରମାନଙ୍କର ସମାଜ-ଜୀବନ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମାବଦ୍ଧ । ଏପରିକି ଅତି ସାଧାରଣ ହନୁ ଓ ପାତି ମାଙ୍କଡ଼ମାନଙ୍କର ପ୍ରାକୃତିକ ଇତିହାସ ପୂର୍ଣ୍ଣ ଭାବେ ଅନୁଧ୍ୟାନ କରଯାଇ ନାହିଁ ।

ବାନରମାନେ ସାଧାରଣତଃ ଥରକେ ଗୋଟିଏ କରି ସନ୍ତାନ ପ୍ରସବ କରନ୍ତି । କେବେ କେବେ ଅବଶ୍ୟ ଯାଆଁଳା ଶିଶୁ ଜନ୍ମ ହୋଇଥାନ୍ତି । ଜନ୍ମ ହେବା କାଳରୁ ବାନର ଶିଶୁ ମାତାର ବକ୍ଷରୁ ଦୁଗ୍ଧ ପାନ କରେ ଓ ତା'ର ଛୋଟ ହାତରେ ମାଆକୁ ଶକ୍ତ କରି ଜାବୁଡ଼ି ଧରି ରହିଥାଏ । ଏପରିକି ମାଆ ଏ ଡାଳରୁ ସେଡାଳକୁ କ୍ଷିପ୍ର ବେଗରେ ଡେଇଁଲାବେଳେ ମଧ୍ୟ ସେ ପଡ଼ିଯାଏ

ନାହିଁ । ଅବଶ୍ୟ ମାଈ ମାଙ୍କଡ ବସିଥିଲବେଳେ ଶିଶୁକୁ ତା'ର ବାହୁଦ୍ୱାରା ଧରି ରଖେ ଓ ବେଳେ ବେଳେ ଗୋଟିଏ ହାତ ଓ ଦୁଇଗୋଡ ଦ୍ୱାରା ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଏ । ଯେଉଁ ଲେମୁରମାନଙ୍କର ଲାଞ୍ଜ ଲମ୍ବା ସେମାନେ ଲାଞ୍ଜକୁ ଗୁଡାଇ ଶିଶୁକୁ ନିଜ ପେଟ ସହିତ ବାନ୍ଧି ରଖିଥାନ୍ତି । ବାନର ଶିଶୁ ହାମୁଡେଇବାକୁ ସକ୍ଷମହେଲେ ତେଣିକି ମା' ପିଠିରେ ଲଉ ହୁଏ । ଏଥିରୁ ଦେଖାଯିବ, ବାନର ଶିଶୁ ବଡ ହେବାଯାଏ ମା'ଠୁ କେବେବେଳେ ହେଲେ ଅଲଗା ରହେ ନାହିଁ । ମନୁଷ୍ୟାକୃତି ବାନର ଓ ମର୍କଟ ଶିଶୁମାନେ ଅନେକ ଦିନଯାଏ ମା' ଠାରୁ ସ୍ତନ ପାନ କରିଥାନ୍ତି । ଗିବନ ଶିଶୁ ପ୍ରାୟ ଦୁଇ ବର୍ଷ ହେଲଯାଏ ମା'ଠୁ କ୍ଷୀରଖାଏ । ତା'ପରେ ଆସ୍ତେ ଆସ୍ତେ ଆପେ ଆପେ ସେ ପତ୍ର ଫୁଲ ଫଳ ଖାଇ ଶିଖେ । ବାନରମାତା ଦୁଗ୍ଧ ଦାନ ବ୍ୟତୀତ ଶିଶୁକୁ ପତ୍ର ଫଳ ଆଣି ଖୁଆଏ ନାହିଁ ।



ଖ

ସାଧାରଣତଃ ଦେଖାଯାଏ, ଯେଉଁ ପ୍ରାଣୀର ମସ୍ତିଷ୍କ ଯେତେ ଉନ୍ନତ

ଚିତ୍ର ନଂ 7 ଉଲୁକ , କ ଅପ୍ରାପ୍ତ ବୟସ୍କ ଗିବନ ଓ ପ୍ରାପ୍ତ ବୟସ୍କ , ଖ ପ୍ରାପ୍ତ ବୟସ୍କ ଗିବନ ପୁରୁଷ ଗିବନ

ସେମାନଙ୍କର ବାଲୁତ କାଳ ସେତେ ବେଶୀ ଦୀର୍ଘ । ପ୍ରାଣୀମାନଙ୍କ ମଧ୍ୟରେ ମନୁଷ୍ୟର ମସ୍ତିଷ୍କ ସବୁଠାରୁ ବେଶୀ ଉନ୍ନତ ଏବଂ ଆମେ ଜାଣୁ ଯେ ମନୁଷ୍ୟ ଶିଶୁର ବୃଦ୍ଧି କାଳ ପନ୍ଦର ବର୍ଷରୁ କୋଡିଏ ବର୍ଷ । ମନୁଷ୍ୟାକୃତି ବାନର ମାନଙ୍କର ମସ୍ତିଷ୍କ ମନୁଷ୍ୟଠାରୁ ଅଳ୍ପ କମ୍ ଉନ୍ନତ । ସେମାନଙ୍କର ବାଲୁତ କାଳ ଛଅ ବର୍ଷରୁ ବାର ବର୍ଷ । ମାଙ୍କଡମାନଙ୍କର ବାଲୁତ କାଳ ତିନି ବର୍ଷରୁ ପାଞ୍ଚ ବର୍ଷ । ବାନରମାନଙ୍କ ମଧ୍ୟରେ ଲେମୁରମାନଙ୍କର ମସ୍ତିଷ୍କ ସବୁଠାରୁ କମ ଉନ୍ନତ ଓ ସେମାନଙ୍କର ବାଲୁତ କାଳ ଦୁଇ ବର୍ଷରୁ ତିନିବର୍ଷ । ଏଥିରୁ

ଦେଖାଯିବ ବାଲ୍ୟକାଳର ସମୟ ମସ୍ତିଷ୍କର ବିକାଶ ଦ୍ୱାରା ବିକାଶ ଘଟେ ପ୍ରଭାବାନ୍ୱିତ ହୁଏ । ଏହାର କାରଣ କଣ ? ପ୍ରାଣୀମାନଙ୍କ ପାଇଁ ବାଲ୍ୟକାଳ ବିପଦର ସମୟ । ସେଥିପାଇଁ ନିମ୍ନ ସ୍ତରୀୟ ପ୍ରାଣୀମାନଙ୍କର ବାଲ୍ୟକାଳ ସଂକ୍ଷିପ୍ତ । ଏମାନଙ୍କର ମସ୍ତିଷ୍କର କ୍ଷୁଦ୍ର ଓ ପ୍ରତ୍ୟେକ କ୍ରିୟା ପ୍ରବୃତ୍ତି (instinct) ଦ୍ୱାରା ପରିଚାଳିତ ପ୍ରବୃତ୍ତି ଦ୍ୱାରା ପରିଚାଳିତ କାର୍ଯ୍ୟ ଆପଣା ଛାଏଁ ହୁଏ । ସେଥିପାଇଁ ମସ୍ତିଷ୍କ ବ୍ୟବହୃତ ହୁଏ ନାହିଁ । ମସ୍ତିଷ୍କର ଚାଳନା ବିନା ଏହି କାର୍ଯ୍ୟ ହୋଇଥିବାରୁ ସେମାନଙ୍କୁ ଶିଖିବାକୁ ବା ଅଭ୍ୟାସ କରିବାକୁ ପଡେନାହିଁ । ଯେଉଁ ପ୍ରାଣୀର ମସ୍ତିଷ୍କ ଯେତେ ଉନ୍ନତ ତା'ର ଅପରିଣତ କାଳ ସେତେ ଦୀର୍ଘ । କାରଣ ଅପରିଣତ କାଳ ତା'ର ଶିଖିବାର ଓ ଅଭ୍ୟାସର ସମୟ । ଶିଶୁମାଙ୍କଡ ସ୍ୱତଃ ପ୍ରବୃତ୍ତ ଭାବେ ଗଛ ଚଢେ, ମାତ୍ର ଭଲଭାବେ ଏ କାର୍ଯ୍ୟ ସାଧିତ କରିବା ପାଇଁ ତାକୁ କିଛି କାଳ ଅଭ୍ୟାସ କରିବାକୁ ପଡେ । ମା' ହନୁ ତା' ପିଲାକୁ ଉପରକୁ ଫୋପାଡି ହାତରେ ଧରେ । ଏହାଦ୍ୱାରା ସେ ଅଜାଣତରେ ଶିଶୁକୁ ଗଛଡାଳକୁ କିପରି ଧରିବାକୁ ହୁଏ ଶିଖାଏ । କଥାରେ ଅଛି, ଯାହା ନୋହିଛି ବାଳକାଳେ, ତାହା ନୋହିବ କାହେଁ କାଳେ । ଏହା ମନୁଷ୍ୟ ପ୍ରତି ଯେପରି ପ୍ରଯୁଜ୍ୟ, ବାନରମାନଙ୍କ ପାଇଁ ସେହିପରି ପ୍ରଯୁଜ୍ୟ । ଯେଉଁ ପ୍ରାଣୀର ମସ୍ତିଷ୍କ ଯେତେ ଉନ୍ନତ ସେ ସେତେ ଅଧିକ ବାଲ୍ୟ କାଳର ଶିକ୍ଷା ଓ ଅଭିଜ୍ଞତାକୁ ସ୍ମୃତି ପଟରେ ସଞ୍ଚୟ କରି ରଖିପାରେ । ଏହା ସାରା ଜୀବନ ତାକୁ ଜୀବନ ସଂଗ୍ରାମରେ ସାହାଯ୍ୟ କରେ । ଅନେକ ସମୟରେ ବାନରମାନେ ସନ୍ତାନ ପ୍ରତି ଏପରି ଆସକ୍ତି ଦେଖାନ୍ତି ଯେ ତାହା ଲକ୍ଷ୍ୟ କଲେ ତାଜୁବ୍ ହେବାକୁ ହୁଏ ମାନବିକ ମାନଦଣ୍ଡରେ ଏହାର ବିଚାର କରଯାଇ ନପାରେ । କାରଣ, ମନୁଷ୍ୟ ଭିନ୍ନ ଅନ୍ୟ ସମସ୍ତ ପ୍ରାଣୀ ପ୍ରବୃତ୍ତି (instinct) ଦ୍ୱାରା ଚାଳିତ ହୋଇ କାର୍ଯ୍ୟ କରନ୍ତି । ମାତ୍ର ମନୁଷ୍ୟ ଚିନ୍ତା ଓ ବିଚାର ଦ୍ୱାରା ଚାଳିତ ହୋଇ କାର୍ଯ୍ୟ କରେ ।

ବାନରମାନେ ପରସ୍ପରର ଲୋମକୁ ଆଙ୍ଗୁଠିରେ ଆଡେଇ ମଝିରେ ମଝିରେ କ'ଣ ପାଟିରେ ପକାଇବାର ଦେଖାଯାଏ । ସାଧାରଣ ଲୋକଙ୍କର ଧାରଣା, ଜଣେ ଅପରର ଦେହରୁ ଉକୁଣୀ ବାଛି ଖାଏ । ଏହା ଭୁଲ । ମନୁଷ୍ୟାକୃତି ବାନର ଓ ମାଙ୍କଡମାନଙ୍କ ଦେହରେ ସାଧାରଣତଃ ଉକୁଣି ହୁଅନ୍ତି ନାହିଁ । ସେମାନେ ଯାହା ବାଛନ୍ତି ତାହା ଶୁଖିଲା ଚମ ବକଳା ବା ଚମରୁ ନିଃସୃତ

ଅନ୍ୟ କୌଣସି ପଦାର୍ଥ ଭିନ୍ନ ଆଉକିଛି ନୁହେଁ । ବହୁ ସମୟ ଧୀରସ୍ଥିର ହୋଇ ଗୋଟିଏ ବାନର ବସିଥିବ ଓ ଆଉ ଗୋଟିଏ ମାଙ୍କଡ଼ ତା' ଲୋମ ଆଡେଇ ବାଛୁଥିବ ଏହାର କାରଣ କ'ଣ ? ଅନୁମାନ କରାଯାଏ, ଏହା ଏକର ଆରେକ ପ୍ରତି ଶ୍ରଦ୍ଧାର ବହିଃପ୍ରକାଶ ମାତ୍ର । ଏହା ମାଈ ଓ ଅଣ୍ଡିରା ମାଙ୍କଡ଼ଙ୍କ ମଧ୍ୟରେ ଅନୁରାଗର ନିଦର୍ଶନ ମଧ୍ୟ ହୋଇପାରେ ।

ଉପରେ ପ୍ରାଇମେଟ୍‌ସ ବା ବାନର ଗୋଷ୍ଠୀ ସମ୍ବନ୍ଧରେ ଯେଉଁ ବିବରଣୀ ଦିଆଗଲା ସେଥିରୁ ଦେଖାଯିବ ମନୁଷ୍ୟ ଓ ବାନର ମାନଙ୍କ ମଧ୍ୟରେ ଦୈହିକ ଗଠନ, ଅଭ୍ୟାସ ଓ ପ୍ରକୃତିରେ ବହୁ ସାମଞ୍ଜସ୍ୟ ରହିଅଛି । ବୈଜ୍ଞାନିକମାନେ ବହୁ ପ୍ରମାଣ ସାହାଯ୍ୟରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି ଯେ ସୁଦୂର ଅତୀତ କାଳରେ ମନୁଷ୍ୟ ଓ ବାନରମାନଙ୍କର ପୂର୍ବ ପୁରୁଷ ଏକ ଆଦିବଂଶରୁ ଜାତ ହୋଇଥିଲେ । କାଳକ୍ରମେ ମନୁଷ୍ୟ, ମନୁଷ୍ୟାକୃତି ବାନର ଓ ମର୍କଟମାନେ ଜନ୍ମ ନେଲେ । ମନୁଷ୍ୟାକୃତି ବାନର–ମାନେ ପ୍ରଥମ ବା ଆଦିମ ମନୁଷ୍ୟର ନିକଟତମ ଜ୍ଞାତି ।

ଗରିଲା, ସିମ୍ପାଞ୍ଜି, ଓରାଂ–ଉଟାନ୍ ଓ ଗିବନ୍ ମନୁଷ୍ୟାକୃତି ବାନରଶ୍ରେଣୀଭୁକ୍ତ ଗରିଲା ଓ ସିମ୍ପାଞ୍ଜି କେବଳ ଆଫ୍ରିକାରେ, ଓରାଂ–ଓଟାନ୍ ବୋର୍ଣ୍ଣିଓ ଓ ସୁମାତ୍ରାରେ ଏବଂ ଗିବନ୍‌ମାନେ ଇଷ୍ଟ ଇଣ୍ଡିଜ୍‌ରେ ବାସ କରନ୍ତି । ମନୁଷ୍ୟାକୃତି ବାନରମାନଙ୍କ ମଧ୍ୟାରେ ଗିବନ୍ କ୍ଷୁଦ୍ରତମ । ଭାରତରେ କେବଳ ଗୋଟିଏ ଜାତି ଗିବନ ଦେଖାଯାନ୍ତି । ଆସାମର ପାର୍ବତ୍ୟ ଅରଣ୍ୟାଞ୍ଚଳରେ ଏମାନେ ବାସ କରନ୍ତି । ହିନ୍ଦିରେ ଏମାନେ 'ହଲୁକ୍' (ବୈଜ୍ଞାନିକ ନାମ Hylobates hoolock) ନାମରେ ପରିଚିତ ।

ଭାରତରେ ଦେଖାଯାଉଥିବା ବାନରମାନେ କୁକୁରପରି ଚାରି ହାତ ଗୋଡରେ ଭରଦେଇ ଚାଲନ୍ତି । ଗିବନ ଭିନ୍ନ ସବୁ ବାନରଙ୍କର ଲାଞ୍ଜ ଅଛି । ଭାରତୀୟ ମାଙ୍କଡ଼ମାନଙ୍କୁ ଦେହର ଗଠନ ଅନୁସାରେ ହନୁ ଓ ପାତି ଏହି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ ।

ଲେମୁର ମାନଂକର ଆକୃତିରେ ମନୁଷ୍ୟ ସହିତ ସାଦୃଶ୍ୟ ଅତ୍ୟନ୍ତ କ୍ଷୀଣ । ଏମାନଙ୍କର ମସ୍ତିଷ୍କ ଅନ୍ୟ ବାନରମାନଙ୍କ ଅପେକ୍ଷା କ୍ଷୁଦ୍ର ।



ଚିତ୍ର ନଂ୪ ଲଜ୍ଜ୍ୟାବତୀ (slow loris)

ହେଲେହେଁ, ଶରୀର ଓ ମସ୍ତିଷ୍କ ଗଠନରେ ଏମାନଙ୍କର ବାନର ଓ ମନୁଷ୍ୟାକୃତି ବାନର ମାନଙ୍କ ସହିତ ସାଦୃଶ୍ୟ ଥିବାରୁ ଏମାନେ ପ୍ରାଇମେଟ୍ସ୍ ବର୍ଗର ଅନ୍ତର୍ଭୁକ୍ତ । ଲେମୁରମାନେ ମଖ୍ୟତଃ ମାଡାଗାସ୍କାର ଦ୍ୱୀପରେ ବେଶୀ ଦେଖାଯାନ୍ତି । ଭାରତରେ ଦୁଇଟି ଜାତିର ଲେମୁର ବାସ କରନ୍ତି । ଗୋଟିଏ ବଙ୍ଗଳାରେ 'ଲଜ୍ଜାବତୀ' (ବୈଜ୍ଞାନିକ ନାମ–Nycticebus coucang) ନାମରେ ପରିଚିତ ଓ ଆସାମର ଜଙ୍ଗଲରେ ଦେଖାଯାଏ । ଅନ୍ୟଟି କାନ୍ନାଡି ଭାଷାରେ 'ମାଲ୍ଲ ମନୁଷ୍ୟ,' 'ଜାଡପାପା', 'ଆଡ଼ାଭି ମନୁଷ୍ୟ' (ବୈଜ୍ଞାନିକ ନାମ—Loris tardigradus) ନାମରେ ପରିଚିତ ଏବଂ ଦକ୍ଷିଣ ଭାରତ ଓ ସିଂହଳରେ ଦେଖାଯାଏ ।

ଆମ ସଭ୍ୟତା ଜୀବିତ ଭାବେ ବାନର ମାନଙ୍କ ସହିତ ସମ୍ପୃକ୍ତ । ରାମାୟଣରେ ହନୁମାନ ରାମଙ୍କର ଏକ ପରମ ଭକ୍ତ ଏବଂ ଲଙ୍କା ଅଭିଯାନରେ ବାନର-ସେନା ସହିତ ଲଢ଼େଇ କରିଥିଲେ । ହନୁମାନ ମଧ୍ୟ ଏକ ଦେବତା–ରୂପେ ପୂଜିତ । ଏଣୁ ହିନ୍ଦୁମାନେ ବାନର ମାନଙ୍କର ଦୌରାତ୍ମ୍ୟ ସହ୍ୟ କରନ୍ତି । ଏହାର ସୁଯୋଗ ନେଇ ହିନ୍ଦୁ–ତୀର୍ଥମାନଙ୍କରେ ମାଙ୍କଡ଼ମାନେ ବାସ କରି



ଚିତ୍ର ନଂ ୨ ମାଲ୍ଲ ମନୁଷ୍ୟ (Slender loris)

ଯାତ୍ରୀମାନଙ୍କଠାରୁ ଭୋଗ ଛଡାଇ ଖାଇବାଠାରୁ ଆରମ୍ଭକରି ସେମାନଙ୍କର ସାନ ସାନ ଜିନିଷ ନେଇଯାଇ ଖାଇବାକୁ ଦେଲେ ଫେରାଇ ଦେବାର ଦୃଷ୍ଟାନ୍ତ ଭୂରି ଭୂରି ଦେଖିବାକୁ ମିଳେ ।

ଭାରତରେ ଏକଜାତି ମନୁଷ୍ୟାକୃତି ବାନର (ଗିବନ), ସ୍ତରିଜାତି ପାତି ମାଙ୍କଡ, ଗ୍ଭରିଜାତି ହନୁମାଙ୍କଡ ଓ ଦୁଇଜାତି ଲେମ୍ବୁର ଦେଖାଯାନ୍ତି ।

ଆମ ଓଡିଶାରେ କେବଳ ଦୁଇଟି ଜାତି ବାନର ଦେଖାଯାନ୍ତି । ସେମାନେ ହେଲେ ହନୁ ଓ ପ ତି । ସେମାନଙ୍କ ସମ୍ବନ୍ଧରେ ସମ୍ୟକ୍ ବିବରଣୀ ଦିଆଗଲା ।



# ପାତି ମାଙ୍କଡ଼

ଅର୍ଣ୍ଣିଗ ପାତିମାଙ୍କଡ଼ ପ୍ରାୟ ଦୁଇଫୁଟ ( 60ସେଣ୍ଟିମିଟାର) ଉଚ୍ଚ ଓ ଓଜନରେ ପ୍ରାୟ ସାଢ଼େ ସାତରୁ ସାଢ଼େ ଏଗାର ସେର ( 7ରୁ10- କିଲୋଗ୍ରାମ ) ହୁଏ । ମାଈ ପାତି ଅର୍ଣ୍ଣିଗଙ୍କଠାରୁ ସାନ ହୁଅନ୍ତି । ଏମାନେ ଉଚ୍ଚରେ ପ୍ରାୟ ଦେଢ଼ ଫୁଟ ( 45 ସେଣ୍ଟିମିଟାର ) ଓ ଓଜନରେ ପାଞ୍ଚରୁ ସାତସେର ( 5 ରୁ 6 କିଲୋଗ୍ରାମ ) ହୋଇଥାନ୍ତି । ହିମାଳୟ ପର୍ବତମାଳାର ପଶ୍ଚିମ ପଟ ଜଙ୍ଗଲ ଅଞ୍ଚଳରେ ଯେଉଁ ପାତି ଦେଖାଯାନ୍ତି ସେମାନେ ବଡ଼ ହୁଅନ୍ତି ।



ଚିତ୍ର ନଂ 10 ପାତି ମାଙ୍କଡ଼

ପାତି ମାଙ୍କଡ଼ ଅନ୍ୟ ସବୁମାଙ୍କଡ଼ଠାରୁ ସହଜରେ ବାରି ହୋଇଯାଏ । ଏହାର ମୁଣ୍ଡର ଲୋମ ପଛପଟକୁ କୁଣ୍ଡା ହୋଇଥିଲା ପରି ଦିଶେ । ପାତିର

ଅଣ୍ଡା ପାଖର ଲୋମ କମଳା ରଙ୍ଗିଆ ଲାଲ ଏବଂ ପିଠିରେ ଲାଲ ରଙ୍ଗର ଗଦିପରି ମାଂସ ଗୁଟିକା ଥାଏ ।

ପାତି ଓଡିଶାର ସବୁ ଅଞ୍ଚଳରେ ଦେଖାଯାନ୍ତି । ଭାରତର ହିମାଳୟର ପାର୍ବତ୍ୟ ଅଞ୍ଚଳ, ଆସାମ ଉତ୍ତର ଓ ମଧ୍ୟ ଭାରତ, ପଶ୍ଚିମରେ ତାପ୍ତି ନଦୀ ପର୍ଯ୍ୟନ୍ତ ଏବଂ ଦକ୍ଷିଣରେ ଗୋଦାବରୀ ନଦୀଯାଏଁ ଏମାନେ ଦେଖିବାକୁ ମିଳନ୍ତି । ଭାରତ ଭିନ୍ନ ବର୍ମା ଓ ତା'ର ଆଖ ପାଖ ଅଞ୍ଚଳରେ ମଧ୍ୟ ଏମାନେ ବାସ କରନ୍ତି ।

ପାତି ମାଙ୍କଡ ଭାରତ ତଥା ଓଡିଶାର ଏକ ସାଧାରଣ ମାଙ୍କଡ । ଗ୍ରାମ ଓ ସହରର ପୋଖରୀ ଏବଂ ମନ୍ଦିର ନିକଟସ୍ଥ ଆମ୍ବ ବଗିଚାମାନଙ୍କରେ ଏମାନେ ଦଳ ଦଳ ହୋଇ ବାସ କରନ୍ତି । ଜଙ୍ଗଲରେ ଏମାନେ ଦେଖାଯାନ୍ତି, ମାତ୍ର ନିବିଡ ଅରଣ୍ୟରେ ରହନ୍ତି ନାହିଁ । ଜଙ୍ଗଲର ସୀମାନ୍ତ ଅଞ୍ଚଳ ଏମାନଙ୍କର ସାଧାରଣ ବାସସ୍ଥାନ । ଏହାର କାରଣ ଏହି ଯେ ପାତି ମାଙ୍କଡ ଖୋଲା ଜାଗାରେ ବାସ କରିବାକୁ ଭଲପାନ୍ତି ସକାଳେ ଓ ଉପରବେଳା ଟାଁ ଗଣ୍ଡାରେ ପଶି ଫଳ ବଗିଚା ଆଦି ନଷ୍ଟ କରିବାରେ ଏମାନେ ଅତ୍ୟନ୍ତ ପଟୁ । ସହର ବଜାରରେ ଓ ରେଲଷ୍ଟେସନମାନଙ୍କରେ ଲୋକମାନଙ୍କ ଭିତରେ ବୁଲଚଲ କରି ତାଙ୍କ ହାତରୁ ଖାଇବା ପଦାର୍ଥ ଓ ଛୋଟ ଛୋଟ ଜିନିଷ ଛଡେଇ ନେଇ ପଳାଇବା ପାତିମାନଙ୍କର ସାଧାରଣ ଦୌରାତ୍ମ୍ୟର ପରିଚାୟକ । ପୁରୀର ଜଗନ୍ନାଥ ମନ୍ଦିର ବେଢାରେ ଏମାନେ ହାତରୁ ଭୋଗ ଛଡାଇ ନେଇ, ଲୁଗା ଭିଡି ଯାତ୍ରୀଙ୍କୁ ନାନା ପ୍ରକାରେ ହଇରାଣ କରନ୍ତି । ଫଳମୂଳ, କୀଟପତଙ୍ଗ, ବୁଢିଆଣୀ ଇତ୍ୟାଦି ଏମାନଙ୍କର ପ୍ରଧାନ ଆହାର ।

ସମୁଦ୍ର ସମତଳଠାରୁ ଆଠ ହଜାର ଫୁଟ ( 2438 ମିଟାର ) ଉଚ୍ଚତା ଯାଏ ହିମାଳୟରେ ପାତିମାଙ୍କଡ ଦେଖାଯାନ୍ତି । ଏମାନଙ୍କର ଦେହ ଘନ ଲୋମରେ ଆବୃତ ଓ ତାହା ସେମାନଙ୍କ ଶୀତକଷ୍ଟରୁ ରକ୍ଷାକରେ । ଖରା ବେଶୀ ହେଲେ ଏମାନେ ନଦୀ, ଝରଣା, ନାଳ, ପୋଖରୀ ଆଦିରେ ଗାଧୋଇ ଦେହକୁ ଥଣ୍ଡା ରଖନ୍ତି । ଏମାନେ ପାଣି ଭିତରେ ବୁଡି ପାରନ୍ତି ଓ ପାଣି ଉପରେ ଭଲ ପହଁରି ପାରନ୍ତ ।

ଖାଦ୍ୟ ଅନ୍ବେଷଣରେ ପାତି ମାଙ୍କଡ ଦିନବେଳେ ହନୁ ମାଙ୍କଡମାନଙ୍କ ସହିତ ଏକାଠି ଦଳବାନ୍ଧି ଫଳ ବଗିଚ୍ଛ ଆଦି ଚଢାଉ କରନ୍ତି, ମାତ୍ର ସନ୍ଧ୍ୟା ହେଲେ ଭିନ୍ନ ହୋଇ ଅଲଗା ବାସ କରନ୍ତି ।

ପାତି ମାଙ୍କଡମାନଙ୍କ ସହିତ ଏକାଠି ଦଳବାନ୍ଧି ଫଳ ବଗିଚ୍ଛ ଆଦି ଚଢଉ କରନ୍ତି, ମାତ୍ର ସନ୍ଧ୍ୟାହେଲେ ଭିନ୍ନ ହୋଇ ଅଲଗ ବାସ କରନ୍ତି ।

ପାତି ମାଙ୍କଡ ଭରତର ଏକ ଅତି ସାଧାରଣ ମାଙ୍କଡ ହୋଇଥିଲେ ମଧ୍ୟ, ଦୁଃଖର କଥା, ଏମାନଙ୍କର ସାମାଜିକ ଜୀବନ, ଯୌନ ଜୀବନ ଇତ୍ୟାଦି ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ମତି ସାମାନ୍ୟ । ବର୍ଷର ଯେ କୌଣସି ସମୟରେ ଏମାନଙ୍କର ଯୌନ ମିଳନ ଘଟେ ବୋଲି ମନେହୁଏ । କାରଣ, ସବୁ ସମୟରେ ଏମାନଙ୍କ ପାଖରେ ଛୋଟ ପିଲ ଥାନ୍ତି । ଗର୍ଭବତୀ ଥିଲ-ବେଳେ ମାଈ ପାତି ମାଙ୍କଡର ପିଚ୍ଛ ସ୍ଥୂଳ ଓ ଖୁବ୍ ଲାଲ ଦେଖାଯାଏ । ପଶ୍ଚିମ ହିମାଳୟ ଅଞ୍ଚଳରେ ସାଧାରଣତଃ ଅଗଷ୍ଟ-ସେପ୍ଟେମ୍ବର ମାସରେ ପାତି ମାଙ୍କଡମାନଙ୍କ ମଧ୍ୟରେ ଯୌନ ମିଳନ ହୁଏ ଏବଂ ମାର୍ଚ୍ଚରୁ ମେ ମାସ ମଧ୍ୟରେ ଛୁଆ ଜନ୍ମ ହୋଇଥାନ୍ତି ।

ପାତି ମାଙ୍କଡର ବୈଜ୍ଞାନିକ ନାମ —Macca mulatta ଇଂରେଜୀ—Rhesus macaque; ହିନ୍ଦିନାମ ବାନ୍ଦର; ବଙ୍ଗଳା—ମର୍କଟ; କାଶ୍ମିରୀ—ପୁଞ୍ଜ, ପଞ୍ଜା, ବର୍ମୀଜ—ମିଅଉକ୍ ବହିରାକୃତିରେ ସାମାନ୍ୟ ପ୍ରଭେଦ ଓ ଆଞ୍ଚଳିକ ବାସ ଅନୁସାରେ ଭରତରେ ତିନି ବିଭିନ୍ନ ପ୍ରକାରର ପାତି ମାଙ୍କଡ ଦେଖାଯାନ୍ତି ।



# ହନୁ ମାଙ୍କଡ଼

ହନୁ ମାଙ୍କଡ ପାତିଠାରୁ ଆକାରରେ ବଡ । ବସିଥିଲ ବେଳେ ଏହାର ଉଚ୍ଚତା 60ରୁ 75 ସେଣ୍ଟିମିଟାର (2ରୁ 2.1/2 ଫୁଟ) ହୁଏ । ହନୁର ଲାଞ୍ଜ ଲମ୍ବା । ଏହା 90ରୁ 100 ସେଣ୍ଟିମିଟାର (୩ରୁ 3.1/2) ଫୁଟ । ହିମାଳୟର ପଶ୍ଚିମାଞ୍ଚଳରେ ବାସ କରୁଥିବା ହନୁମାନ ସବୁଠାରୁ ବଡ ହୁଅନ୍ତି । ଏମାନଙ୍କର ଓଜନ ହୁଏ 16ରୁ 2। କିଲେଗ୍ରାମ (35ରୁ46 ପାଉଣ୍ଡ) ।



ଚିତ୍ର ନଂ୍ବର 11 ହନୁ ମାଙ୍କଡ

ଆମ ଓଡ଼ିଶା ଓ ଦକ୍ଷିଣରେ ଯେଉଁ ହନୁ ଦେଖାଯାନ୍ତି ସେମାନଙ୍କର ଓଜନ 9ରୁ 16 କିଲେଗ୍ରାମ (20ରୁ 35 ପାଉଣ୍ଡ)

ହନୁ ମାଙ୍କଡ ମାନଙ୍କୁ ଅନ୍ୟ ସବୁ ମାଙ୍କଡ ମାନଙ୍କଠାରୁ ସହଜରେ ବାରି ହୁଏ । ଏହାର ହାତ ପାଦ ଓ ଲାଞ୍ଜ ବେଶ୍ ଲମ୍ବା ଓ ମୁହଁ କଳା । ରାବଣ ବିରୁଦ୍ଧରେ ରାମଚନ୍ଦ୍ରଙ୍କ ଅଭିଯାନ ବେଳେ ଲଙ୍କା ପୋଡିବୁ ହନୁର ମୁହଁ

କଳା ହୋଇଯାଇଛି ବୋଲି ଓଡିଶାରେ ଲୋକ-କଥନ ରହିଛି । ହନୁ ମାଙ୍କଡର ହାତ ଓ ଗୋଡ ମଧ୍ୟ କଳା । ହିମାଳୟ ଅଞ୍ଚଳର ହନୁଙ୍କ ଦେହର ଲୋମ ଘନ, ମୁଣ୍ଡର କେଶ ମସିଆ ଧଳା ଓ ହାତ ସେତେ କଳାନୁହେଁ । ଯେଉଁ ଅଞ୍ଚଳ ଶୁଷ୍କ ଓ ବର୍ଷା କମ ହୁଏ, ସେଠାର ହନୁ ମାନଙ୍କ ହାତ ଗୋଡ ଅଳ୍ପ କଳା । ଯେଉଁ ଅଞ୍ଚଳରେ ବେଶୀ ବର୍ଷାହୁଏ, ସେଠାର ହନୁମାନଙ୍କର ଗୋଡ ବେଶୀ କଳା ହୋଇଥାଏ ।

ଭରତରେ ହିମାଳୟଠାରୁ କୁମାରିକାପର୍ଯ୍ୟନ୍ତ ସର୍ବତ୍ର ହନୁମାନ ଦେଖାଯାନ୍ତି । ଅବଶ୍ୟ ମରୁଭୂମି ଅଞ୍ଚଳରେ ସେମାନେ ବାସ କରନ୍ତି ନାହିଁ । ସିଂହଳରେ ମଧ୍ୟ ହନୁ ପଚୁର । ଭରତର ବିସ୍ତୀର୍ଣ୍ଣ ଅଞ୍ଚଳରେ ପ୍ରାୟ ଚୌଦ କିସମର ହନୁ ଦେଖାଯାନ୍ତି ।

ହନୁମାନ ଅଧିକାଂଶ ସମୟ ବୃକ୍ଷ ଡାଳରେ କଟାଏ । ଏ ହିସାବରେ ପାତିର ପ୍ରକୃତି ଅଲଗା । ପାତି ଦିନର ବେଶୀଭଗ ଗଛ ଡାଳରୁ ଓହ୍ଲାଇ ଆସି ତଳେ କଟାଇ ଥାଏ । ହନୁ କାହିଁକି ବେଶୀ ସମୟ ଗଛରେ କଟାଏ ଏ ବିଷୟରେ ଓଡିଶାରେ ଏକ ମଜାର ଗପ ଅଛି । ମହାପ୍ରଭୁ (ରାମ) ହନୁମାନର କାର୍ଯ୍ୟରେ ପ୍ରୀତ ହୋଇ କହିଲେ, ତା' ପାଇଁ ସେ ଘରଦ୍ୱାର କରିଦେବେ । ହନୁ ଉତ୍ତର ଦେଲା—ହଜୁର, ମୋତେ ବର ଦିଅନ୍ତୁ, ମୋର ଯେପରି ଘର ଦରକାର ନହୁଏ । ଚିଜସ ଆଣିବି କେଉଁଠୁ ? ମୁଁ ଏଇ ଗଛ ଡାଳରେ ହିଁ ଜୀବନ କଟାଏଁ ।

ଭରତର କେତେକ ଅଞ୍ଚଳରେ ହନୁମାନମାନେ ପାହାଡ ଓ ଡୁଙ୍ଗୁରି ବା ମୁଣ୍ଡିଆ ମାନଙ୍କରେ ମଧ୍ୟ ବାସ କରନ୍ତି । ଏମାନେ ସବୁବେଳେ ଜଳଥିବା ସ୍ଥାନ ଯଥା—ନଦୀ, ନାଳ, ପୋଖରୀ ନିକଟରେ ରହନ୍ତି । ହିମାଳୟର ଅରଣ୍ୟାଞ୍ଚଳରେ ସମୁଦ୍ର ସମତଳଠାରୁ (3,660 ମିଟାର (12,000 ଫୁଟ) ଉଚ୍ଚ ଯାକେ ହନୁ ଦେଖାଯାନ୍ତି । ଅରଣ୍ୟାଞ୍ଚଳ, ମନ୍ଦିର ପାଖ ଗଛ, ପୋଖରୀ ହୁଡାର ଗଛ ଓ ଆମ୍ବ ତୋଟା ହନୁ ମାଙ୍କଡଙ୍କର ପ୍ରଧାନ ବାସସ୍ଥାନ ।

ପାତି ମାଙ୍କଡ ଫଳ, ଫୁଲ ଆଦି ସହିତ ପୋକ, ବୁଢଆଣୀ ଆଦି ଖାଇଥାଏ । ମାତ୍ର ହନୁମାନ ସମ୍ପୂର୍ଣ୍ଣ ନିରାମିଷାଶୀ । ସେମାନେ ଫଳ, ଫୁଲ, କଢ଼, କଅଁଳିଆ ପତ୍ର ଆଦି ଖାଇ ଜୀବନ ଧାରଣ କରନ୍ତି । ହନୁମାନେ

ଦଳ ଦଳ ହୋଇ ଓ ବେଳେ ବେଳେ ପାତିଙ୍କ ସହିତ ମିଶି ବାଡ଼ି ବଗିଚ୍ଚ ଓ ତୋଟାରେ ପଶି ବହୁତ କ୍ଷତି କରନ୍ତି । ସନ୍ଧ୍ୟା ହେଲେ ହନୁ ଓ ପାତି ଯେଝା ଯେଝା ଦଳକୁ ଗ୍ଲଳିଯାନ୍ତି । ହନୁଙ୍କ ତୁଳନାରେ ପାତି ବେଶି ଧୂର୍ତ୍ତ ଓ ପାଜି । ଭୋରରୁ ଏମାନଙ୍କର ଖାଇବା ପର୍ବ ଆରମ୍ଭ ହୁଏ । ଖରା ଟାଣ ହେଲେ ହନୁମାନେ ଛାଇରେ ବିଶ୍ରାମ ନିଅନ୍ତି । ଖରା ପଡ଼ିଗଲେ ପୁଣି ବାହାରନ୍ତି । ଯେଉଁ ହନୁମାନେ ମନୁଷ୍ୟ ବସତି ନିକଟରେ ବାସ କରନ୍ତି ଓ ଜାଣନ୍ତି ଧର୍ମପ୍ରାଣ ଲୋକେ ତାଙ୍କୁ ଘଉଡ଼ାଇ ଦେବା ଭିନ୍ନ ଆଉ କିଛି କରିବେ ନାହିଁ, ସେମାନେ ଦାମ୍ଭିକ ଓ ସୟତାନୀ କରିବାରେ ପଟୁ ।

ଗୋଟିଏ ହନୁଦଳ ପ୍ରତି ସନ୍ଧ୍ୟାରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ରାତ୍ରି ଯାପନ କରନ୍ତି ବୋଲି ମନେହୁଏ । କେଉଁଠି କିଏ ବସିବ, ଏ ନେଇ ବହୁତ କଜିଆ ହୁଏ । ସେମାନେ ଗଛର ମୋଟା ଡ଼ାଳରେ ନଶୋଇ ଅଗ ଡାଳରେ ଶୁଅନ୍ତି । ହିଂସ୍ର ଜନ୍ତୁଙ୍କ ଦାଉରୁ ଜୀବନ ରକ୍ଷା କରିବା ପାଇଁ ଏହା ଏକ ପନ୍ଥା । ଜଙ୍ଗଲରେ ହନୁଙ୍କ ପ୍ରଧାନ ଶତ୍ରୁ କଲରାପତରିଆ ବାଘ । ତାକୁ ଦେଖିଲେ ହନୁମାନେ ଏକ ପ୍ରକାର ଶବ୍ଦ କରନ୍ତି । ହନୁମାନେ ଗୋଟିଏ ଡ଼ାଳରେ ଆଉ ଗୋଟିଏ ଡ଼ାଳକୁ ଡ଼େଇଁଲା ବେଳେ ଯେଉଁ 'ହୁପ୍' ଶବ୍ଦ କରନ୍ତି, ତାହା ସେମାନଙ୍କର ଆନନ୍ଦ ସୂଚକ ଧ୍ୱନି ।

ହନୁ ମାଙ୍କଡ଼ ଅତି ସାଧାରଣ ହେଲେ ମଧ୍ୟ ସେମାନଙ୍କର ସମାଜ-ଜୀବନ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ କମ । ସେମାନେ ଦଳ ଦଳ ହୋଇ ବାସ କରନ୍ତି । ଗୋଟିଏ ଦଳରେ ଦଳପତି ଅଣ୍ଡିରା, କେତେକ ମାଈ ଓ ପିଲା ଥାଇ ପାରନ୍ତି । ପୁଣି ଗୋଟିଏ ଦଳରେ ସବୁ ବୟସର ଅଣ୍ଡିରା ଓ ମାଈ ଏବଂ ପିଲା ରହିଥାନ୍ତି । ବେଳେ ବେଳେ ଅଣ୍ଡିରା ହନୁଙ୍କ ମଧ୍ୟରେ ଭୀଷଣ ଲଢ଼େଇ ହୁଏ । ଯେ ଜିତେ ସେ ଦଳପତି ହୁଏ ଏବଂ ମାଈ ଓ ପିଲାମାନେ ତା'ର ହୁଅନ୍ତି । ବାକି ଅଣ୍ଡିରା ହନୁତକ ଏକ ଅଲଗା ଦଳରେ ବାସ କରନ୍ତି । ଏମାନଙ୍କୁ ସାତଭାୟା କୁହାଯାଏ । ବେଳେ ବେଳେ ବୁଢ଼ା ଅଣ୍ଡିରାଟିଏ ଅନ୍ୟ ବଳୁଆ ଅଣ୍ଡିରା ଦ୍ୱାରା ପରାଜିତ ଓ ବିତାଡ଼ିତ ହୋଇ ଏକାକୀ ଜୀବନ ଯାପନ କରେ । ଦଳପତି ହନୁ ତା' ଦଳର ଅଣ୍ଡିରା ଛୁଆଙ୍କୁ ସହ୍ୟ ନକରିପାରିବାର ମଧ୍ୟ ଦେଖାଯାଏ । ଏଥିପାଇଁ ଜନନୀ ହନୁ ତା' ଅଣ୍ଡିରା ଛୁଆଟିକି ଧରି ଆଶ୍ରୟ ଖୋଜିବାର ଦୃଷ୍ଟାନ୍ତ ଅଛି ।

ହନୁ ମାଙ୍କଡ ମାନଙ୍କର ବର୍ଷର ସବୁ ସମୟରେ ଯୌନ ମିଳନ ଘଟିଲେ ମଧ୍ୟ ଓଡିଶା ତଥା ଦକ୍ଷିଣ ଭାରତରେ ସାଧାରଣତଃ ଜାନୁଆରୀଠାରୁ ମାର୍ଚ୍ଚମାସ ମଧ୍ୟରେ ଛୁଆ ଜନ୍ମ ହୁଅନ୍ତି ଏବଂ ହିମାଳୟ ଅଞ୍ଚଳରେ ଏପ୍ରିଲ ଠାରୁ ଜୁନ ମାସ ମଧ୍ୟରେ ପିଲା ଜନ୍ମ ହୁଅନ୍ତି । ନଅମାସ ଗର୍ଭଧାରଣ ପରେ ପିଲା ଜନ୍ମ ହୁଅନ୍ତି ବୋଲି ଅନୁମାନ ।

ଥରକର କେଉଁଝରର ଆନନ୍ଦ ପୁରଠାରେ ଗୋଟିଏ ହନୁ ଏକ ରଜକ ଦ୍ୱାରା ଶରବିଦ୍ଧ ହେଲା । ଶର ତା' ପିଠିରେ ଗଳିଗଲା ଓ ସେ ତାହା କାଢି ପାରିଲା ନାହିଁ । ତା' ପରଠାରୁ ସେ ଏକାକୀ ଗୋଟିଏ ଡାଳରେ ବସେ । ସେ ବାଟେ ଯେତେ ଲୋକ ଯାନ୍ତି ତାଙ୍କୁ ସେ ଦୁଇହାତ ଯୋଡି କରୁଣା ଭିକ୍ଷା କରୁଥିଲା ।

ମୟୁରଭଞ୍ଜରେ ବିର୍ହୋ ନାମକ ଏକ ଜାତି ମାଙ୍କଡିଆ ବାସ କରନ୍ତି । ଏମାନେ ପାଖ ପାଖ ଥିବା ଦୁଇଟି ଛୋଟ ଗଛ ମଧ୍ୟରେ ଜାଲ ଟାଣି ଦିଅନ୍ତି ଓ ତାଳିମାରି ମାଙ୍କଡଙ୍କୁ ହୁରୁଡାନ୍ତି । ମାଙ୍କଡ ଡେଇଁଲା ବେଳେ ସେଥିରେ ପଡନ୍ତି ।

ହନୁମାଙ୍କଡ ବିଭିନ୍ନ ଅଞ୍ଚଳରେ ନିମ୍ନ ଲିଖିତ ନାମରେ ପରିଚିତ । ହିନ୍ଦି ଲଙ୍ଗୁର, ହନୁମାନ୍, ହିମାଳୟ- ଅଞ୍ଚଳରେ ପାହାଡି, ଡେନଢୋଆ; କୁମାଓନ ଅଞ୍ଚଳ ଗୁନି, ଲେପ୍ଚା ସାହୁକାବୁ. ଭୁଟିଆ-ପ୍ରୋପ୍ୟକା, ମାରଠୀ- ଓ୍ୱାନା, ଗୁଜରାଟି ଭଣ୍ଡୁ, କାନାରିଜ ମୁ (ଭ) ସୁ(ଭ)-ସୁସୁଓ ।, କୁର୍ଗ କୋଡେ; ତେଲଗୁ-କୁମୁଡା ମୁଚୁ, ତାମିଲ-କୋରୁଙ୍ଗୁ (ଭ) ବର୍ମିଜ ମିଅଉକ, ଇଂରାଜୀ Common langur, Hanuman monkey ।

ଏହାର ବୈଜ୍ଞାନିକ ନାମ Presbytis entellus ପୂର୍ବେ ଏହାର ନାମ ଥିଲା Semno pithecus entellus ।



# ଚତୁର୍ଥ ଅଧ୍ୟାୟ

# ବାଘ ଓ ସେମାନଙ୍କର ଜ୍ଞାତି

ବାଘ, ସିଂହ, କଲରା ପଟ୍ଟିଆ, ବାଘଟା, ବଣ ବିଲେଇ ଆଦି ଜନ୍ତୁ ମାଂସାଶୀ ଓ ଏକ ଶ୍ରେଣୀଭୁକ୍ତ । ପ୍ରାଣୀ-ବିଜ୍ଞାନ ବର୍ଗୀକରଣଅନୁସାରେ ଏମାନେ କାରନିଭୋର (Carnivora) ବର୍ଗ ଓ ଫେଲିଡି (Felidae) ଶ୍ରେଣୀ-ଅନ୍ତର୍ଭୁକ୍ତ । ଉପରଲିଖିତ ପ୍ରାଣୀ ମାନଙ୍କ ବ୍ୟତୀତ କୁକୁର, ଭାଲୁ, ବିଲୁଆ, ନେଉଳ, ଶାଳିଆ ପତିନି, କଟାଶ, ନେକେଡା ବାଘ, ଗଧିଆ, ସିଲ୍ ମାଛ, ସମୁଦ୍ର-ସିଂହ, ଓ୍ୱାଲରସ୍ ଆଦି ଜନ୍ତୁ କାରନିଭୋର ବର୍ଗର । ଏମାନଙ୍କର କର୍ତ୍ତନ ଦନ୍ତ ଉତ୍ତମ ଭାବେ ବର୍ଦ୍ଧିତ ନୁହେଁ, ଶ୍ୱାଦନ୍ତ ବଡ ଓ ମଜବୁତ ଏବଂ ମାଈମାନଙ୍କର ଉଦରରେ ସ୍ତନଥାଏ ଫେଲିଡି ଶ୍ରେଣୀର ଜନ୍ତୁ ମାନଙ୍କର ମୁଣ୍ଡ ଗୋଲ, ପାଟିରେ ୩୦ଟି ଦାନ୍ତ ଥାଏ, କର୍ତ୍ତନ ଦାନ୍ତ ବିଶେଷ ବଡ, ଅପେକ୍ଷା-କୃତ ଅଧିକ ତୀକ୍ଷ୍ଣ ଏବଂ ପାଦରେ ଥିବା ତୀକ୍ଷ୍ଣ ନଖ ଚାଲିଲା ବେଳେ ସଙ୍କୁଚିତ ହୋଇ ଖୋଳ ଭିତରେ ରହେ । କେବଳ ଚିତାବାଘର ପାଦର ନଖ ସଙ୍କୋଚନ ଶୀଳ ନୁହେଁ ।

ଯେଉଁ ପ୍ରାଣୀମାନେ ଅନ୍ୟପ୍ରାଣୀଙ୍କୁ ମାରି ଖାନ୍ତି, ସେମାନେ କ୍ଷିପ୍ର ଓ ବୁଦ୍ଧିମାନ ହେବା ସ୍ୱାଭାବିକ । ବାଘ, ସିଂହ, ପ୍ରଭୃତି ପ୍ରାଣୀମାନଙ୍କଠାରେ ଏହି ବିଶେଷ ଗୁଣଗୁଡିକ ଦେଖିବାକୁ ମିଳେ । ମନୁଷ୍ୟ ଓ ମନୁଷ୍ୟାକୃତି ବାନରମାନଙ୍କୁ ଛାଡିଦେଲେ, ବାଘ, ସିଂହ ଆଦି ଜନ୍ତୁମାନେ ପ୍ରାଣୀ-ରାଜ୍ୟରେ ସବୁଠାରୁ ଅଧିକ ବୁଦ୍ଧିମାନ । ଶିକାର ଦ୍ୱାରା ଜୀବନ ଧାରଣ କରୁଥିବାରୁ ଏମାନଙ୍କର ଶ୍ରବଣ, ଦୃଷ୍ଟିଶକ୍ତି ଓ ଘ୍ରାଣଶକ୍ତି ତୀକ୍ଷଣ । ବିଲେଇ, ବାଘ, ସିଂହ ପ୍ରଭୃତି ପ୍ରାଣୀମାନଙ୍କର ନିଶ ବେଶ୍ ବଡ । ଏମାନଙ୍କର ଅଗ୍ର ବାହୁରେ ମଧ୍ୟ ସେଇପରି ଶକ୍ତ ଲୋମଥାଏ । ଏ ସବୁ ସାହାଯ୍ୟରେ ସେମାନେ ଯାହା ସ୍ପର୍ଶ ଓ ଅନୁଭବ କରନ୍ତି ତାହାର ସଙ୍କେତ ସାଙ୍ଗେ ସାଙ୍ଗେ ସ୍ନାୟୁମାଧ୍ୟମରେ

ମସ୍ତିଷ୍କରେ ପହଞ୍ଚିଯାଏ । ସେମାନଙ୍କର ଶ୍ରବଣ-ଶକ୍ତି ଏତେ ପ୍ରଖର ଯେ ଶିକାର ଜୀବର ସାମାନ୍ୟ ସଞ୍ଚଳନ ତାଙ୍କୁ ଜଣା ପଡିଯାଏ । ବାୟୁମାଧ୍ୟମରେ ସାମାନ୍ୟ ଶବ୍ଦ ହେଲେ, କାନକୁ ଠିଆକରି ସେମାନେ ତାହା ଧରି ପାରନ୍ତି । କେଉଁ ଦିଗରୁ ଶବ୍ଦ ଆସୁଛି, ତାହା ମଧ୍ୟ ସେମାନେ ସଠିକ୍ ନିର୍ଣ୍ଣୟ କରି ପାରନ୍ତି । ବିରାଡିର ଘ୍ରାଣଶକ୍ତି କେତେ ପ୍ରବଳ, ତାହା ସମସ୍ତଙ୍କୁ ଜଣା । ମାଛ, ଦୁଧ, ଶୁଖୁଆ ଯେତେ ଲୁଚେଇ ରଖିଲେ ମଧ୍ୟ ସେ କେଉଁ ଛଟକରେ ଆସି ଖାଇ ଦେଇ ଚାଲିଯାଏ ଅନ୍ଧାରରେ ଶିକାର କରୁଥିବାରୁ ଏମାନଙ୍କର ଦୃଷ୍ଟି ଶକ୍ତି ତଦନୁସାରେ ଉପଯୋଗୀ । ଆଖିକୁ ନିୟନ୍ତ୍ରଣ କରୁଥିବା ମାଂସପେଶୀ ଉତ୍ତମ-ରୂପେ ବର୍ଦ୍ଧିତ ହୋଇଥିବାରୁ, ଅନ୍ଧାରରେ ଆଖିପୁଅ ଖୁବ୍ ବଡ ଓ ଦିନବେଳେ ବେଶି ଆଲୋକରେ ଖୁବ୍ ଛୋଟ ହୋଇଯାଏ । ବିଲେଇର ଆଖିପୁଅ ଦିନବେଳେ ସଙ୍କୁଚିତ ହୋଇ ଏକ ଲମ୍ବ ଫାଟ ପରି ଦେଖାଯାଏ । ବାଘ, ସିଂହ, କଲରାପତ୍ରିଆ ପରି ବଡ ଜନ୍ତୁ ମାନଙ୍କର ଆଖିପୁଅ ଦିନବେଳେ ସଂକୁଚିତ ହୋଇ ଏକ କ୍ଷୁଦ୍ର ଗୋଲ କଣା ପରି ହୋଇଯାଏ । ସାଧାରଣତଃ ବିଶ୍ୱାସ କରାଯାଏ, ଶିକାର କଲାବେଳେ, ବିଲେଇ, ବାଘ, ସିଂହ ଆଦି ପ୍ରାଣୀମାନେ ଦୃଷ୍ଟି ଓ ଶ୍ରବଣ ଶକ୍ତି ଏବଂ କୁକୁରମାନେ ଘ୍ରାଣ ଶକ୍ତି ଉପରେ ନିର୍ଭର କରନ୍ତି । ଶିକାର-ଜନ୍ତୁ ପିଛା ଧରିଥିଲା ବେଳେ ସିଂହ ବିଶେଷ କରି ଘ୍ରାଣ ଶକ୍ତି, ବାଘ ଓ କଲରାପତ୍ରିଆ ଦୃଷ୍ଟି ଓ ଶ୍ରବଣ ଶକ୍ତି ଦ୍ୱାରା ଚାଳିତ ହୁଅନ୍ତି । ପ୍ରକୃତପକ୍ଷେ ଶିକାର କଲାବେଳେ ଏହି ଜନ୍ତୁମାନେ ସେମାନଙ୍କର କେଉଁ କେଉଁ ଇନ୍ଦ୍ରିୟ ଦ୍ୱାରା ପରିଚାଳିତ ହୁଅନ୍ତି ତାହା ନିର୍ଣ୍ଣୟ କରିବା ସହଜସାଧ୍ୟ ନୁହେଁ ।

ଅତର୍କିତଭାବରେ ଶିକାରକୁ ଆକ୍ରମଣ କରିବା ଶିକାରୀର ମୁଖ୍ୟ କୌଶଳ । ବାଘ, କଲରାପତ୍ରିଆ, ବିଲେଇ ଆଦି ପ୍ରାଣୀମାନେ ଲୁଚି ଲୁଚି ଶିକାର ପିଛା କରନ୍ତି ବା ଲୁଚି ବସି ଶିକାର ପାଇଁ ଅପେକ୍ଷା କରନ୍ତି ସେ ଆସି ନିକଟରେ ପହଞ୍ଚିଲେ ବିଦ୍ୟୁତ୍ ବେଗରେ ତା' ଉପରେ ଚଢାଉ କରନ୍ତି । ଏହି ଶିକାରୀ ଜନ୍ତୁ ମାନଙ୍କର ପଦଚିହ୍ନ ପରୀକ୍ଷା କଲେ କେବଳ ମାତ୍ର ଚାରିଟି ଆଙ୍ଗୁଳି ଓ ତା' ପଛରେ ଥିବା ଗଦିର ଛାପ ଦେଖିବାକୁ ମିଳେ । ଏମାନଙ୍କ ଖୋଜରେ ଗୋଇଠିର ଚିହ୍ନ ଦେଖାଯାଏ ନାହିଁ । ଏହାର କାରଣ ଏହି ଯେ ଏମାନେ ଅଙ୍ଗୁଳି ଉପରେ ଭର ଦେଇ ଚାଲନ୍ତି । ଗୋଇଠି ଭୂମିରେ ନ ଲାଗି

ଠିଆ ହେବା ଫଳରେ ଦେହର ଭାରସାମ୍ୟ ବଦଳିଯାଏ, ଦେହ ଆଗକୁ ଉହୁଙ୍କି ଯାଏ ଓ ଗତି କ୍ଷିପ୍ର ହୁଏ । ଠିକ୍ ସେହି କାରଣରୁ ଦୌଡ଼ା ପ୍ରତି-ଯୋଗିତାରେ ଆମର ଖେଳାଳୀମାନେ ଅଙ୍ଗୁଳି ଉପରେ ଭରଦେଇ "ଷ୍ଟାର୍ଟ" ନେଇଥାନ୍ତି । ବାଘ ଓ ସେମାନଙ୍କର ଜ୍ଞାତିମାନଙ୍କର ଆଗ ଗୋଡରେ ପାଞ୍ଚଟି ଓ ପଛ ଗୋଡରେ ଚାରିଟି କରି ଅଙ୍ଗୁଳି । ଆଗ ଗୋଡରେ ଯେଉଁ ଅଙ୍ଗୁଳି ଆମର ବୁଢ଼ା ଆଙ୍ଗୁଠି ସହିତ ତୁଳନୀୟ ଅନ୍ୟ ଗୁଡ଼ିକ ତୁଳନାରେ ପାଦର ଟିକିଏ ଉପରକୁ ଥିବାରୁ ଭୂମିରେ ଚାଲିଲା ବେଳେ ତା'ର ଛାପ ପଡ଼େନାହିଁ । ପାଦତଳେ ମୋଟ ଗଦି ଥିବାରୁ ଚାଲିଲାବେଳେ ଆଦୌ ଶବ୍ଦ ହୁଏ ନାହିଁ । ବିଲେଇ ଚାଲିଲାବେଳେ ଦୁଇ ପାଖର ଗୋଡ ଏକା ସାଙ୍ଗରେ କ୍ରିୟାଶୀଳ ହୁଅନ୍ତି । ଅର୍ଥାତ୍ "ଆଗ ପାଦ ଯେଉଁଠି ପଡ଼ିଥାଏ, ପଛ ପାଦ ସେଇଠି ପଡ଼େ । ବିରାଡ଼ିର ପଦ ଚିହ୍ନକୁ ପରୀକ୍ଷା କଲେ ମନେ ହେବ, ଯେପରିକି ପ୍ରାଣୀଟିର ଦୁଇଟି ପାଦ । ସାଧାରଣ ଗତିବେଳେ ବାଘର ଚାରିଟି ଖୋଜ ଦେଖିବାକୁ ମିଳେ । ମାତ୍ର ଯେଉଁଠି ଧୀର ପଦକ୍ଷେପରେ ଗତି କରି ସ୍ଥିର ସଂକଳ୍ପ ସହ ଶିକାରଜନ୍ତୁ ଉପରେ ଚଡ଼ାଉ କରିଛି, ସେଠି କେବଳ ଦୁଇଟି ଖୋଜ ପଡ଼ଥାଏ । ବିଲେଇର ବା ବାଘର ଶିକାର ବେଳର ଏହି ଗତିକୁ "ଭସାଣିଆ ଗତି" ବୋଲି କୁହାଯାଇ ପାରେ । ସେତେବେଳେ ସେମାନେ ଭାସିଗଲା ପରି ଗତି କରିବାରୁ ମାତ୍ର ଦୁଇଟି ଖୋଜର ଚିହ୍ନ ଦେଖିବାକୁ ମିଳେ ।

ଠିଆ ରହିଥିବା ଶିକାର ଜନ୍ତୁକୁ ବାଘ ଦୁଇ ପ୍ରକାରେ ମାରେ । ଗୋଟିଏ ହେଲା, ପାଦ ଚିପି ଚିପି ଆସି ବା ହଠାତ୍ ଆକ୍ରମଣ କରି ସେ ତାକୁ ତଣ୍ଟି ପାଖରେ କାମୁଡ଼ିଧରି ସବେଗରେ ଝିଙ୍କି ଦେବାରୁ ଶିକାର ପ୍ରାଣୀ ମୁଣ୍ଡ ତଳକୁ କରି ପଡ଼ିଯାଏ ଓ ତା'ର ପ୍ରାଣ ବାୟୁ ବାହାରି ଯାଏ । ଅନ୍ୟ ପ୍ରଣାଳୀଟି ହେଲା, ପଛ ଦୁଇ ଗୋଡରେ ଠିଆ ହୋଇପଡ଼ି ବାଘ ବେକକୁ କାମୁଡ଼ି ଧରେ, ଗୋଟିଏ ଗୋଡରେ ମୁଣ୍ଡ ଓ ବେକ ଉପରେ ଚାପ ଦିଏ ଓ ଅନ୍ୟ ଗୋଡରେ ଥୋମଣିକୁ ଧରି ଭୂଇଁକୁ ମାଡ଼ିଦିଏ । ଆକ୍ରମଣର ବେଗ ଓ ଭୀଷଣତା ଫଳରେ ଶିକାର ଜୀବର ଶ୍ୱାସ ରୁଦ୍ଧହୋଇ ମୃତ୍ୟୁ ଘଟିବା ସଂଗେ ସଙ୍ଗେ ଅନେକ ସମୟରେ ବେକ ମୋଡ଼ି ହୋଇ ଭାଙ୍ଗିଯାଏ । ଶିକାର

ପ୍ରାଣୀ ଯଦି ଦୌଡ଼ୁଥାଏ, ତାହାହେଲେ ବାଘ ତା' ଉପରକୁ କୁଦି ପଡ଼ ଦାନ୍ତ ଓ ନଖ ସାହାଯ୍ୟରେ ଝାପଟି ଧରେ ଓ ତଳେ ପକାଇ ଦିଏ । ଆଉ ଏକ ଉପାୟରେ ମଧ୍ୟ ବାଘ ଶିକାର କରିପାରେ । ସେ ମଇଁଷି ବା ଗୟଳ ପରି ବଡ ଜନ୍ତୁଉପରକୁ ଡେଇଁ ପଡି ତା'ର ପଛ ଗୋଡର ଆଣ୍ଠୁ ଉପରକୁ କାମୁଡି ବିଦାରି ଅଚଳ କରିଦିଏ । ଫଳରେ ଶିକାର ଜନ୍ତୁ ଆଉ ଦୌଡି ପଳାଇ ଯାଇ ପାରେ ନାହିଁ କି ଲଢି ପାରେ ନାହିଁ । ଆମ ଭରତରେ ବାଘମାନେ ଶିକାର ଜୀବକୁ ସାଧାରଣତଃ ଏପରି ଆକ୍ରମଣ କରନ୍ତି ନାହିଁ, ମାତ୍ର ବର୍ମାରେ ବାଘମାନେ ବେଶୀଭଗ ଏଇପରି ଶିକାର ଜୀବକୁ ଆକ୍ରମଣ କରିଥାନ୍ତି ।

ବାଘ, ବିଲେଇ ପ୍ରଭୃତି ହିଂସ୍ର ଜନ୍ତୁମାନଙ୍କର ନଖ ଆକ୍ରମଣ କରିବା ପାଇଁ ଏକ ପ୍ରଧାନ ଅସ୍ତ୍ର । ଏମାନଙ୍କର ନଖ ଶକ୍ତ ଓ ବଙ୍କା । ଚ୍ଲିଲା ବେଳେ



ପେଶୀରଜ୍ଜୁ (ଟେଣ୍ଡନ)ର ଆକର୍ଷଣ



ଲିଗାମେଣ୍ଟର ସଙ୍କୋଚନ

ଚିତ୍ର ନମ୍ବର 12 ବାଘର ନଖର (ନିମ୍ନଚିତ୍ର) ପଦାଙ୍ଗୁଳିର ଶେଷ ଅସ୍ଥି ଗୁଡ଼ିକ ସହିତ ନଖର ଲଗିଥାଏ । ଇଲାସଟିକ ଲିଗାମେଣ୍ଟ ସଙ୍କୁଚିତ ହେଲେ ନଖ ପଛଆଡକୁ ଉଠିଯାଏ ଫଳରେ ଚ୍ଲିଲା ବେଳେ ନଖରତଳେ ଘସିହୋଇ ଥୁଣ୍ଟା ହୋଇଯାଏ ନାହିଁ । (ଉପର ଚିତ୍ର)

ପଦର ଏକ ମାଂସପେଶୀ ସଙ୍କୁଚିତ ହେବାରୁ, ସେଥି ସହିତ ସଂଯୁକ୍ତ ପେଶୀଗଢ଼କୁ କ୍ରିୟାଶୀଳ ହୁଏ ଓ ପଦାଙ୍ଗୁଳିର ଶେଷ ଅସ୍ଥି ସମୂହ ଆଗକୁ ପ୍ରସାରିତହୁଏ । ନଖର ବାହାରି ପଡିବାରୁ ଖାଦ୍ୟ ପ୍ରାଣୀକୁ ଧରିବା ବା ଗଛ ଚଢ଼ିବାରେ ସୁବିଧା ହୁଏ ।

ନଖ ଭୂମିରେ ଲାଗୁ ନଥିବାରୁ ଏ ଗୁଡିକ ଘୋରି ଥୁଣ୍ଟା ହୋଇଯାଏ ନାହିଁ । ସାଧାରଣ ଅବସ୍ଥାରେ ନଖ ଅଙ୍ଗୁଳି ଉପରକୁ ଓଲଟି ରହିଥାଏ ଓ ଖୋଲ ଭିତରେ ଥାଏ ଆକ୍ରମଣବେଳେ ନଖ ପଞ୍ଜାକୁ ବାହାରି ଆସେ । ଶିକାର ବେଳେ ଆଘାତ କରିବା ଓ ଜାବୁଡିବା ପାଇଁ ନଖ ବ୍ୟବହୃତ ହୁଏ ଏବଂ କାମୁଡି ଧରିବା ପାଇଁ ପାଟି ବ୍ୟବହୃତ ହୁଏ । ଏତେବେଳେ ଶ୍ୱାଦନ୍ତ ବିଶେଷ କାର୍ଯ୍ୟକାରୀ ହୋଇଥାଏ । ସେ ଗୁଡିକ କେବଳ ଯେ ବଡ ଓ ଶକ୍ତ ତା' ନୁହେଁ, ଅନ୍ୟଦାନ୍ତ ଗୁଡିକଠାରୁ ବେଶ ଛଡାରେ ଅବସ୍ଥିତ । ଏହାର ତାତ୍ପର୍ଯ୍ୟ



ଚିତ୍ର ନମ୍ବର 13 ବାଘର କଙ୍କାଳଗଟି

ଏହି ଯେ, ବଳିଷ୍ଠ ଶ୍ୱାଦନ୍ତ କାର୍ଯ୍ୟ କଲବେଳେ ଅନ୍ୟ ଦାନ୍ତର ଉପସ୍ଥିତି ବାଧା ସୃଷ୍ଟି କରିବ ନାହିଁ । ଉପର ଓ ତଳ ପାଟି ବନ୍ଦ ହେଲେ ଉପର ତଳ ହୋଇ ରହିଥିବା ଚାରିଟି ଶ୍ୱାଦନ୍ତ ଛନ୍ଦି ହୋଇଯାଏ । ଏଣୁ ବାଘ ପାଟି ଆଁ କରି କାମୁଡି ଧରିଲେ ଶିକାର ଜୀବର ମାଂସ ମଧ୍ୟରେ ଶ୍ୱାଦନ୍ତ ପଙ୍କ୍ତି ଶକ୍ତ ଭାବେ ଛନ୍ଦି ହୋଇଯାଏ ।

କୁକୁର, ଭାଲୁ ପ୍ରଭୃତି ପ୍ରାଣୀମାନଙ୍କ ତୁଳନାରେ ବାଘ, ବିଲେଇ ପ୍ରାଣୀମାନଙ୍କ ପାଟିରେ ଅପେକ୍ଷାକୃତ କମ୍ ସଂଖ୍ୟକ ଦାନ୍ତ ଦେଖାଯାଏ । କୁକୁର ଓ ଭାଲୁଙ୍କ ପାଟିରେ 42ଟି ଦାନ୍ତ ଥିଲାବେଳେ ବାଘ ବିଲେଇଙ୍କ ପାଟିରେ ମୋଟ ଦାନ୍ତ ସଂଖ୍ୟା 30ଟି । ଉପର ପାଟିରେ କର୍ତ୍ତନ ବା ଛାମୁଦାନ୍ତ ଛଅ, ଶ୍ୱାଦନ୍ତଦୁଇ, ଚର୍ବଣଦନ୍ତ ଛଅ ଓ ପେଷଣଦନ୍ତ ଦୁଇ । ପାଟିର ପ୍ରତି ପାଖ ହିସାବ କଲେ ( ଉପର ପାଟିର ବାମ ବା ଡାହାଣ ପାଖ ) ଦାନ୍ତର ସଂଖ୍ୟା ହେବ 3,1,3,1, । ତଳ ପାଟିର ଗୋଟିଏ ପାଖର ଅନୁରୂପ ଦାନ୍ତ ସଂଖ୍ୟା ଯଥାକ୍ରମେ 3,1,2,1, । ସାଧାରଣତଃ ଯେଉଁ ପ୍ରାଣୀମାନଙ୍କର କଳଦାନ୍ତର ସଂଖ୍ୟା ବେଶୀ ଓ ଓସାରିଆ, ସେମାନଙ୍କର ଖାଦ୍ୟ ମିଶ୍ରିତ ଅର୍ଥାତ ମାଂସ ଓ ଉଦ୍ଭିଦଜାତ ପଦାର୍ଥ ଉଭୟ ସେମାନଙ୍କର ଆହାର । ମାଂସକୁ ପେଷଣ କରି ଖାଇବାପାଇଁ ବାଘ ବିଲେଇଙ୍କର ପ୍ରତି ପାଟିର ପ୍ରତି କଡ଼ରେ ମାତ୍ର ଗୋଟିଏ କରି ପେଷଣଦାନ୍ତ ଅଛି । ଏହା ସେମାନଙ୍କର "ମାଂସ-ଖିଆ" (Carnassial) ଦାନ୍ତ । ବାଘପରି ପୂର୍ଣ୍ଣ ମାଂସାଶୀ ପ୍ରାଣୀମାନଙ୍କର ଏହି ଦାନ୍ତ ବଡ଼ ଓ ମାଂସ ପେଷିବା ପାଇଁ ଉପଯୋଗୀ । ଦାନ୍ତର ସଂଖ୍ୟା କମିଯିବାରୁ ବାଘ, ବିଲେଇଙ୍କର ପାଟି-ହାଡ ଅପେକ୍ଷାକୃତ ଅଳ୍ପ ଲମ୍ବା ଓ ଅଧିକ ଶକ୍ତ । ଆମେ ଖାଦ୍ୟ ଚୋବାଇବା ବେଳେ ଆଗକୁ ପଛକୁ କଡ଼ରୁ ଭିତରକୁ ବା ଭିତରୁ କଡ଼କୁ ଚୋବାଇ ପାରୁଁ । ମାତ୍ର ବାଘ ବିଲେଇଙ୍କର ତଳ ପାଟି ଉପରପାଟି ସହିତ ଏପରି ଖଞ୍ଜା ଯେ, ସେମାନଙ୍କର ଦାନ୍ତ ଉପର ତଳ ହୋଇ କାର୍ଯ୍ୟ କରେ ଓ ମଟ୍ ମାଟ୍ କଡ଼୍ କାଡ଼୍ କରି କାମୁଡ଼ି ଭାଙ୍ଗିବା କ୍ରିୟା ପାଇଁ ଉପଯୋଗୀ । ମାଂସଖିଆ' ଦାନ୍ତ ମାଂସକୁ କାଟି ପକାଇବାରେ ଓ ଶକ୍ତ ଖାଦ୍ୟକୁ ମଡ଼ମାଡ଼୍ କରି ଭାଙ୍ଗି ପକାଇବାରେ ବିଶେଷ ସାହାଯ୍ୟ କରେ । ଛଅଟି କ୍ଷୁଦ୍ର ଛାମୁଦାନ୍ତ ବା କର୍ତ୍ତନଦାନ୍ତ ସାହାଯ୍ୟରେ ବାଘ ଓ ବିଲେଇ ହାଡ଼ ଖଣ୍ଡର ଶେଷଭାଗରେ ଲାଗିଥିବା ଅପେକ୍ଷାକୃତ କୋମଳାସ୍ଥି ଓ ମାଂସ ରଜ୍ଜୁକୁ କୁଟ୍ କୁଟ୍ କରି କାଟି ଖାଆନ୍ତି ।

ହାଡ଼ଦେହରେ ଯେଉଁ ସାମାନ୍ୟ ମାଂସ ଲାଗିଥାଏ ତାକୁ ମଧ୍ୟ ଘଷି ଚଟି ସଫା କରିଦେବାରେ ବାଘ ବିଲେଇ ବେଶ୍ ପାରଙ୍ଗମ । ଏମାନଙ୍କର ଜିଭ କର୍କଶ । ଜିଭ ସାହାଯ୍ୟରେ ଆମେ ଖାଦ୍ୟର ସ୍ୱାଦ ବାରୁଁ ।

ବାଘ ବିଲେଇଙ୍କ ଜିଭରେ ଥିବା ସ୍ୱାଦଗ୍ରନ୍ଥି ଛୋଟ ଓ ପ୍ରାନ୍ତରେ ଅବସ୍ଥିତ । ସେମାନେ ଆମପରି ଖାଦ୍ୟର ସ୍ୱାଦ ବାରି ପାରନ୍ତି ନାହିଁ । ମଲା ବାଘର ଜିଭ ଉପରେ ଅଙ୍ଗୁଳି ସଞ୍ଚାଳନ କଲେ ସେଥିରେ ଥିବା ଆଂଶୁ ପିନ୍ କଣ୍ଟା ପରି ଗଳିଯାଏ ।

ସିଂହର ବର୍ଣ୍ଣ ମସିଆ ବାଦାମୀ, ବାଘ ଦେହ ବାଦାମୀ ଓ ତା' ଉପରେ ପଟା ପଟା କଳା ଦାଗ ପଡିଥାଏ, କଲରାପତ୍ରିଆ ବାଘର ଦେହ ହଳଦିଆ ଓ ତା'ଉପରେ ପତ୍ର ପରି କଳା ଚିହ୍ନଥାଏ, ବଣବିଲେଇର ରଙ୍ଗ ପାଉଁଶିଆ ବାଦାମୀ ଓ ଲାଞ୍ଜରେ କଳା ଡୋରିଆ ଚିହ୍ନଥାଏ । ସିଂହଛୁଆର ଦେହରେ କଳା ଡୋର ବା ଚିହ୍ନ ଥାଏ, ବଡହେଲେ ଉଭେଇ ଯାଏ । ଏ ସବୁ ବର୍ଣ୍ଣ ଗଛ ଆଢୁଆଳରେ ଆତ୍ମଗୋପନ କରିବା, ଦିନରେ ବା ରାତିରେ ଜଙ୍ଗଲର ଅଧା–ଆଲୁଅ ଅଧା-ଛାଇରେ ଅଲକ୍ଷିତରେ ଗତି କରିବାଲାଗି ଉପଯୋଗୀ । ସ୍ଥାନ, ଜଳବାୟୁ ଓ ଅନ୍ୟାନ୍ୟ କାରଣଦ୍ୱାରା ପ୍ରାଣୀର ବର୍ଣ୍ଣ ପ୍ରଭାବିତ ହୋଇଥାଏ । କାଶ୍ମୀରର ଥଣ୍ଡା ଓ ଶୁଷ୍କ ଜଳବାୟୁରେ ବାସ କରୁଥିବା କଲରା-ପତ୍ରିଆର ବର୍ଣ୍ଣ ଧୂସର, ସିନ୍ଧ୍ର ମରୁଭୂମି ଅଞ୍ଚଳର କଲରାପତ୍ରିଆର ବର୍ଣ୍ଣ ବାଲି ରଙ୍ଗ । ପୁଣି ଯେଉଁଠି ଉତ୍ତାପ ବେଶୀ, ଆର୍ଦ୍ରତା ବେଶୀ ଓ ଆଲୁଅ କମ୍ ସେଭଳି ଅଞ୍ଚଳରେ ସେମାନଙ୍କର ବର୍ଣ୍ଣ ଘନ କଳା । ସେହି କାରଣରୁ ମାଲୟର ଦକ୍ଷିଣକୁ ଥିବା ଜଙ୍ଗଲମାନଙ୍କରେ ଯେଉଁ କଲରାପତ୍ରିଆ ଦେଖାଯାନ୍ତି, ସେଥିରୁ ଅଧିକାଂଶ କଳା । ଶୁଷ୍କ ଜଳବାୟୁ ଓ ତୀବ୍ର ଆଲୁଅ ପାଉଥିବା ଅଞ୍ଚଳରେ କଲରା-ପତ୍ରିଆ ହଳଦିଆ-ବାଦାମୀ ହୁଅନ୍ତି ।

## ଆଦି ବାସ ସ୍ଥାନ

ବାଘ ଓ କଲରାପତ୍ରିଆ ଆମ ଜଙ୍ଗଲର ପ୍ରଧାନ ହିଂସ୍ର ଜନ୍ତୁ । ସିଂହ ବର୍ତ୍ତମାନ କେବଳ ସୌରାଷ୍ଟ୍ରରେ ଜୁନାଗଡ ରାଜ୍ୟର ଗିରି ଜଙ୍ଗଲରେ ଦେଖିବାକୁ ମିଳେ । ଆମେ ଏମାନଙ୍କ ସହିତ ଅତି ପରିଚିତ ହେଲେହେଁ ଏମାନଙ୍କର ସାବକ ଘର ଭାରତ ନୁହେଁ । ବାଘଙ୍କର ପ୍ରଥମ ବଂଶଧର ମାନଙ୍କର ଫସିଲ (ଜୀବାଶ୍ମ) ଉତ୍ତର ମେରୁ ଅଞ୍ଚଳର ନୂତନ ସାଇବେରୀୟ ଦ୍ୱୀପପୁଞ୍ଜ (New Siberian Islands)ରୁ ମିଳିଅଛି । ଅତୀତକାଳରେ ମଧ୍ୟ ଓ

ଉତ୍ତର ଏସିଆର ବିସ୍ତୀର୍ଣ୍ଣ ଭୂଖଣ୍ଡ ଘନାରଣ୍ୟାମୟ ଥିଲା ଓ ଜଳବାୟୁ ଅନୁକୂଳ ଥିଲା । ଜଙ୍ଗଲରେ ବଲ୍‌ଗା ହରିଣ, ଏଲକ୍ ଗୟଳ ଓ ଅନ୍ୟାନ୍ୟ ହରିଣଜାତୀୟ ପ୍ରାଣୀ ବହୁ ସଂଖ୍ୟାରେ ବାସ କରୁଥିଲେ । ବାଘ ଓ କଲରାପତ୍ରିଆ ମଧ୍ୟ ସେ ସବୁ ଜଙ୍ଗଲରେ ବହୁ ସଂଖ୍ୟାରେ ଦେଖାଯାଉ ଥିଲେ । ଅମୁରଲଣ୍ଡ, କୋରିଆ, ସାଇବେରିଆର ପୂର୍ବାଞ୍ଚଳ, ମଙ୍ଗୋଲିଆ ଓ ମାଞ୍ଚୁରିଆରେ ଏବେ ମଧ୍ୟ ବାଘ ଦେଖାଯାନ୍ତି । ପ୍ରାଣୀ ବିଜ୍ଞାନବିତ୍ ମାନଙ୍କ ମତରେ ମଧ୍ୟ ଓ ଉତ୍ତର ଏସିଆ ବାଘ ଓ କଲରାପତ୍ରିଆଙ୍କର ଆଦିଜନ୍ମଭୂମି । କାଳକ୍ରମେ ସେଠାରୁ ବିଭିନ୍ନ ସ୍ଥାନକୁ ଯାଇ ଏମାନେ ଅନୁକୂଳ ଜଳବାୟୁ ଓ ଖାଦ୍ୟପ୍ରାଣୀ ପାଇ ବସବାସ କଲେ ।




ଚିତ୍ର ନମ୍ବର 14, ଅତୀତ କାଳରେ ବ୍ୟାଘ୍ରର ବାସଭୂମି ତୁର୍କୀଠାରୁ ଚୀନ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ଅତୀତରେ ୟୁରୋପର ବହୁ ଅଞ୍ଚଳରେ ବାଘ ବାସ କରୁଥିଲେ । ପଶ୍ଚିମରେ କକେସସ୍ ଓ ଏଲବୁରୁଜ୍ ପର୍ବତମାଳାର ପୂର୍ବଉପତ୍ୟକାପର୍ଯ୍ୟନ୍ତ ଅଞ୍ଚଳ ଏମାନଙ୍କର ବାସ ଭୂମି ଥିଲ । ଜଳବାୟୁର ପରିବର୍ତ୍ତନ ହେତୁ, ଅର୍ଥାତ୍ ବେଶି ଥଣ୍ଡା ପଡ଼ିବାରୁ ବାଘ ପୂର୍ବ ଓ ଦକ୍ଷିଣାଞ୍ଚଳକୁ ମୁହେଁଇବାକୁ ଲାଗିଲେ । ଅମୁରଲାଣ୍ଡ, ମାଞ୍ଚୁରିଆ ଓ କୋରିଆ ଦେଇ ଏମାନେ ଆନାମ୍, କୋଚିନ୍-ଚାଇନା, ଶ୍ୟାମ ଓ ମାଲୟ ଉପତ୍ୟକାରେ ବସା ବାନ୍ଧିଲେ । ଥୋକେ ଉତ୍ତରକୁ ଗତି କରି ଆସାମର ପର୍ବତମାଳା ବାଟେ ଭରତବର୍ଷ ଭିତରେ ପଶିଲେ । ପ୍ରଥମେ ଏମାନେ ହିମାଳୟର ଜଙ୍ଗଲରେ ବସବାସ କରି କ୍ରମେ ଭରତର ଅଧିକାଂଶ ଅଞ୍ଚଳର ଜଙ୍ଗଲରେ ଯାଇ ରହିଲେ । ମାଲୟ ଉପତ୍ୟକାରୁ ଥୋକେ ଆହୁରି ଦକ୍ଷିଣକୁ ଗତିକରି ଜାଭ ଓ ସୁମାତ୍ରା ଦ୍ୱୀପର ଜଙ୍ଗଲରେ ରହିଲେ ।




ଚିତ୍ର ନମ୍ବର 15. ଅତୀତ କାଳରେ କଲରପଡ଼ିଆ ବାଘର ବିସ୍ତୃତି

ବାଘପରି କଲରାପତ୍ରିଆ ମଧ୍ୟ ଜଳବାୟୁର ପରିବର୍ତ୍ତନ ହେତୁ କ୍ରମେ ଅମୁରଲାଣ୍ଡ, ମାଞ୍ଚୁରିଆ ଓ କୋରିଆ ଦେଇ ଆସାମ ଚାଇନା, ଶ୍ୟାମ ଓ ମାଲୟ ଉପତ୍ୟକାକୁ ଚାଲିଆସି ବସବାସ କରିବାକୁ ଲାଗିଲେ ସେଠାରୁ ଦକ୍ଷିଣକୁ ଯାଇ ଜାଭା ଓ ସୁମାତ୍ରା ଦ୍ୱୀପରେ ମଧ୍ୟ ବସତି କଲେ । ସାହାରା ମରୁଭୂମିକି ଛାଡ଼ି ଆଫ୍ରିକାର ପ୍ରାୟ ସମଗ୍ରଅଞ୍ଚଳରେ କଲରାପତ୍ରିଆ ଦେଖାଯାନ୍ତି । ଏମାନେ ଆସାମ ବାଟେ କିମ୍ବା ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳ ବାଟେ ଭାରତକୁ ଆସିଲେ ତାହା ସଠିକ୍ ଜଣା ପଡ଼େନାହିଁ । ତେବେ ବାଘ ଆସିବା ପୂର୍ବରୁ ଏମାନେ ଭାରତକୁ ଆସିଥିବା ପରି ମନେହୁଏ । କାରଣ ବାଘ ସିଂହଳରେ ଦେଖାଯାନ୍ତି ନାହିଁ, ମାତ୍ର କଲରାପତ୍ରିଆ ସେଠାରେ ଦେଖାଯାନ୍ତି । ସିଂହଳ ଭାରତରୁ ବିଚ୍ଛିନ୍ନ ହେବା ଆଗରୁ ଏମାନେ ନିଶ୍ଚୟ ଭାରତରେ ବିସ୍ତୃତି ଲାଭ କରିଥିଲେ । ବାଘଟା (leopard cat) ମଧ୍ୟ କଲରାପତ୍ରିଆ ପରି ମଧ୍ୟ ଓ ଉତ୍ତର ଏସିଆରୁ ଏ ଦେଶକୁ ଆସିଛି; ମାତ୍ର ସେମାନେ ସିଂହଳରେ ଦେଖାଯାନ୍ତି ନାହିଁ ।

ସିଂହର ଫସିଲ ଇଂଲଣ୍ଡ, ଫ୍ରାନସ୍ ଏବଂ ଜର୍ମାନୀରେ ମିଳିଛି । ଏଥିରୁ ମନେହୁଏ, ପ୍ରାଗୈତିହାସିକ ଯୁଗରେ ସିଂହ ସମଗ୍ର ମଧ୍ୟ–ୟୁରୋପରେ ବିଚରଣ କରୁଥିଲେ । ଐତିହାସିକ କାଳରେ ମଧ୍ୟ ଗ୍ରୀସ୍‌ରେ ସିଂହ ବାସ କରୁଥିବାର ପ୍ରମାଣ ମିଳେ । ୟୁରୋପରୁ ସିଂହ ଉତ୍ତର ପଶ୍ଚିମ ଏସିଆ ଅଞ୍ଚଳକୁ ଆସିଲେ । ସେଠାରୁ ପଶ୍ଚିମକୁ ଗତି କରି ସମଗ୍ର ଆଫ୍ରିକା ମହାଦେଶରେ ବାସକଲେ । ବାଇବଲ୍ ଯୁଗରେ ଏମାନେ ଏସିଆ ମାଇନର ଓ ପାଲେଷ୍ଟାଇନ୍ ଅଞ୍ଚଳରେ ପ୍ରଚୁର ଥିଲେ ବୋଲି ଜଣା ପଡ଼େ । କ୍ରମେ ଏଠାରୁ ଯାଇ ସେମାନେ ମେସୋପୋଟାମିଆ, ପାରସ୍ୟ (ଇରାନ) ଓ ବେଲୁଚିସ୍ତାନରେ ବାସ କଲେ । ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳର ପାର୍ବତ୍ୟ ପଥରେ ଏମାନେ ଭାରତରେ ପଶିଲେ । ଅତୀତରେ ସିଂହ ସମଗ୍ର ଉତ୍ତର ଓ ମଧ୍ୟ-ଭାରତରେ ବାସ କରୁଥିଲେ । ସିନ୍ଧୁଠାରୁ ବଙ୍ଗଳା, ସିନ୍ଧୁ ଓ ଗଙ୍ଗା ନଦୀଠାରୁ ନର୍ମଦାନଦୀ-ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳ ସିଂହର ବାସଭୂମି ଥିଲା । ମାତ୍ର ପଶୁରାଜ ସିଂହ, ବାଘ ସହିତ ପ୍ରତିଦ୍ୱନ୍ଦିତାରେ ପାରି ଉଠିଲା ନାହିଁ । କାରଣ ବାଘ ଲୁଚି ଛପି ଶିକାର କରେ, ସିଂହ ଗର୍ଜନ ଦ୍ୱାରା ଉପସ୍ଥିତ ଜଣାଇ ଶିକାର ଜନ୍ତୁ ଉପରେ



ଚିତ୍ର ନମ୍ବର 16, ଅତୀତ କାଳର ସିଂହର ବିସ୍ତୃତି ।

ଆକ୍ରମଣ କରେ । ଜଣେ ସୈନ୍ୟ ପରି ଆସେ, ଅନ୍ୟଟି ରଜାପରି ଆସେ । ଏଣୁ ଜୀବନ-ସଂଗ୍ରାମରେ ସିଂହ ହାରିଗଲା । ଚାରି ଛଅଟି ବାଘ ଏକାଠି ହୋଇ ଗୋଟିକିଆ ସିଂହ ଉପରେ ଆକ୍ରମଣ କରି ତାକୁ ମାରି ଖାଇ ପକାନ୍ତି । ସେହି କାରଣରୁ ସିଂହର ଚରଭୂଇଁ କ୍ରମେ ସଂକୁଚିତ ହୋଇଗଲା । ଏବେ

ସେ ସଂରକ୍ଷିତ ପ୍ରାଣୀରୂପେ ଗିର ଜଙ୍ଗଲରେ ବଞ୍ଚି ରହିଛି, ନ ହେଲେ କେବ-ଠାରୁ ଭରତରୁ ଲୋପ ପାଇ ସାରନ୍ତାଣି । ଯେଉଁ ସିଂହ ଦିନେ ୟୁରୋପ, ଆଫ୍ରିକା, ମଧ୍ୟପ୍ରାଚ୍ୟ ଓ ଭରତରେ ଆଧିପତ୍ୟ ବିସ୍ତାର କରିଥିଲା, ତାହା ବର୍ତ୍ତମାନ କେବଳ ମରୁଭୂମି ଅଞ୍ଚଳରେ ଯାଇ ବାସ କରୁଛି । କାରଣ ସେଠିକି ବାଘ ଯିବ ନାହିଁ । ବାଘପାଇଁ ଘନ ଜଙ୍ଗଲ ଏବଂ ପିଇବା ପାଇଁ ଯଥେଷ୍ଟ ପାଣି ଆବଶ୍ୟକ । କେବଳ ବାଘ ସହିତ ପ୍ରତିଦ୍ୱନ୍ଦିତାରେ ନପାରିବାରୁ ସିଂହର ଯେ ଆଜି ଏ ଦଶା ହୋଇଛି ତା' ନୁହେଁ । ସିଂହମାନେ ଦଳବାନ୍ଧି




ଚିତ୍ର ନମ୍ବର 16, ଅତୀତ କାଳରେ ସିଂହର ବିସ୍ତୃତି ।

ଖୋଲା ଅଞ୍ଚଳରେ ରହନ୍ତି । ଫଳରେ ଏମାନଙ୍କୁ ଶିକାର କରି ମାରିବା ଅପେକ୍ଷାକୃତ ସହଜ । ୟୁରୋପ, ଏସିଆ, ଆଫ୍ରିକା ଓ ଭରତରେ ୟୁରୋପୀୟମାନଙ୍କ ଜଘନ୍ୟ ଶିକାରପ୍ରିୟତା ଯୋଗୁ ୟୁରୋପରୁ ସିଂହ ଅବଲୁପ୍ତ,

ଆଫ୍ରିକାରେ ସେମାନଙ୍କର ସଂଖ୍ୟା ଏବେ ବହୁତ କମ୍ ଓ ଭରତରେ ସେମାନଙ୍କର ପ୍ରାକୃତିକ ମୃତ୍ୟୁ ଘଟି ଯାଇଛି ।

ଏବେ ବାଘର ପାଳି ପଡ଼ିଛି । ଜଙ୍ଗଲ କଟା ହୋଇଯିବା ଫଳରେ ଏବଂ ଶିକାରୀମାନଙ୍କର ଦୌରାତ୍ମ୍ୟ ଯୋଗୁ ବାଘମାନଙ୍କର ସଂଖ୍ୟା ଦ୍ରୁତ ବେଗରେ କମି ଯାଉଛି । ଏଣୁ ତା'ର ବଂଶରକ୍ଷା କରିବା ପାଇଁ ବିଶେଷ ଉଦ୍ୟମ କରାଯାଉ ଅଛି । ଭରତରେ ବ୍ୟାଘ୍ର ଶିକାର ନିଷିଦ୍ଧ ।

# ବାଘ

ବାଘ ଭରତର ଜାତୀୟ ପ୍ରାଣୀ (Notioanl animai) ଏହାର ଭୀମକାନ୍ତ ସୌନ୍ଦର୍ଯ୍ୟରେ ମୁଗଧ ହୋଇ କବି ଉଇଲିଅମ୍ ବ୍ଲେକ୍ ( william Blake ) ଲେଖିଥିଲେ–

Tiger, tiger, burning bright
In the forests of the night
what immortal hand or eye
Could frame thy fearful symmetry

ବାଘର ଦେହ ଲମ୍ବାଳିଆ, ନମନୀୟ, ବେକସାନ, ମୁଣ୍ଡ ନିଦା, ଥୋମଣି ଛୋଟ ଓ ପାଟିର ଶ୍ୱାଦନ୍ତ ବା ଛେଦକଦାନ୍ତ ଗ୍ରିଟି ବେଶ ବଡ ଓ ଅତ୍ୟନ୍ତ ଶକ୍ତିଶାଳୀ । ଗୋଡ ମଧ୍ୟମ ଧରଣର ଲମ୍ବ ମାତ୍ର ମଜବୁତ । ଆଗ ଗୋଡ ଦୁଇଟିର ମାଂସପେଶୀ ପଛ ଗୋଡ ତୁଳନାରେ ବଡ । ପଂଝା ଓସାରିଆ ଓ ନଖ ସଙ୍କୋଚନଶୀଳ । ଅଣ୍ଡିରା ମାଈଠାରୁ ଲମ୍ବ ଓ ଓଜନରେ ଅଧିକ ହୁଏ । ଭରତର ବାଘ ଲମ୍ବରେ 300 ସେଣ୍ଟିମିଟର (10ଫୁଟ)ରୁ ଅଧିକ ହୁଅନ୍ତି ନାହିଁ । ଅଣ୍ଡିରା 275-290 ସେଣ୍ଟିମିଟର (9 ଫୁଟ-9ଫୁଟ 6ଇଞ୍ଚ ) ଏବଂ ମାଈ 260 ସେଣ୍ଟିମିଟର (8 ଫୁଟ 6 ଇଞ୍ଚ) ଯାଏ ଲମ୍ବ ହୋଇଥାଏ । ଅଣ୍ଡିରା ଓଜନରେ 180-230 କିଲୋଗ୍ରାମ (400-500) ପାଉଣ୍ଡ ହୁଏ, ମାଈ) ଓଜନରେ ଅଣ୍ଡିରାଠାରୁ ପ୍ରାୟ 45 କିଲୋଗ୍ରାମ (100 ପାଉଣ୍ଡ) ଊଣା ହୋଇଥାଏ । ହିମାଳୟ ଅଞ୍ଚଳର ବାଘ ଭରତର ଅନ୍ୟାନ୍ୟ ଅଞ୍ଚଳର ବାଘ ଅପେକ୍ଷା ଆକାରରେ ବଡ ହୁଅନ୍ତି ।

ବାଘଦେହର ଲୋମର ରଙ୍ଗ କମଳାପଚି ଲାଲରୁ ବାଦାମୀଆସିଆ ହଳଦିଆ । ତା' ଉପରେ ଆଡ ବାଗରେ କଳା ରଙ୍ଗର ଗାର ପଡିଥାଏ । ଗାଲ, ତଣ୍ଡି, ପେଟ, କାନର ଭିତର ପାଖ ଓ ଗୋଡର ଲୋମ କମଳା ରଙ୍ଗ ପରିବର୍ତ୍ତେ ଧଳା । କାନର ପଛ ପାଖ କଳା ଓ ତା' ମଝିରେ ଏକ ସ୍ପଷ୍ଟ ଧଳା ଅଂଶଥାଏ । ଆଖି ଉପରେ ଥିବା ଧଳା ଲୋମ ଉପରେ ଯେଉଁ କଳା ଚିହ୍ନଥାଏ ତଦ୍ୱାରା ଗୋଟିଏ ବାଘକୁ ଅନ୍ୟ ବାଘଠାରୁ ଚିହ୍ନି ହେବ । ବାଘର ରୂପ ଯେ ଥରେ ଦେଖିଛି, ସେ ତାକୁ କେବେ ଭୁଲି ନପାରେ ।

ହିମାଳୟଠାରୁ କୁମାରିକାପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଜଙ୍ଗଲମାନଙ୍କରେ ବାଘ ବାସ କରନ୍ତି । ଶିକାର କରି ଖାଇବା ପାଇଁ ଯଥେଷ୍ଟ ଖାଦ୍ୟ ପ୍ରାଣୀ ଥିବେ, ପାଖରେ ପାଣି ଏବଂ ଆତ୍ମଗୋପନ ଓ ବିଶ୍ରାମ ପାଇଁ ବୁଦା,ଝାଟି କଣ୍ଟାଗଛ ବା ଅନ୍ୟ ଗଛର ଜଙ୍ଗଲ ଥିବ-ଏତିକି ଯେଉଁଠି ଅଛି, ସେଠି ବାଘ ମିଳିବ । ଜଙ୍ଗଲ ଶୁଷ୍କ ଅଞ୍ଚଳ ହେଉ, ପ୍ରତିବର୍ଷ ପତ୍ରଝଡା ଦେଉଥିବା ଆର୍ଦ୍ର ଜଙ୍ଗଲ, ଅର୍ଦ୍ଧ ଚିରଶ୍ୟାମଳ ବା ଚିର ଶ୍ୟାମଳ ହେଉ, ସେଥିରେ କିଛି ଯାଏ ଆସେ ନାହିଁ । ସୁନ୍ଦରବନର ସନ୍ତସନ୍ତିଆ କର୍ଦ୍ଦମାକ୍ତ ଜଙ୍ଗଲ ଅଞ୍ଚଳରେ ମଧ୍ୟ ବାଘ ବାସ କରନ୍ତି । ଯେଉଁଠି ଜଙ୍ଗଲ ନାହିଁ ଅଥଚ ଉଚ୍ଚ ଘାସରେ ପୂର୍ଣ୍ଣ ସେଠାରେ ମଧ୍ୟ ବାଘ ଦେଖାଯାଏ । ତରାଇ ଅଞ୍ଚଳ ତା'ର ଉଦାହରଣ । ରାଜପୁତନା, ସିନ୍ଧ, ପଞ୍ଜାବ ଓ କଚର ମରୁ ଅଞ୍ଚଳରେ ବାଘ ବାସ କରନ୍ତି ନାହିଁ ।

ହିମାଳୟପର୍ବତମାଳା ଅଞ୍ଚଳରେ ବାଘ ସାଧାରଣତଃ 1300 ମିଟରରୁ ଅଧିକ ଉଚ୍ଚକୁ ଉଠନ୍ତି ନାହିଁ । ଅବଶ୍ୟ ଶୀତକାଳରେ 3050 ମିଟର ଉଚ୍ଚ (10.000 ଫୁଟ) ବରଫରେ ବାଘର ଖୋଜ ପଡିଥିବାର ଦେଖାଯାଇଛି । ଘାଟ ପର୍ବତମାଳା ଅଞ୍ଚଳରେ ବାଘ 2.300 ରୁ 2 600 ମିଟର ଉଚ୍ଚତା ଯାଏ ବିଚରଣ କରିବାର ଦେଖାଯାଏ ।

ସମଗ୍ର ଏସିଆରେ ଆଠ ପ୍ରକାରର ବାଘ ଦେଖାଯାନ୍ତି ଭାରତୀୟ ବାଘ ତନ୍ମଧ୍ୟରୁ ଗୋଟିଏ ପ୍ରକାର । ଏ ପ୍ରକାର ବର୍ମାରେ ମଧ୍ୟ ଦେଖିବାକୁ ମିଳେ । ବାଘ ଭାରତର ସାବକ ପ୍ରାଣୀ ନୁହେଁ । ତୁଷାର ଯୁଗ ( Ice Age ) ଶେଷରେ ଅର୍ଥାତ୍ ପ୍ରାୟ ନଅ ହଜାର ବର୍ଷ ପୂର୍ବେ ଉତ୍ତର ଏସିଆରୁ ଆସି ବାଘମାନେ ଭାରତରେ ପ୍ରଥମେ ପ୍ରବେଶ କରିଥିଲେ । ଏମାନେ ଚୀନ ଓ



ଚିତ୍ର ନମ୍ବର 14, ବାଘ

ବର୍ମାବାଟେ ହିମାଳୟର ପୂର୍ବ ପ୍ରାନ୍ତ ଓ ଭାରତର ଉତ୍ତର-ପୂର୍ବ ସୀମାନ୍ତ ମଧ୍ୟବର୍ତ୍ତୀ ଗିରିପଥ ଦେଇ ଭାରତକୁ ଆସିଥିବା ସମ୍ଭବ । କ୍ରମେ ଏହି ଧୂର୍ତ୍ତ ପ୍ରାଣୀମାନେ ସିଂହଙ୍କୁ ସେମାନଙ୍କର ଚରଣଭୂଇଁରୁ ବିତାଡ଼ିତ କରି ସମଗ୍ର ଭାରତରେ ବିସ୍ତୃତି ଲାଭ କଲେ । ବାଘ ସିଂହଳରେ ଦେଖାଯାନ୍ତି ନାହିଁ । ବୋଧହୁଏ ସେମାନେ ଦକ୍ଷିଣ ଭାରତରେ ପହଞ୍ଚିବା ଆଗରୁ ସିଂହଳ ଭାରତଠାରୁ ବିଚ୍ଛିନ୍ନ ହୋଇ ସାରିଥିଲା ।

ଚୀନ୍ ଭାଷାରେ ଗୋଟିଏ ପ୍ରବଚନ ଅଛି । ତାର ଅର୍ଥ "ଗୋଟାଏ ପାହାଡ଼ରେ ଦୁଇଟା ବାଘ ରହି ପାରିବେ ନାହିଁ" । ସିଂହ ଦଳବାନ୍ଧି ଶିକାର କରନ୍ତି; ମାତ୍ର ବ୍ୟାଘ୍ର ଏକାକୀ ଶିକାର କରେ । ଯୌନ-ମିଳନ ସମୟଛଡ଼ା ଦୁଇଟି ପୂର୍ଣ୍ଣବୟସ୍କ ବାଘ ଏକାଠି ହେବାର ଦେଖାଯାଏ ନାହିଁ । ପୁରୁଷ ବାଘ ବହୁ ପତ୍ନୀକ । କାମଚକ୍ର (estrous) କାଳରେ ଯେଉଁ ବାଘୁଣୀକୁ ସେ ପାଏ ତା' ସହିତ ରମଣ କରେ । ଅନେକ ସମୟରେ ଗୋଟିଏ ବାଘୁଣୀ ଲାଗି ଦୁଇଟି ପୁରୁଷ ବାଘ ମଧ୍ୟରେ ଘମାଘୋଟ ଲଢ଼ାଇ ହୁଏ । କିନ୍ତୁ ଏଥିରେ କାହାରି ମୃତ୍ୟୁ ଘଟେ ନାହିଁ । ବାଘୁଣୀ ତା' ଛୁଆ ସହିତ ଥିଲାବେଳେ ପୁରୁଷ ବାଘ ତା' ନିକଟକୁ ଆସିଲେ କ୍ଷେତ୍ର ବିଶେଷରେ ସେ ସହିବ ସିନା ଅନ୍ୟ ମାଈ ବାଘର ଉପସ୍ଥିତି ଆଦୌ ସହ୍ୟ କରିପାରେ ନାହିଁ ।

ଏକାଠି ମିଳିମିଶି ରହିବା ସମାଜ-ଜୀବନର ପ୍ରଥମ ସୋପାନ । ମାଛ ଅର୍ଣ୍ଣିଗ ଯୌନ-ମିଳନ ବେଳେ ଏକାଠି ହେବା ମଧ୍ୟ ସମାଜ-ଜୀବନ । ବାଘଙ୍କ ଭିତରେ ସବୁଠାରୁ ଅଧିକ 'ସାମାଜିକତା' ଦେଖାଯାଏ ମଢ଼ଠାରେ । ବାଘ ଶିକାର ଜୀବ ମାରି ନିଭୃତ ସ୍ଥାନକୁ ଆଣିଲାପରେ, ଯଦି ମାଈ ବାଘଟିଏ ଆସି ଜୁଟିଲା ତେବେ 'ପହିଲେ ଆପ' ପରି ପ୍ରଥମେ ସେ ବାଘୁଣୀକୁ ଖାଇବାକୁ ଦିଏ । ତା' ପରେ ସେ ଖାଏ । ବେଳେବେଳେ କୌଣସି ସ୍ଥାନରେ ଛଅଟିରୁ ନଅଟିଯାଏ ବାଘ ଏକାଠି ବସିଥିବାର ଦେଖାଯାଏ । ଏହାର କାରଣ କ'ଣ ଜଣା ନାହିଁ ।

ତିନି ଚାରିବର୍ଷରେ ବାଘ ବୟଃପ୍ରାପ୍ତ ହୁଅନ୍ତି । ସମଶୀତୋଷ୍ଣ ଅଞ୍ଚଳରେ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ବାଘୁଣୀଠାରେ କାମଚକ୍ର ଦେଖାଯାଏ । ଗ୍ରୀଷ୍ମ ଅଞ୍ଚଳରେ ବର୍ଷରେ ବହୁବାର ସେମାନଙ୍କଠାରେ କାମମଦ ପ୍ରକାଶ ପାଏ । ତେଣୁ ସେମାନଙ୍କର ନିର୍ଦ୍ଦିଷ୍ଟ ରମଣ ବା ଶାବକପ୍ରସବକାଳ ନାହିଁ । ବାଘୁଣୀର ଗର୍ଭଧାରଣ କାଳ 15-16 ସପ୍ତାହ । ନଭେମ୍ବରରୁ ଏପ୍ରିଲ ମାସ ମଧ୍ୟରେ ସାଧାରଣତଃ ଅଧିକ ଶାବକ ଜନ୍ମ ହୁଅନ୍ତି । ଗୋଟିଏ ପ୍ରସବରେ ଗୋଟିଏରୁ ସାତଟି ଯାଏ ଛୁଆ ଜାତ ହୁଅନ୍ତି । ସାଧାରଣ କ୍ଷେତ୍ରରେ ଏହି ସଂଖ୍ୟା ଦୁଇ ବା ତିନି । ବାଘୁଣୀ ପ୍ରତି ଦୁଇ ବା ଅଢ଼େଇ ବର୍ଷରେ ଛୁଆ କରେ । ବାଘ ବାଘୁଣୀ କୋଡ଼ିଏ ବର୍ଷ ଯାଏ ବଞ୍ଚନ୍ତି । ଜୀବନ କାଳ ମଧ୍ୟରେ ବାଘୁଣୀ ଚଉଦଟି ପର୍ଯ୍ୟନ୍ତ ଶାବକ ପ୍ରସବ କରିଥାଏ ।

ପଥର ଗୁହା, ବଡ଼ ଗଛ କୋରଡ଼ ବା ଘନବୁଦା ଝାଟି ଭିତରେ ରଖି ବାଘୁଣୀ ଶାବକ ମାନଙ୍କୁ ପାଳନ କରେ । ଜନ୍ମବେଳେ ପିଲଙ୍କର ଆଖି ଫିଟି ନଥାଏ । ଏକ ମାସରୁ ଦୁଇମାସ ଯାଏ ବାଘୁଣୀ ଶାବକମାନଙ୍କୁ ନିଭୃତରେ ନିରାପଦ ସ୍ଥାନରେ ରଖି ସ୍ତନଦାନ କରି ପାଳନ କରେ । ଛଅ ସପ୍ତାହର ହେଲାପରେ ବ୍ୟାଘ୍ରଶାବକମାନଙ୍କର ମାଂସାହାର ଆରମ୍ଭ ହୁଏ ଓ ସେମାନେ ମା' ସହିତ ଶିକାରରେ ବାହାରନ୍ତି । ଏହା ପରଠାରୁ ବାଘୁଣୀ ଓ ତା' ଛୁଆମାନଙ୍କର କୌଣସି ନିର୍ଦ୍ଦିଷ୍ଟ ବାସ ନଥାଏ । ଶିକାରଉଦ୍ଦେଶ୍ୟରେ ସେମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆନ୍ତି । ବାଘୁଣୀ ପଲକୁ ଶିକାର

ଶିଖାଇବା ପାଇଁ ଆହାରଜୀବକୁ ପୂରା ନମାରି ଖୁବ ହାଲିଆ କରି ଛାଡ଼ିଦିଏ ଓ ଶାବକମାନେ ତା' ଉପରେ ଚଢ଼ାଉ କରି ତାକୁ ମାରନ୍ତି ।

ଷୋଳ ମାସର ହେଲା ବେଳକୁ ବାଘ ଛୁଆମାନେ ମା' ପରି ବଡ଼ ହୋଇ ସାରିଥାନ୍ତି । ଏଣିକି ସେମାନେ ନିଜେ ନିଜେ ଶିକାର କରି ପାରନ୍ତି । ଏହା ପରଠୁ ପରିବାର ଜୀବନ କ୍ରମେ ଶିଥିଳ ହୋଇଆସେ । ପୁରୁଷ ଶାବକ 18-20 ମାସରେ ସମ୍ପୂର୍ଣ୍ଣ ସ୍ୱାଧୀନ ହୋଇ ମା'କୁ ଛାଡି ଚାଲିଯାଏ । ମାଈ ଶାବକମାନେ ଆହୁରି 3-4 ମ ସଯାଏ ମା' ପାଖରେ ରହନ୍ତି । ମାତ୍ର ଖାଦ୍ୟାଭାବ ଓ ନିଃସଙ୍ଗ ଜୀବନଯାପନ ଲାଗି ସେମାନେ ତା'ପରେ ବନ୍ଧନ ତୁଟାଇ ଯେ ଯାହା ବାଟରେ ଚାଲି ଯାନ୍ତି ।

କେତୋଟି ନିର୍ଦ୍ଦିଷ୍ଟ ଇଲାକାରେ ବାଘ ଭିନ୍ନ ଭିନ୍ନ ସମୟରେ ଖାଦ୍ୟ-ପାଇଁ ଶିକାର କରେ । ଅନ୍ୟ କୌଣସି ବାଘ ସେଠାରେ ହାବୁଡ଼ିଗଲେ ସେ 'ଯୁଦ୍ଧଂ ଦେହି' ଡାକଦିଏ । ଆଗନ୍ତୁକ ପରାଜୟ ସ୍ୱୀକାର କରି ଚାଲିଗଲାତ ଭଲ କଥା, ନଚେତ୍ ଲଢ଼େଇ ଅବଶ୍ୟମ୍ଭାବୀ ।

ବାଘର ଅଧିକାଂଶ ସମୟ ଶିକାରରେ କଟେ । ଏହାର ପ୍ରଧାନ ଆହାର-ଜୀବ ହେଲା-ନାନାଜାତି ହରିଣ, ନୀଳଗାଈ, ବନ୍ୟ ଶୂକର, ଭାଲୁ ଓ ଝିଙ୍କ । ସେ ମାଈ ଓ ଛୁଆ ହାତୀ, ଗୟଳ ଓ ବଣ ମଇଁଷିଙ୍କୁ ମଧ୍ୟ ଶିକାର କରେ, ବାଘ କଲରପତ୍ରିଆ ବାଘକୁ ମଧ୍ୟ ମାରି ଖାଇବାର ଦେଖା ଯାଇଛି । କ୍ଷୁଧାରେ ଆତୁର ହେଲେ ସେ କୁକୁଡ଼ା, ମାଛ, ସରୀସୃପ ଏପରିକି ମରିପଡ଼ିଥିବା ଜୀବର ପଚାମାଂସ ମଧ୍ୟ ଖାଏ ।

ଜଙ୍ଗଲରେ ଶିକାରଜୀବର ଅଭାବ ଘଟିଲେ ବାଘ ଗାଁ ଆଡ଼କୁ ଆଖି ପକାଏ ଓ ଗୃହପାଳିତ ଜନ୍ତୁମାରି ଖାଏ । ଶିକାରୀର ଗୁଳିରେ ବା ଅନ୍ୟ କୌଣସି କାରଣରୁ ବାଘ ଜଖମ ହେଲେ, ବଣର ଜନ୍ତୁଙ୍କୁ ଆଉ ଗୋଡ଼ାଇ ଧରି ପାରେ ନାହିଁ । ଫଳରେ ଗୃହପାଳିତ ପଶୁଙ୍କ ଉପରେ ଚଢ଼ାଉ କରେ । ଏହି କାରଣରୁହିଁ ବାଘ ମଣିଷଖିଆ ପାଲଟେ । ଥରେ ମୟୂର ଭଞ୍ଜର ଏକ ଜଙ୍ଗଲରେ ଜଣେ ଶିକାରୀ ଗୋଟିଏ ମଣିଷଖିଆ ବାଘ ମାରିବାକୁ ତା' ପିଛା ଧଇଲେ । ସେ ଦେଖିବେ ସେ ବାଘ ଯେଉଁ ବାଟଦେଇ ଶିକାରଜୀବକୁ ନେଇ ଯାଇଅଛି, ସେ ବାଟରେ ରକ୍ତ ପଡ଼ିଛି । ଏହା ସାଧାରଣ କଥା ନୁହେଁ । ଘୋସରା ଚିହ୍ନ

ପଡ଼ିଥିବ ସିନା ରକ୍ତ ପଡ଼ି ନଥିବା କଥା । ପରେ ଗୁଳି କରି ବାଘଟିକୁ ମାରିଲା ପରେ ଦେଖିଲେ ଯେ ତା'ର ଗୋଟିଏ କଳ-ଦାନ୍ତ ନାହିଁ । ଏଥିରୁ ସ୍ପଷ୍ଟ ଜଣା ପଡିଲା, ବାଘଟି ନିପାରିଲା ହେଲାରୁ ମଣିଷ ଖିଆ ପାଲଟି ଥିଲା । ହଜାରକରେ ତିନିଗୁରିଟି ବାଘ ମଣିଷଖିଆ ପାଲଟି ଥାନ୍ତି ।

ବାଘକୁ ମଣିଷ ଭୟକରେ । କାରଣ ଏହା ହିଂସ୍ର । ମାତ୍ର ବାଘ





(ଚିତ୍ର ନମ୍ବର 19, ବାଘ କାନର ପଛ ପାଖରେ ଧଳା ଚିହ୍ନଥାଏ । ସେ ଯଦି କାନକୁ ବୁଲାଇ ପଛ ପାଖର ଧଳା ଅଂଶ ପ୍ରଦର୍ଶନ କରେ ଓ ପାଟି ବନ୍ଦ ରଖିଥାଏ ତେବେ ତାହା ଆକ୍ରମଣ କରିବାର ନିଦର୍ଶନ ଯଦି କାନକୁ ପାରି ଦେଇ ପାଟି ଆଁ କରି ଦାନ୍ତ ଦେଖାଏ, ତେବେ ତାହା ଆତ୍ମରକ୍ଷା ସୂଚକ ଭଙ୍ଗୀ । )

ଗୋଟିଏ ଗ୍ରେରମୁହାଁ ପ୍ରାଣୀ । ଏହା ମଣିଷ ଦେଖିଲେ ଲୁଚେ । ସେଥିପାଇଁ ଜଙ୍ଗଲରେ ମଣିଷ ସହଜରେ ବାଘ ହାବୁଡ଼ରେ ପଡେନାହିଁ । ଏପରିକି ଶିକାର ଜନ୍ତୁକୁ ମାରି ନିଭୃତ ସ୍ଥାନକୁ ଘୋସାରି ନେଇଥିଲେ ମଣିଷ ଦେଖିଲେ ପଳାଇ ଯାଏ । ବାଘ ଆହତ ହେଲେ ବା ମଣିଷଖିଆ ପାଲଟିଲେ ଏହାର ମୂର୍ତ୍ତି ଅଲଗା ।

ବାଘ ରାତ୍ରିଚର । ରାତ୍ରିରେ ଖୁରଯୁକ୍ତ ପ୍ରାଣୀମାନେ ବାହାରନ୍ତି । ଏଣୁ ସେ ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ ମଧ୍ୟବର୍ତ୍ତୀ କାଳରେ ଶିକାରରେ ବାହାରେ

ଅବଶ୍ୟ ଶୀତ ବା ବର୍ଷାଦିନେ ବେଳେବେଳେ ଦିନରେ ମଧ୍ୟ ବାହାରି ପଡେ । କଅଁଳିଆ ସକାଳ ଖରଠାରୁ ମଧ୍ୟାହ୍ନଯାଏ ତା'ର ବିଶ୍ରାମର ସମୟ । ଏତେବେଳେ ତା'ର ଛାଇଜାଗା ଲୋଡା ହୁଏ

ପଛରୁ ବା କୋଣିକିଆ ଭବେ ବାଘ ଛପି ଛପି ଆସି ଶିକାରଜୀବ ଉପରକୁ ବିଦ୍ୟୁତ୍ ବେଗରେ କୁଦାମାରେ । ବେକକୁ କାମୁଡି ତଳ ଆଡକୁ ମୋଡ଼ି ଭଙ୍ଗିଦିଏ । ଏଥିରେ ଶିକାରଜୀବର ସାଙ୍ଗେ ସାଙ୍ଗେ ମୃତ୍ୟୁ ହୁଏ । ବାଘ ତାକୁ ଓଟାରି ଏକ ନିଭୃତ ସ୍ଥାନକୁ ବିଶେଷ କରି ନିକଟରେ ଜଳଥିବା ସ୍ଥାନକୁ ନେଇଯାଏ । ଗୋଟିଏ ବାଘ 200-250 କିଲୋଗ୍ରାମ ଓଜନର ମଈଁଷିକୁ ବହୁ ଶତ ମିଟର ଦୂର ସ୍ଥାନକୁ ଓଟାରି ନେଇ ଯାଇପାରେ । ମାରିଥିବା ଜୀବକୁ ପ୍ରାୟ ଘଣ୍ଟାଏ ଯାଏ ଖାଇଲା ପରେ ସେ ପାଣି ପିଏ, ବିଶ୍ରାମ ନିଏ, ନିଜ ଦେହକୁ ଘଷେ ଅବା ବୁଲାଚଲା କରେ । ତା' ପରେ ପୁଣି ଖାଏ । 20-35 କିଲୋଗ୍ରାମ ମାଂସ ତା'ର ଥରକର ଆହାର । ବଡ-ଜନ୍ତୁ ଶିକାର କରିଥିଲେ ସେ ତା'କୁ 3-4 ଦିନ ଭିତରେ ଖାଇ ଶେଷ କରେ ।

ବାଘ ଏକ ଓଜନିଆ ଓ ବଡ ପ୍ରାଣୀ ହୋଇଥିଲେ ମଧ୍ୟ ଏହା କ୍ଷିପ୍ର ବେଗରେ ଦୌଡ଼ି ପାରେ ଓ ଗତି କରିପାରେ । ସେ ଭଲ ପହଁରି ପାରେ । ସାଧାରଣତଃ ବାଘ ଗଛ ଚଢେ ନାହିଁ; ମାତ୍ର ଆବଶ୍ୟକ ହେଲେ ଚଢ଼େ । ବାଘ 9 ମିଟର (30 ଫୁଟ) ଉଚ୍ଚତା ପର୍ଯ୍ୟନ୍ତ ଓ ବାଘଛୁଆ 18 ମିଟର (60 ଫୁଟ) ଉଚ୍ଚତା ଯାଏ ଗଛ ଚଢିବାର ଦେଖା ଯାଇଅଛି ।

ଆଈ ମା ପିଲାମାନଙ୍କୁ ଗପ କହିଲା ବେଳେ ଶୁଣାଏ, ବାଘ ଶିକାରରେ ବାହାରିବା ଆଗରୁ ବଣଦେବତାଙ୍କ ଉଦ୍ଦେଶ୍ୟରେ ନମସ୍କାର କରି କହେ, ମହାପ୍ରଭୁ, ଯେପରି ବଳିଆ (କୁକୁର) ଆଗରେ ପଡ଼ିବିନି, କି କାଳିଆ (ବନ୍ଧୁକ) ଆଗରେ ପଡିବିନି ।'' ଅର୍ଥାତ୍, ଏ ଦୁଇଟିକି ଛାଡ଼ିଦେଲେ ବାଘର ତୃତୀୟ ଶତ୍ରୁ ନାହିଁ । ଏହା ଅନେକାଂଶରେ ସତ୍ୟ ।

## ଧଳା ବାଘ

ସାଧାରଣ ବାଘର ବର୍ଣ୍ଣ କମଳା ପରି ଈଷତ୍ ହଳଦିଆ ବାଦାମୀ । ତା' ଉପରେ ବିଭିନ୍ନ ଲମ୍ବ ଓ ଚଉଡ଼ାର କଳାଗାର ପଡ଼ିଥାଏ । ନାକର ମଝି ଅଂଶ କଳା । ମାତ୍ର ଧଳାବାଘର ବର୍ଣ୍ଣ ଧଳା ଓ ତା' ଉପରେ ହାଲୁକା କଳା

ବା ପାଉଁସିଆ ରଙ୍ଗର ଗାର ଥାଏ । ନାକ ମଝି ଅଂଶ ଦାଗ ଦାଗିଆ ଧୂସରିଆ ଜଙ୍ଘ ଓ ମୁଖ ଭିତରର ପାଟଳ ବର୍ଣ୍ଣ ସହିତ ଆସ୍ତେ ଆସ୍ତେ ମିଶି ଯାଇଥାଏ । ପାଦର ଗଦିର ବର୍ଣ୍ଣ ପାଟଳ ।

ଧଳାବାଘ ଆସାମ, ଓଡ଼ିଶା ଓ ମଧ୍ୟପ୍ରଦେଶର ଜଙ୍ଗଲରେ ମିଳିବାର ବିବରଣୀ ଅଛି । ମାତ୍ର ଭାରତର ପ୍ରସିଦ୍ଧ ହୋଇଥିବା "ଧଳାବାଘ" ସର୍ବ ପ୍ରଥମେ ରିଓ୍ୱା ରାଜ୍ୟର ଜଙ୍ଗଲରେ ଧରା ହୋଇଥିଲା । ଗୋଟିଏ ନଅ ମାସର ଧଳା ବାଘ ଛୁଆକୁ ଲୋକେ ଧରି ଗୋବିନ୍ଦ ଗଡ଼ରେ ଅବସ୍ଥିତ ରିଓ୍ୱା ରାଜ-ପ୍ରାସାଦକୁ ଆଣିଥିଲେ ଓ ତା'ର ନାମ ଦିଆଯାଇଥିଲା "ମୋହନ" । ମୋହନ ବୟଃପ୍ରାପ୍ତ ହେବାରେ "ବେଗମ" ନାମକ ସାଧାରଣ ବାଘୁଣୀ ସହିତ ତା'ର ମିଳନ ହୁଏ । ଏମାନଙ୍କର ଯେଉଁ ଶାବକ ହେଲେ ସେମାନଙ୍କର ବର୍ଣ୍ଣ ସାଧାରଣ ବାଘର ରଙ୍ଗ ହୋଇଥିଲା । ମୋହନ ଓ ବେଗମର ମିଳନରୁ ଜାତ ଏକ ବାଘୁଣୀର ନାମ "ରାଧା" । ରାଧା ସହିତ ମୋହନର ରମଣ ହେବା ଫଳରେ ରାଧା ଚାରିଟି ଶାବକ ପ୍ରସବ କଲେ । ଏ ସମସ୍ତେ ଥିଲେ ଧଳା । "ଧଳାବାଘ"ର କୁଳ ପୁରୁଷ ମୋହନର କୋଡ଼ିଏ ବର୍ଷ ବୟସରେ ମୃତ୍ୟୁ ହୋଇଥିଲା । ଧଳାବାଘ ସହିତ ଧଳା ବାଘୁଣୀର ମିଳନ ଫଳରେ କ୍ରମେ ଧଳାବାଘ ଉପୁଜିଲେ । ସେମାନଙ୍କର ବଂଶବୃଦ୍ଧି ଫଳରେ ଏକ ସମୟରେ 39ଟି ଧଳା ବାଘରୁ ଭାରତରେ ଥିଲେ 25,ଇଂଲଣ୍ଡରେ 10 ଓ ଯୁକ୍ତରାଷ୍ଟ୍ର ଆମେରିକାରେ 4 । ଭାରତରେ ଥିବା 25ଟିରୁ 13ଟି ଦିଲ୍ଲୀର ପଶୁ ଉଦ୍ୟାନ (zoo), କଲିକତାର ଚିଡ଼ିଆଖାନା ଓ ଗୋବିନ୍ଦଗଡ଼ ପ୍ରାସାଦରେ 5 । ଏମାନଙ୍କର ବଂଶ ଜାତ ଧଳାବାଘ ସୀମିତ ସଂଖ୍ୟାରେ ଭାରତ ତଥା ପୃଥିବୀର କେତେକ ପ୍ରାଣୀ ଉଦ୍ୟାନରେ ଦେଖିବାକୁ ମିଳନ୍ତି ।

ଆମ ଭାରତରେ ବ୍ୟାଘ୍ରମାନଙ୍କର ସଂଖ୍ୟା ଅତି ଦ୍ରୁତ ଗତିରେ ହ୍ରାସ ପାଇବାରେ ଲାଗିଛି । 1930 ସାଲରେ ସେମାନଙ୍କର ସଂଖ୍ୟା ଥିଲା ପ୍ରାୟ 30.000 । 1972 ସାଲ ଗଣନା ଅନୁସାରେ ସଂଖ୍ୟା 1800 ରେ ଆସି ପହଞ୍ଚିଛି । ବାଙ୍ଗଲା ଦେଶରେ ବାଘ ସଂଖ୍ୟା 100, ନେପାଳରେ 80 ଓ ଭୁଟାନରେ 40 । ଆମ ଓଡ଼ିଶାରେ ବାଘ ସଂଖ୍ୟା ପ୍ରାୟ 80 । 'ଆନ୍ତର୍ଜାତିକ ପ୍ରକୃତି ସଂରକ୍ଷଣ ସଂଗଠନ" (International Union for

conservation of Nature ) ସହଯୋଗରେ ଭାରତ ସରକାର "ବ୍ୟାଘ୍ର ଯୋଜନା" (Project tiger) ନାମରେ ଏକ ଯୋଜନା 1977 ସାଲରେ ଗ୍ରହଣ କରି ଅଛନ୍ତି । ସମଗ୍ର ଭାରତରେ ବ୍ୟାଘ୍ର ଶିକାର ନିଷିଦ୍ଧ ହୋଇଅଛି । ବ୍ୟାଘ୍ର ସଂରକ୍ଷଣ ଲାଗି ନାନା ବ୍ୟବସ୍ଥା କରାଯାଉଅଛି । ଏହି ଯୋଜନାରେ 5କୋଟି 8 ଲକ୍ଷ ଟଙ୍କା ବ୍ୟୟିତ ହେବ ।

ବାଘର ବୈଜ୍ଞାନିକ ନାମ—Panthera tigris ( Linnaeus ) ହିନ୍ଦି-ବାଘ୍, ସେର; ମଧ୍ୟଭାରତ-ନାହାର, ସେଲବାଘ୍, ମାରଠି-ଓ୍ୟାଘ୍; ତାମିଲ ଓ ତେଲୁଗୁ- ପୁ ( ଲ ) ଲି ( ଇ ); ବଙ୍ଗଳା-ବାଘ୍; ମାଲୟାଲମ୍ କଡ଼ୁଓ୍ୱା; କାନାରିଜ୍-ହୁ ( ଲ ) ଲି ( ଇ );



# ସିଂହ

ସିଂହ ଗଳ୍ପ, ଲୋକକାହାଣୀ ଓ ଅନ୍ୟାନ୍ୟ ଲେଖାରେ 'ପଶୁରାଜ' ଆଖ୍ୟା ପାଇଅଛି । କାରଣ, ସେ ପ୍ରବଳ ପରାକ୍ରମୀ ଅଥଚ ବ୍ୟାଘ୍ର ପରି ଧୂର୍ତ୍ତ ନୁହେଁ । ସେ ଲୁଚିଛପି ଆସେ ନାହିଁ । ଯେଉଁଠାକୁ ଯାଏ ସେଠାରେ ଭୀମ ଗର୍ଜନ ଦ୍ୱାରା ତା'ର ଉପସ୍ଥିତି ଘୋଷଣା କରେ । ଭାରତର ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରାଣୀ ହେଲେ ଗଣ୍ଡା ଓ ସିଂହ । ଦୁର୍ଲଭତା ଦୃଷ୍ଟିରୁ ସିଂହର ସ୍ଥାନ ଦ୍ୱିତୀୟ ।

ଭାରତ ଓ ଆଫ୍ରିକାର ସିଂହ ଏକା ଜାତିର; ମାତ୍ର ବିଭିନ୍ନ ଉପଜାତିର । ଭାରତୀୟ ସିଂହର ବୈଜ୍ଞାନିକ ନାମ Panthera leo persica । ଆଫ୍ରିକୀୟ ସିଂହର ନାମ Panthera leo leo । ଆଫ୍ରିକାର ସିଂହର କେଶରରେ ଭାରତୀୟ ସିଂହ ତୁଳନାରେ କେଶ ଅଧିକ । ଭାରତୀୟ ସିଂହର ଦେହ ଅଧିକ ଲୋମଶ, କହୁଣୀ ସନ୍ଧିଠାରେ ଲୋମଗୁଚ୍ଛ ଅଧିକ ଘନ, ପେଟରେ ଲୋମ-ଝାଲର ଅଧିକ ସ୍ପଷ୍ଟ ଏବଂ ଲାଞ୍ଜ ଅଗରେ ଥିବା କଳା ଲୋମଗୁଚ୍ଛଅଂଶ ବଡ଼ । ଉଭୟ ଦେଶର ସିଂହ ଲମ୍ବାରେ ସାଧାରଣତଃ 275 ସେଣ୍ଟିମିଟର ( 9 ) ଫୁଟ ହୁଅନ୍ତି । ଏପର୍ଯ୍ୟନ୍ତ ଦେଖା ଯାଇଥିବା ଦୀର୍ଘତ୍ୱ ଆଫ୍ରିକୀୟ ସିଂହର ଲମ୍ବ 323 ସେଣ୍ଟିମିଟାର ( 10 ଫୁଟ 7 ଇଞ୍ଚ ) ଓ ଭାରତୀୟ ସିଂହ 292 ସେଣ୍ଟିମିଟର ( 9 ଫୁଟ 7 ଇଞ୍ଚ ) ।

ସିଂହର ବର୍ଣ୍ଣ ମସିଆ ବାଦାମୀ । ବିଭିନ୍ନ ସିଂହଠାରେ ଏହା ଘନ ହଳଦିଆ ବାଦାମୀରୁ ଫିକା ଧୂସର ବାଲି ରଙ୍ଗର ହୋଇଥାଏ । ଦେହର କେତେକାଂଶରେ ଲୋମର ଅଗ୍ର କଳା ହୋଇଥିବାରୁ ଟିକେ କଳାସିଆ ମଧ୍ୟ ଦେଖାଯାଏ । କେଶରର ବର୍ଣ୍ଣ ଦେହର ବର୍ଣ୍ଣଠାରୁ ସାଧାରଣତଃ ଫିକା ହୋଇଥାଏ । କେତେକ ସିଂହର କେଶରରେ ଅଧିକ ଲୋମର ଅଗ୍ରଭାଗ କଳା ହୋଇଥିବାରୁ ବେଶ କଳାସିଆ ଦେଖାଯାଏ । ଏମାନଙ୍କୁ କେହି କେହି "କଳା କେଶରୀ ସିଂହ" ବୋଲି କହିଥାନ୍ତି । ଏପରି ସିଂହ କ୍ୱଚିତ୍ ଦେଖାଯାନ୍ତି ।

ମାଈ ସିଂହର କେଶର ନାହିଁ । ପ୍ରାୟ ତିନିବର୍ଷର ହେଲାବେଳକୁ ପୁରୁଷ ସିଂହର କେଶର ଉଠେ । ଛଅ ବର୍ଷ ଶେଷକୁ କେଶର ପୂର୍ଣ୍ଣ ବର୍ଦ୍ଧିତ ହୋଇଥାଏ । ଏଣୁ 5 । 6 ବର୍ଷବେଳେ ସିଂହର ପୂର୍ଣ୍ଣ ଯୌବନକାଳ । କେଶରର ବୃଦ୍ଧି ଓ ବର୍ଣ୍ଣ-ଅନୁସାରେ ଗୋଟିଏ ସିଂହକୁ ଅନ୍ୟ ସିଂହଠାରୁ ବାଛି ହୋଇପାରେ । ଶାବକମାନଙ୍କ ଦେହରେ ପଟା ପଟା ଗାର ବା ଦାଗ ଦାଗ ଚିହ୍ନଥାଏ । ବଡ଼ ଦିନକୁ ସେ ସବୁ ରହେ ନାହିଁ । ଭାରତୀୟ ସିଂହକୁ "ଏସିଆ ସିଂହ" (Asiatic lion) ବୋଲି ସାଧାରଣତଃ କୁହାଯାଏ । ଏବେ ମଧ୍ୟ ମେସୋପଟାମିଆ ଓ ପାରସ୍ୟର କୌଣସ ବନ୍ୟ ଅଞ୍ଚଳରେ ସିଂହ ଥାଇ ପାରନ୍ତି । ଦିନେ ଏହା ଭାରତର ମଧ୍ୟ ଓ ଉତ୍ତରାଞ୍ଚଳରେ ଆଧିପତ୍ୟ ବିସ୍ତାର କରିଥିଲା । ଦକ୍ଷିଣରେ ନର୍ମଦାନଦୀ ପର୍ଯ୍ୟନ୍ତ ସିଂହ ଦେଖା ଯାଉଥିଲେ । ଏବେ ସିଂହ ପ୍ରାୟ ଅବଲୁପ୍ତ । ଗୁଜରାଟର କାଥିଆୱାଡ଼୍ ଅଞ୍ଚଳରେ ଜୁନାଗଡର ଗୀର ବନରେ କେବଳ ସିଂହ ଅଳ୍ପ ସଂଖ୍ୟାରେ ଅଛନ୍ତି ।

ଗୀର ବନର କ୍ଷେତ୍ରଫଳ 1349 ବର୍ଗ କିଲୋମିଟର (527 ବର୍ଗ ମାଇଲ) । ଏହି ଅର୍ଦ୍ଧଶୁଷ୍କ ବନ୍ଧୁର ଅଞ୍ଚଳରେ ମୁଖ୍ୟତଃ ଖର୍ବାକାର ସାଗୁଆନ୍



ଚିତ୍ର ନମ୍ବର 20, ସିଂହ

ପଳାଶ, ନାନା ଜାତି କୋଳି, ବାବୁଲ ଓ ବାଉଁଶ ଗଛର ଜଙ୍ଗଲ ଦେଖାଯାଏ । ଏହିପରି ଖୋଲା ଜଙ୍ଗଲଅଞ୍ଚଳରେ ପ୍ରାୟ 177ଟି ସିଂହ ବାସ କରନ୍ତି ।

ଏସିଆର ସିଂହର ସ୍ୱଭାବ ଓ ପ୍ରକୃତି ମୁଖ୍ୟତଃ ଆଫ୍ରିକାର ସିଂହପରି । ଏମାନେ ଦିନବେଳେ ଛାଇ ଜାଗା ଦେଖି ଜଙ୍ଗଲ ଭିତରେ ଅବା ବଡ଼ ଗଛର ଛାଇରେ ବିଶ୍ରାମ ନିଅନ୍ତି । ଗୋଧୂଳି ସମୟରେ ସିଂହ ଖାଦ୍ୟ ଅନ୍ୱେଷଣରେ ଶିକାର କରି ବାହାରେ । ରାତିସାରା ଏହାର ଗର୍ଜନ ଶୁଣିବାକୁ ମିଳେ । ମୁଖ୍ୟତଃ ଗୋଧୂଳି ଓ ସୂର୍ଯ୍ୟୋଦୟ ପୂର୍ବେ ଗର୍ଜନ ଅଧିକ । ରାତିରେ ଆହାର ଜୀବ ଯଥା ନୀଳଗାଈ, ସମ୍ବର, ଚିତ୍ରଳ ହରିଣ, ଘୁରିଶିଙ୍ଗା ଆଦିଙ୍କର ପିଛା ଧରେ । ବନ୍ୟ ପ୍ରାଣୀଙ୍କୁ ଚୋରାଶିକାରୀ ମାରି ପକାଇବା ଫଳରେ ସେମାନଙ୍କ ପାଇଁ ଖାଦ୍ୟ-ପ୍ରାଣୀର ଅଭାବ ପଡ଼େ । ଗୀର ଜଙ୍ଗଲରେ 112ଟି ଗାଁ ଅଛି ଓ ସେଥିରେ 5000 ମାଲଧାରୀ ବାସ କରନ୍ତି । ଏମାନଙ୍କର ପ୍ରାୟ 16000 ଗାଈ ମଇଁଷି ଅଛନ୍ତି । ଏ ସବୁ ଜଙ୍ଗଲକୁ ଚରିବାକୁ ଆସନ୍ତି । ପାଖ ଆଖ ଅଞ୍ଚଳରୁ ମଧ୍ୟ ଜଙ୍ଗଲକୁ ଗୃହପାଳିତ ପଶୁମାନଙ୍କୁ ଚରାଇବାକୁ ଆଣନ୍ତି । ସିଂହର ଖାଦ୍ୟ ଅଭାବ ହେଲେ ସେ ଗୃହ ପାଳିତ ପଶୁମାନଙ୍କୁ ଆକ୍ରମଣ କରେ । ମାଲଧାରୀମାନେ ବିରକ୍ତ ହୋଇ ସିଂହକୁ ବିଷ ଦେଇ ମାରି ଦିଅନ୍ତି । ସିଂହ ସଂରକ୍ଷଣ ଯୋଜନାରେ ମାଲଧାରିମାନଙ୍କୁ ଉପଯୁକ୍ତ କ୍ଷତିପୂରଣ ଦେବାର ବ୍ୟବସ୍ଥା ହୋଇଛି ।

ଶିକାର କଲାବେଳେ ସିଂହ ମୁଖ୍ୟତଃ ଘ୍ରାଣଶକ୍ତି ଓ ଶ୍ରବଣଶକ୍ତି ଉପରେ ନିର୍ଭର କରେ । ଏକାକୀ ଶିକାର କଲାବେଳେ 20-30 ମିଟର ଦୂରରୁ ସିଂହ ଖାଦ୍ୟପ୍ରାଣୀ ଉପରେ ନିଘା ରଖି ଚୁପ୍ କରି ଅପେକ୍ଷା କରେ ଓ ତାହା ଆକ୍ରମଣ କରିବା ଦୂରତ୍ୱକୁ ଆସିଗଲେ ଚଢ଼ାଉ କରେ । ସିଂହ ପରିବାର, ଅର୍ଥାତ୍ ସିଂହ, ସିଂହୀ ଓ ଶାବକ ଏକାଠି ଶିକାର କଲାବେଳେ ପରସ୍ପର ସହଯୋଗଦ୍ୱାରା ଖାଦ୍ୟ ପଶୁକୁ ବଧକରନ୍ତି । ସେମାନେ ବିଭକ୍ତ ହୋଇ ବିଭିନ୍ନ ଦିଗରେ ରହନ୍ତି । ଅଳ୍ପ ହୁଙ୍କାର ଶବ୍ଦଦ୍ୱାରା ଯୋଗାଯୋଗ ସ୍ଥାପିତ ହୁଏ । ଗୋଟେ ପଟୁ ଶିକାର ପଶୁକୁ ଘଉଡ଼ାନ୍ତି । ଅନ୍ୟ ପଟରେ ଲୁକ୍କାୟିତ ଭବେ ଥିବା ଦଳର ଅନ୍ୟମାନେ ତାକୁ ଆକ୍ରମଣ କରନ୍ତି । ଏପରି ଶିକାରରେ ସିଂହ ପଶୁକୁ ଘଉଡ଼ାଇ ନେଇଯାଏ ଏବଂ ସିଂହୀ ଓ ତା'ର ଶାବକମାନେ ତାକୁ ବଧ କରନ୍ତି ।

ଶିକାର ପ୍ରାଣୀକୁ ବଧ କଲାପରେ ସିଂହ ତାକୁ ଛାଡ଼ି ଯାଏ ନାହିଁ । ମୃତ ପ୍ରାଣୀକୁ ଖାଇସାରେ, ତେବେ ଯାଇ ସେ ସ୍ଥାନରୁ ଯାଏ । ପ୍ରକୃତିବିତ ମାନଙ୍କର ବିଶ୍ୱାସ ଶାଗୁଣା ପଲ ଆସି ବେଢ଼ି ଯାଇ ମୃତ ଦେହକୁ ଖାଇ ଶେଷ କରିଦେବେ ବୋଲି ସିଂହ ଏପରି କରିଥାଏ ।

ସିଂହ ବହୁପତ୍ନିକ । ପ୍ରଜନନ ଋତୁରେ ସବୁଠାରୁ ବଳବାନ ସିଂହ ଅନ୍ୟମାନଙ୍କ ସହିତ ଲଢ଼ି ଏକାଧିକ ପତ୍ନୀ ସଂଗ୍ରହ କରି ସେମାନଙ୍କ ଗହଣରେ ବିଚରଣ କରେ । ସାଧାରଣତଃ କିଛିକାଳ ପରେ ଗୋଟିଏ ସିଂହ ଏକମାତ୍ର ସିଂହୀ ସହିତ ଅଲଗା ହୋଇଯାଇ ନିଭୃତରେ ବାସ କରେ ।

ଅଢ଼େଇ–3 ବର୍ଷ ହୋଇଥିଲାବେଳେ ସିଂହୀ ପ୍ରଥମ ଶାବକ ଉତ୍ପନ୍ନ କରେ । ଗର୍ଭଧାରଣ କାଳ 104-116 ଦିନ । ଏମାନଙ୍କର ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ନାହିଁ; ମାତ୍ର ମୁଖ୍ୟତଃ ଅକ୍ଟୋବର ନଭେମ୍ବର ମାସରେ ପ୍ରଜନନ ହୁଏ । କେଉଁ ସମୟରେ ସର୍ବାଧିକ ଶାବକ ଜନ୍ମ ହୁଅନ୍ତି ସେ ବିଷୟରେ ମତାନୈକ୍ୟ ରହିଛି । କେହିକେହି କହନ୍ତି ଜାନୁୟାରୀ ଫେବୃୟାରୀ ମାସରେ, ପୁଣି କେହି କହେ ଜୁନ୍ ଜୁଲାଇ ମାସରେ । ସିଂହ ମାଈ ଓ ଶାବକ ମାନଙ୍କ ସହିତ ରହେ ଏବଂ ସେମାନଙ୍କୁ ବିପଦ ଆପଦରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଖାଦ୍ୟ ଯୋଗାଏ । ଥରକେ ସିଂହୀ ଦୁଇଟି ଛୁଆ କରେ । ବେଳେ ବେଳେ ତିନୋଟି ବା ପାଞ୍ଚଟି ଶାବକ ଜନ୍ମ ହୁଅନ୍ତି । ସିଂହୀ 18 ମାସରୁ 2 ବର୍ଷ ଅନ୍ତରରେ ଛୁଆ ଉତ୍ପନ୍ନ କରେ । ଏମାନଙ୍କର ଆୟୁଷ 20-30 ବର୍ଷ ।

ଦଳବାନ୍ଧି ଖୋଲା ଅଞ୍ଚଳରେ ନିର୍ଭୟରେ ନିଜର ଅବସ୍ଥିତି ଜଣାଇ ବାସ କରିବା ଫଳରେ ସିଂହ ଶିକାରୀଙ୍କ ଦୌରାତ୍ମ୍ୟରେ ଆଜି ଅବଲୁପ୍ତ ପ୍ରାୟ । ଊନବିଂଶ ଶତାବ୍ଦୀର ପ୍ରାୟ ମଧ୍ୟ ଭାଗରେ ଜଣେ ଶିକାରୀ ତିନିଶତ ସିଂହ ଶିକାର କରିଥିବାର ଲିପିବଦ୍ଧ ଅଛି । ସେଥିରୁ 50 ଟି ସିଂହ ସେ ଦିଲ୍ଲୀର ଆଖପାଖ ସ୍ଥାନରେ ଶିକାର କରିଥିଲେ । ଆଉଜଣେ ଶିକାରୀ ଘୋଡାରେ ଚଢ଼ି ଖୋଲା ଅଞ୍ଚଳରେ ସିଂହଙ୍କୁ ଅନୁଧାବନ କରି ତିନିବର୍ଷରେ ଅଶୀଟିଙ୍କୁ ଗୁଳିକରି ମାରିଥିଲେ । ଅଥଚ 1880 ବା 1884 ସାଲ ବେଳକୁ ଜୁନାଗଡ ବ୍ୟତୀତ ଭାରତର ଅନ୍ୟତ୍ର ସିଂହ ବଂଶ ଲୋପ ପାଇ ସାରିଥିଲା । ଗୀର

ଜଙ୍ଗଲରେ 1963 ମସିହାରେ ସିଂହଙ୍କ ସଂଖ୍ୟାଥିଲା 285, 1968 ବେଳକୁ 177 । ଏହି ଅଳ୍ପ ସଂଖ୍ୟକ ସିଂହଙ୍କ ମଧ୍ୟରେ ଆତ୍ମ ପ୍ରଜନନ (inbreeding) ଫଳରେ ସେମାନଙ୍କ ଶରୀରରେ ସାଂଗଠନିକ ଅବନତି କ୍ରମେ ଦେଖାଯିବ । ଭାରତରେ ସିଂହର ସଂରକ୍ଷଣ ପାଇଁ ଯୋଜନା 1972 ସାଲରୁ କାର୍ଯ୍ୟକାରୀ ହୋଇଥିଲେ ମଧ୍ୟ 2000 ସାଲ ବେଳକୁ ଅଶୋକ ସ୍ତମ୍ଭ ଶୋଭିତ ( ଖ୍ରୀ ପୂ 242) ସିଂହ ଆଉ ଜୀବିତାବସ୍ଥାରେ ଦେଖିବାକୁ ମିଳିବ ନାହିଁବୋଲି ଆଶଙ୍କା ହୁଏ । ଏସିଆ ମାଇନର, ଆରବ ଓ ପାରସ୍ୟରେ ଆଜ ସିଂହ ନାହାଁନ୍ତି । ଇସ୍‌ରାଏଲରେ ବହୁ ସଂଖ୍ୟକ ସିଂହ ଥିଲେ ବୋଲି ବାଇବଲ୍‌ରେ ଲିଖିତ ଅଛି । ଆଜି ସେଠାରେ ସେମାନଙ୍କର ଚିହ୍ନ ନାହିଁ ।

ବିଭିନ୍ନ ଭଷାରେ ସିଂହର ନାମ—ହିନ୍ଦି—ଶେର, ଶେର ବାବର, ସିଂହ, ଗୁଜରାଟ ଉଣ୍ଡିଆ ବାଘ୍; କାଥିଆୱାଡ଼ି-ଶଓ୍ୟାଚ, ମାରାଠି-ସିଂହ, ମାଲୟାଲମ୍-ସିଂହମ୍, ତାମିଲ ସିଂହମ୍ ବଙ୍ଗଳା-ସିଂହ ।

ଆଫ୍ରିକା ନିଗ୍ରୋ ରେସର ବାସସ୍ଥଳୀ । ସେଠାରେ ସିଂହ ରହୁଥିବା ସ୍ଥାନ ନିକଟରେ ନିଗ୍ରୋ ବସତି ଦେଖାଯିବା ସ୍ୱାଭାବିକ । ମାତ୍ର ବିଚିତ୍ର କଥା ଏହି ଯେ ଭାରତରେ ସିଂହ ବାସ ନିକଟରେ ଯେଉଁ ଲୋକ ବସତି ଦେଖାଯାଏ ସେମାନେ ନିଗ୍ରୋ ରେସର । ଏହି ସମ୍ବନ୍ଧର କାରଣ ଜଣା ନାହିଁ ।



# କଲରା ପତ୍ରିଆ

କଲଗ ପର୍ତ୍ରିଆ ବାଘ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କରଲା ପର୍ତ୍ରିଆ, କଲଗ ପତୁରିଆ, କେନ୍ଦୁଆ (ଫୁଲବାଣୀ), ପେଣ୍ଡା (ଢେଙ୍କାନାଳ, ବାମଣ୍ଡା) ଆଦି ନାମରେ ପରିଚିତ । ଇଂରଜିରେ ଏମାନଙ୍କୁ Panther, Leopard କହନ୍ତି । ଏହାର ବର୍ଣ୍ଣ କିଞ୍ଚିତ୍ ପୀତାଭ ବା ଉଜ୍ଜ୍ୱଳ ବାଦାମୀ-ହଳଦିଆ । ଦେହସାରା କଲଗ ବା କରଡା ପତ୍ରପରି କଳା ରଙ୍ଗର ଚିହ୍ନଥାଏ । ଏଥିପାଇଁ ଏହାର ନାମ ବୋଧହୁଏ କଲଗପର୍ତ୍ରିଆ ବାଘ ହୋଇଅଛି । ଜଳବାୟୁ ଅନୁସାରେ ଦେହର ରଙ୍ଗରେ ପରିବର୍ତ୍ତନ ଦେଖାଯାଏ । ମରୁଭୂମି ପାଖ ଅଞ୍ଚଳର କଲଗପର୍ତ୍ରିଆଙ୍କର ରଙ୍ଗ ଫିକା ଓ କାଶ୍ମୀର୍ ଅଞ୍ଚଳର ଏହି ପ୍ରାଣୀଙ୍କର ରଙ୍ଗ ଧୂସରିଆ । ଯେଉଁ ଅଞ୍ଚଳରେ ଖୁବ୍ ବର୍ଷା ହୁଏ, ସେଠାରେ ଘନ କଳା ରଙ୍ଗର କଲଗ ପର୍ତ୍ରିଆ ମଧ୍ୟ ଦେଖାଯାନ୍ତି । କରୋଟି (skull)ର ବିଭିନ୍ନ ଅସ୍ଥି ଓ ଅନ୍ୟାନ୍ୟ କେତେକ ଲକ୍ଷଣରେ ପ୍ରଭେଦ ଅନୁସାରେ ଏସିଆରେ ସାତଟି ରେସ (race)ର କେନ୍ଦୁଆ ଅଛନ୍ତି ବୋଲି ବିଶେଷଜ୍ଞ ମାନଙ୍କର ମତ । ସେଥିରୁ ତିନୋଟି ରେସର ପେଣ୍ଡା ଭାରତରେ ମିଳନ୍ତି ।

କଲଗ ପର୍ତ୍ରିଆ ଦେହର ଲୋମ ଛୋଟ । ଏହା ଗୋଟିଏ ସୁନ୍ଦର ଚିକ୍କଣ ପ୍ରାଣୀ । ଅଣ୍ଡିରା ଲମ୍ବରେ ପ୍ରାୟ 215 ସେଣ୍ଟିମିଟାର ( 7ଫୁଟ ) ହୁଏ; ମାଈ 30 ସେଣ୍ଟିମିଟାର ( 1 ଫୁଟ ) କମ୍ । ଅତି ବଡ ଅଣ୍ଡିରା 245 ସେଣ୍ଟିମିଟର ( 8 ଫୁଟ ) ଯାଏ ଲମ୍ବ ହେବା ମଧ୍ୟ ଦେଖା ଯାଇଅଛି । ଓଜନରେ ଅଣ୍ଡିରା 68 କିଲୋଗ୍ରାମ୍ (150 ପାଉଣ୍ଡ), ମାଈ 50 କିଲୋଗ୍ରାମ (110 ପାଉଣ୍ଡ) । ଏସବୁ ଏମାନଙ୍କର ସର୍ବାଧିକ ଓଜନ ସୂଚାଏ । ସାଧାରଣ ଅଣ୍ଡିରା କଲଗପର୍ତ୍ରିଆର ଓଜନ 52 କିଲୋଗ୍ରାମ ( 115 ପାଉଣ୍ଡ ) ଓ ମାଈ 39 କିଲୋଗ୍ରାମ (85 ପାଉଣ୍ଡ) । ଭାରତର ବିଭିନ୍ନ ଅଞ୍ଚଳରେ ଏମାନଙ୍କର ବର୍ଣ୍ଣ, ଆକାର ଓ ଓଜନରେ ବେଶ ତାରତମ୍ୟ ପରିଲକ୍ଷିତ ହୁଏ ।

କଲରା ପତ୍ରିଆ ଭାରତର ବିସ୍ତୀର୍ଣ୍ଣ ଅଞ୍ଚଳରେ, ସିଂହଳ ଓ ବର୍ମାରେ ଦେଖାଯାଏ । ସିନ୍ଧ, କାଶ୍ମୀର, ବେଲୁଚିସ୍ଥାନ, ସିକିମ୍ ଓ ନେପାଳର ପେଣ୍ଡ୍ରା ସ୍ୱତନ୍ତ୍ର ରେସର । କଲରାପତ୍ରିଆ ପ୍ରାୟ ସବୁପ୍ରକାର ଅଞ୍ଚଳରେ ବାସ କରିପାରେ ବୋଲିକହିଲେ ଅତ୍ୟୁକ୍ତି ହେବ ନାହିଁ । ଏମାନେ ସାଧାରଣତଃ, ପାହାଡ, ଡୁଙ୍ଗୁରି, ବଣ, ବୁଦା ଆଦିରେ ରହନ୍ତି । ମହାବଳ ବାଘ ପରି ବାସ ପାଇଁ ଏମାନଙ୍କର ନିବିଡ଼ ଜଙ୍ଗଲ ଆବଶ୍ୟକ ହୁଏ ନାହିଁ । ବୁଦାଳିଆ ବା ଝାଟଆ ବଣ କେନ୍ଦୁଆର ପ୍ରଧାନ ବାସ-ସ୍ଥଳୀ । ଖୋଲା ପଥୁରିଆ ଅଞ୍ଚଳରେ ମଧ୍ୟ ଏମାନେ ବାସ କରନ୍ତି । ଗାଈ, ହରିଣ, ମାଙ୍କଡ, ଝିଙ୍କ ଆଦ ଯାହା ମାରିପାରେ ତାହାକୁ



ଚିତ୍ର ନମ୍ବର 21, କଲରା ପତ୍ରିଆ ବାଘ

ସେ ଆହାର କରେ । ଏପରିକି ପକ୍ଷୀ, ସରୀସୃପ ଓ କଙ୍କଡା ମଧ୍ୟ ଏମାନେ ଖା ନ୍ତି । ନୀଳଗାଈ, ସମ୍ବର, ବାରଶିଙ୍ଗା ଆଦି ବଳୁଆ, ଦ୍ରୁତଗାମୀ ଓ ବଡ଼ ପ୍ରାଣୀଙ୍କୁ କଲରା ପତ୍ରିଆ ପାରେ ନାହିଁ । ଏଥିପାଇଁ ସେ ସାଧାରଣତଃ ସେମାନଙ୍କୁ ଶିକାର କରେ ନାହିଁ । ଯେଉଁଠି ଜଙ୍ଗଲ ବା ବୁଦାଝାଟି ଅଞ୍ଚଳକୁ ଲାଗି ଜନ ବସତି ଥାଏ, ସେଠାକୁ ପେଣ୍ଡ୍ରା ଆସି ଗାଈ, ବାଛୁରୀ, ଛେଳୀ, ମେଣ୍ଢା,

ଓଧ ଆଦି ଶିକାର କରି ନେଇ ପଳାଏ । ଗ୍ରାମ୍ୟ କୁକୁର ସବୁଠୁ ବେଶୀ ତା' ଭାଗରେ ପଡ଼ିଥାନ୍ତି । ଏଥିରୁ ଦେଖାଯିବ, ବାଘ ତୁଳନାରେ କଲରପତ୍ରିଆ ବେଶୀ ମନୁଷ୍ୟ ସଂଘର୍ଷରେ ଆସେ ।

କେନ୍ଦୁଆର ପ୍ରଧାନ ଶତ୍ରୁ ବାଘ ଓ ମନୁଷ୍ୟ । ବଣିଆ କୁକୁର ଓ ବଧିଆ ( hyaena ) ସହିତ ମୁହାଁ ମୁହିଁରେ ପେଷୁ ପାରେ ନାହିଁ ।

କଲରପତ୍ରିଆର ସ୍ୱଭାବ ଅନେକ ପରିମାଣରେ ମହାବଳ ବାଘ ପରି । ବାଘ ରାତ୍ରିଚର, କେନ୍ଦୁଆ ମଧ୍ୟ ରାତ୍ରିଚର । କିନ୍ତୁ ସେ ସୂର୍ଯ୍ୟାଲୋକ ସହିପାରେ । ରାତ୍ରିରେ ଖାଇବା ନ ଜୁଟିଥିଲେ ସେ ଦିନରେ ବାହାରି ଶିକାର କରେ । ବାଘପରି ସେ ଶିକାରପ୍ରାଣୀର ଯିବା ଆସିବା ପଥରେ ଲୁଚି ରହି ବା ଛପି ଛପି ଆସି ପଛରୁ ହଠାତ ଖାଦ୍ୟ-ଜୀବ ଉପରକୁ କୁଦି ପଡେ । ଆହୁରି ମଧ୍ୟ କଲରପତ୍ରିଆ ଗଛ ଉପରେ ଚଢି ଛପି ଥାଏ । ଶିକାର ପ୍ରାଣୀ ତାଳ ତଳେ ଗଲାବେଳେ ତା' ଉପରକୁ ଲମ୍ଫ ଦେଇ ଆକ୍ରମଣ କରେ । ଏମାନେ ବେଶ ବଳବାନ୍ । ଶାନ୍ତିରେ ବସି ଖାଇବା ପାଇଁ କଲରପତ୍ରିଆ ଗୋଟିଏ ବଡ ଚିତଳ ହରିଣକୁ ମୁହଁରେ ଧରି ଗଛ ଉପରକୁ ଉଠି ଯିବାର ଦେଖା ଯାଇଅଛି ।

ମନୁଷ୍ୟବସତି ନିକଟରେ ବାସ କରୁଥିବାରୁ କଲରପତ୍ରିଆକୁ ମନୁଷ୍ୟର ଗ୍ରାମ୍ୟ ଜୀବନ ଭଲରୂପେ ଜଣାଥାଏ । ଏଥିପାଇଁ ଏହା ମଣିଷଖିଆ ପାଲଟିଲେ ମହାବଳ ବାଘଠାରୁ ଅଧିକ ଭୟଙ୍କର ହୁଏ । ମୟୁରଭଞ୍ଜର ଗୋଟିଏ ଗ୍ରାମରୁ ଗୋଟିଏ କଲରପତ୍ରିଆ ପଇଁତିରିଶଟି ମଣିଷ ପିଲା ନେଇ ପଳାଇବାର ଜଣା ଅଛି ।

କେନ୍ଦୁଆମାନଙ୍କର ସନ୍ତାନ ପ୍ରସବ କରିବାର କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ଗର୍ଭଧାରଣର ପ୍ରାୟ ତେର ସପ୍ତାହ ପରେ ଛୁଆ ଜନ୍ମ ହୁଏ । ଥରକେ ଦୁଇଟିରୁ ଚାରିଟି ଶାବକ ଜନ୍ମ ହୁଅନ୍ତି । ବନ୍ଦୀ ଅବସ୍ଥାରେ ଗୋଟିଏ ମାଈ କଲରପତ୍ରିଆ ସାଢେ ତିନି ବର୍ଷରେ ତିନିଥର ଛୁଆ ପ୍ରସବ କରିଥିଲା ।

କେନ୍ଦୁଆର ବୈଜ୍ଞାନିକ ନାମ Panthera pardus (Linnaeus) ବିଭିନ୍ନ ଭାଷାରେ ଏହାର ନାମ:—ହିନ୍ଦି-ତେଣ୍ଡୁଆ, ଚିତା, ସୋନା ଚିତା, ଚିତା ବାଘ; ମାରାଠୀ-କରଡ଼ା, ଆସାମିଆ, ସିଂହଳ, ବିବଲ୍ୟା ଓ ବାଘ;

କାନାରୀ—ଚିରଚୁ, ଚିରେଟ, ସିଓ୍ୱାଙ୍ଗୀ, କିଗବା; ତାମିଲ—ଚିରୁଥାଇ; ତେଲୁଗୁ-ଚିରୁତା ପୁଲୀ; ବର୍ମୀ—ଥିତ୍; ମାଲୟାଲୀ—ପୁଲୀ ପୁ ଲୋ ଭୀ ।

ଓଡ଼ିଶାର ସବୁ ଜଙ୍ଗଲରେ କଲରପତ୍ରିଆ ବାଘ ରହନ୍ତି । 1947 ସାଲ ସ୍ୱାଧୀନତା ପରବର୍ତ୍ତୀ କାଳରେ ଅବାଧ ବନ୍ୟଜନ୍ତୁସଂହାର ଫଳରେ ଏମାନଙ୍କର ସଂଖ୍ୟା ଓଡ଼ିଶା ତଥା ଭାରତର ସର୍ବତ୍ର ବହୁତ ବେଶୀ କମି ଯାଇଛି ।



# ବାଘଟା

ବାଘଟା ଅନେକ ପରିମାଣରେ କଲଗପତ୍ରିଆର ଏକ କ୍ଷୁଦ୍ର ସଂସ୍କରଣ । ଆକାର ପ୍ରାୟ ଗୃହ ପାଳିତ ବିଲେଇ ପରି ହେବ । ଗୋଡ ବିଲେଇର ଗୋଡ ଠାରୁ ବଡ଼ । ଦେହର ରଙ୍ଗ ବାହାର ପଟ ହଳଦିଆ, ଭିତର ପଟ ଅର୍ଥାତ୍‌ ପେଟ, ଗୋଡ଼ର ଭିତର ପଟ ଇତ୍ୟାଦି ଧଳା । ଦେହସାରା କଳା ବା ବାଦାମୀ ବର୍ଣ୍ଣର ଚିହ୍ନ ପଡ଼ିଥାଏ । କେତେକ ବାଘଟା ବିଶେଷ କରି କାଶ୍ମୀରର ଉତ୍ତରାଞ୍ଚଳର ବାଘଟାଙ୍କର ଦେହର ବର୍ଣ୍ଣ ଧୂସରିଆ ବା ଲାଲସିଆ ବାଦାମୀ ଏବଂ



ଚିତ୍ର ନମ୍ବର 22 ବାଘଟା

ଦେହରେ ପଡ଼ିଥିବା ଗାର ଚିହ୍ନ ବେଳେ ବେଳେ ମିଶି ଯାଇ ନିୟମିତ ଦୈର୍ଘିକ (longitudinal) ରେଖା ପରି ମନେହୁଏ । ଅନ୍ୟ ଚିହ୍ନ ସାଙ୍ଗକୁ ବାଘଟା

ଦେହରେ ନିମ୍ନଲିଖିତ ଚିହ୍ନ ଥାଏ । ଚାରିଟି କଳା ରେଖା ମୁଣ୍ଡ ଉପରୁ ବେକ ଦେଇ ସ୍କନ୍ଧ ପର୍ଯ୍ୟନ୍ତ ବିସ୍ତୃତ । ତା' ପରେ ରେଖା ଗୁଡ଼ିକ ଖଣ୍ଡ ଖଣ୍ଡ କ୍ଷୁଦ୍ର ରେଖା ଚିହ୍ନରେ ପରିଣତ ହୋଇଅଛି । ଗାଲରେ ଦୁଇଟି ଭୂସମାନ୍ତର ରେଖା ଘଡ଼ିଥାଏ । ତଳ ରେଖାଟି ତଣ୍ଟି ଅଂଶରେ ଆଡ଼ ବାଗରେ ଥିବା କଳା ରେଖା ସହିତ ମିଶିଥାଏ । ଅଗ୍ର ବାହୁର ଭିତର ଅଂଶରେ ଦୁଇଟି କଳା ରେଖା ଅଛି । ଲଞ୍ଜର ଶେଷାଂଶରେ ଆଡ଼ ବାଗରେ କଳା ରେଖା ପଡ଼ିଥାଏ ।




ଚିତ୍ର ନମ୍ବର 23 ବାଘଟାର ବିସ୍ତୃତି ।

ବାଘଟା ଦେହ ଓ ମୁଣ୍ଡର ଲମ୍ବ ପ୍ରାୟ 60 ସେଣ୍ଟିମିଟର (2 ଫୁଟ) । ଲାଞ୍ଜ ଦେହଲମ୍ବର ଅଧେରୁ ବେଶୀ ହୋଇଥାଏ । ବାଘଟା ଓଜନରେ 3-4 କିଲୋଗ୍ରାମ (6-8 ପାଉଣ୍ଡ) ହୁଏ ।

ଏମାନେ କାଶ୍ମୀର ଓ ହିମାଳୟଅଞ୍ଚଳଠାରୁ କମୋରିନ୍ ଅନ୍ତରୀପ (cape comorin) ପର୍ଯ୍ୟନ୍ତ ଭାରତର ସମଗ୍ର ଅଞ୍ଚଳର ଜଙ୍ଗଲରେ ବାସ କରନ୍ତି । ଦକ୍ଷିଣ-ପୂର୍ବ ଏସିଆରେ ମାଞ୍ଚୁରିଆ ଓ କୋରିଆ ପର୍ଯ୍ୟନ୍ତ ଏମାନଙ୍କର ବିସ୍ତୃତି । ଭାରତରେ ତିନୋଟି ରେସର ବାଘଟା ଦେଖାଯାନ୍ତି ।

ଏହି ସୁନ୍ଦର ପ୍ରାଣୀଟି ରାତ୍ରିଚର ହୋଇଥିବାରୁ କ୍ୱଚିତ୍ ଦେଖିବାକୁ ମିଳେ । ଏହାକୁ ଜଙ୍ଗଲର ବିଲେଇ କହିଲେ ଭୁଲ ହେବ ନାହିଁ । ଏମାନେ କ୍ଷୁଦ୍ର କ୍ଷୁଦ୍ର ପକ୍ଷୀ ଓ ଅନ୍ୟାନ୍ୟ ପ୍ରାଣୀଙ୍କୁ ମାରି ଖାନ୍ତି । ଗଛର କୋରଡ ଏମାନଙ୍କର ପ୍ରଧାନ ଆଶ୍ରୟ । କୁର୍ଗର ଗ୍ରାମାଞ୍ଚଳରେ ବାଘଟା ବେଶୀ ସଂଖ୍ୟାରେ ଦେଖାଯାନ୍ତି ଓ ଗୃହ ପାଳିତ କୁକୁଡ଼ା ମାନଙ୍କ ଉପରେ ଚଢ଼ାଉ କରନ୍ତି । ଦକ୍ଷିଣ ଭାରତରେ ମେ ମାସ ଆଡ଼କୁ ଛୁଆ ଜନ୍ମ ହୁଏ ବୋଲି ଅନୁମାନ । ଥରକରେ 3-4 ଟି ଶାବକ ଜନ୍ମ ହୁଅନ୍ତି । ଥରେ ନୀଳଗିରି ଅଞ୍ଚଳରେ ଅଗଷ୍ଟ ମାସରେ କେତେ ମାସର ହୋଇଥିବା ବାଘଟା ଛୁଆଟିଏ ଧରା ହୋଇଥିଲା । ବେଶ ପୋଷା ମାନିଗଲା, ମାତ୍ର ଗୃହପାଳିତ ବିଲେଇ ତାକୁ ଘଉଡ଼ାଇବାରୁ ବଣକୁ ପଳାଇଗଲା । ଏହା ଏକାଧିକବାର ବଣରୁ ତା'ର ପ୍ରଭୁ ନିକଟକୁ ଆସିଥିଲା । କେତେକ କ୍ଷେତ୍ରରେ ବାଘଟା ଗୃହପାଳିତ ବିଲେଇ ସହିତ ପ୍ରଜନନ କରିବାର ଦେଖାଯାଇଛି ।

ବାଘଟାର ବୈଜ୍ଞାନିକ ନାମ Felis bengalensiskerr ; ଇଂରାଜୀରେ Leopard-cat କହନ୍ତି ; ହିନ୍ଦି ନାମ-ଚିତା ବିଲ୍ଲୀ; ବଙ୍ଗଳା-ବନ୍ ବିଡ଼ାଲ ; ମରାଠୀ-ୱାଗାଟି ।

ପଶ୍ଚିମଘାଟ ପର୍ବତମାଳା ଅଞ୍ଚଳରେ ଆଉ ଜାତିଏ ବାଘଟା ଦେଖାଯାନ୍ତି । ତାର ବୈଜ୍ଞାନିକ ନାମ Felis rubiginosa Geoffrey । ଇଂରାଜୀ ନାମ "ଛକ୍ଛପି ବିଲେଇ" (Rusty spotted cat । ଏମାନେ ଦୁଇଟି ରେସ (race) ର ଗୋଟିଏ ଭାରତରେ ଦେଖାଯାଏ; ଅନ୍ୟଟି ସିଂହଳରେ ।



# ବଣ ବିଲେଇ

ବଣ ବିଲେଇ ବା ବଣଭୁଆ ଲମ୍ବରେ ଲାଞ୍ଜକୁ ଛାଡି ପ୍ରାୟ ସେଣ୍ଟିମିଟାର (2 ଫୁଟ) ହୋଇଥାଏ । ଲାଞ୍ଜ ପ୍ରାୟ 30 ସେଣ୍ଟିମିଟାର (1 ଫୁଟ) । ଓଜନ 5-6 କିଲୋଗ୍ରାମ (10-12 ପାଉଣ୍ଡ) । ଏହାର ଗୋଡ ଲମ୍ବା । ଦେହକୁ ଚାହିଁ ଲାଞ୍ଜଟି ଛୋଟ କହିଲେ ଚଳେ । ଆଖିର ରଙ୍ଗ ମସିଣିଆ ସବୁଜ । ଲୋମର ବର୍ଣ୍ଣ ବାଲିଆ ଧୂସରରୁ ହଳଦିଆ ଧୂସର । ଲାଞ୍ଜ ଶେଷ ଆଡ଼କୁ କଳା ମୁଦି ଆକାରର ଚିହ୍ନଥାଏ ଓ ଲାଞ୍ଜ ଶେଷ ଅଂଶ କଳା । ପାଦ ତଳର ରଙ୍ଗ ଫିକା ହଳଦିଆ, କଳା ବା କଳାସିଆ ବାଦାମୀ । କାନ ଲାଲସିଆ ଓ କାନ ଅଗ୍ର ଭାଗର କେତୋଟି ଲୋମ କଳା । ପେଟ ପାଖର ରଙ୍ଗ ଫିକା । ପେଟ ପାଖ ଓ ଗୋଡର ବାହାର ପାଖରେ କେତୋଟି କଳା ଗାର ପଡିଥାଏ ।

ବଣଭୁଆ ବିସ୍ତୃତ ଅଞ୍ଚଳରେ ଦେଖାଯାଏ । ଉତ୍ତର ଆଫ୍ରିକାଠାରୁ ଦକ୍ଷିଣ–ପଶ୍ଚିମ ଏସିଆ ଦେଇ, ଭାରତ, ସିଂହଳ, ବର୍ମା ଓ ଇଣ୍ଡୋଚୀନ୍ ଯାଏ ସମଗ୍ର ଅଞ୍ଚଳରେ ଏମାନେ ବାସ କରନ୍ତି । ହିମାଳୟଠାରୁ କମୋରୀନ୍ ଅନ୍ତରୀପ ଯାଏ ସମଗ୍ର ଭାରତୀୟ ଉପଦ୍ୱୀପରେ ଏହା ହେଉଛି ସାଧାରଣ ବଣୁଆ ବିଲେଇ । ହିମାଳୟ ଅଞ୍ଚଳରେ ଶୀତାଧିକ୍ୟ ଯୋଗୁ ବଣ ବିଲେଇର ଲୋମ ବଡ । ଏମାନେ ଆକାରରେ ଉତ୍ତର ଭାରତର ସମତଳ ଅଞ୍ଚଳର ବଣଭୁଆଠାରୁ ମଧ୍ୟ ବଡ ଓ ଓଜନିଆ । ମରୁଭୂମି ଅଞ୍ଚଳର ବଣଭୁଆର ବର୍ଣ୍ଣ ବାଲି ରଙ୍ଗର । ଦକ୍ଷିଣ ଭାରତରେ ଏକ ପ୍ରକାର ବଣଭୁଆ ଦେଖାଯାନ୍ତି । ସେମାନଙ୍କର ଲୋମ ଛୋଟ, ପିଠି ଉପର ଧୂସର ଓ ତା’ ଉପରେ କଳା ଧଳା ଚିହ୍ନଥାଏ ।

ବଣ ବିଲେଇ ଶୁଷ୍କ ଖୋଲା ଅଞ୍ଚଳରେ ବାସ କରେ । ଘାସଭୂମି, ବୁଦାଳିଆ ଜଙ୍ଗଲ ଓ ନଦୀ ବନ୍ଧର ଜଙ୍ଗଲିଆ ଅଞ୍ଚଳ ସେମାନଙ୍କର ପ୍ରଧାନ ବାସସ୍ଥାନ । କାଶ୍ମୀରର ସହର ଅଞ୍ଚଳରେ ସେମାନେ ଏକ ସାଧାରଣ ପ୍ରାଣୀ ଏବଂ ସହର ନିକଟରେ ପଥର ସନ୍ଧିରେ ଓ ଅବ୍ୟବହୃତ ଘରେ ବାସ କରନ୍ତି ।

ବଣ ବିଲେଇ ଦିବାଚର । ସକାଳେ ଓ ସନ୍ଧ୍ୟାବେଳେ ଏମାନେ ବେଶୀ ବାହାରନ୍ତି । ଏମାନଙ୍କର ସ୍ୱଭାବ ଚରିତ୍ର କଲରାପତ୍ରିଆ ବାଘପରି ।



ଚିତ୍ର ନମ୍ବର 2୪ ବଣଭୁଆ ।

ଛୋଟ ଛୋଟ ସ୍ତନ୍ୟପାୟୀ ପ୍ରାଣୀ ଓ ପକ୍ଷୀ ବଣଭୁଆର ଆହାର । ଗ୍ରାମ ବା ସହର ନିକଟରେ ବାସ କରୁଥିବା ବଣଭୁଆ କୁକୁଡାଙ୍କୁ ନେଇ ପଳାଇ ଯାଏ । ଆକାରକୁ ଗ୍ରହିଁ ଏହା ଖୁବ ଚଞ୍ଚଳ ଓ ବଳବାନ । ମଣିଷ ସାମ୍ନାରେ ଦେଖୁ ଦେଖୁ କୁକୁଡା ନେଇ ପଳାଇ ଯିବାର ଦୃଷ୍ଟାନ୍ତ ମଧ୍ୟ ଅଛି । କୁମାଓନ ଅଞ୍ଚଳରେ ଗୋଟାଏ ବଣଭୁଆ ଗୋଡରେ ଝଙ୍କ କାଠି ଲାଗିବାର ଦେଖା-ଯାଇଛି । ଏଥରୁ ଜଣା ପଡୁଛି, ଏମାନେ ତାଙ୍କଠାରୁ ବଡଝଙ୍କପରି ପ୍ରାଣୀଙ୍କୁ ମଧ୍ୟ ଆକ୍ରମଣ କରିଥାନ୍ତି ।

ଏମାନେ ନିଭୃତରେ ଆହାର କରିବାକୁ ଭଲ ପାନ୍ତି, ସେତେବେଳେ ଆଗନ୍ତୁକର ଉପସ୍ଥିତି ସହ୍ୟ କରନ୍ତି ନାହିଁ ଓ ହିଂସ୍ର ହୋଇ ଉଠନ୍ତି ।

ବଣଭୁଆସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ସୀମିତ । ଖୁବ୍ ସମ୍ଭବତଃ ଏମାନେ ବର୍ଷରେ ଦୁଇଥର ଛୁଆ କରନ୍ତି । ଛୁଆବେଳୁ ପାଳିଲେ ଏମାନେ ପୋଷା ମାନନ୍ତି ଓ ଖୁସି ହେଲେ ଗୃହପାଳିତ ବିଲେଇ ପରି ଶବ୍ଦ କରନ୍ତି ।

ବଣ ବିଲେଇର ବୈଜ୍ଞାନିକ ନାମ Felis chaus Gïldensta edt । ହିନ୍ଦି–କଟାସ, ଜଙ୍ଗଲି ବିଲ୍ଲୀ, ବଙ୍ଗଳା ବନ ବିଡାଲ, ମରଠୀ-ବାଉଲ୍, ବାଗ, ତେଲୁଗୁ–ଜୁଙ୍ଗା ପିଲ୍ଲୀ, ତ ମିଲ୍ କରଟୁ ପୁ (ଉ) ନେ, ମାଲୟାଲୀ–କାରଟୁ ପୁ ( ଉ ) ଗ୍ଗ, କାନାରିଜ–କାଡା ବେକକୁ, ବର୍ମିଜ ଟୋର ଗ୍ଗଉଙ୍ଗ୍

# କାରାକାଲ

କାରକାଲ ବଣ ବିରାଡ଼ିର ଏକ ଜାତି । ଦେଖିବାକୁ କେତେକ ପରିମାଣରେ ବଣ ବିରାଡ଼ି ପରି । ଶିକାରୀମାନେ ଦୂରରୁ ଦେଖି ତାକୁ ବଣଭୁଆ ବୋଲି ଭ୍ରମ କରନ୍ତି । ମାତ୍ର ମାରି ସାରି ଦେଖନ୍ତି ସାଧାରଣ ବଣ ବିରାଡ଼ି ଠାରୁ ସେ ଭିନ୍ନ । ହିନ୍ଦି ଓ ପାର୍ଶିରେ ଏହାକୁ 'ସି ଏ ଗୁସ୍' କହନ୍ତି । ଇଂରାଜି ନାମ କାରକାଲ (Caracal) । ବୈଜ୍ଞାନିକ ନାମ–Felis Caracal Schreber.

କାରକାଲର ମୁଣ୍ଡ ଓ ଦେହର ଲମ୍ବ ପ୍ରାୟ ଷାଠିଏ ସେଣ୍ଟି ମିଟର (2 ଫୁଟ) ଏବଂ ଲାଞ୍ଜ ତେଇଶ ସେଣ୍ଟି ମିଟର (ନଅ ଇଞ୍ଚ) । ମୁଣ୍ଡଟି ଓସାରିଆ । ପଛ ଗୋଡ଼ ଦୁଇଟି ଆଗ ଗୋଡ଼ ଅପେକ୍ଷା ଲମ୍ବା । ଏଣୁ ଠିଆ ହୋଇଥିଲା ବେଳେ ପଛ ଆଡ଼ୁ ଆଗ ଆଡ଼କୁ ଦେହ ଗଡ଼ାଣିଆ ଦିଶେ । କାନ ଦୁଇଟି ଉପର ଆଡ଼କୁ ସରୁ ଓ ଅଗରେ ସରୁ ହୋଇ ଲୋମ ପୁଞ୍ଜିଏ ଥାଏ । ଆଖି ଉପରକୁ ମୁଣ୍ଡର ମଝି ଆଡ଼କୁ ଦୁଇଟି କଳା ଗାର ପଡିଥାଏ ।



ଚିତ୍ର ନମ୍ବର 25 କାରକାଲ୍ ।

ଏ ଦୁଇଗାର ମଝିରେ ଆଉ ଗୋଟିଏ ହାଲୁକା କଳାଗାର ଅଛି । ଉପର ଓଠରେ ଦୁଇ କଡରେ ଦୁଇଟି ସ୍ପଷ୍ଟ କଳା ଚିହ୍ନ । କାନର ବାହାର ପାଖ କଳା

ଓ ଭିତର ପାଖ ଧଳା । ଦେହର ସାଧାରଣ ବର୍ଣ୍ଣ ନଦୀ କୂଳରେ ବେଳେବେଳେ ଦେଖାଯାଉଥିବା ଲାଲ୍ ବାଲି ପରି ଲାଲ୍ । ପେଟ ପାଖର ରଙ୍ଗ ଧଳା । ଦେହର ଲୋମ କୋମଳ । ସଦ୍ୟଜାତ କାରକାଲ୍ ଶାବକମାନଙ୍କ ଦେହରେ ଟିପ୍‌ଟିପିକିଆ ଚିହ୍ନ ଦେଖିବାକୁ ମିଳେ । ପିଠିରେ ଓ ପେଟ ପାଖରେ ଯେଉଁ ଟିପ ଟିପ୍ ଚିହ୍ନ ଥାଏ ତାହା ସ୍ପଷ୍ଟ ନୁହେଁ । ଲାଞ୍ଜର ବର୍ଣ୍ଣ ଦେହର ରଙ୍ଗପରି, ମାତ୍ର ତା'ର ଅଗ କଳା । ଏଇ ସବୁ ଲକ୍ଷଣ ଦ୍ୱାରା କାରକାଲକୁ ବଣ ବିଲେଇ ଠାରୁ ଚିହ୍ନିବା କଷ୍ଟକର ନୁହେଁ । ଭୌଗୋଳିକ ଭାରତରେ ପଞ୍ଜାବ, ରାଜସ୍ଥାନ, ଉତ୍ତର ପ୍ରଦେଶ ଓ କେନ୍ଦ୍ର ଭାରତରୁ ବେଲୁଚିସ୍ଥାନ ସିନ୍ଧ ଏବଂ ଦେଇ ପାରସ୍ୟ, ମେସୋପଟାମିଆ ଓ ଆରବ ଦେଇ ପଶ୍ଚିମ ଏସିଆ ଓ ଅଫ୍ରିକା ମହାଦେଶର ବେଶୀ ଭାଗ—ଏହି ବିସ୍ତୃତ ଅଞ୍ଚଳ ଦିନେ କାରକାଲ ମାନଙ୍କର ବାସଭୂମି ଥିଲା । ମାତ୍ର ଏବେ ଏମାନଙ୍କର ସଂଖ୍ୟା ଅନେକ ପରିମାଣରେ ହ୍ରାସ ପାଇଅଛି । ଭାରତରେ ଏହା ଲୁପ୍ତପ୍ରାୟ । ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାରେ କାରକାଲ୍ ବାସ କରିବାର ଜଣାଅଛି, ଅର୍ଦ୍ଧଶୁଷ୍କ ଓ ମରୁଭୂମି ଅଞ୍ଚଳ ଏବଂ ଖୋଲା ବୁଦ୍‌ବୁଦିଆ ଜଙ୍ଗଲରେ ଏମାନେ ବାସ କରନ୍ତି ।



ଚିତ୍ର ନମ୍ବର 26 କାରକାଲ୍‌ର ମୁଣ୍ଡ ।

କାରକାଲ୍‌ର ପ୍ରଧାନ ଖାଦ୍ୟ ପକ୍ଷୀ ମୂଷା ଜାତୀୟ ପ୍ରାଣୀ, ଠେକୁଆ ଓ କ୍ଷୁଦ୍ର ହରିଣ । ଏମାନେ ଖାଦ୍ୟ ପ୍ରାଣୀ ଉପରକୁ ଅତର୍କିତ ଭାବେ କୁଦି ପଡ଼ି ତାକୁ ମାରନ୍ତି । ମହୀଶୂରର ଚିଡ଼ିଆଖାନାରେ ଗୋଟିଏ କାରକାଲ ଥିଲା । ଦିନେ ତା' ପିଞ୍ଜରା ଭିତରେ ଗୋଟିଏ ବଡ଼ ଗୋଖର ସାପ ପଶିଗଲା । କାରକାଲ୍‌ଟି ତାକୁ ମାରି ତା'ର କିଛି ଅଂଶ ଖାଇ ଯାଇଥିଲା । ଏହା ଅତ୍ୟନ୍ତ କ୍ଷିପ୍ର ଓ ଶିକାରୀ । ଥରେ ଜଣେ ଶିକାରୀ ମୟୂରଭଞ୍ଜର କୃଷ୍ଣଚନ୍ଦ୍ରପୁର ଓ

ବେତନଟୀ ମଧ୍ୟରେ ଏକ ସ୍ଥାନରେ ଗୋଟିଏ **ଅର୍ଣ୍ଣିଗ** କାରକାଲକୁ ଗୁଳି କଲେ । ଗୁଳି ଖାଇ ସେ ପ୍ରାୟ 1.83 ମିଟର (ଛଅ ଫୁଟ) ଡିଆଁ ମାରି ତଳେ ମରିପଡ଼ିଥିଲା । ପୂର୍ବେ ଆମ ଦେଶରେ ଲୋକେ କାରକାଲ୍‌କୁ ପୋଷା ମନାଇ ଛୋଟ ହରିଣ, ଠେକୁଆ, ଶଶା, ମୟୂର ଓ ଅନ୍ୟ ପକ୍ଷୀ ଶିକାର କରୁଥିଲେ । ପାରସ୍ୟରେ ଏହାକୁ ପୋଷା ମନାଇ ଆମୋଦ ଖେଳରେ ବ୍ୟବହାର କରୁଥିଲେ । ଏହି ବିଡ଼ାଳର ଆଖି ତୀକ୍ଷଣ ଓ ତା'ର ଗୋଡ଼ ଉପରେ ପ୍ରଭ ଆୟତ୍ତ । ଦଳେ ପାର ତଳେ ଖାଦ୍ୟ ଟୁଙ୍କୁ ଥିବା ବେଳେ କାରକାଲ୍ ସେମାନଙ୍କ ଉପରକୁ କୁଦି ପଡ଼ି ଏକା ଥରକେ ନଅ ଦଶଟି ପାର ମାରି ସାରିବଣି ଅନ୍ୟାନ୍ୟ ପାରମାନେ କ'ଣ ହେଲା ବୋଲି ଜାଣିବା ପୂର୍ବରୁ ଏହା ଘଟି ସାରିଥାଏ ।

କାରକାଲ୍‌ମାନଙ୍କ ସ୍ୱଭାବ, ପ୍ରଜନନ ଇତ୍ୟାଦି ସମ୍ବନ୍ଧରେ ପ୍ରାୟ କିଛି ଜଣା ନାହିଁ । ଏମାନେ ଝିଙ୍କ ଗାତ, ଗଛ କୋରଡ଼ ବା ପଥର ସନ୍ଧିରେ ଛୁଆ କରନ୍ତି ବୋଲି ଲୋକେ କହନ୍ତି । ଥରକେ ମାଈ କାରକାଲ୍ ଦୁଇଟିରୁ ଚାରିଟି ଶାବକ ପ୍ରସବ କରେ ।



# ଚିତାବାଘ

ଚିତାବାଘ ଦେହ ସାରା ଚିତା ପରି କଳା କଳା ଚିହ୍ନ ଥାଏ । କଲରା ପତ୍ରିଆ ବାଘ ଦେହରେ ମଧ୍ୟ ଚିତା ପରି ଚିହ୍ନ ଥାଏ । ସେଥିପାଇଁ ତାକୁ ମଧ୍ୟ ଚିତା ବାଘ ବୋଲି କହିଥାନ୍ତି । ମାତ୍ର ଦୁହିଁଙ୍କ ଭିତରେ ସ୍ପଷ୍ଟ ପ୍ରଭେଦ ଅଛି । ଚିତା ବାଘର ବର୍ଣ୍ଣ ଫିକା ହଳଦିଆ ଓ ଦେହସାରା ଲଗାଲଗି ହୋଇ ଗୋଲ ଗୋଲ କଳା ଚିହ୍ନ ଥାଏ । ମାତ୍ର କଲରାପତ୍ରିଆ ବାଘ ଦେହର ଚିହ୍ନ ପୂରା କଳା ନୁହେଁ; କଳା ଚନ୍ଦ୍ରିକାକୃତି ଚିହ୍ନର ଭିତର ଲେମ କଳା ନୁହେଁ ।

ଚିତା ବାଘର ମୁଣ୍ଡ ଓ ଦେହର ଲମ୍ବ 90 ସେଣ୍ଟିମିଟାର (3ଫୁଟ); ଲାଞ୍ଜର ଲମ୍ବ 30 ସେଣ୍ଟି ମିଟାର (1ଫୁଟ)ରୁ କମ୍ । ଲାଞ୍ଜରେ ମଧ୍ୟ କଳା ଗୋଲାକାର ଚିହ୍ନଥାଏ । ଓ ଶେଷ ଆଡ଼କୁ କଳା ମୁଦିଆ ଚିହ୍ନ ଦେଖାଯାଏ । ଏହାର ଗୋଡ଼ ଗୁଡିକ ଲମ୍ବା ଓ ଦେହ ମୋଟା ସୋଟା ନୁହେଁ । ମହାବଳ ବାଘ, କଲରାପତ୍ରିଆ, ବଣ ବିଲେଇ ପ୍ରଭୃତିଙ୍କ ତୁଳନାରେ ଚିତାର ମୁଣ୍ଡ ସାନ । ବାଘ ଓ ବିଲେଇମାନଙ୍କର ନଖ ଖୋଳ ଭିତରେ ଥାଏ, ଉତ୍ତେଜିତ ହେଲେ ପଦାକୁ ବାହାରି ଆସେ । ଚିତା ବାଘର ନଖର ବ୍ୟବହାର ହେଉ ନଥିଲା ବେଳେ ସଂକୁଚିତ ହୋଇଯାଏ ଓ ବ୍ୟବହାର ବେଳେ ବାହାରକୁ ବାହାରି ପଡେ; ମାତ୍ର ସେମାନଙ୍କର ନଖର ଖୋଳ ନାହିଁ । ଏଣୁ ସେମାନଙ୍କର ନଖ ସବୁବେଳେ ଖୋଲା ।

ଆଫ୍ରିକାର ଅଧିକାଂଶ ଅଞ୍ଚଳ, ସେଠାରୁ ଦକ୍ଷିଣ–ପଶ୍ଚିମ ଏସିଆର ଦେଶ ଗୁଡ଼ିକର ମଧ୍ୟ ଦେଇ ଏହା ଭାରତକୁ ଆସିଲାପରେ ଭାରତର ଅଧିକାଂଶ ଅଞ୍ଚଳ ଚିତାବାଘର ବାସ ଭୂମି ହୋଇଛି ଅତୀତ କାଳରେ ସିଂହ ପରି ଚିତାବାଘ ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳର ଗିରିପଥ ଦେଇ ଭାରତରେ ପ୍ରବେଶ କରିଥିଲା । ଉତ୍ତର ଭାରତର ସମତଳ ଭୂମି ଓ ଦକ୍ଷିଣରେ ଦାକ୍ଷିଣାତ୍ୟ ଓ ମହୀଶୂର ପର୍ଯ୍ୟନ୍ତ ଏହା ବିସ୍ତୃତି ଲାଭ କରିଥିଲା । କ୍ରୂର ଶିକାରୀମାନଙ୍କ ହାତରେ ସେମାନଙ୍କର ବଂଶ ଏସିଆରୁ ଲୋପ ପାଇଅଛି । ଷାଠିଏ ବର୍ଷ ପୂର୍ବେ ଭାରତରେ

ସେମାନେ ବହୁ ସଂଖ୍ୟାରେ ଦେଖା ଯାଉଥିଲେ । ଓଡିଶାରେ ଜଣେ ଶିକାରୀ 1960 ସାଲରେ ଢେଙ୍କାନାଳ ଜଙ୍ଗଲର ଏକ ନିଭୃତ ଅଂଶରେ ଗୋଟିଏ ଚିତାବାଘ ଦେଖିଥିଲେ ବୋଲି ଜଣାପଡେ ।



ଚିତ୍ର ନମ୍ବର 27 ଚିତାବାଘ

ଭରତରେ ଚିତାବାଘ ସାଧାରଣତଃ ନିମ୍ନ ପାହାଡିଆ ଭୂମିରେ ବାସ କରୁଥିଲେ ଓ ନିକଟସ୍ଥ ସମତଳ ଭୂମିକୁ ଅସି ଶିକାର କରୁଥିଲେ । କ୍ଷୁଦ୍ର କ୍ଷୁଦ୍ର ହରିଣ ଜାତୀୟ ପ୍ରାଣୀ ଏମାନଙ୍କର ଖାଦ୍ୟ । ଖୁବ ସମ୍ଭବତଃ ପକ୍ଷୀ ମଧ୍ୟ ଖାନ୍ତି । ସମୟ ସମୟରେ ଛେଳି, ମେଣ୍ଢାଙ୍କୁ ମଧ୍ୟ ଆକ୍ରମଣ କରୁଥିଲେ । ବଳିଆ କୁକୁରମାନଙ୍କ ଶିକାରପଦ୍ଧତି ବାଘ, ବଣଭୁଆ ଆଦିଙ୍କ ଶିକାର ରୀତିଠାରୁ ଭିନ୍ନ । ଚିତାବାଘର ଶିକାର ରୀତି ଏ ଦୁଇ ପ୍ରକାର ଶିକାର ପଦ୍ଧତିର ଏକ ମିଶ୍ରଣ । ଭୂମିରେ ପେଟକୁ ମାଡି ଚୁପ ହୋଇ ଲୁଚି ବସଥାଏ । ବାଘ ବା ବଣଭୁଆ ପରି କିଛି ବାଟ ଲୁଚି ଲୁଚି ଅନୁଧାବନ କଲାପରେ ଖୋଲାରେ କୁକୁର ପରି କିଛିବାଟ ଗୋଡାଇ ଶିକାର କରେ । ଏମାନଙ୍କ ଗତି ଅତ୍ୟନ୍ତ କ୍ଷିପ୍ର । ଅନୁଧାବନର ପ୍ରଥମାବସ୍ଥାରେ ଏମାନଙ୍କର ବେଗ ଘଣ୍ଟାକେ 73 କିଲୋମିଟାର । (45 ମାଇଲ) ହୋଇଥାଏ । ପ୍ରାୟ 366 ମିଟାର (400 ଗଜ) ଦୂରତ୍ୱ ମାଏ ଚିତା ଏହି ବେଗରେ ଦୌଡି ପାରେ ।

ଅତୀତରେ ଭାରତରେ ଲୋକେ ଚିତାବାଘକୁ ଶାବକଅବସ୍ଥାରୁ ପାଳି ତାକୁ ଶିକାରରେ ତାଲିମ କରୁଥିଲେ । ଆଖି ଢାଙ୍କି ତାକୁ ଜଙ୍ଗଲକୁ ନେଇ ଯାନ୍ତି । ହରିଣ ପଲ ପାଖରେ ତାକୁ ଛାଡି ଦିଆଯାଏ । ସେ ପେଟ ମାଡ଼ି ଛପି ରହେ । ତା'ପରେ ଗୋଡ଼ାଇ ଯାଇ ଗୋଟାଏ ହରିଣର ପଛ ଅଂଶ ବା ଗୋଡ଼ରେ ଶକ୍ତିଶାଳୀ ପଞ୍ଝା ବସାଇ ତଳେ ପକାଇ ଦିଏ ଓ ତଣ୍ଟିକୁ କାମୁଡି ଧରେ । ଚିତାବାଘର ମୁନିବ ସୁଆଦିଆ ହରିଣ ମାଂସ ପାଏ ଓ ପୁରସ୍କାର ସ୍ୱରୂପ ଚିତା ବାଘର ଖାଇବା ପାତ୍ରରେ ହରିଣ ତଣ୍ଟିରୁ ଉଷ୍ଣ ରକ୍ତ ସଂଗ୍ରହ କରି ତାକୁ ଖାଇବାକୁ ଦିଏ ।

ଭାରତରେ ଚିତାବାଘର ପ୍ରଜନନ ସମ୍ବନ୍ଧରେ କିଛି ଜଣାନାହିଁ, ଏହାର ବୈଜ୍ଞାନିକ ନାମ–Acinonyx Jubatus (Sehreber) ଇଂରାଜି ନାମ– Cheetah (ଚିତା) Hunting leopard (ଶିକାରୀ ଚିତାବାଘ)



# ଗନ୍ଧ-ମାର୍ଜାର ବଂଶ

ଖାଟିଆପଟନି, କଟାଶ ଆଦି ପ୍ରାଣୀ ଭିଭେରିଡ଼ି ( viverridae ) ବା ଗନ୍ଧ ମାର୍ଜାର ବଂଶ ଅନ୍ତର୍ଭୁକ୍ତ । ବିଡ଼ାଳ ( cats ) (Felidae) ବଂଶର ପ୍ରାଣୀ ଏମାନଙ୍କର ନିକଟତମ ଜ୍ଞାତି । ଏ ଦୁଇ ବଂଶର ପ୍ରାଣୀମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଥଲେ ମଧ୍ୟ ଅନେକ ପ୍ରଭେଦ ଅଛି । ଭିଭେରିଡିବଂଶଭୁକ୍ତ ପ୍ରାଣୀମାନଙ୍କର ଦେହ ଲମ୍ବା, ଗୋଡ ଛୋଟ, ମୁଣ୍ଡ ଲମ୍ବାଳିଆ ଓ ଥୋମଣ (muzzle) ଗୋଳିଆ । ଅପର ପକ୍ଷରେ ବିଡ଼ାଳ ବଂଶର ପ୍ରାଣୀମାନଙ୍କର ଲମ୍ବା, ମୁଣ୍ଡ ଗୋଲକାର ଓ ଥୋମଣି ଚଟାଳିଆ । ଏ ଦୁଇ ବଂଶର ପ୍ରାଣୀଙ୍କର ସ୍ୱଭାବ ମଧ୍ୟ ଭିନ୍ନ । ବିଡ଼ାଳବଂଶୀୟ ପ୍ରାଣୀ ମୁଖ୍ୟତଃ ଶିକାର ଦ୍ୱାରା ଜୀବନ ଧାରଣ କରନ୍ତି । ଗନ୍ଧମାର୍ଜାରମାନଙ୍କ ମଧ୍ୟରେ କେତେକ ଆଂଶିକ ବା ବେଶୀ ଭାଗ ଉଦ୍ଭିଦଖାଦ୍ୟ ଗ୍ରହଣ କରନ୍ତି । ଏମାନଙ୍କର ଦେହର ଗଠନ ଶିକାରଉପଯୋଗୀ ନୁହେଁ । ବିଡ଼ାଳ ବଂଶର ପ୍ରାଣୀମାନଙ୍କର ହନୁ (Jaws) କ୍ଷୁଦ୍ର, ମାତ୍ର ବଳିଷ୍ଠ । ଏହା ଖସି ପଳାଇବାକୁ ଚେଷ୍ଟା କରୁଥିବା ପ୍ରାଣୀକୁ ଜବର କରି ଧରି ରଖିବା ପାଇ ଉଦ୍ଦିଷ୍ଟ । ଗନ୍ଧମାର୍ଜାରମାନଙ୍କର ହନୁ ଲମ୍ବା, ଟାଣୁଆ ନୁହେଁ ଏବଂ ସେମାନଙ୍କର ଛେଦନଦନ୍ତ ବା ଶ୍ୱାଦନ୍ତ ( Canine ) ଅପେକ୍ଷାକୃତ ଅଳ୍ପ ଶକ୍ତ ଏବଂ ନଖ ବିରଡିବଂଶୀୟ ପ୍ରାଣୀଙ୍କଠାରୁ ଅଳ୍ପ ଟାଣୁଆ । ହେଲେହେଁ, ଗନ୍ଧମାର୍ଜାରର ଶରୀର, ତା'ର ବାସ, ଅଭ୍ୟାସ ଓ ଖାଦ୍ୟ ଗ୍ରହଣ ରୀତିଲାଗି ଉପଯୁକ୍ତ ଭାବେ ଗଠିତ ।

ଖାଦ୍ୟର ସନ୍ଧାନ ଓ ସଂଗ୍ରହପାଇଁ ଗନ୍ଧମାର୍ଜାରର ଚକ୍ଷୁ ତୀକ୍ଷ୍ଣ, ଗନ୍ଧବାରିବାଶକ୍ତି ପ୍ରବଳ ଓ ଶୁଣିବା ଶକ୍ତି ପ୍ରଖର । ଏମାନଙ୍କର ନିଶ ବା ଶ୍ମଶ୍ରୁଲୋମ ଉଦ୍‌ଗତ, ଚଳନଶୀଳ ଏବଂ ଆଗକୁ ଓ ପଛକୁ ବଙ୍କେଇ ହୋଇପାରେ । ଏହି ଟାଣୁଆ ରୋମଦ୍ୱାରା ସ୍ପର୍ଶକରି ଏମାନେ ଖାଦ୍ୟର ପ୍ରକାର ଜାଣି ପାରନ୍ତି ବୋଲି ବିଶେଷଜ୍ଞମାନଙ୍କର ବିଶ୍ୱାସ ।

ଗନ୍ଧମାର୍ଜାର ଶିକାର କଲାବେଳେ ବିଡ଼ାଳ ପରି ଶିକାର କରେ । ଲୁଚି ଲୁଚି ଛପି ଛପି ଆସି ଶିକାର ପ୍ରାଣୀଉପରେ ଚଢ଼ାଉ କରେ । ନେପାଳ, ସିକିମ, ଆସାମ, ବର୍ମାର ଉତ୍ତରାଞ୍ଚଳ ଓ ଚୀନର ଦକ୍ଷିଣାଞ୍ଚଳରେ ଦେଖା ଯାଉଥିବା "ବ୍ୟାଘ୍ର-ଗନ୍ଧ ମାର୍ଜାର" (Linsang) ମୁଖ୍ୟତଃ ଶିକାର ଦ୍ଵାରା



ଚିତ୍ର ନମ୍ବର 28 ବ୍ୟାଘ୍ର ଗନ୍ଧ ମାର୍ଜାର ।

ପ୍ରାଣୀ ବଧ କରି ଖାଏ । ବ୍ୟାଘ୍ର-ଗନ୍ଧମାର୍ଜାର ମାନଙ୍କର ବିଡ଼ାଳ ମାନଙ୍କ ସହିତ ସାମଞ୍ଜସ୍ୟ ସବୁଠାରୁ ବେଶୀ । ଏମାନଙ୍କର ନଖ ଖୋଳ ଭିତରେ ଲୁକ୍‌କାୟିତ ରହିଥାଏ । ଲକ୍ଷଣ ଭେଦରେ ଶାଳିଆପତନି (*viverrinae*) "ପ୍ରକୃତ ଗନ୍ଧମାର୍ଜାର" ( truecivets ) ଓ କଟାଶ (paradoxurinae) "ବୃକ୍ଷବାସୀ ଗନ୍ଧମାର୍ଜାର" ବିଭାଗ ଅନ୍ତର୍ଭୁକ୍ତ । ବାସ ଓ ଖାଦ୍ୟ ସଂଗ୍ରହରେ ପ୍ରଭେଦହେତୁ ସେମାନଙ୍କ ମଧ୍ୟରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏ ଦୁଇ ପ୍ରକାର ଗନ୍ଧ ମାର୍ଜାର ଉଭୟ ପ୍ରାଣୀ ଓ ଉଦ୍ଭିଦଖାଦ୍ୟ ଖାନ୍ତି ଏବଂ ଖାଦ୍ୟ ପାଇଁ ଅଧିକାଂଶ ସମୟରେ ଶିକାର ଉପରେ ବେଶି ନିର୍ଭର କରନ୍ତି । ନାହିଁ । ଶାଳିଆପତନି ଭଲ ଗଛ ଚଢି ପାରିଲେ ମଧ୍ୟ ସେମାନେ ଶିକାର କରିବାପାଇଁ ଗଛ ଚଢ଼ନ୍ତି ନାହିଁ । ସେମାନେ ଭୂମିରେ ଶିକାର କରନ୍ତି । ସେମାନଙ୍କର ପାଦ ଚଲାବୁଲା ଲାଗି ଉପଯୋଗୀ । ସେମାନେ ପଦାଙ୍ଗୁଳି ଉପରେ ଚାଲନ୍ତି । ଆଗ ଓ ପଛପାଦର ପ୍ରଥମ ଆଙ୍ଗୁଳି ଅନ୍ୟ ଅଙ୍ଗୁଳି ଅପେକ୍ଷା ଉପରକୁ ରହିଥାଏ ତେଣୁ ଅକାମୀ । ପଦତଳର ଗଦି ମୋଟା କୁସନ ପରି ଓ ଉତ୍ତମ ରୂପେ ଲୋମ ଦ୍ଵାରା ଆଚ୍ଛାଦିତ । ମାତ୍ର ବୃକ୍ଷବାସୀ କଟାଶର ପଦ

ଆରୋହଣ ଲାଗି ଉର୍ଦ୍ଦିଷ୍ଟ । ଏମାନଙ୍କର ପଦ କ୍ଷୁଦ୍ର ଓ ଓସାରିଆ । ପଦତଳର ଗର୍ଦ୍ଦ ଓସାରିଆ ଓ ଲୋମହୀନ । କଟାଶ ପ୍ରାଣୀଖାଦ୍ୟ ଅପେକ୍ଷା ଅଧିକ ଉଦ୍ଭିଦଖାଦ୍ୟ ଉପରେ ନିର୍ଭର କରେ । ବିଡାଳ ବଂଶୀୟ ପ୍ରାଣୀମାନଙ୍କର ଜିଭ ଉପରେ ଶଙ୍କ୍ୱାକାର ପିଣ୍ଡିକା (papillae) ଥାଏ । ଫଳରେ ସେମାନେ ହାଡ଼ରୁ ମାଂସକୁ ଘଷି ଖାଇ ପାରନ୍ତି । ମାତ୍ର ଗନ୍ଧମାର୍ଜ୍ଜାରମାନଙ୍କର ଜିଭ ମସୃଣ । ଏମାନେ କୁକୁର ପରି ଖାଦ୍ୟ ପ୍ରାଣୀର ହାଡକୁ ପେଷଣଦାନ୍ତ ଦ୍ୱାରା ଭାଙ୍ଗି ଖାଆନ୍ତି ।

ଗନ୍ଧ ମାର୍ଜ୍ଜାର ମାନଙ୍କର ପ୍ରକୃତ ବାସ ହେଲା ଭାରତବର୍ଷ ଓ ମାଲୟଦେଶସମୂହ । ଅବଶ୍ୟ ଏମାନେ ପ୍ରାଚ୍ୟ ଅଞ୍ଚଳର ସର୍ବତ୍ର, ଆଫ୍ରିକା ଓ ସେଠାରୁ ଦକ୍ଷିଣ ୟୁରୋପ ଯାଇ ବସତି ସ୍ଥାପନ କରି ଅଛନ୍ତି । ପ୍ରାଗୈତିହାସିକ କାଳରେ ଶାଳିଆ ପତନି (viverra) ଭାରତରେ ବାସ କରୁଥିଲେବୋଲି ପ୍ରମାଣ ମିଳେ । ସିଓ୍ୱାଲିକ୍ ପର୍ବତମାଳା ଓ ମାଦ୍ରାଜର ଏକ ଗୁହାରେ ଏହି ପ୍ରାଣୀଙ୍କର ଜୀବାଶ୍ମ ମିଳିଛି । ବସ୍ତୁତଃ ଏମାନେ ପ୍ରାଚୀନ ଗୋଣ୍ଡୱାନାର ଗ୍ରୀଷ୍ମମଣ୍ଡଳୀୟ ଜଙ୍ଗଲରେ ପ୍ରାଚୀନ କାଳରେ ବାସ କରୁଥିଲେ । ଗନ୍ଧମାର୍ଜ୍ଜାର ବେଶି ବର୍ଷା ହେଉଥିବା ଘନ ଜଙ୍ଗଲ ଓ ତୃଣଭୂମିରେ ସମତଳଠାରୁ 2135 ମିଟର ( 7000 ଫୁଟ ) ଉଚ୍ଚତାଯାଏ ବାସ କରିବାର ଦେଖାଯାଏ । ଦକ୍ଷିଣ ଭାରତ ଓ ହିମାଳୟପର୍ବତମାଳା ଅଞ୍ଚଳରେ ଏହାଠାରୁ ଅଧିକ ଉଚ୍ଚ ସ୍ଥାନରେ ଗନ୍ଧମାର୍ଜ୍ଜାର ଦେଖାଯାନ୍ତି ନାହିଁ । ଦୁଇଜାତି ଗନ୍ଧମାର୍ଜ୍ଜାର—ସେମାନେ ଆମର ବେଶ ପରିଚିତ—ଶାଳିଆ ପତନି (small Indiancivet) ଓ କଟାସ ( common palm civet ) ଶୁଷ୍କ ବୃଷ୍ଟିହୀନ ଓ ଖୋଲା ଅଞ୍ଚଳରେ ମଧ୍ୟ ବାସ କରନ୍ତି । ସେମାନେ ମଧ୍ୟ ଭାରତ ଓ ରାଜପୁତାନାର ଶୁଷ୍କ ବୁଦା ଝାଟି ଅଞ୍ଚଳରେ ମଧ୍ୟ ଦେଖାଯାନ୍ତି, ଅବଶ୍ୟ ପୁରା ମରୁଭୂମି ଅଞ୍ଚଳରେ ଦେଖାଯାନ୍ତି ନାହିଁ ।

ଗନ୍ଧମାର୍ଜ୍ଜାରମାନଙ୍କର ସ୍ୱଭାବ, ଜୀବନ ଇତିହାସ ଓ ଅନ୍ୟାନ୍ୟ ଅନେକ ବିଷୟରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମାବଦ୍ଧ । ଉଦାହରଣରେ, ଜଫି ଗଛର ଫଳ ପାଚିବା ସମୟରେ କଟାଶ ବହୁ ସଂଖ୍ୟାରେ ଆସି ଏକାଠି ହୋଇ କଫି ଫଳ ଖାନ୍ତି । କଫି ପାଚିବା ସମୟ ଗତ ହୋଇଗଲେ ସେମାନଙ୍କୁ

ଆଉ ଏତେ ସଂଖ୍ୟାରେ ଦେଖିବାକୁ ମିଳେ ନାହିଁ । ଅନ୍ୟ ସମୟରେ ସେମାନେ କେଉଁଠି ରହନ୍ତି ? ଗ୍ରୀଷ୍ମ ଓ ଶୀତ କାଳରେ ସେମାନଙ୍କର ବାସ ଓ ଖାଦ୍ୟାଭ୍ୟାସରେ କିଛି ପରିବର୍ତ୍ତନ ହୁଏକି ? ଏହିପରି ନାନା ପ୍ରଶ୍ନର ଉତ୍ତର ଆମର ଅଜଣା ।

ଅଧିକାଂଶ ଗନ୍ଧମାର୍ଜାର ରାତ୍ରିର ଅନ୍ଧକାରରେ ଖାଦ୍ୟ ସଂଗ୍ରହ କରନ୍ତି । ଗନ୍ଧମାର୍ଜାର ଅନ୍ୟ ପ୍ରାଣୀ ଉପରେ ଚଢ଼ାଉ କଲେ ମଧ୍ୟ ସେମାନଙ୍କଠାରୁ ବଳୁଆ ମାଂସାସୀ ପ୍ରାଣୀ ତାଙ୍କ ଉପରେ ଆକ୍ରମଣ କରନ୍ତି । ଶତ୍ରୁ କବଳରୁ ରକ୍ଷା ପାଇବା ପାଇଁ ଗନ୍ଧମାର୍ଜାରର ଦାନ୍ତ ଓ ନଖର ସାଙ୍ଗକୁ ଆଉ ଏକ ବ୍ୟବସ୍ଥା ପ୍ରକୃତି ଖଞ୍ଜି ଦେଇଛି । ତାହା ହେଲା, ସେମାନଙ୍କର ଗନ୍ଧ ଗ୍ରନ୍ଥି ( stink gland ) । ଆତ୍ମରକ୍ଷା ପାଇଁ ପଳାଇବାର କୌଣସି ବାଟ ନଥିଲେ, କେତେକ ଗନ୍ଧମାର୍ଜାର ଗନ୍ଧଗ୍ରନ୍ଥିରୁ ହଠାତ୍ ଏକ ପ୍ରକାର ହଳଦିଆ ଦ୍ରବ୍ୟ ଶତ୍ରୁ ଉପରକୁ ନିକ୍ଷେପ କରନ୍ତି । ଏହା ଏପରି ଆକସ୍ମିକ ଭାବେ ଘଟେ ଓ ଏହି ଦ୍ରବ୍ୟର-ଗନ୍ଧ ଏତେ ଉତ୍କଟ ଯେ ଶତ୍ରୁ ହତବଳ ହୋଇଯାଏ ଏବଂ ଇତି ମଧ୍ୟରେ ଗନ୍ଧମାର୍ଜାର ପଳାୟନ କରେ ।

କେତେକ ଗନ୍ଧମାର୍ଜାର ମନୁଷ୍ୟବାସ ବା କ୍ଷେତ ନିକଟରେ ବାସ କରନ୍ତି ଓ ଖାଦ୍ୟ ପାଇଁ ଆଂଶିକ ଭାବେ ମନୁଷ୍ୟ ଉପରେ ନିର୍ଭର କରନ୍ତି । ଏହାର ପ୍ରକୃଷ୍ଟ ଉଦାହରଣ ଶାଳିଆପତନି ( ଭିଭେରିକୁଲା ଇଣ୍ଡିକା ) ଓ କଟାଶ ( ପାରଡ଼କ୍ସୁରସ ହାରମାଫ୍ରୋଡିଟାସ ) । ଏମାନେ ଜଙ୍ଗଲ ପରିବର୍ତ୍ତେ ଏପରିକି ଜନାକୀର୍ଣ୍ଣ ସହର ମଧ୍ୟରେ ନର୍ଦ୍ଦମା ଭିତରେ ବା ଘର ଛାତ ସନ୍ଧିରେ ବାସ କରି ରାତ୍ରିର ଅନ୍ଧକାରରେ ଆସି କୁକୁଡ଼ା ଚିଆଁ, ମୂଷା ଇତ୍ୟାଦି ଉପରେ ଚଢ଼ାଉ କରନ୍ତି । ଆହୁରି ମଧ୍ୟ ଫଳ ବଗିଚା ମଧ୍ୟରେ ବାସ କରି ଫଳ ଖାନ୍ତି କଟାଶମାନେ ପାଚିଲା କଫିଫଳ ଓ ଅଶ୍ବତ୍ଥ ଫଳ ଖାଇ ଅନ୍ୟତ୍ର ମଳ ତ୍ୟାଗ କରିବା ଫଳରେ ମଞ୍ଜି ବିଭିନ୍ନ ସ୍ଥାନକୁ ସ୍ଥାନାନ୍ତରୀତ ହୁଏ । ଏହିରୂପେ ସେମାନେ କେତେକ ଗଛର ବିସ୍ତରଣରେ ସହାୟତା କରିଥାନ୍ତି । ମଜାରକଥା ଏହି ଯେ ଦକ୍ଷିଣ ଭାରତରେ କଫିଫଳ ପାଚିଥିଲା ବେଳେ କଟାଶ ବହୁ ସଂଖ୍ୟାରେ ଆସି ଫଳ ଖାନ୍ତି । ସେମାନେ ପରିତ୍ୟାଗ କରିଥିବା ମଳରେ କଫି ମଞ୍ଜି ବାହାରି ଆସୁଥିବାରୁ ଛୋଟ କୁଲିଆ କଫି ମଞ୍ଜିବିକାଳି ତାକୁ ସଂଗ୍ରହ କରି ବଜାରରେ ଆଣି ବିକ୍ରୟ କରନ୍ତି । କାରଣ

ଧୁଆ ଧୋଇ ପରେ କଟାଶର ମଳରୁ ତାହା ସଂଗ୍ରହ କରାଯାଇଛି ବୋଲି ପ୍ରମାଣ କ'ଣ !

ଗନ୍ଧମାର୍ଜାରମାନେ ନୀରବ ପ୍ରାଣୀ । ନେପାଳ, ସିକିମ୍, ଭୁଟାନ୍, ଆସାମ, ବର୍ମା ଓ ମାଲୟ ପ୍ରଭୃତି ଦେଶ ମାନଙ୍କରେ ଯଙ୍ଗ୍ ବା "ଭାଲୁ-ବିଲେଇ" ( Binturong or bear-cat ) ନାମକ ଏକ ଜାତୀୟ



ଚିତ୍ରନମ୍ବର 29 ଭାଲୁ ବିଲେଇ

ଗନ୍ଧ-ମାର୍ଜାର ବାସକରେ । ଏହା ଚିତ୍କାର ଓ ସୀତକାର କରିପାରେ । ଯାକୁ ଛାଡ଼ି ଅନ୍ୟ କୌଣସି ଜାତି ଗନ୍ଧମାର୍ଜାର ଶବ୍ଦ କରିବାର ଜଣାନାହିଁ । ଗନ୍ଧ ମାର୍ଜାର ଯେଉଁବାଟେ ଯାଏ ସେ ବାଟରେ ଅନେକ ସମୟ ପାଏ ଗନ୍ଧ ରହିଥାଏ । ଗନ୍ଧଦ୍ୱାରା ସେମାନେ ପରସ୍ପରକୁ ଚିହ୍ନୁଥିବା ସମ୍ଭବ ।

ବ୍ୟାଘ୍ରଗନ୍ଧ ମାର୍ଜାର ଭିନ୍ନ ଅନ୍ୟସବୁ ଜାତି ଗନ୍ଧ ମାର୍ଜାରମାନଙ୍କର ଗନ୍ଧଗ୍ରନ୍ଥି ଥାଏ । କଟାଶ ଓ ଶାଳିଆ ପତନିର ଗନ୍ଧ ଗ୍ରନ୍ଥି ଆଧିଗୁଦ ଅଞ୍ଚଳ ( Perinneal area ) ରେ ଅବସ୍ଥିତ । ଗୁଦନିମ୍ନ ଅଞ୍ଚଳ ପରୀକ୍ଷା କଲେ ସେଠାରେ ତାହା ବାହାରକୁ ଏକ ବଡ଼ ଥଳୀ ପରି ବାହାରି ରହିଥିବାର ଦେଖାଯାଏ । ଏହି ଗନ୍ଧଗ୍ରନ୍ଥିର ମୁଖ ସ୍ଫୀତ କିନାର ପରିବେଷ୍ଟିତ ଓ ଲୋମଶ । ଗନ୍ଧମାର୍ଜାରର ଗନ୍ଧ ସ୍ରାବରେ ଏମୋନିଆ, ରଜନ ( ଝୁଣା ) ବିଶେଷ ( resin ) ସ୍ନେହ ପଦାର୍ଥ ଓ ଉଦ୍‌ବାୟୀ ତୈଳ (volatile oil) ଥାଏ ।

ଗନ୍ଧ ମାର୍ଜାରମାନଙ୍କର ପରିବାରଜୀବନସମ୍ବନ୍ଧରେ ଆମମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମିତ । ସେମାନଙ୍କୁ ସାଧାରଣତଃ ଗୋଟି ଗୋଟିକିଆ ଭାବେ

ଦେଖିବାକୁ ମିଳିଥାଏ । ସେମାନଙ୍କର ପ୍ରଜନନକାଳ ସମ୍ବନ୍ଧରେ ମଧ୍ୟ ଆମକୁ କିଛି ଜଣାନାହିଁ । ଶାଳିଆ ପତିନି ଛୁଆ ବର୍ଷର ବିଭିନ୍ନ ସମୟରେ ଦେଖାଯାନ୍ତି । ସେଥିରୁ ମନେହୁଏ, ସେମାନଙ୍କର ହୁଏତ କୌଣସି ନିର୍ଦ୍ଦିଷ୍ଟ ସନ୍ତାନ ଉତ୍ପାଦନ କାଳ ନାହିଁ । କଟାଶଛୁଆ ଅକ୍ଟୋବର-ଡ଼ିସେମ୍ବର ଭିତରେ ଦେଖାଯାନ୍ତି । ଗଛର କୋରଡ଼, ପଥର ସନ୍ଧି, ନାଳୁଆ ତଳ ଆଦିରେ ଗନ୍ଧମାର୍ଜାର ମାନେ ଛୁଆ କରନ୍ତି । ଛୁଆ ମା' ସହିତ କେତେଦିନ ଯାଏ ରହେ ସେ ସମ୍ବନ୍ଧରେ ବିବରଣୀ ମିଳେ ନାହିଁ । ପାଳିତ ଗନ୍ଧ ମାର୍ଜାର 12-15 ବର୍ଷ ବଞ୍ଚିବାର ଦେଖାଯାଇ ଅଛି ।

ଜେନେଟ୍ (Genet) ନାମକ ଏକ ଜାତି ଗନ୍ଧମାର୍ଜାର ଦକ୍ଷିଣ ୟୁରୋପ ଆଫ୍ରିକାରେ ବାସ କରେ । ପ୍ରାଚୀନ କାଳରେ ଗ୍ରୀକ୍‌ମାନେ ଏହାକୁ ଗୃହପାଳିତ ବିରାଡ଼ି ପରି ପାଳନ କରୁଥିଲେ । ଗନ୍ଧମାର୍ଜାର ବିଲେଇ ବଂଶ ଧ୍ୱଂସ କରିବାରେ ପାରଙ୍ଗମ । ବାସଗୃହ ନିକଟରେ ଚରବୁଲ କରୁଥିବା ଗନ୍ଧମାର୍ଜାର ପ୍ରକୃତପକ୍ଷେ ମନୁଷ୍ୟର ଏକ ମହୋପକାରୀ ପ୍ରାଣୀରୂପେ କାର୍ଯ୍ୟ କରିଥାନ୍ତି । ଦକ୍ଷିଣ ବର୍ମାର ଟେନାସେରିମ୍ ଅଞ୍ଚଳରେ ଏକ ଜାତି କଟାଶ ମିଳନ୍ତି । ଏମାନଙ୍କୁ ତିନିଦାଗ କଟାଶ ( Three banded palm civet ) ବୈଜ୍ଞାନିକ ନାମ (Hemigalus) କହନ୍ତି । ଏମାନଙ୍କର ପ୍ରଧାନ ଆହାର ଗୁଣ୍ଡୁଚି ମୂଷା । ସେ ଅଞ୍ଚଳରେ ଗୁଣ୍ଡୁଚି ମୂଷା ନଡ଼ିଆ ଗଛର ବିଶେଷ କ୍ଷତି କରନ୍ତି । ଏ ଦୃଷ୍ଟିରୁ ଏଠାର ଗନ୍ଧମାର୍ଜାର ମନୁଷ୍ୟର ଏକ ଉପକାରୀ ବନ୍ଧୁ । ଆହୁରି ମଧ୍ୟ, ଗନ୍ଧମାର୍ଜାରର ଗନ୍ଧ ଦ୍ରବ୍ୟ ସୁବାସ (perfume) ପ୍ରସ୍ତୁତିରେ ବ୍ୟବହୃତ ହୁଏ । ସେମାନଙ୍କର ଗନ୍ଧ ଗ୍ରନ୍ଥିରୁ ସଂଗୃହୀତ ଗନ୍ଧଦ୍ରବ୍ୟ ଆମ ଭାରତକୁ ମୁଖ୍ୟତଃ ଆମେରିକାରୁ ଆମଦାନୀ କରାଯାଇଥାଏ । ଆମ ଦେଶରେ ସଂଗୃହୀତ ଗନ୍ଧ ଦ୍ରବ୍ୟର ପରିମାଣ ଯଥେଷ୍ଟ ନୁହେଁ । ମାଲବାର ଅଞ୍ଚଳରେ ଏହାର ଚାହିଦା ବେଶୀ ।



# ଶାଳିଆ ପତନି

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହା ନାନା ନାମରେ ପରିଚିତ । ସାଧାରଣ ନାମ ଶାଳୁଆ ପତନି, ଶାଳିଆ ପତନି, ଶାଳିଆ ପୂତନି ଓ ସାଳିଆ-ପତନି । ଢେଙ୍କାନାଳରେ ଶାରିଆପତନି ଓ ଗଞ୍ଜାମରେ ମୂଷା ବିଲେଇ ନାମରେ ପରିଚିତ । ଏତଦ୍‌ବ୍ୟତୀତ ଏହାର ଅନ୍ୟନାମ ସବୁ ହେଲା ଗନ୍ଧ ଗୋକୁଳ ଓ ଗନ୍ଧମାର୍ଜାର । କୌଣସି କୌଣସି ସ୍ଥାନରେ ଏହାକୁ କଟାସ ବୋଲି କହିଥାନ୍ତି । ମାତ୍ର କଟାସ ଅନ୍ୟଏକ ପ୍ରାଣୀ ( ପରେ ଦେଖ ) ।



ଚିତ୍ର ନମ୍ବର 30 ଶାଳିଆ ପତନି ।

ଗୋଟିଏ ପୂର୍ଣ୍ଣ ବୟସ୍କ ଅଣ୍ଡିଗ ଶାଳିଆ ପତନି ଲମ୍ବରେ ହୁଏ 90 ସେଣ୍ଟିମିଟାର ( 3 ଫୁଟ )ରୁ ଅଧିକ । ସେଥିରୁ ଲାଞ୍ଜଯିବ 30 ସେଣ୍ଟିମିଟାର (1 ଫୁଟ ) । ଓଜନ 3-4 କିଲୋଗ୍ରାମ ( 6-8 ) ପାଉଣ୍ଡ ।

ଶାଳିଆ ପତନିର ବର୍ଣ୍ଣ ବାଦାମୀ ଧୂସର ବା ଧୂସରିଆ ବାଦାମୀ । ପିଠି ଓ ପିଗ୍ଧ ଅଂଶରେ ଟିପିଟିପିଆ କଳାଚିହ୍ନ ଥାଏ । ଦେହର କଡ଼ରେ ଧାଡ଼ି ଧାଡ଼ି ହୋଇ କମ୍ ବହୁତ କଳା ଚିହ୍ନ ଅଛି । ବେକରେ ସାଧାରଣତଃ ଆଡ଼ ବାଗରେ କେତୋଟି କଳାରେଖା ଥାଏ ଲାଞ୍ଜରେ ଓସାରିଆ କଳା ପଟିଚିହ୍ନ ସୁସ୍ପଷ୍ଟ । ମୁହଁ ଗୋଜିଆ ।

ସିନ୍ଧୁ ଓ ପଞ୍ଜାବକୁ ମିଶାଇ ହିମାଳୟର ପାଦଦେଶର ଜଙ୍ଗଲଠାରୁ ଦକ୍ଷିଣରେ **କନ୍ୟାକୁମାରୀ** ଓ ଶ୍ରୀଲଙ୍କା (ସିଂହଳ) ଏବଂ ପୂର୍ବରେ ବର୍ମା, **ଦକ୍ଷିଣ** ଚୀନ ଓ ମାଲୟ ଉପଦ୍ୱୀପର ଅଞ୍ଚଳ ସମୂହ—ଏହି ବିସ୍ତୃତ ଅଞ୍ଚଳ ଶାଳିଆ ପତନିର ବାସଭୂମି । ଭରତରେ ଆକାର, ବର୍ଣ୍ଣ ଓ କରୋଟିର ଲକ୍ଷଣ ଅନୁସାରେ ପାଞ୍ଚଟି ବିଭିନ୍ନ ପ୍ରକାର ଶାଳିଆ ପତନି ଦେଖିବାକୁ ମିଳନ୍ତି ।

ଏହା ଘଞ୍ଚ ଜଙ୍ଗଲର ପ୍ରାଣୀ ନୁହେଁ । ଘାସପଡ଼ିଆ ଓ ବୁଦା ଅଞ୍ଚଳ **ଏମାନଙ୍କର** ବାସ । ଶୁଷ୍କ ତଥା ସିକ୍ତ ଭୂମି ଉଭୟତ୍ର ଏମାନେ ବାସ କରନ୍ତି । ଗାତ, ପଥର ସନ୍ଧି, ଉଚଘାସ ବା ବୁଦା ଶାଳିଆ ପତନି ମାନଙ୍କର ରହିବା ସ୍ଥାନ । ଅନେକତ୍ର ଏମାନେ ଗ୍ରାମ ନିକଟରେ ବାସ କରନ୍ତି । କେତେକ ସହର ଭିତରକୁ ଆସି ନର୍ଦ୍ଦମା ବା ଅବ୍ୟବହୃତ ବାହାର ଘରମାନଙ୍କରେ ରହିଥିବାର ଦେଖାଯାଏ । ଏମାନେ ଚର୍ତ୍ତିତର ଓ କୁଶଳୀ ବୃକ୍ଷାରୋହୀ । ଏପରିକି ଏମାନେ ସିଧା ଉଠିଥିବା ଗଛର ଗଣ୍ଡି ଉପରକୁ ଉଠି ପାରନ୍ତି । ହେଲେହେଁ ଶାଳିଆ ପତନିର ସାଧାରଣ ଚରଭୂଇଁ ତଳେ, ଭୂମିରେ । ଏମାନଙ୍କର ଖାଦ୍ୟ ହେଲ ମୂଷା, ଛୋଟ ଛୋଟ ପକ୍ଷୀ, ଏଣ୍ଡୁଅ, ଝିଟିପିଟି ଆଦି ସରୀସୃପ ଏବଂ ପୋକ ଓ ସେମାନଙ୍କର ଶୂକ । ଏକକଥାରେ ଶାଳିଆ ପତନି ଯେଉଁ ଜୀବକୁ ଧରିମାରି ପାରିବ ତାକୁ ଖାଏ । ସୁବିଧା ପାଇଲେ ଏମାନେ କୁକୁଡା ଘେନି ପଳାନ୍ତି । **ଆମିଷ ଆହାର** ବ୍ୟତୀତ ଶାଳିଆ ପତନି ଫଳମୂଳ ଓ ଅନ୍ୟାନ୍ୟ ଶାକସବଜି ଖାଏ । କୋଳି ଏମାନଙ୍କର ଏକ ପ୍ରିୟ ଖାଦ୍ୟ ।

**ବର୍ଷର** ସବୁ ସମୟରେ ଶାଳିଆ ପତନି ଛୁଆ କରନ୍ତି । ପ୍ରଜନନ ପାଇଁ **ଏମାନଙ୍କର** କୌଣସି ନିର୍ଦ୍ଦିଷ୍ଟ ଋତୁ ନାହିଁ । ମାଈମାନେ ଭୂମିରେ ଗାତ ଖୋଳି ଗାତର ଶେଷ ଅଂଶରେ ପିଲାଙ୍କୁ ରଖିଥାନ୍ତି । ଶାଳିଆପତନି ଥରକେ ଘରି ପାଞ୍ଚଟି ଛୁଆ କରେ ।

**ଶାଳିଆପତନିକୁ** ଲୋକେ ପାଳି ତା'ର ମଳଦ୍ୱାର ନିକଟରେ ଥିବା ଗନ୍ଧ ଗ୍ରନ୍ଥିରୁ ଗନ୍ଧ ସଂଗ୍ରହ କରନ୍ତି । ଗନ୍ଧ ଗ୍ରନ୍ଥିରୁ ଗନ୍ଧ ହଳଦିଆ ସ୍ରାବ ଆକାରରେ ବାହାରି କୁଞ୍ଚିତ ଚର୍ମରେ ଜମି ରହିଥାଏ । ତାକୁ କାଠର ଗ୍ରମଚରେ କୋରି ସଂଗ୍ରହ କରଯାଏ ।

ଗଞ୍ଜାମ ଜିଲ୍ଲାରେ କେହି କେହି ଶାଳିଆ ପତନିର ମାଂସ ଖାନ୍ତି । ଏହା କୁକୁଡା ମାଂସପରି ସ୍ୱାଦୁ ବୋଲି କହନ୍ତି ।

ଏହାର ଇଂରଜି ନାମ The small Endian civet ( କ୍ଷୁଦ୍ର-ଭରତୀୟ ଗନ୍ଧମାର୍ଜାର ) Rasse ବୈଜ୍ଞାନିକ ନାମ Viverricula indica ( Desmarest ) । ବିଭିନ୍ନ ଭଷାରେ ଶାଳିଆ ପତନିର ନାମ—ହିନ୍ଦି-କସ୍ତୁରି; ବଙ୍ଗଳା- ଗନ୍ଧ ଗୋକୁଳ, ଗନ୍ଧୋଗୌଲ; ଦାକ୍ଷିଣାତ୍ୟ-ମୁଷକ ବିଲ୍ଲୀ: ମାରଠି-ଜୋଓ୍ୱାଡି ମଞ୍ଜୁର କାନାଡି—ପୁଉନାଗୁ ବେକ୍କୁ । ପୁଉନୁଗୁ-କୋତ୍ଥି, ତେଲୁଗୁ—ପୁନାଗୁ ପିଲ୍ଲୀ: ତାମିଲ-ପୁନାଗୁ ପୁଉନେ, ମାଲୟାଲୀ-ମେରୁ, ବର୍ମିଜ-ଗ୍ୱଉଙ୍ଗ କାଡ୍ଡୋ ।



# କଟାଶ

କଟାଶ ଶାଳିଆ ପତନି ପରି ଗୋଟିଏ ଗନ୍ଧମାର୍ଜାର । ଏହାକୁ କେହି କେହି ଓଧ ବୋଲି ଭ୍ରମ କରିଥାନ୍ତି । ଓଧ ଅନ୍ୟ ଏକପ୍ରାଣୀ (ପରେ ଦେଖ) । କଟାଶର ମୁଣ୍ଡ ଓ ଦେହ ଲମ୍ବରେ ପ୍ରାୟ 60 ସେଣ୍ଟିମିଟାର (2ଫୁଟ) ଓ ତା' ସାଙ୍ଗକୁ ଲଞ୍ଜ ପ୍ରାୟ 60 ସେଣ୍ଟିମିଟାର । ଅର୍ଥାତ୍ ଲଞ୍ଜର ଲମ୍ବ ମୁଣ୍ଡ ଓ ଦେହର ଲମ୍ବ ସହିତ ପ୍ରାୟ ସମାନ । ଓଜନ 2-7ରୁ 4-5 କିଲୋଗ୍ରାମ (6-10 ପାଉଣ୍ଡ) ।



ଚିତ୍ର ନମ୍ବର 31 କଟାଶ

କଟାଶର ବର୍ଣ୍ଣ କଳା ବା କଳାସିଆ ବାଦାମୀ । ଦେହର ଲୋମ ଲମ୍ବା ଓ ଖଡ ଖଡିଆ । ଶୀତ ଶେଷରେ ଘନ ଲମ୍ବା ଲୋମ ଝଡିପଡେ । ନୂଆ ଲୋମ ଭଲ ଭବରେ ଉଠିବା ପୂର୍ବରୁ ପିଠି, କଡ, କାନ୍ଧ ଓ ଜଙ୍ଘରେ ରେଖା ଓ ଟିପିଟିପିଆ ଚିହ୍ନ ଦେଖିବାକୁ ମିଳେ । ଆଖି ତଳକୁ ଲୋମ ଦେଖିବାକୁ ଧଳା । ବେଳେ ବେଳେ ଆଖି ଉପରେ ମଧ୍ୟ ଏକ ଅଂଶରେ ଧଳା ଲୋମ ଥାଏ ନାକ ଦୁଇପଟେ ଗୋଟିଏ କରି ଧଳା ଚିହ୍ନ ଅଛି ।

ଭରତରେ ଏହା କାଶ୍ମୀର, ହିମାଳୟ ଅଞ୍ଚଳ, ଆସାମ ଓ ଦକ୍ଷିଣରେ ସମଗ୍ର ଭରତୀୟ ଉପଦ୍ୱୀପ ଅଞ୍ଚଳରେ ଦେଖିବାକୁ ମିଳେ । ସିନ୍ଧୁ, ପଞ୍ଜାବ ଓ ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳର ଶୁଷ୍କ ମରୁଭୂମି ଅଞ୍ଚଳରେ କଟାଶ ବାସ

କରନ୍ତି ନାହିଁ । ପୂର୍ବରେ ବର୍ମା, ଇଣ୍ଡୋ–ଚୀନ ଓ ମାଲୟ ଉପଦ୍ୱୀପର ଦେଶ ସମୂହ ଏମାନଙ୍କର ବାସଭୂମି ।

ଉତ୍ତମ ଜଙ୍ଗଲିଆ ସ୍ଥାନରେ କଟାଶ ରହେ । ଏହା ବେଶୀ ଭାଗ ବୃକ୍ଷରେ କଟାଏ । ଦିନବେଳେ ଗଛରେ କିମ୍ବା ଗଛ କୋରଡ଼ରେ ଜାକିଜୁକି ହୋଇ ଶୋଇଥାଏ । ସହର ନିକଟରେ ବଡ ବଡ଼ ଆମ୍ବଗଛ, ନହେଲେ ତାଳ ଓ ଖଜୁରି ଗଛ ଏମାନଙ୍କର ପ୍ରିୟ ବାସସ୍ଥାନ । କେତେକ ସହରଅଞ୍ଚଳରେ କଟାଶ ନଳା, ଘରର ଛାତ ବା ଅବ୍ୟବହୃତ ଘରେ ବାସ କରିବାର ଦେଖାଯାଇଅଛି ।

ରାତିରେ ଏମାନେ ଗଛରେ ଚଢି ନଚେତ୍ ଭୂମିରେ ପକ୍ଷୀ ଓ କ୍ଷୁଦ୍ର କ୍ଷୁଦ୍ର ସ୍ତନ୍ୟପାୟୀ ପ୍ରାଣୀ ଶିକାର କରନ୍ତି । କେତେକ ଗଛର ଫଳ ମଧ୍ୟ କଟାଶର ଆହାର । ଯେଉଁ କଟାଶ ବଣ ଓ ଗଛ ଛାଡ଼ି ଆସି ଜନବସତି ମଧ୍ୟରେ ବାସ କଲେଣି ସେମାନେ ମୂଷା ମାରି ଜୀବନ ଧାରଣ କରନ୍ତି । ସମୟ ସମୟରେ ଏମାନେ କୁକୁଡ଼ା ନେଇ ପଳାନ୍ତି ଓ ଫଳ ବଗିଚାରେ ପଶି ନଷ୍ଟ କରନ୍ତି । ସପୁରି ଓ କଫି ଫଳ ପାଚିଥିଲା ବେଳେ କଟାଶ ବହୁ ସଂଖ୍ୟାରେ ଏକଜୁଟ ହୋଇ ତାକୁ ଖାନ୍ତି । ଯେଉଁଠି ଖଜୁରି ବା ତାଳ ଗଛରୁ ରସ ସଂଗ୍ରହ କରାଯାଏ, ସେଠି ରାତିରେ ମାଠିଆରେ ସଂଗୃହୀତ ରସକୁ ଏମାନେ ଆସି ପିଇଦେଇ ପଳାନ୍ତି ।

ବର୍ଷର ଯେ କୌଣସି ସମୟରେ କଟାଶ ଛୁଆ କରେ । ଗଛ କୋରଡ଼ରେ ନଚେତ୍ ପଥର ତଳେ ମାଈ କଟାଶ ଛୁଆ ଦିଏ । ଥରକେ ତିନି ଚାରିଟି ଛୁଆ ଜନ୍ମ ହୁଅନ୍ତି । କଟାଶ ସହଜରେ ପୋଷାମାନେ ଓ ଅତ୍ୟନ୍ତ ସ୍ନେହୀ ହୋଇଉଠେ ।

ଏହାର ବୈଜ୍ଞାନିକ ନାମ Paradoxurus hermaphroditus ଇଂରାଜିରେ Common palm civet (ସାଧାରଣ ତାଳଗଛ ବାସୀ ଗନ୍ଧମାର୍ଜାର) ଓ Toddy cat ( ତାଡି ପିଆ ବିଲେଇ ) ବୋଲି କହନ୍ତି । ବିଭିନ୍ନ ଭାଷାରେ କଟାଶର ନାମ– ହିନ୍ଦି–ଲକାଟି, ଖଟାସ, ଦକ୍ଷିଣ ଅଞ୍ଚଳ-ମେନୁରି, ବଙ୍ଗଳା-ଭେଣ୍ଡାଚ; ମାରାଠି ଉଦ୍ ମନ୍ ଜାର କାନାରି–ମାରବେକ୍ କୁ, ମାନଟା; ତେଲୁଗୁ-ମାନୁ ପିଲ୍ଲୀ; ତାମିଲ୍ ଓ ମାଲୟାଲୀ-ମାରର୍ ନାଇ, ମାରର୍ ମେରୁ ।



# ଷଷ୍ଠ ଅଧ୍ୟାୟ

# ନେଉଳ ବଂଶ

ନେଉଳ ସହିତ ଆମେ ସମସ୍ତେ ପରିଚିତ । ଏହାର ଦେହ ଲମ୍ବାଳିଆ, ଗୋଡ଼ ଛୋଟ, ଆଖି ମାର୍ଜିପରି କ୍ଷୁଦ୍ର ଓ ଉଜ୍ଜ୍ୱଳ, ମୁହଁ ଗୋଜିଆ ଏବଂ ଲୋମଶ ଲମ୍ବା ଲାଞ୍ଜ ଦେହ ପଛରେ ଘୁଷୁରୁ ଥାଏ । ପୂର୍ବେ ପ୍ରକୃତି-ତତ୍ତ୍ୱବିତ୍‌ମାନେ ନେଉଳ ଓ ଗନ୍ଧମାର୍ଜାର ମାନଙ୍କୁ ଏକ ଶ୍ରେଣୀଭୁକ୍ତ କରୁଥିଲେ । ଏବର ବୈଜ୍ଞାନିକମାନେ ନେଉଳମାନଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ କରନ୍ତି । ଏହି ଶ୍ରେଣୀର ନାମ ହାର୍‌ପେଷ୍ଟିଡି (Herpestidae) । ନେଉଳ ଓ ଗନ୍ଧମାର୍ଜାର ମଧ୍ୟରେ ଅନେକ ଲକ୍ଷଣ ସମାନ ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ସ୍ପଷ୍ଟ ପ୍ରଭେଦ ରହିଛି । ପ୍ରଥମ କଥା ଦେହ ଓ କାନର ଆକାରରୁ ନେଉଳ ଓ ଗନ୍ଧମାର୍ଜାରଙ୍କୁ ପୃଥକ୍ କରିହେବ । ନେଉଳର କାନ ଛୋଟ ଓ ଅର୍ଦ୍ଧ ଗୋଲକାର; ମାତ୍ର ଗନ୍ଧମାର୍ଜାରର କାନ ବଡ଼ ଓ ମୁଣ୍ଡ ଉପରକୁ ବାହାରି ରହିଥାଏ । ନେଉଳର କାନ ଚର୍ମକୁଞ୍ଚନଦ୍ୱାର ଏପରି ଗଠିତ ଯେ ଆବଶ୍ୟକ ବେଳେ ସେ ସବୁ ସଙ୍କୁଚିତ ହୋଇ ଭଙ୍ଗି ଭଙ୍ଗି ରହିଯିବା ଫଳରେ କର୍ଣ୍ଣରନ୍ଧ୍ର ପୁରପୁରି ବନ୍ଦ ହୋଇ ଯାଇପାରେ । ଗନ୍ଧମାର୍ଜାରର ପାଦ ଘନ ସନ୍ନିବିଷ୍ଟ ଓ ନଖର କ୍ଷୁଦ୍ର । ନେଉଳର ପାଦ ବିସ୍ତାରିତ, ପଂଝା ଅଧିକ ମୁକ୍ତ ଓ ନଖର ଲମ୍ବା, ବେଳେ ବେଳେ ବହୁତ ଲମ୍ବା । ଗନ୍ଧମାର୍ଜାର ମାନଙ୍କର ( କେବଳ ବ୍ୟାଘ୍ର-ଗନ୍ଧମାର୍ଜାର ଛାଡି ) ଗନ୍ଧଗ୍ରନ୍ଥି; ମାତ୍ର ନେଉଳ ମାନଙ୍କର ସେପରି ଗ୍ରନ୍ଥି ନାହିଁ । ଅବଶ୍ୟ ଉଭୟ ଗନ୍ଧମାର୍ଜାର ଓ ନେଉଳଙ୍କର ଖୁଦଗ୍ରନ୍ଥି ( Amal glands ) ଅଛି । ନେଉଳର ଗୁଦଦ୍ୱାର ସିଧା ବାହାରକୁ ଉନ୍ମୁକ୍ତ ନ ହୋଇ ଏକ ନଗ୍ନ ଗ୍ରନ୍ଥିଳ ଥଳି, ମଧ୍ୟକୁ ଉନ୍ମୁକ୍ତ ହୋଇଥାଏ ଗନ୍ଧମାର୍ଜାରର ଗୁଦଦ୍ୱାରର ଏପରି ବିଶେଷତ୍ୱ ନାହିଁ । ଆହୁରି ମଧ୍ୟ, ଏହି ଦୁଇଟି ଶ୍ରେଣୀର

ପ୍ରାଣୀମାନଙ୍କର ସ୍ୱଭାବ ସ୍ୱତନ୍ତ୍ର । ନେଉଳମାନେ ମୁଖ୍ୟତଃ ଶିକାର ଦ୍ୱାରା ଖାଦ୍ୟ ସଂଗ୍ରହ କରନ୍ତି, ମାତ୍ର ଗନ୍ଧମାର୍ଜାରମାନେ ଅନେକ ପରିମାଣରେ ଉଦ୍ଭିଦ ଖାଦ୍ୟଜୀବୀ ।

ନେଉଳ ଉଦ୍ଭିଦଖାଦ୍ୟ ମଧ୍ୟ ଖାନ୍ତି । ଅବଶ୍ୟ ସେମାନେ ମାଂସ ଖାଦ୍ୟ ଖାଇବାକୁ ଅଧିକ ପସନ୍ଦ କରନ୍ତି । ସେମାନଙ୍କର ତୀକ୍ଷଣ ମାଂସ-କର୍ତ୍ତନ ଦାନ୍ତ ତା'ର ସୂଚକ । ବିରାଡ଼ି ଓ ଗନ୍ଧମାର୍ଜାର ଜାତୀୟ ପ୍ରାଣୀ ଲୁଚିଛପି ଅତର୍କିତରେ ଆକ୍ରମଣ କରି ଖାଦ୍ୟପ୍ରାଣୀକୁ ଶିକାର କରନ୍ତି । ନେଉଳର ଶିକାର ପଦ୍ଧତି ଅଲଗା । ସେ ସାମନା ସାମନି ଖାଦ୍ୟ ପ୍ରାଣୀକୁ ଆକ୍ରମଣ କରି ମାରେ । ଅବଶ୍ୟ ପ୍ରାଣୀଟି ଯଦି ଦୂରରେ ଥାଏ ତେବେ ସେ ନୀରବରେ ଲୁକ୍କାୟିତ ଭାବେ ତା' ପିଛା ଧରି ପାଖରେ ପହଞ୍ଚିଲେ ପଦାକୁ ବାହାରି ଆସି ଚଡ଼ାଉ କରେ । ଆଘ୍ରାଣ ଦ୍ୱାରା ନେଉଳ ତା' ଖାଦ୍ୟ ପ୍ରାଣୀକୁ ଠାବ କରଏ, ଗନ୍ଧ ବାରି ବାରି ସେ ତା'ର ବିଳ ପର୍ଯ୍ୟନ୍ତ ଆସି ତା' ଭିତରେ ପଶେ ଆଉ ତାକୁ ଖୋଳି ବାହାର କରି ମାରେ । ନେଉଳର ଗୋଜିଆ ମୁହଁ, କ୍ଷୁଦ୍ର କାନ, ଲକଲକିଆ ଦେହ, କ୍ଷୁଦ୍ର ଲମ୍ବା ନଖରଯୁକ୍ତ ଗୋଡ ଏଥିପାଇଁ ବେଶ୍ ଉପଯୋଗୀ । ଏ ସବୁ ବିଶେଷତ୍ୱହେତୁ ସେ ସହଜରେ ଗାତ ଭିତରେ ପଶିପାରେ । ନେଉଳର ଆଗ ଗୋଡ଼ର ନଖର ପଛ ଗୋଡ଼ର ନଖର ତୁଳନାରେ ଅଧିକ ବଡ଼ ଓ ଉତ୍ତମ ବର୍ଦ୍ଧିତ ଏବଂ ଖୋଳିବା ଉପଯୋଗୀ । କାନ ଗନ୍ଧକୁ ଢାଙ୍କି ଦେବାର ବ୍ୟବସ୍ଥା ଥିବାରୁ ଗାତ ଭିତରେ ପଶିଲାବେଳେ କାନ ଭିତରକୁ ଧୂଳି ବାଲି ପଶି ପାରେ ନାହିଁ । ଶିକାର କଲାବେଳେ ନେଉଳ ପିଠି ଉପରେ ଭରଦେଇ ବସେ ବା ଆଗ ଗୋଡ଼କୁ ଟେକି ପଛ ଗୋଡ଼ ଉପରେ ଠିଆ ହୋଇ ଚାରି ଆଡ଼କୁ ଅନାଇ ଦେଖେ । ଚାରିଆଡ଼ ଭଲକରି ଦେଖିପାରିବା ପାଇଁ ସେ ଏପରି କରୁଥିବା ସମ୍ଭବ । ନେଉଳ ଖାଦ୍ୟ ଜୀବକୁ ଧରି କାମୁଡ଼ି ଘେଚାଇ ମାରିପକାଏ ଓ ଖାଏ; ନଚେତ୍ ସେ କେବଳ ତା'ର ରକ୍ତ ପାନ କରି ସନ୍ତୁଷ୍ଟ ହୁଏ, କୁକୁଡ଼ା ଫାର୍ମ ଭିତରେ ପଶି ସେ ଏହାହିଁ କରେ । ଗୋଟାକୁ ଗୋଟା କୁକୁଡ଼ା ମାରି ତାଙ୍କ ରକ୍ତ ପିଏ । ପକ୍ଷୀର ଅଣ୍ଡା ତା'ର ଏକ ପ୍ରିୟ ଖାଦ୍ୟ । ଆଗ ଦୁଇ ପାଦରେ ଅଣ୍ଡାକୁ ଧରି ସେ ଅଳ୍ପ କାମୁଡ଼ି କଣାଟିଏ କରେ, ତା' ପରେ ରସ ଶୋଷି ନିଏ । ଅନେକ ସମୟରେ ଅଣ୍ଡାକୁ ଆଗ ଦୁଇ ପାଦରେ

ଧରି ପଛ ଗୋଡରେ ଛିଡା ହୋଇ ତାକୁ ତଳେ ପକାଇ ଭଣା କରେ । ଏକ ଜାତି ନେଉଳ ଭାରତର ମଧ୍ୟ ଓ ଦକ୍ଷିଣାଞ୍ଚଳର ଜଙ୍ଗଲରେ ଦେଖାଯାନ୍ତି । ସେମାନଙ୍କୁ ଲୋହିତ ନେଉଳ (Ruddy Mongoose) ବୋଲଯାଏ । ଏମାନଙ୍କର ଲାଞ୍ଜର ଅଗ୍ରଭାଗ କଳା । ଏମାନେ ବଡ ବଡ ଗେଣ୍ଡାକୁ ପଥରରେ ପିଟି ମାଂସଳ ଅଂଶକୁ ଖାନ୍ତି । ଆଉ ଜାତିଏ ନେଉଳ ଅଛନ୍ତି, ତାଙ୍କୁ କଙ୍କଡା ଖିଆ ନେଉଳ (Crab-eating Mongoose) କହନ୍ତି । ଏମାନେ ନେପାଳରୁ ଆସାମ ପୂର୍ବରେ ବର୍ମା ଦକ୍ଷିଣ ଚୀନ ଓ ମାଳୟ ଉପଦ୍ୱୀପର ଉତ୍ତରାଂଶରେ ବାସ କରନ୍ତି । ଏମାନେ ନିର୍ଭୟରେ ପାହାଡିଆ ନଦୀର ପାଣିରେ ପଶି କଙ୍କଡା, ମାଛ ଓ ବେଙ୍ଗ ଧରି ଖାନ୍ତି । ଏମାନେ କଙ୍କଡାକୁ ପଥରରେ ପିଟି ତା'ର କୋମଳ ଅଂଶକୁ ଖାଇଥାନ୍ତି ।



( ଚିତ୍ର ନଂ 32, କଙ୍କଡା ଖିଆ ନେଉଳ । )

ନେଉଳର ଆଦିମ ସ୍ଥାନ ଭାରତ ନୁହେଁ । ଆଫ୍ରିକାର ଗ୍ରୀଷ୍ମାଞ୍ଚଳ ତାର ସ୍ୱାଭାବିକ ଘର, ଆଫ୍ରିକାରେ ବହୁ ପ୍ରଜାତି (genus)ର ନେଉଳ ବାସ କରନ୍ତି । ସେଠାରୁ ଗୋଟିଏ ପ୍ରଜାତି (Herpestes) ନେଉଳ ସ୍ପେନ ଓ ଏସିଆ ମହାଦେଶର ଦକ୍ଷିଣାଞ୍ଚଳକୁ ବିସ୍ତୃତି ଲାଭ କରି ଅଛନ୍ତି । ଭାରତରେ ଦୁଇଟି ସାଧାରଣ ଜାତିର ନେଉଳ ଅଛନ୍ତି । ସେମାନେ ଓଡିଶାରେ ମଧ୍ୟ ଦେଖାଯାନ୍ତି, ଏ ଦୁଇଟି ଜାତି ନେଉଳ ଯେ କୌଣସି ପରିସ୍ଥିତିରେ ନିଜକୁ ଖାପ ଖୁଆଇ ବାସ କରିବାରେ ସମର୍ଥ ହୋଇଅଛନ୍ତି । ଫଳରେ ବିସ୍ତୀର୍ଣ୍ଣ ଅଞ୍ଚଳ ସେମାନଙ୍କର ବାସଭୂମି । ସେମାନେ ଶୁଷ୍କ ଜମି, ଜଙ୍ଗଲ, ଶୁଷ୍କ ମରୁଭୂମି, ସମତଳ ଅଞ୍ଚଳ ଓ ହିମାଳୟ ପର୍ବତମାଳାର ବନଭୂମିରେ 2135

ମିଟର (7000 ଫୁଟ) ଉଚ୍ଚତା ପର୍ଯ୍ୟନ୍ତ ବାସ କରିବାର ଦେଖାଯାଏ । ଏମାନଙ୍କ ବ୍ୟତୀତ ଆଉ ଗୋଟିଏ ଜାତି ନେଉଳ ଭାରତର ପାର୍ବତ୍ୟ ଅରଣ୍ୟରେ ବାସ କରନ୍ତି ।

ପ୍ରାଣୀଦେହର ବର୍ଣ୍ଣ ତାହାର ପରିବେଶଦ୍ୱାରା ପ୍ରଭାବିତ ହୋଇଥାଏ, ହାତୀଆ ନେଉଳର ଦେହର ବର୍ଣ୍ଣ ଧୂସର ଏବଂ ତା'ର ବର୍ଣ୍ଣକୁ "ଗୋଲ ମରିଚ ଗୁଣ୍ଡ ଓ ଲୁଣ" ସହିତ ତୁଳନା କରାଯାଏ । ଏହାର କାରଣ ଏହିଯେ, ତା'ର ଲୋମ ଏକାନ୍ତର ଭାବେ କଳା ଓ ଧଳା । ଉତ୍ତର ଭାରତରେ ଦେଖା ଯାଉଥିବା ହାତୀଆ ନେଉଳର ଲୋମରେ ଧଳା ଅଂଶ ଅଧିକ ସ୍ପଷ୍ଟ ହୋଇଥିବାରୁ ତା'ର ରଙ୍ଗ ଧୂସର । ଦକ୍ଷିଣ ଭାରତର ଏ ଜାତୀୟ ନେଉଳଙ୍କର ଲୋମରେ କଳା ଅଂଶ ଅଧିକ ସ୍ପଷ୍ଟ ହୋଇଥିବାରୁ ସେମାନଙ୍କର ବର୍ଣ୍ଣ କଳାସିଆ । ସିନ୍ଧୁ, ବେଲୁଚିସ୍ଥାନ ଓ ଉତ୍ତର ପଶ୍ଚିମ ଭାରତର ମରୁଭୂମି ଅଞ୍ଚଳରେ ନେଉଳଙ୍କ ଲୋମରେ କଳା ପରିବର୍ତ୍ତେ ଲାଲ ବର୍ଣ୍ଣ ଥିବାରୁ ସେ ଅଞ୍ଚଳର ହାତୀଆ ନେଉଳ ଉଜ୍ଜ୍ୱଳ ଲାଲସିଆ ଦେଖାଯାନ୍ତି । ଅବଶ୍ୟ ସେ ଅଞ୍ଚଳରେ ଧୂସର ବର୍ଣ୍ଣର ଏ ଜାତୀୟ ନେଉଳ ମଧ୍ୟ ଦେଖାଯାଏ ।

ଋତୁ ଅନୁସାରେ ମଧ୍ୟ ନେଉଳମାନଙ୍କର ବର୍ଣ୍ଣରେ ପରିବର୍ତ୍ତନ ଘଟିଥାଏ, ଅକ୍ଟୋବର ନଭେମ୍ବର ମାସ ବେଳକୁ ହାତୀଆ ନେଉଳର ଲୋମର କଳା ଧଳା ଅଂଶ ବେଶ ଉଜ୍ଜ୍ୱଳ ହୋଇ ଉଠେ ଓ ଲୋମ ଘନ ହୁଏ, ଜୁନ୍ ଜୁଲାଇ ମାସ ବେଳକୁ ଅର୍ଥାତ୍ ଗ୍ରୀଷ୍ମ କାଳକୁ ଦେହରେ ଲୋମ ଘନ ନ ହୋଇ ପାତଳ ହୁଏ । ଏବଂ ଉଜ୍ଜ୍ୱଳ ନ ହୋଇ ଅନୁଜ୍ଜ୍ୱଳ ହୁଏ, ଲୋମର କଳାରଙ୍ଗ ବାଦାମୀ ଆସିଆ ହୁଏ ଓ ଧଳା ରଙ୍ଗର ଉଜ୍ଜ୍ୱଳତା ଚାଲିଯାଏ ।

ଭୌଗୋଳିକ ଅଞ୍ଚଳ ଅନୁସାରେ ପ୍ରାଣୀମାନଙ୍କ ଆକାରରେ ମଧ୍ୟ ପ୍ରଭେଦ ପରିଲକ୍ଷିତ ହୁଏ । ମରୁଭୂମି ଅଞ୍ଚଳରେ ବାସ କରୁଥିବା କୁକି ନେଉଳ ଆକାରରେ ସବୁଠାରୁ କ୍ଷୁଦ୍ର ହୁଅନ୍ତି । ଯହୁଁ ଯହୁଁ ପୂର୍ବକୁ ଯିବେ, ଦେଖିବେ ସେମାନଙ୍କର ଆକାର ବୃଦ୍ଧି ପାଉଛି । ପୂର୍ବରେ ବର୍ମାଯାଏ ସେମାନଙ୍କର ବିସ୍ତୃତି । ବର୍ମାର କୁକି ନେଉଳ ସବୁଠାରୁ ବଡ ହୁଅନ୍ତି । ଦକ୍ଷିଣ ଭାରତର ହାତୀଆ ନେଉଳ ଅନ୍ୟ ଅଞ୍ଚଳର ସେହି ନେଉଳ ତୁଳନାରେ ସବୁଠାରୁ ବଡ ହୋଇଥାନ୍ତି ।

ନେଉଳ ମନୁଷ୍ୟର ଏକ ପରମ ବନ୍ଧୁ । ବର୍ଷାଋତୁରେ ସାପ ଓ ବେଙ୍ଗ ବହୁ ସଂଖ୍ୟାରେ ଦେଖାଯାନ୍ତି । ସେତେବେଳେ ନେଉଳ ଏମାନଙ୍କୁ ମାରି ଖାନ୍ତି ; ପୁଣି ଶୀତ ଦିନେ ଶସ୍ୟ କଟାହୋଇ ଗଦା ହେଲେ, ତା' ଭିତରେ ମୂଷା ବହୁ ସଂଖ୍ୟାରେ ଆସି ରହନ୍ତି ଓ ନେଉଳମାନଙ୍କର ଆହାର ହୁଅନ୍ତି ।

ନେଉଳର ବିଶେଷତ୍ୱ ଏହି ଯେ ଏହା ଅତ୍ୟନ୍ତ ସାହସୀ ଓ ନୃଶଂସ ଭାବେ ତା'ର ଆହାରଜୀବକୁ ଆକ୍ରମଣ କରେ । ଫଳରେ ସେ ତା' ଠାରୁ ବହୁ ଗୁଣରେ ବଡ ପ୍ରାଣୀଙ୍କୁ ଆକ୍ରମଣ କରି ମାରିପାରେ । ନେଉଳର ସାଧାରଣ ଖାଦ୍ୟ ହେଲା ମୂଷା ଏବଂ ମାରି ପାରୁଥିବା ପକ୍ଷୀ, ସରୀସୃପ, ବେଙ୍ଗ, ପୋକ, କଙ୍କଡା ବିଛା ଏବଂ ଅନ୍ୟାନ୍ୟ ଅମେରୁଦଣ୍ଡୀ ପ୍ରାଣୀ । ନେଉଳ ସାଧାରଣତଃ ଦିନରେ ଶିକାର କରେ । କିନ୍ତୁ ଶିକାରର ବିଶେଷ ସମୟ ଭୋର ଓ ସନ୍ଧ୍ୟାବେଳେ । ନେଉଳର ପ୍ରଧାନ ଶତ୍ରୁ ମନୁଷ୍ୟ ଓ ଶିକାରୀ ପ୍ରାଣୀ ।

ନେଉଳର ଏକ ବିଶେଷ ଖାଦ୍ୟ ସାପ ଓ ସାପ ନେଉଳର ଏକ ସ୍ୱାଭାବିକ ଶତ୍ରୁ । ଭାରତୀୟ ଭାଷା ମାନଙ୍କରେ ଏପରି ଶତ୍ରୁ ଭାବକୁ କୁହାଯାଏ 'ଅହିନକୁଳ' ସମ୍ବନ୍ଧ' । ଅନେକ ସମୟରେ ନେଉଳ ଅତି ବିଷାକ୍ତ ସାପ ମାରି ଖାଇବାର ମଧ୍ୟ ଦେଖାଯାଏ । ନେଉଳ ତୀର ବେଗରେ ଆଗ ପଟରୁ ଧସି ଆସି ସାପକୁ ଆକ୍ରମଣ କରେ ନଚେତ୍ ଉପଯୁକ୍ତ ସୁଯୋଗ ପାଇଁ ଅପେକ୍ଷା କରି ସୁବିଧା ମୁହୂର୍ତ୍ତରେ ଚଢାଉ କରେ । ଫଣାଧାରୀ ସାପ ସହିତ ଲଢାଇ କଲାବେଳେ ସାପ ମୁଣ୍ଡକୁ ଖପ୍ କରି ଧରି ପକାଇବା ପାଇଁ ଉପଯୁକ୍ତ ବେଳକୁ ସେ ଅପେକ୍ଷା କରେ । ସାପ ଚୋଟ ମାରିଲା ବେଳକୁ ତାହାର ନଇଁଥିବା ମୁଣ୍ଡ ଉପରକୁ କୁଦିପଡି କାମୁଡି ବିଦାରି ପକାଏ । ସାପଚୋଟରୁ ରକ୍ଷା ପାଇବାର ଗୋଟିଏ ପ୍ରଧାନ ଉପାୟ ହେଉଛି ନେଉଳ ଚଟାପଟ୍ ଡେଇଁପଡି ଚୋଟକୁ ଏଡି ପାରେ । ଫଳରେ ସାପର ଚୋଟ ନେଉଳ ଦେହରେ ନ ବାଜି ତଳେ ପଡି ଲକ୍ଷ୍ୟଭ୍ରଷ୍ଟ ହୋଇଯାଏ, ଫଳରେ ସାପର ମୁହଁ ଖଣ୍ଡିଆ ହେବା ସାର ହୁଏ । ବାରମ୍ବାର ବ୍ୟର୍ଥ ହୋଇ ସାପ କ୍ଳାନ୍ତ ଓ ଅବଶ ହୁଏ ଏବଂ ଶେଷରେ ନେଉଳ ହାବୁଡରେ ପଡି ତାହାର ଖାଦ୍ୟ ହୁଏ । ଆଉ ଏକ କାରଣ ଯୋଗୁ ସାପର ଚୋଟ ନେଉଳ ଉପରେ

ବସିଲେ ମଧ୍ୟ ତା'ର ବିଶେଷ କ୍ଷତି କରିପାରେ ନାହିଁ । ନେଉଳ ଉତ୍ତେଜିତ ହେଲେ ତା' ଦେହର ଲୋମ ସବୁ ସିଧା ଠିଆ ହୋଇଯାଏ । ଏଥିପାଇଁ ତାର ଶରୀର ଯେତେ, ତାର ପ୍ରାୟ ଦୁଇଗୁଣ ଦେଖାଯାଏ । ଫଳରେ ସାପର ଚୋଟ ଠିକ୍ ଭାବେ ନେଉଳ ଦେହରେ ବସେ ନାହିଁ ବା ଚମଡା ଯାଏଁ ପହଁଚେ ନାହିଁ । ସମଗ୍ର ପ୍ରାଚ୍ୟ ଅଞ୍ଚଳରେ ଲୋକବିଶ୍ୱାସ ଯେ ନେଉଳକୁ ସାପ ଚୋଟମାରିଲେ ସେ ଏକ ପ୍ରକାର ଗଛର ଚେର ଖୋଏ ଓ ଫଳରେ ସାପର ବିଷ କାଟୁ କରେ ନାହିଁ । ବର୍ମାରେ ଲୋକଙ୍କର ବିଶ୍ୱାସ ନେଉଳର ଜିଭରେ ଥିବା ଏକ କଣ୍ଟାଳିଆ ଅଂଶରେ ସାପ ବିଷନାଶକ ଔଷଧ ଥାଏ । ପ୍ରକୃତପକ୍ଷେ ଜିଭରେ ଥିବା କଣ୍ଟାଳିଆ ପିଣ୍ଡିକା (papillae) ସାହାଯ୍ୟରେ ନେଉଳ ଖାଦ୍ୟ ପ୍ରାଣୀର ହାଡରୁ ମାଂସ ଘଷି ଖାଇଥାଏ । ଅବଶ୍ୟ ଏହା ସତ୍ୟ ଯେ ସାପ ବିଷର ପରିମାଣ ଅଧିକ ନ ହେଲେ ତାହା ନେଉଳକୁ କାଟୁ କରେ ନାହିଁ । ଯେତିକି ସର୍ପ ବିଷ ନେଉଳ ଆକାରର ଅନ୍ୟ ପ୍ରାଣୀକୁ ମାରି ଦେଇ ପାରେ, ସେତିକି ପରିମାଣ ବିଷ ନେଉଳର କ୍ଷତି କରେ ନାହିଁ । ନେଉଳ ରକ୍ତରେ ଆଂଶିକ ବିଷପ୍ରତିରୋଧ ଶକ୍ତି ଥିଲେ ମଧ୍ୟ ବିଷାକ୍ତ ସାପଟିଏ ନେଉଳକୁ ଭଲଭାବେ ଚୋଟ ମାରି ପାରିଲେ ନେଉଳର ମୃତ୍ୟୁ ଅବଶ୍ୟମ୍ଭାବୀ । ଆଂଶିକ ସର୍ପ–ବିଷର ପ୍ରତିରୋଧ ଶକ୍ତି କେବଳ ଯେ ନେଉଳର ଅଛି ତା' ନୁହେଁ ; ବିଲେଇ, ଘୁଷୁରି ଓ ଝଙ୍କୀ–ମୂଷିକ (hedgehog)ର ମଧ୍ୟ ସେ ଶକ୍ତି ଅଛି । କୁକୁର ତୁଳନାରେ ବିରାଡିକୁ ସାପ ବିଷ କମ୍ କାଟେ । ବିରାଡି ତୁଳନାରେ ଘୁଷୁରିକୁ ସର୍ପ ବିଷ ଆହୁରି କମ୍ କାଟୁ କରେ ।

ବିଷାକ୍ତ ସାପକୁ ମାରୁ ଥିବାରୁ ନେଉଳ ଆମ ଚକ୍ଷୁରେ ବୀର ଓ ସାହସୀ । ମାତ୍ର ଟିକିଏ ଚମକିଲେ ସେ ଯାଇ ବୁଦା ଭିତରେ ପଶେ । ଗନ୍ଧ-ମାର୍ଜାରମାନଙ୍କ ପରି ନେଉଳମାନଙ୍କର ଗୁହ୍ୟ ଦ୍ୱାର ପାଖରେ ଗନ୍ଧଗ୍ରନ୍ଥି (stink gland) ଅଛି । କେବଳ ଦୁଇଜାତି ବଡ଼ ନେଉଳ ଆବଶ୍ୟକ ବେଳେ ଗନ୍ଧମାର୍ଜାରମାନଙ୍କ ପରି, ଆତ୍ମରକ୍ଷା କରିବା ପାଇଁ ଏଥିରୁ ଏକ ଉତ୍କଟ ଗନ୍ଧ ଦ୍ରବ୍ୟ ଶତ୍ରୁ ଉପରକୁ ନିକ୍ଷେପ କରିଥାନ୍ତି । ଏମାନେ ହେଲେ ପଶ୍ଚିମ ଘାଟ ପର୍ବତମାଳା ଅଞ୍ଚଳର ଓ ସିଂହଳର ଡୋରି–ବେକ ନେଉଳ (stripenecked

mongoose) ଓ କଙ୍କଡ଼ା ଖିଆ ନେଉଳ । ଅନ୍ୟ ନେଉଳମାନେ ଆତ୍ମରକ୍ଷା ପାଇଁ ଦ୍ରବ୍ୟ ନିକ୍ଷେପ କରନ୍ତି ନାହିଁ ।



( ଚିତ୍ର ନଂ 33, ଡୋରା ବେକ ନେଉଳ । )

ପୂର୍ବେ କୁହା ଯାଇଛି, ହାତୀଆ ନେଉଳ ଓ କୁଜି ନେଉଳ ବିଭିନ୍ନ ପରିବେଶରେ ନିଜ ନିଜକୁ ଉପଯୋଗୀ କରିବାକୁ ସମର୍ଥ ହୋଇଥିବାରୁ ସେମାନେ ବିସ୍ତୀର୍ଣ୍ଣ ଅଞ୍ଚଳରେ ବାସ କରନ୍ତି । ମନୁଷ୍ୟର ବାସଗୃହ ନିକଟରେ ବାସ କରି ସେମାନେ ମୂଷା ଓ ସାପଙ୍କୁ ବହୁ ସଂଖ୍ୟାରେ ମାରିଖାନ୍ତି । ଅବଶ୍ୟ ବେଳେବେଳେ ସେମାନେ ବାସଗୃହରେ ପ୍ରବେଶ କରନ୍ତି ଓ ବାସକରନ୍ତି ମଧ୍ୟ । ଖଳା–ବାଡି ଓ କ୍ଷେତରେ ମୂଷା ଓ ସାପଙ୍କ ଦାଉରୁ ନେଉଳ ଆମକୁ ବହୁ ପରିମାଣରେ ରକ୍ଷା କରେ । ଶୀକାର କରିବାରେ ନେଉଳ ଆନନ୍ଦ ପାଏ । ଏଣୁ ସେ ବେଳେବେଳେ କୁକୁଡ଼ା ଘରେ ପଶି ଗୋଟିକ ପରେ ଗୋଟିଏ କୁକୁଡ଼ା ଚିଆଁ ମାରି ଧ୍ୱସ୍ତ ବିଧ୍ୱସ୍ତ କରେ । ହେଲେହେଁ ଗୃହପାଳିତ ପ୍ରାଣୀ ଘରେ ସାପ, ମୂଷା କଙ୍କଡାବିଛା ଓ ଅନ୍ୟାନ୍ୟ ବିଷାକ୍ତ କୀଟପତଙ୍ଗମାନଙ୍କୁ ନିପାତ କରିବା ପାଇଁ ଏହା ବିରାଡି ତୁଳନାରେ ଅଧିକ ଉପଯୋଗୀ । ସେଥି ପାଇଁ ଆମ ଦେଶରେ ଅନେକ ନେଉଳ ପୋଷନ୍ତି । ପୋଷା ନେଉଳକୁ ଛାଡି ଦେଲେ ମଧ୍ୟ ପୂର୍ବ ପରିଚିତ ଘରକୁ ସେ ଆପେ ଫେରି ଆସେ ।

ନେଉଳ ଯେ ମନୁଷ୍ୟର ଏକ ପରମ ଉପକାରୀ ପ୍ରାଣୀ ଏହା ବହୁ କାଳରୁ ଜଣାଶୁଣା ଥିବ ଠାରେ ପ୍ରାଚୀନ ସେତି ଖନନ ସମୟରେ ତଳ ଘରର ଏକ ଅଂଶରୁ ଗୋଟିଏ କୁଜି ନେଉଳର ଅସ୍ଥି ମିଳି ଥିଲା ।

ସେଥିରୁ ମନେ ହୁଏ, ଗ୍ରୀକବାସୀମାନେ ସାପ ଓ ଅନିଷ୍ଟକାରୀ ପ୍ରାଣୀଙ୍କ ଦାଉରୁ ଘରକୁ ନିରାପଦ ରଖିବା ପାଇଁ ନେଉଳ ପୋଷୁଥିଲେ ।

ମୂଷା ଓ ସାପ ମାନଙ୍କର ଉତ୍ପାତ କମାଇବା ପାଇଁ ଭାରତରୁ କୁଜି ନେଉଳ ନେଇ ଜାମେକା (Jamaica) ରେ ଛଡ଼ାଯାଇଥିଲା । ନେଉଳମାନେ ସେଠାରେ ସେମାନଙ୍କର କାର୍ଯ୍ୟ ସୁନ୍ଦରରୂପେ କରିଥିଲେ ଓ ସେଠାରେ ଫସଲ କ୍ଷେତ୍ରକୁ ବହୁ କ୍ଷତିରୁ ରକ୍ଷାକରିଥିଲେ । ଏଥିପାଇଁ କୁଜି ନେଉଳ କର୍ମଦକ୍ଷତା ସମ୍ବନ୍ଧରେ ବିଲାତ ପାର୍ଲିଆମେଣ୍ଟରେ ପ୍ରଶଂସାସୂଚକ ଆଲୋଚନା ହୋଇଥିଲା । ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜରେ କୁଜି ନେଉଳ ଉତ୍ତମ ରୂପେ ବିସ୍ତୃତ ଲାଭକରି ପାରିଅଛି । ଏମାନେ ସର୍ବଭୁକ ହୋଇଥିବାରୁ ସେଠାରେ ଏବେ ଭୂମିରେ ଅଣ୍ଡା ଦେଉଥିବା ପକ୍ଷୀ ମାନଙ୍କ ଉପରେ ଚଢ଼ାଉ କରି ଓ ଆଖୁ କିଆରିରେ ଉତ୍ପାତ କରି କ୍ଷତି କରିବାକୁ ଆରମ୍ଭ କଲେଣି ।

ଛୁଆ ଦୂରକୁ ଚାଲିଗଲେ ହାତୀଆ ନେଉଳ ଏକ ପ୍ରକାର କର୍କଶ ମିଉଁ ଶବ୍ଦ କରେ । ଅନ୍ୟ ନେଉଳମାନେ ସେମାନଙ୍କ ଭିତରେ କିପରି ଯୋଗାଯୋଗ ରଖନ୍ତି ସେ ବିଷୟରେ ଆମ୍ଭ ମାନଙ୍କର ଜ୍ଞାନ ଅତ୍ୟନ୍ତ ଅଳ୍ପ । ଖୁବ ସମ୍ଭବତଃ ସେମାନେ ଯାଉଥିବା ପଥରେ ସେମାନଙ୍କ ଗନ୍ଧଗ୍ରନ୍ଥିକୁ ଘୋଷାରିବା ଫଳରେ ଯେଉଁ ଗନ୍ଧ ଛାଡ଼ିଯାନ୍ତି ତଦ୍ୱାରା ନେଉଳ ନିଜଜାତି ନେଉଳକୁ ଚିହ୍ନିପାରେ ।

ଆମ ଦେଶର ଦୁଇଜାତି ସାଧାରଣ ନେଉଳ– ହାତୀଆ ନେଉଳ ଓ କୁଜି ନେଉଳଙ୍କର ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ଥିଲା ପରି ମନେ ହୁଏ ନାହିଁ । କାରଣ ବର୍ଷର ଯେ କୌଣସି ସମୟରେ ସେମାନଙ୍କର ଛୁଆ ଦେଖିବାକୁ ମିଳିଥାଏ । ମାଂସାଶୀ ପ୍ରାଣୀ ମାନଙ୍କ ମଧ୍ୟରେ ଅର୍ଣ୍ଣିର ପ୍ରାଣୀମାନେ ସାଧାରଣତଃ ନିଜ ପଲର କୌଣସି ଯତ୍ନ ନିଅନ୍ତି ନାହିଁ । ନେଉଳଠାରେ ମଧ୍ୟ ତାହା ଦେଖିବାକୁ ମିଳେ । ମା' ନେଉଳ ପିଲାର ସେବା କରିଥାଏ । ସେ ନିଜେ ଗାତଟିଏ ଖୋଳେ ନଚେତ୍ ଉଇହୁଙ୍କା, ଗଛମୂଳ ବା ପଥର ତଳେ ଥିବା ସନ୍ଧିକୁ ଖୋଳି ଶାବକ ପାଳନ ଉପଯୋଗୀ ଗର୍ତ୍ତ ତିଆରି କରେ । ଜନ ବସତିସ୍ଥାନରେ, ନାଳୁଆ ତଳେ, ଛାତ ଉପରେ ବା ଅନ୍ୟ କୌଣସି ନିଭୃତ ସ୍ଥାନରେ ସେ ଛୁଆ କରିଥାଏ । ଥରକେ ମାତ୍ର ଦୁଇ ତିନୋଟି ଛୁଆ

ଜନ୍ମ ହୁଅନ୍ତି । କିନ୍ତୁ ବର୍ଷରେ ସେମାନେ ବହୁବାର ଛୁଆ ଜାତ କରି ଥାନ୍ତି । ଉଦାହରଣରେ, ହାତୀଆ ନେଉଳ ବର୍ଷରେ ପାଞ୍ଚଥର ଛୁଆ କରେ । ମା' ନେଉଳ ଛୁଆ କରିଥିଲା ବେଳେ ସେମାନଙ୍କୁ ବିପଦରୁ ରକ୍ଷା କରିବା ପାଇଁ ତା' ଠାରୁ ବହୁତ ବଡ ବଡ଼ ପ୍ରାଣୀଙ୍କୁ ମଧ୍ୟ ସେ ଆକ୍ରମଣ କରିବାକୁ ପଛାଏ ନାହିଁ । ପୋଷା ମାଈ ନେଉଳ ଅନ୍ୟ ସମୟରେ ପୋଷା ମାନୁଥିଲେ ମଧ୍ୟ ଛୁଆ କରିଥିଲା ବେଳେ ସାଧାରଣତଃ ହିଂସ୍ରତା ପ୍ରଦର୍ଶନ କରିଥାନ୍ତି । ଆବଶ୍ୟକ ହେଲେ ମା' ନେଉଳ ତା' ପିଲାମାନଙ୍କ ବେକ ଅଂଶର ଶ୍ଲଥ ଚର୍ମକୁ କାମୁଡ଼ି ଧରି ଟେକି ନେଇ ଅନ୍ୟ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କରେ । ପିଲାମାନେ ଟିକେ ବଡ଼ ହୋଇଗଲେ ମା ପାଖେ ପାଖେ ଦୌଡ଼ିବାର ଦେଖାଯାଏ ଓ ମା' ଦୌଡ଼ିଲା ବେଳେ କୌଣସି ସ୍ଥାନରେ ଅଟକି ଗଲେ ସେମାନେ ମଧ୍ୟ ଅଟକି ଯାନ୍ତି । ଏହା ସେମାନଙ୍କର ଶୀକାରଶିକ୍ଷା କାଳ । ତେଣୁ ସେମାନେ ମା'ର ପ୍ରତ୍ୟେକ କ୍ରିୟାକୁ ଅନୁକରଣ କରନ୍ତି । ନେଉଳ ଛୁଆ କେତେ ଦିନ ପରେ ବୟଃପ୍ରାପ୍ତ ହୁଏ ସେ ବିଷୟରେ ଆମର ଜ୍ଞାନ ସୀମିତ । ଗୋଟିଏ ହାତୀଆ ଅଣ୍ଡିରା ନେଉଳ ସାତ ମାସର ହେଲା ପରେ ପ୍ରଜନନରେ ଲିପ୍ତ ହେବାର ଦେଖା ଯାଇଥିଲା । ବନ୍ଦୀ ଅବସ୍ଥାରେ ହାତୀଆ ନେଉଳ ଓ କୁଟି ନେଉଳ ସାତ ଆଠ ବର୍ଷ ଯାଏ ବଞ୍ଚିବାର ଦେଖାଯାଏ । ବଡ଼ ନେଉଳ ଯଥା;— ତୋରା ବେକ ନେଉଳ(Herpestes vitticotes) ତେରବା ଅଧିକ ବର୍ଷ ବଞ୍ଚୁଥିବେ ବୋଲି ଅନୁମାନ ।

ନେଉଳ ସାହାସୀ, ମନୁଷ୍ୟର ପରମ ବନ୍ଧୁ ଓ ପ୍ରାୟ ସର୍ବତ୍ର ଦେଖାଯାଏ । ବୁଦା ମୂଳରେ କ୍ଷଣେ ଲୁଚି କ୍ଷଣେ ଦେଖାଯାଏ । ସମ୍ଭବତଃ ଏଇଥିପାଇଁ ସେ ଓଡ଼ିଆ ରୂପ କଥାରେ "ନେଉଳି ଭାଇ" ରୂପେ ସମ୍ମାନର ସ୍ଥାନ ପାଇ ଅଛି । ଆହୁରି ମଧ୍ୟ, ହୁଏତ ସେଇଥି ପାଇଁ ଯାତ୍ରା କାଳରେ ମୁଖ ଦର୍ଶନ ଶୁଭସୂଚକ ବୋଲି ଧରଯାଏ ।

ବାମେ ଶବଶିବା କୁମ୍ଭା
ଦକ୍ଷିଣେ ଗୋମୃଗଦ୍ୱିଜାଃ
ନକୁଳଃ ସର୍ବକାର୍ଯ୍ୟେଷୁ
ଅହିଃ ସର୍ବତ୍ର ବାଧ୍ୟତେ ।

# ହାତୀଆ ନେଉଳ

ହାତୀଆ ନେଉଳ ପୂରା ଲମ୍ବରେ ପ୍ରାୟ 90 ସେଣ୍ଟିମିଟର (3 ଫୁଟ) ହୁଏ । ଏଥିରୁ ଲାଞ୍ଜ ଯାକ 45 ସେଣ୍ଟିମିଟର (1 [illegible] ଇଞ୍ଚ) ଓଜନ ପ୍ରାୟ 1.4 କିଲୋଗ୍ରାମ (3 ପାଉଣ୍ଡ) । ଅଣ୍ଡିରା ମାନେ ମାଈଙ୍କ ଅପେକ୍ଷା ବଡ ଓ ଓଜନରେ ଅଧିକ ହୁଅନ୍ତି । କୁଜି ନେଉଳର ପୂରା ଲମ୍ବ 45ରୁ 50 ସେଣ୍ଟିମିଟର (18–20 ଇଞ୍ଚ) । ଆକାରରେ ହାତୀଆ ନେଉଳ କୁଜି ନେଉଳର ପ୍ରାୟ ଦୁଇଗୁଣା ହୋଇଥିବାରୁ ସମ୍ଭବତଃ ପ୍ରଥମୋକ୍ତ ନେଉଳକୁ ହାତୀଆ ନେଉଳ ଓ ଦ୍ୱିତୀୟଟିକୁ କୁଜି ନେଉଳ ବୋଲି କହନ୍ତି ।



(ଚିତ୍ର ନଂ 34 ହାତୀଆ ନେଉଳ

ହାତୀଆ ନେଉଳର ବର୍ଣ୍ଣ ହଳଦିଆ ଧୂସର ବାଦାମୀ । ବେକରୁ ଦୁଇ କଡ଼ରେ କୌଣସି ପ୍ରକାର ରେଖା ଚିହ୍ନ ନ ଥାଏ । ଲୋମରେ ଧଳା ଓ କଳା ରଙ୍ଗର ଚିହ୍ନ ଏକ ପରେ ଏକ ପର୍ଯ୍ୟାୟକ୍ରମେ ଥିବାରୁ ଏହି ନେଉଳର ଲୋମ ଗୋଲ ମରିଚ ଗୁଣ୍ଡ ଓ ଲୁଣ ଗୁଣ୍ଡ ଏକାଠି ମିଶାଇଲେ ଯେପରି ରଙ୍ଗ ହୁଏ ସେପରି ଦେଖାଯାଏ । ଲାଞ୍ଜର ଅଗ ଧଳା ବା ହଳଦିଆ–ଲାଲ, ମାତ୍ର କେବେ କଳା ହୁଏ ନାହିଁ ।

ଏମାନେ ହିମାଳୟ ପାଦ ଦେଶରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳରେ ବାସ କରନ୍ତି । ପଶ୍ଚିମରେ ପାରସ୍ୟ ଓ ମେସୋପଟାମିଆ ପର୍ଯ୍ୟନ୍ତ ଏହାର [illegible] । ଏହା ଶ୍ରୀଲଙ୍କାରେ ମଧ୍ୟ ଦେଖାଯାଏ ।

ଭାରତରେ ତିନୋଟି ରେସ (race) ର ହାତୀଆ ନେଉଳ ଦେଖାଯାନ୍ତି । ଉତ୍ତର ଓ ମଧ୍ୟ ଭାରତର ଏ ଜାତୀୟ ନେଉଳ (Herpestes edwardsi nyula) ର ଦେହ ଶୀତ କାଳରେ ଘନ ଲୋମାବୃତ ଓ କେତେକ ପରିମାଣରେ କଳାସିଆ ହୋଇଥାଏ । ମରୁଭୂମି ବାସୀ ରେସର ହାତୀଆ ନେଉଳ (Herpestes edwardsi ferrugineus) ର ଲୋମ ଲାଲସିଆ । ଦକ୍ଷିଣ ଭାରତର ନେଉଳ ( Herpests edwardsi edwardsi)ର ଶୀତ କାଳୀନ ଲୋମ କ୍ଷୁଦ୍ର, ଘନ ଭାବେ ଛାପିଛାପିଆ ।

ହାତୀଆ ନେଉଳ ଜଙ୍ଗଲର ପ୍ରାଣୀ ନୁହେଁ । ଏହା **ଖୋଲା ଜାଗାରେ** ବୁଦାଳିଆ ଜଙ୍ଗଲ ଓ ରୁକ୍ଷ ଜମିରେ ସାଧାରଣତଃ ଦେଖିବାକୁ ମିଳେ । ବାଡ଼ର ଜଙ୍ଗଲଭିତରେ, ବୁଦାଭିତରେ, ପଥର ତଳେ, ଗଛ କୋରଡ଼ଭିତରେ ବା ଭୂମିରେ ଗାତ ଖୋଳି ଏମାନେ ବାସ କରନ୍ତି । ମରୁଭୂମି ଅଞ୍ଚଳରେ ବାସ କରୁଥିବା ନେଉଳ ଉତ୍ତାପରୁ ରକ୍ଷା ପାଇବା ପାଇଁ ଭୂମିରେ ଖୁବ୍ ଗଭୀରକୁ ଗାତ କରି ସେଥିରେ ରହନ୍ତି । ବେଳେବେଳେ ନେଉଳମାନେ ଏବଂ ମଣ୍ଡ ଭଉଁ ହୁଙ୍କାରେ ମଧ୍ୟ ରହିବାର ଦେଖାଯାଏ । ସହର ଓ ଗ୍ରାମାଞ୍ଚଳରେ ବାସ କରୁଥିବା ହାତୀଆ ନେଉଳ ଘର ଛାତ, ବରଗା ବା ନର୍ଦ୍ଦମାର ନିଭୃତ ସ୍ଥାନରେ ରହନ୍ତି । ସେମାନେ ଦିନ ବା ରାତିରେ ଶିକାର କରନ୍ତି । ଏକାକୀ ନଚେତ୍ ଅର୍ଣ୍ଣିଗ ମାଈ ଯୋଡ଼ି ଯୋଡ଼ି ହୋଇ ଶିକାର କରନ୍ତି । ସମୟ ସମୟରେ ମା' ଓ ତା'ର ଛୁଆମାନେ ଏକତ୍ର ଶିକାରରେ ବାହାରିବାର ମଧ୍ୟ ଦେଖାଯାଏ । ହାତୀଆ ନେଉଳ ମୂଷା, ସାପ, କୃକଳାସ (lizards) ବେଙ୍ଗ, ପୋକ, କଙ୍କଡ଼ା ବିଛା, ତେନ୍ତୁଳିଆ ବିଛା ଆଦି ଯାହା ମାରିପାରିବେ ତା' ଖାନ୍ତି । ପକ୍ଷୀର ଅଣ୍ଡା ଓ କେତେକ ପରିମାଣରେ ଫଳମୂଳ ମଧ୍ୟ ଏମାନଙ୍କର ଆହାର ହୋଇଥାଏ । ଅନ୍ୟ ମାଂସାଶୀ ପ୍ରାଣୀମାନଙ୍କ ପରି ହାତୀଆ ନେଉଳ ପଚା ସଢ଼ା ମାଂସ ଖାଏ । ବଡ଼ ଜନ୍ତୁ ଶିକାର କରି ଖାଇଥିବା ପଶୁର ମାଂଷ ମଧ୍ୟ ହାତୀଆ ନେଉଳ ଆସି ଖାଇବାର ଦେଖାଯାଇଅଛି । ସହର ଓ ଗାଁରେ ଏମାନେ ରୀତିମତ କୁକୁଡ଼ା ଘେର ପାଲଟିବାର ଦୃଷ୍ଟାନ୍ତ ବିରଳ ନୁହେଁ, କୁକୁଡ଼ା ବା ପାରା ଘର ଭିତରେ ପଶି ହାତୀଆ ନେଉଳ ଗୋଟି ଗୋଟି କରି ସବୁ

ପକ୍ଷୀଙ୍କୁ ମାରି ପକାଇବାର ... । ... କରିବାରେ ଏହା କିପରି ଧୁରନ୍ଧର ତାହା ପୂର୍ବେ ଆଲୋଚିତ ହୋଇଅଛି ।




(ଚିତ୍ର ନଂ 35 ହାତୀଆ ନେଉଳର ବିସ୍ତୃତି)

ହାତୀଆ ନେଉଳ ଛୁଆ କରିବାର କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ବର୍ଷର ସବୁ ସମୟରେ ଏହା ଛୁଆ ଉତ୍ପୁରଏ । ସାଧାରଣତଃ ଏମାନେ ବର୍ଷରେ ତିନିଥର ଛୁଆ କରନ୍ତି । ମାଈ ନେଉଳ ଗର୍ଭଧାରଣ କରିବାର ପ୍ରାୟ ଷାଠିଏ ଦିନ ପରେ ଶାବକ ଜନ୍ମ ହୁଅନ୍ତି ।

ଏମାନେ ଭଲ ପୋଷ ମାନନ୍ତି ଏବଂ ... ଓ ଅନ୍ୟ ପ୍ରାଣୀଙ୍କ ହାତରୁ ରକ୍ଷା କରନ୍ତି ।

ହାତୀଆ ନେଉଳର ଇଂରାଜି ନାମ (Common mongoose) (... ) । ବୈଜ୍ଞାନିକ ନାମ Herpestes edwardsi

(Geoffroy) । ବିଭିନ୍ନ ଭାଷାରେ ଏ ଜାତୀୟ ନେଉଳର ନାମ :- ହିନ୍ଦି– ମୁଙ୍ଗୁସ୍, ନେଉଲ, ନେଓଳା (ଉତ୍ତର ଓ ମଧ୍ୟ ଭାରତ); ମାରାଠି– ମୁଙ୍ଗୁସ୍ ; ଗୁଜୁରାଟି – ନୁଚୁଲିଆ , ତାମିଲ, ମାଲୟାଲି ଓ କାନାଡିଜ୍ – କି(ରି) ରି(ରି); ତେଲୁଗୁ – ମେନଟାଓ୍ୱା ମାଙ୍ଗିସା , ବର୍ମିଜ – (ମ) ଓ୍ୱେବା ।



# କୁଜି ନେଉଳ

କୁଜି ନେଉଳ ମୋଟରେ ପ୍ରାୟ 45ରୁ 50 ସେଣ୍ଟିମିଟାର ( 17-20 ଇଞ୍ଚ ) ଲମ୍ବା ହୁଏ । ଛୋଟ ଆକାର, ଛୋଟ ଲାଞ୍ଜ ( ଦେହର ଲମ୍ବଠାରୁ ଛୋଟ ), ସବୁଜ ବାଦାମୀ ରଙ୍ଗ, ସୁନେଲି କୋମଳ ରେଶମପରି ଲୋମ–ଏ ସବୁ ଦ୍ୱାରା ଏହାକୁ ସହଜରେ ହାତୀଆ ନେଉଳଠାରୁ ଚିହ୍ନି ହୁଏ । ଭାରତରେ ଦୁଇଟି ଶ୍ରେଣୀର କୁଜି ନେଉଳ ଦେଖାଯାନ୍ତି, ମରୁଭୂମି ଅଞ୍ଚଳର କୁଜି ନେଉଳ (Herpestes auropunctatus pal'ipes)ର ସାଧାରଣ ବର୍ଣ୍ଣ ଫିକା ଉତ୍ତର ଭାରତର ଅନ୍ୟ ଉର୍ବର ଅଞ୍ଚଳର କୁଜି ନେଉଳ (Herpestes auropunctatus ଘନ ବାଦାମୀ ଓ ଦେହସାରା ସ୍ୱର୍ଣ୍ଣାଭ ଟିପ ଟିପ ଚିହ୍ନଥାଏ ।

କାଶ୍ମୀର ଠାରୁ ଓଡ଼ିଶା ଓ ବଙ୍ଗଳା ଦେଇ ଆସାମ ପର୍ଯ୍ୟନ୍ତ ସମଗ୍ର ଉତ୍ତର–ଭାରତ, ପୂର୍ବରେ ବର୍ମା ଓ ମାଳୟ ଦେଶ ସମୂହ, ପଶ୍ଚିମରେ ଆଫଗାନିସ୍ଥାନ, ବେଲୁଚିସ୍ଥାନ, ପାରସ୍ୟ ଓ ମେସୋପଟାମିଆ ଅଞ୍ଚଳ କୁଜି ନେଉଳର ବାସ ।

ଏହା ଭୂମିରେ ଗାତ କରି ବାସ କରେ । ଦିନରେ ଖାଦ୍ୟ ଅନ୍ୱେଷଣରେ ବୁଦା ଓ ଘାସ ଜମିରେ ବୁଲୁଥିବାର ଦେଖିବାକୁ ମିଳେ । କୁଜି ନେଉଳ ଏକ ହୁସିଆର ପ୍ରାଣୀ ଓ ଲୁଚି ଛପି ବୁଲେ । ଦିନପରେ ଦିନ ନିୟମିତ ରୂପେ ସେଇ ଏକ ବାଟରେ ଯିବା ଆସିବା କରୁଥିବାରୁ, ଯେଉଁମାନେ କୁଜି ନେଉଳର ଗତିବିଧି ସହିତ ଅଭ୍ୟସ୍ତ ସେମାନେ ବାଡ ବୁଦାରେ ତା'ର ଚଲାବୁଲା ରାସ୍ତା ଚିହ୍ନି ପାରନ୍ତି ।

ଯେଉଁ ପ୍ରାଣୀକୁ କୁଜି ନେଉଳ ମାରିପାରିବ ତାହା ତା'ର ଆହାର । ସେ ମୂଷା, ସାପ, କଙ୍କଡ଼ାବିଛା, ଟେଣ୍ଟଳିଆବିଛା, ବିରୁଡ଼ି ଓ ସବୁପ୍ରକାର

# ସପ୍ତମ ଅଧ୍ୟାୟ

# ଗଧିଆ ବଂଶ

ଗଧିଆର କେତେକ ଲକ୍ଷଣ କୁକୁରପରି ଓ ଅନ୍ୟ କେତେକ ଲକ୍ଷଣ ବିଗଡି ବଂଶର ପ୍ରାଣୀମାନଙ୍କପରି । ଏହାର ଗୋଡ଼ ଓ ପାଦ କୁକୁରପରି ; କିନ୍ତୁ କଙ୍ଗେଟି (skull) ଦାନ୍ତ ଓ ଅନ୍ୟ କେତେକ ଶାରୀର ଲକ୍ଷଣ ବିଗଡି ବଂଶର ପ୍ରାଣୀପରି ଗଧିଆ ଏକ ଓଜନଦାର ପ୍ରାଣୀ ; ମାତ୍ର କଦାକାର । ଏହାର ମୁଣ୍ଡ ବଡ, କାନ ବଡ, ଗୋଡ଼ିଆ ଓ ଉପର ଆଡ଼କୁ ଠିଆ । ଆଗଗୋଡ ଦୁଇଟି ମଜବୁତ୍ ଓ ଲମ୍ବା । ଦେହର ପଛପଖ ନୁଆଁଣିଆ । ଏହା ପଦାଙ୍ଗୁଳି ଉପରେ ଭର ଦେଇ ଚାଲେ । ପ୍ରତ୍ୟେକ ପାଦରେ ଚାରିଟିକରି ଆଙ୍ଗୁଳି । ନଖର କ୍ଷୁଦ୍ର ଓ ଥୁଣ୍ଟା । ବିଗଡ଼ି ବଂଶର ପ୍ରାଣୀମାନଙ୍କପରି ନଖର ସଙ୍କୋଚନଶୀଳ ନୁହେଁ ଏବଂ ସେଗୁଡ଼ିକୁ ଆବୃତକରି ରଖିବାକୁ ଖୋଳ ନଥାଏ । ଗଧିଆମାନଙ୍କର ଗନ୍ଧ ଗ୍ରନ୍ଥି ନାହିଁ । ମାତ୍ର ମଳଦ୍ୱାରର ଠିକ୍ ଉପରକୁ ଏକ ବଡ ଗୁଦ ଗ୍ରନ୍ଥି (anal gland) ରହିଥାଏ । ଗଧିଆର ଶରୀର କୌଣସି ପ୍ରାଣୀକୁ ଆକ୍ରମଣ କରିବା ବା ଦ୍ରୁତ ଗତିରେ ପଶ୍ଚାତ୍ ଧାବନ କରିବା ଉପଯୋଗୀ ନୁହେ । ଅନ୍ୟ ପ୍ରାଣୀ ଶିକାରକରି ଖାଇ ଛାଡ଼ି ଯାଇଥିବା ମଡ଼ର ଅବଶେଷକୁ ଗଧିଆ ଖାଏ ଏବଂ ଏହାର ଶରୀର ଗଠନ ତଦନୁରୂପ ମଧ୍ୟ ।

ଗଧିଆ ମୁଖ୍ୟତଃ ଏକ ଆବର୍ଜନା ସଫାକାରୀ ପଶୁ । ଏହାର ଶ୍ରବଣଶକ୍ତି କ୍ଷୀଣ, ଦୃଷ୍ଟି ପ୍ରଖର ନୁହେଁ ଓ ଖାଦ୍ୟ ଖୋଜି ପାଇବାରେ ଚକ୍ଷୁ ବିଶେଷ ସହାୟକ ନୁହେଁ । ଏହାର ଘ୍ରାଣ ଶକ୍ତି ପ୍ରବଳ ଓ ଶୁଙ୍ଘି ଶୁଙ୍ଘି ଆସି ଖାଦ୍ୟ ପାଖରେ ପହଞ୍ଚେ । ବିଗଡିଜାତୀୟ ପ୍ରାଣୀ ଏବଂ ଗନ୍ଧମାର୍ଜାର ପରି ଏମାନଙ୍କର ଶ୍ମଶ୍ରୁଲୋମ ଉତ୍ତମ ବର୍ଦ୍ଧିତ ନୁହେଁ । ପୂର୍ବେ କୁହାଯାଇଛି, ଗଧିଆ ଶିକାରୀ ପଶୁ ନୁହେଁ । ବାଘ ବା କଲରପତ୍ରିଆ ଶିକାରକରି ଖାଇ ଛାଡ଼ି ଯାଇଥିବା ଉଚ୍ଛିଷ୍ଟକୁ ଶାଗୁଣା ଓ ବିଲୁଆ ଖାଇଲାପରେ ଯାହା ବଳିପଡ଼େ

ପୋକ ଥାଏ । ପୋଷିଲେ ହାତୀଆ ନେଉଳପରି ଏହା ଘରକୁ ସାପ, କଙ୍କଡ଼ା-ବିଛା, ମୂଷା ଆଦିଙ୍କ ଦାଉରୁ ରକ୍ଷା କରେ ।



(ଚିତ୍ର ନଂ 36 କୁଜି ନେଉଳ)

ରମଣର ପ୍ରାୟ ସାତ ସପ୍ତାହପରେ ଛୁଆ ଜନ୍ମ ହୁଅନ୍ତି । ବର୍ଷରେ 3-4 ମାସ ଅନ୍ତରରେ କୁଜି ନେଉଳ ଫଳଯାଏ ଓ ତିନିଥର ଛୁଆ ଉତ୍ପୁରଏ । ଜନ୍ମବେଳେ ଶାବକ ଦେହରେ ପ୍ରାୟ ଲୋମ ନଥାଏ ; ସେମାନେ ଦେଖିବାକୁ ଅସନା ଓ ରଙ୍ଗ କଳା ମୂଷାର ବର୍ଣ୍ଣପରି । ଜନ୍ମର 16-17 ଦିନ ପରେ ସେମାନଙ୍କର ଆଖି ଫିଟେ । ଛୁଆଙ୍କୁ ସ୍ତନ ଦାନ କଲବେଳେ ମା' ନେଉଳ ବିଲେଇପରି ଘଡ ଘଡ଼ ଶବ୍ଦକରେ, ବନ୍ଦୀ ଅବସ୍ଥାରେ ମା' ନେଉଳକୁ ଖାଇବାକୁ କ୍ଷୀର ଦେଲାବେଳେ ମଧ୍ୟ ସେହିପରି ଶବ୍ଦ କରିବାର ଦେଖାଯାଇଅଛି । ପ୍ରସବ କରିବା ପରେ ଦୁଇ ତିନି ସପ୍ତାହଯାଏ ମା' ନେଉଳ ବଡ଼ ଅସ୍ଥିର ଓ ଚଞ୍ଚଳ । ବିଲେଇପରି ପିଲାଙ୍କୁ ଏଠୁ ସେଠିକି ସେଠୁ ଏଠିକି ବୁହେ । ଏ ସମୟରେ ପାଖକୁଗଲେ ସେ କାମୁଡ଼ି ଗୋଡ଼ାଏ ।

କୁଜି ନେଉଳକୁ ଇଂରାଜିରେ Small Indian mongoose (କ୍ଷୁଦ୍ର ଭାରତୀୟ ନେଉଳ) କହନ୍ତି । ବୈଜ୍ଞାନିକ ନାମ Herpestes auropunctatus (Hodgson).



ତାହା ଗଧିଆର ଆହାର । ଏଥିରେ ମୁଖ୍ୟତଃ ହାଡ଼ ଏବଂ ମାଂସର ଖଦଡ଼ା ଅଂଶ ରହିଥାଏ । ଗଧିଆର ଶକ୍ତିଶାଳୀ ହନୁ ଓ ବଡ ବଡ ଦାନ୍ତ ହାଡ଼କୁ ପେଶି ପକାଇବା ଲାଗି ଅତ୍ୟନ୍ତ ଉପଯୁକ୍ତ । ହନୁ ଓ ଦାନ୍ତର କାର୍ଯ୍ୟକୁ ପରିଚାଳିତ କରିବା ପାଇଁ ଶକ୍ତିଶାଳୀ ମାଂସପେଶୀର ଅବସ୍ଥିତି ପାଇଁ ଗଧିଆର କରୋଟିର ଆକାର ତଦନୁସାରେ ପରିବର୍ଦ୍ଧିତ ହୋଇଅଛି । ଯେଉଁ ପ୍ରାଣୀମାନେ ଅନ୍ୟ ପ୍ରାଣୀ ଉପରେ ଆକ୍ରମଣ କରି ସେମାନଙ୍କ ମାଂସ ଖାନ୍ତି ସେମାନଙ୍କ ଶ୍ୱାଦନ୍ତ ବା ଛେଦନଦାନ୍ତ ଉତ୍ତମ ବର୍ଦ୍ଧିତ । ମାତ୍ର ଗଧିଆର ଶ୍ୱାଦନ୍ତ କ୍ଷୁଦ୍ର । ଅପରନ୍ତୁ ଏମାନଙ୍କର ଉଭୟ ହନୁରେ ଦ୍ୱିତୀୟ ଓ ତୃତୀୟ ଚର୍ବଣଦାନ୍ତ ବେଶ ବଡ଼ ଓ ଶଙ୍କୁ ଆକାର (Conical) । ଏହି ଦାନ୍ତ-ଗୁଡିକର ଅଧୋଭାଗ ଓସାରିଆ । ଫଳରେ ହାଡ଼କୁ ମଡ଼ ମଡ କରି ଭାଙ୍ଗିଲା ବେଳେ ମାଢ଼ି ଫଣ୍ଡିଆ ହୋଇ ଯାଏ ନାହିଁ ।

ଗଧିଆମାନେ ହାଏନିଡି (Hyaenidae) ବଂଶ ଅନ୍ତର୍ଭୁକ୍ତ । କେବଳ ଆଫ୍ରିକା ଓ ଦକ୍ଷିଣ ଏସିଆରେ ଗଧିଆ ବାସ କରନ୍ତି । ଦୁଇଟି ପ୍ରଜାତି (genus)ର ଗଧିଆ ଦେଖାଯାନ୍ତି । ଯଥା Hyaena (ହାଏନା) ଓ Crocuta (କ୍ରୋକୁଟା) । ସାଧାରଣ ଭାଷାରେ କଥିତ "ଡୋରା ଦାଗଥିବା ଗଧିଆ" (ଆମ ଦେଶର ଗଧିଆ) (striped hyaena) "ବାଦାମି ଗଧିଆ" (Brown hyaena) ଓ "ଟିପ୍ ଟିପିଆ ଗଧିଆ" (spotted hyaena) ମଧ୍ୟରୁ କେବଳ "ଡୋରା ଦାଗଥିବା ଗଧିଆ" ଭାରତରେ ବାସ କରନ୍ତି ଓ ଅନ୍ୟ ଦୁଇଜାତି ଗଧିଆ ଆଫ୍ରିକାରେ ମିଳନ୍ତି । ଆମର ପରିଚିତ ଗଧିଆ ଭାରତୀୟ ଉପଦ୍ୱୀପର ସମଗ୍ର ଅଞ୍ଚଳରେ ଓ ପଶ୍ଚିମରେ ପାରସ୍ୟ ଓ ମେସୋପଟାମିଆ ଦେଇ ଆଫ୍ରିକାର ଉତ୍ତରାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବାସ କରେ । ଏଣୁ ଆଫ୍ରିକା ଗଧିଆମାନଙ୍କର ଆଦିମ ଆବାସ ବୋଲି ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି ।

ଗଧିଆମାନେ ଖୋଲା ଜଙ୍ଗଲହୀନ ଅଞ୍ଚଳ, ମରୁଭୂମି, ବୁଦା ଝାଟି ଥିବା ପଥୁରିଆ ପାହାଡ, ଘାସ ଜମି ଓ ଖୋଲା ଜଙ୍ଗଲରେ ରହିବାକୁ

- ଭଲପାନ୍ତି । ସେମାନେ ଘନ ଜଙ୍ଗଲରେ ବାସ କରନ୍ତି ନାହିଁ । ଆମ ଭାରତରେ ସେମାନେ ସାଧାରଣତଃ ଶୁଷ୍କ ଅଞ୍ଚଳରେ ରହନ୍ତି । ଦିନବେଳେ ଗଧିଆ ପଥର ଗୁହାର ଛାଇରେ ବିଶ୍ରାମ କରେ ନଚେତ ବଡ ପଥର ସନ୍ଧିରେ ଖୋଳିଥିବା ଗାତରେ ରହେ । ଝିଙ୍କଙ୍କ ଖାଡକୁ ଓସାରିଆ କରି ସେଥିରେ ମଧ୍ୟ ସେ ରହିଥାଏ । ଗ୍ରୀଷ୍ମ ଋତୁରେ ସେମାନଙ୍କ ଦେହର ଲୋମ କ୍ଷୁଦ୍ର ଓ ଅଳ୍ପ ଥାଏ । ଶୀତ କାଳରେ ତା' ପରିବର୍ତ୍ତେ ଘନ ଓ କୋମଳ ଲୋମ ଉଠେ ।

ଗଧିଆ ଶତିଚର । ଏମାନେ ମୃତ ପଶୁର ମାଂସ ଖାନ୍ତି । ଏମାନେ ମଇଳା ସଫାକାରୀ ପ୍ରାଣୀ । ଗଧିଆର ପ୍ରଧାନ ଖାଦ୍ୟ–ପ୍ରତିଦ୍ୱନ୍ଦୀ ହେଲେ ଶାଗୁଣା ଓ ଶୃଗାଳ । ମଡା ଦେହକୁ ଓଟାରିଲେ ସହଜରେ ହାଡରୁ ଅଲଗା ହୋଇ ଯାଉଥିବା ମାଂସକୁ ବିଲୁଆ ଶାଗୁଣା ଖାନ୍ତି, ବାକି ହାଡୁଆ ଅଂଶତକ ଗଧିଆର । ବାଘ ବା କଲରପତ୍ରିଆ ମାରିଥିବା ପଶୁକୁ କିଛି ଖାଇ ଚାଲି-ଯାଇଥିବା ବେଳେ ଗଧିଆ ପର୍ଶିଆସି ଖାଇବାକୁ ଚେଷ୍ଟା କରିବା ବିପଜ୍ଜନକ ବ୍ୟାପାର । କାରଣ ଅସଲ ମାଲିକ ଧାସି ପହଞ୍ଚିଗଲେ ସଂଘର୍ଷ ହେବାର ସମ୍ଭାବନା । ଏଭଳି ଘଟଣାରେ ଗଧିଆବ ଘସହିତ ପାରି ଉଠିବାର ସମ୍ଭାବନା ସୁଦୂରପରାହତ । ହେଲେହେଁ ବେଳେବେଳେ ଖାଦ୍ୟ ପାଇଁ ଗଧିଆ ଓ ବାଘ ଲଢେଇରେ ଗଧିଆ ବାଘକୁ ହଟାଇ ଦେଇ ମଡ ଖାଇବାର ଦୃଷ୍ଟାନ୍ତ ଅଛି । ଖାଦ୍ୟ ପଶୁ ପାଇଁ ଗୁରୁତ୍ୱପୂର୍ଣ୍ଣ । ଖାଦ୍ୟପାଇଁ ଛକାପଞ୍ଝା କନ୍ଦିତକଗଳ ସବୁ ହୋଇଥାଏ । ଗଧିଆ କାହା ସହିତ ଲଢେଇ କରିବା ମନୋଭବର ପ୍ରାଣୀ ନୁହେଁ । ବିଶେଷ କରି ଯେଉଁ ବଳୁଆ ପ୍ରାଣୀମାନେ ତାକୁ ଘାଏଲ କରି ଦେଇପାରିବେ ସେମାନଙ୍କ ସହିତ ସେ ଯୁଝେ ନାହିଁ । ମାତ୍ର ଖାଦ୍ୟ ସଂଗ୍ରହ କରୁଥିଲାବେଳେ ଯଦି ଖୋଦ ମାଲିକ କଲରପତ୍ରିଆ ଆସି ପହଞ୍ଚିଯାଏ ତେବେ ଗଧିଆ 'ରଣଂଦେହି' କରି ଅଦମ୍ୟ ଦାମ୍ଭିକତା ସହକାରେ ଲଢାଇ କରି ଆଗନ୍ତୁକକୁ ଘଉଡାଇଦିଏ । ଗଧିଆର ଏକ ଚତୁରୀ ଅଛି । ତାହା ହେଲା, ମଲା ପରି ପେଖନା କରିବା । କୁକୁର ତାହାର ପିଛାକରି ତାକୁ ତଡିନେଲେ ଓ ଆଉ ପଳାଇବାର ବାଟ ନ ପାଇଲେ ସେ ଗୋଟିଏ ଜାଗାରେ ନିଷ୍କଳ ଭାବରେ ପଡି ରହି ମୃତ ବୋଲି ଛଳନା କରେ । କୁକୁର ତା' ପାଖରେ ପହଞ୍ଚି ଶୁଙ୍ଘି ଶୁଙ୍ଘି କରି ମୃତ ବୋଲି ଭାବି ଛାଡି ଚାଲିଯାନ୍ତି । ଏହି ସ୍ୱଭାବ ସେମାନଙ୍କର

ଏକ ସହଜାତ ପ୍ରବୃତ୍ତି । କାରଣ, ମନୁଷ୍ୟ ଭିନ୍ନ ମୃତ୍ୟୁ କ'ଣ ସେ କଥା ଅନ୍ୟ କେହି ପ୍ରାଣୀ ଜାଣେ ନାହିଁ । ସେପରି ସ୍ଥଳେ କୌଣସି ପ୍ରାଣୀ ବିଗ୍ରହ କରି ମୃତ୍ୟୁର ଛଳନା କରେନାହିଁ ।

ଗ୍ରାମ ଓ ସହର ଆଖପାଖରେ ଖାଦ୍ୟ ଅନ୍ୱେଷଣରେ ବାହାରିଥିବା- ବେଳେ ଗଧିଆ ମନୁଷ୍ୟ ହାବୁଡ଼ରେ ପଡ଼ିଥାନ୍ତି । ସେମାନେ ମୁଖ୍ୟତଃ ମଇଳା ସଫାକାରୀ ପଶୁହେଲେ ମଧ୍ୟ ଯେଉଁ ବନ୍ୟ ଓ ଗୃହପାଳିତ ପଶୁଙ୍କୁ ଆକ୍ରମଣ କରି ମାରିନେଇ ପଳାଇଯାଇ ପାରିବେ, ସେମାନଙ୍କ ଉପରେ ଚଢ଼ାଉ କରନ୍ତି । ମେଣ୍ଢା, ଛେଳି, ବାଛୁରୀ ଆଦି ମୁଖ୍ୟତଃ ସେମାନଙ୍କର ଶିକାର ହୋଇଥାନ୍ତି, ଆମ ଦେଶରେ ବାସ କରୁଥିବା ଗଧିଆ ଉତ୍ତର ଆଫ୍ରିକାରେ ମଧ୍ୟ ବାସ କରେ । ଆଫ୍ରିକାରେ ସେମାନେ ଅପେକ୍ଷାକୃତ ହିଂସ୍ର । ଗୋଟାଏ ଗୋଟାଏ ଗଧିଆ ଗୋଟାଏ ମେଣ୍ଢା ପଲ ଉପରେ ଆକ୍ରମଣ କରି ଗୋଟାକ ପରେ ଗୋଟାଏ ଏପରି ଅଧଡଜନେ ମେଷ ମାରି ପକାଇବାର ଜଣା ଅଛି, ଗଧିଆ ସାଧାରଣତଃ ମନୁଷ୍ୟକୁ ଭୟ କରନ୍ତି ଓ ମନୁଷ୍ୟକୁ ଦେଖିଲେ ପଳାଇ ଯାନ୍ତି । ମାତ୍ର ଭରତରେ ଗଧିଆ ଶିଶୁ ଓ ମନୁଷ୍ୟକୁ ଆକ୍ରମଣ କରିବାର ଦୃଷ୍ଟାନ୍ତ ଅଛି ।

ଗଧିଆ ଗ୍ରାମ ଓ ସହର ଆଖପାଖ ଅଞ୍ଚଳରେ ମୃତ ପ୍ରାଣୀର ହାଡ ଖାଇ ମଇଳା ସଫା କାରୀ ପଶୁରୂପେ କାର୍ଯ୍ୟ କରୁଥିବାରୁ ଆମର ଉପକାରୀ । ଭରତର କେତେକ ଅଞ୍ଚଳରେ ଏହାର ଜିଭ ଓ ଚର୍ବି ଫୁଲ, ଫୋଟକା ଓ ବାତର ଉପଶମ ପାଇଁ ବ୍ୟବହୃତ ହୁଏ । ମିଶରରେ ନୀଳନଦୀ ଉପତ୍ୟକାରେ ବାସ କରୁଥିବା କୃଷକମାନେ ଗଧିଆ ପରି ସାହସୀ ହେବା ଲଗି ତା'ର ହୃତ୍‌ପିଣ୍ଡ ଖାନ୍ତି । ସେମାନେ ତା'ର ସ୍ମଶ୍ରୁ ଲୋମକୁ ଯାଦୁ ମନ୍ତ୍ରରେ ବ୍ୟବହାର କରନ୍ତି ଓ ଅତି ଗରିବ ଲୋକେ ତା'ର ମାଂସ ଖାନ୍ତି ।

ଗଧିଆ ନାନା ପ୍ରକାର ବିକଟ ଶବ୍ଦ କରେ । ତନ୍ମଧ୍ୟରେ ଉଚ୍ଚସ୍ୱରରେ ଦାନ୍ତ କଡ଼ମଡ କରି ଏକ ପ୍ରକାର ଭୀତି ସଞ୍ଚାରଣକାରୀ ହାସ୍ୟଧ୍ୱନି ଅନ୍ୟତମ । ବନ୍ଦୀ ଅବସ୍ଥାରେ ଖାଦ୍ୟ ଦର୍ଶନରେ ସେ ଏପରି ଶବ୍ଦ କରିଥାଏ । ଗଧିଆ ବିଭିନ୍ନ ପ୍ରକାର ଶବ୍ଦ କି କି ପରିସ୍ଥିତରେ କରେ ସେ ବିଷୟ ଜଣା ନାହିଁ ।

ସେମାନଙ୍କର ପରିବାର ଜୀବନ ସମ୍ବନ୍ଧରେ ମଧ୍ୟ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମିତ । ସେମାନେ ସାଧାରଣତଃ ମାଈ ଅଣ୍ଡିଗ ଯୋଡ଼ ହୋଇ ବୁଲନ୍ତି । କେତେକ କ୍ଷେତ୍ରରେ ମା' ଓ ପିଲା ଏକତ୍ର ବୁଲୁଥିବାର ଦେଖା ଯାଇଛି । ସେତେବେଳେ ଅଣ୍ଡିଗ ପାଖରେ ନଥାଏ । ମା' ଗୁହା ବା ଗାତରେ ପିଲାମାନଙ୍କୁ ପାଳେ । ଥରକେ ତିନି ଚାରିଟି ଛୁଆ ଜନ୍ମ ହୁଅନ୍ତି । ଜନ୍ମବେଳେ ସେମାନଙ୍କର ଆଖି ଓ କାନ ଫିଟି ନଥାଏ । ସେମାନଙ୍କ ଦେହ କ୍ଷୁଦ୍ର ଶୁଭ୍ର ରେଶମ ପରି ଲୋମ ଦ୍ୱାରା ଆବୃତ ହୋଇଥାଏ ଏବଂ ବଡ଼ ଗଧିଆ ପରି ଦେହରେ ପଟା ପଟା କଳା ଗାର ପଡ଼ିଥାଏ । ମାତ୍ର ଗଧିଆର ପଠି ପଟେ ମେରୁଦଣ୍ଡ ସିଧାରେ ଯେପରି କେଶର ଥାଏ, ଛୁଆଙ୍କ ପିଠିରେ ସେପରି କେଶର ନଥାଏ । ଛୁଆ ମା' ସହିତ କେତେଦିନ ରହନ୍ତି ସେ ବିଷୟରେ କିଛି ଜଣା ନାହିଁ । ଭାରତୀୟ ଗଧିଆ ବନ୍ଦୀ ଅବସ୍ଥାରେ 12ରୁ 24 ବର୍ଷଯାଏ ବଞ୍ଚିବାର ଜଣା ଅଛି । ବନ୍ଦୀ ଗଧିଆର ପରମାୟୁ ସାଧାରଣତଃ 16 ବର୍ଷ ।



# ଗଧିଆ

ଗଧିଆକୁ ଆମ ଓଡ଼ିଶାରେ ସ୍ଥାନ ବିଶେଷରେ ଦୁଣ୍ଡାର ଓ ହେଟା ବୋଲି ମଧ୍ୟ କହନ୍ତି । କେତେକ ସ୍ଥାନରେ ନେକେଡ଼ା ବାଘ କହନ୍ତି । ନେକେଡ଼ା ବାଘ ଅନ୍ୟ ଏକ ପ୍ରାଣୀ (ପରେ ଦେଖ) । ପୂର୍ବେ କୁହାଯାଇଅଛି ଏମାନଙ୍କର ଦେହର ଗଠନ ପ୍ରାୟ କୁକୁର ପରି । ମୁଣ୍ଡ ଓ ଦେହର ସମ୍ମୁଖ ଭାଗ ବଡ଼, ମାତ୍ର ପଛ ପଟ ଦୁର୍ବଳ । ମେରୁଦଣ୍ଡ ଦଳଖରେ ପିଠି ଉପରେ ହିଡ଼ ପରି ଲମ୍ବ, ବହଳିଆ ଓ ଲମ୍ବା ଲୋମ ଥାଏ । ଗଧିଆର ବର୍ଣ୍ଣ ଈଷତ୍ ହଳଦିଆ ବା ବାଦାମୀରୁ ଧୂସର । ଗ୍ରୀଷ୍ମ କାଳରେ ଲୋମ ସଂଖ୍ୟା କମିଯାଏ ଓ ସେତେବେଳେ ଦେହର ରଙ୍ଗ ମସିଆ ଧଳା । ଦେହ ଓ ଗୋଡ଼ରେ ଅନୁପ୍ରସ୍ଥ ଭାବେ ଡୋରିଆ କଳା ରେଖା ପଡ଼ିଥାଏ । ଶୀତ କାଳରେ ଏହି ଚିହ୍ନ ସେତେ ସ୍ପଷ୍ଟ ନୁହେଁ ।

ଅଣ୍ଡିା ଗଧିଆ ଲମ୍ବରେ ପ୍ରାୟ 150 ସେଣ୍ଟିମିଟାର (5 ଫୁଟ), ଉଚ୍ଚତା ପ୍ରାୟ 90 ସେଣ୍ଟିମିଟାର (3 ଫୁଟ) ଓ ଓଜନରେ ପ୍ରାୟ 38.5 କିଲୋଗ୍ରାମ (85 ପାଉଣ୍ଡ) ହୋଇଥାନ୍ତି । ମାଇ ଅଣ୍ଡିା ଠାରୁ ପ୍ରାୟ 4.5 କିଲୋଗ୍ରାମ (10 ପାଉଣ୍ଡ) କମ୍ ଓଜନ ହୁଏ ।

ଭାରତ, ଦକ୍ଷିଣ ପଶ୍ଚିମ ଏସିଆ ଓ ଉତ୍ତର ଆଫ୍ରିକା ଗଧିଆର ବିଚରଣ ଭୂମି । ଏମାନେ ଜଙ୍ଗଲାଞ୍ଚଳରେ କ୍ୱଚିତ୍ ଦେଖାଯାନ୍ତି । ଛୋଟ ପାହାଡ଼, ଗଭୀର ଓ ସଂକୀର୍ଣ୍ଣ ଗିରିପଥ ଥିବା ଅଞ୍ଚଳରେ ଗାତ ଓ ଖୋଲ ଭିତରେ ଗଧିଆ ବାସ କରନ୍ତି, ଦିନବେଳେ ଜଙ୍ଗଲିଆ ବୁଦା, ଉଚ୍ଚ ଘାସ ଓ ଆଖୁ କିଆରୀ ଆଦିରେ ଲୁଚି ରହିଲେ ମଧ୍ୟ ପଥର ସନ୍ଧି ବା ସେମାନେ ଖୋଳିଥିବା ଗାତ ସେମାନଙ୍କର ଘର । ସମୟ ସମୟରେ ଝିଙ୍କ ତା' ଖୋଳିଥିବା ଗାତକୁ ଗଧିଆ ଆହୁରି ଖୋଳି ଭିତରେ ରହେ । ସାଧାରଣତଃ ମାଇ ଓ ଅଣ୍ଡିା ଗଧିଆ ଯୋଡ଼ି ହୋଇ ରାତିରେ ଖାଦ୍ୟ ଅନ୍ୱେଷଣରେ ବାହାରନ୍ତି ଓ ସୂର୍ଯ୍ୟୋଦୟ ପୂର୍ବେ ସେମାନଙ୍କର ନିଭୃତ ବାସକୁ ଫେରିଯାନ୍ତି । ଖାଦ୍ୟ ଅନ୍ୱେଷଣରେ

ସେମାନେ ବହୁ କିଲୋମିଟାର ପଥ ଭ୍ରମଣ କରନ୍ତି । ସେମାନଙ୍କର ପାଦର ଚିହ୍ନ ସହିତ ଜଙ୍ଗଲ ନିକଟରେ ବାସ କରୁଥିବା ଲୋକେ ଅଭ୍ୟସ୍ତ । ଗଧିଆର ପାଦ ଚିହ୍ନ ଅନେକ ପରିମାଣରେ କୁକୁରର ପଦଚିହ୍ନ ପରି, ମା'ତ୍ର ଆଗ ଗୋଡର ଚିହ୍ନ ପଛଗୋଡର ଚିହ୍ନ ତୁଳନାରେ ବଡ ଓ ମୁଖ୍ୟ ପଦ ଗଦିର ଛାପ ଅସମ ଓ ଅଣ୍ଡାକାର (ଚିତ୍ର ଦେଖ) ।



( ଚିତ୍ର ନଂ 37 ଗଧିଆ । )

ପୂର୍ବେ କୁହାଯାଇଅଛି ହୁଣ୍ଡାର ଗୋଟିଏ ମଇଳାସଫାକରୀ ପଶୁ । କୌଣସି ଜନ୍ତୁ ବେମାରୀ ହୋଇ ମରିଗଲେ କିମ୍ବା ବଡ ବଡ ମାଂସାଶୀ ପ୍ରାଣୀ ଜନ୍ତୁ ଶୀକାର କରି ଖାଇ ଛାଡିଗଲେ, ଗଧିଆ ଆସି ତାକୁ ଖାଏ । ତା'ର ଶକ୍ତ ହନୁ ଓ ଦାନ୍ତ ସାହାଯ୍ୟରେ ସେ ହାଡକୁ ବଡ ବଡ ଖଣ୍ଡରେ ଭଙ୍ଗି ତାକୁ ଗିଳେ । ନିରେଳାରେ ଖାଇବା ପାଇଁ ବେଳେବେଳେ ଏମାନେ ବଡ ବଡ ହାଡ ଖଣ୍ଡକୁ ସେମାନଙ୍କର ଖୋଲକୁ ବୋହି ନିଅନ୍ତି । ହାଡ ଖାଉଥିବାରୁ ଏମାନଙ୍କର ମଳ ଧଳା, ଗର୍ତ୍ତ ପାଖରେ ଖଣ୍ଡ ଖଣ୍ଡ ହାଡ ଓ ଧଳା ମଳ ଦେଖି ଶିକାରୀମାନେ ଜାଣି ପାରନ୍ତି ତାହା ଗଧିଆର ବାସ ।

ଗଧିଆ ଜନ ବସତିର ଆବର୍ଜନା ଦୂର କରିବାରେ କିଂଚିତ ଉପକାର କଲେ ମଧ୍ୟ, ବେଳେବେଳେ ମେଣ୍ଢା, ଛେଳି ଓ ବୁଲା କୁକୁରମାନଙ୍କୁ ନେଇ

ପଳାଏ ବୋଲି ପୂର୍ବେ କୁହା ଯାଇଅଛି । କୌଣସି କୌଣସି ଠାରେ ଥରେ ବାଛୁରୀ ନେବାକୁ ଆରମ୍ଭ କଲେ ତାହା ଅଭ୍ୟାସରେ ପଡିଯାଏ ଓ ସେଠାରେ ଗଧିଆ ଉତ୍ପାତରେ ଲୋକେ କ୍ଷତିଗ୍ରସ୍ତ ହୁଅନ୍ତି ।

ସେମାନେ ସାଧାରଣତଃ ବଡ ପଶୁକୁ ଆକ୍ରମଣ କରନ୍ତି ନାହିଁ । ମଢ଼ ଖାଇବା ସ୍ଥାନରେ କଲରାପତ୍ରିଆ ବା ବାଘ ଆସି ପହଞ୍ଚିଗଲେ ଗଧିଆ ବୀର ଦର୍ପରେ ଲଢି ସେମାନଙ୍କୁ ହଟାଇ ଦେବାର ବହୁ ଦୃଷ୍ଟାନ୍ତ ଅଛି ।

ଶୀତକାଳରେ ଏମାନେ ପ୍ରଜନନ କରନ୍ତି ଓ ଖରଦିନେ ଛୁଆ ଜନ୍ମକରନ୍ତି ବୋଲି ବିଶ୍ୱାସ କରଯାଏ ।

ଗଧିଆ ଭଲ ପୋଷ ମାନନ୍ତି ଓ ବଡ ହୋଇଗଲେ ମଧ୍ୟ ଧୀର ଓ ବିଶ୍ୱାସୀ ।

ଏହାର ବୈଜ୍ଞାନିକ ନାମ hyaena (Linnaes) । ଇଂରଜି ଏହାକୁ "ରେଖିତ ଗଧିଆ" (striped) hyaena) କହନ୍ତି । ବିଭିନ୍ନ ଭାରତୀୟ ଭାଷାରେ ଏହାର ନାମ—ହିନ୍ଦି—ହୁଣ୍ଡାର ଲକ୍କଡ଼ ବାଘର (ଉତ୍ତର ଭାରତ), ତେରସ (ଦକ୍ଷିଣ ଭାରତ) ମାରଠୀ—ଟରସ, ତେଲୁଗୁ—ଡୁମୁଲ୍ ଗୁଣ୍ଡୁ, କୋର୍ଣ୍ଣା ଗୁଣ୍ଡୁ, ତାମିଲ—କାଲଡା କୋରଟୁ, କାଲୁଥାଇ ପୁଲି, କାନାରିକାଥେ କି (ର) ରୁବା, କାଥେ କୁରୁବା, ନାଇ ହୁଲୀ ।



# ଅଷ୍ଟମ ଅଧ୍ୟାୟ

# କୁକ୍କୁର ବଂଶ

ନେକେଡା ବାଘ (wolf), ବିଲୁଆ (jackal), କୋକିଶିଆଳି (fox) ଏବଂ ବନ୍ୟ ଓ ଗୃହପାଳିତ କୁକୁର—ଏ—ସମସ୍ତେ କାନିଡି (canidae) ନାମକ ବଂଶର ଅନ୍ତର୍ଭୁକ୍ତ । ଏମାନଙ୍କ ମଧ୍ୟରେ ବହୁ ବଂଶଗତ ସାଦୃଶ୍ୟ ପରିଲକ୍ଷିତ ହୁଏ । ସେମାନଙ୍କର ଦେହ ଗୋଟିଏ ଛାଞ୍ଚରେ ଗଢା । ମୁଣ୍ଡର ଆକାର ସୁଡୌଲ, ଚିବୁକ ଓ ନାକ ପ୍ରଲମ୍ବିତ, କାନ ବଡ ଓ ଠିଆ, ଛାତି ଗଭୀର, ଦେହ ବଳିଷ୍ଠ, ଲଞ୍ଜ ଘନଲୋମାବୃତ, ଅବୟବ ସୂକ୍ଷ୍ମ ମାତ୍ର ପେଶୀବନ୍ଧ । ଏମାନେ ଅଙ୍ଗୁଳିଗ୍ରଚାରୀ (digitigrade) । ପାଦରେ ପ୍ରାୟ ସିଧା, ଥୁଣ୍ଟା ନଖର ଥାଏ । ନଖର ସଂକୋଚନଶୀଳ ନୁହେଁ । କେବଳ ଗୋଟିଏ ଜାତି (cape hunting dog) କୁକୁର ଭିନ୍ନ ଅନ୍ୟ ସବୁ କୁକୁରଙ୍କର ଅଗ୍ରପାଦରେ ପାଞ୍ଚଟି ଲେଖାଏଁ ଅଙ୍ଗୁଳି ଓ ପଶ୍ଚାତ୍ ପାଦରେ ଚାରିଟି କରି ଅଙ୍ଗୁଳି । "ଅନ୍ତରୀପଶିକାରୀକୁକୁର" (cape hunting dog) ଭିନ୍ନ କୁକୁରବଂଶର ଅନ୍ୟ ସମସ୍ତ ପ୍ରାଣୀଙ୍କର ଦେହର ବର୍ଣ୍ଣ ଅନୁଜ୍ଜ୍ୱଳ । ସେମାନଙ୍କର ବର୍ଣ୍ଣ ସାଧାରଣତଃ ଧୂସର, ହଳଦିଆ—ଆସିଆ ବାଦାମୀ ବା ଲାଲ—ଆସିଆ ବାଦାମୀ ହୋଇଥାଏ । କୁକୁର—ବଂଶଭୁକ୍ତ ସବୁପ୍ରାଣୀ ବେଳେବେଳେ ଉଦ୍ଭିଦଜାତ ପଦାର୍ଥ ଖାଇଲେ ମଧ୍ୟ ମୁଖ୍ୟତଃ ଶିକାରପଶୁ ପଛରେ ତୀବ୍ର ବେଗରେ ଗୋଡାଇ ତାଙ୍କୁ ମାରିଖାନ୍ତି । ଶିକାର ରୀତି ଦୃଷ୍ଟିରୁ କୁକୁର ବଂଶ ପ୍ରାଣୀଙ୍କ ସ୍ୱଭାବ ବିଲେଇ ବଂଶର ପ୍ରାଣୀଙ୍କ ଠାରୁ ଭିନ୍ନ । ଅବଶ୍ୟ ବିଲୁଆ ମୁଖ୍ୟତଃ ମଢ ଖାଇଥାଏ । ସେ ଯାହାହେଉ, କୁକୁର ବଂଶର ପ୍ରାଣୀମାନେ ପ୍ରଧାନତଃ ପେଶାଦାର ଶିକାରୀ ଜୀବ ହୋଇଥିବାରୁ ସେମାନଙ୍କର ଅବୟବ ତଦନୁସାରେ ଉତ୍ତମରୂପେ ଗଠିତ ।

ତାଲିମ ପ୍ରାପ୍ତ ପୋଲିସ କୁକୁର କିପରି ବାଟ ଶୁଙ୍ଘି ଶୁଙ୍ଘି ଦୋଷୀ ପାଖରେ ପହଞ୍ଚେ ତାହା ସମସ୍ତେ ଜାଣନ୍ତି । କୁକୁରବଂଶର ପ୍ରାଣୀମାନଙ୍କର ଘ୍ରାଣଶକ୍ତି ଅତ୍ୟନ୍ତ ପ୍ରଖର । ନେକେଡା ବାଘ ଭୂମିରେ ନାକକୁ ରଖି ବାଟ ଶୁଙ୍ଘି ଶୁଙ୍ଘି ଶିକାର ପଶୁ ନିକଟରେ ପହଞ୍ଚେ । କୁକୁର ମଧ୍ୟ ଗନ୍ଧ ବାରି ଶିକାର କରନ୍ତି । କେବଳ ସେତିକି ନୁହେଁ, କୁକୁରବଂଶର ପ୍ରାଣୀମାନଙ୍କର ଦୃଷ୍ଟି ଶ୍ରବଣଶକ୍ତି ପ୍ରଖର । ଏହା ଶିକାର ପକ୍ଷରେ ଅତ୍ୟନ୍ତ ସହାୟକ । ନେକେଡା ଗନ୍ଧ ଶୁଙ୍ଘି ଶୁଙ୍ଘି ଆସି ଶିକାରପ୍ରାଣୀ ଗୋଡାଇବା ସୀମା ଭିତରେ ଥିଲେ ତୀର ବେଗରେ ଯାଇ ତାକୁ ଚଢାଉ କରେ । ପ୍ରାଣୀ ଦୂରରେ ଥିଲେ ଲୁଚି ରହି ସୁଯୋଗ ପାଇଁ ଅପେକ୍ଷା କରେ । ଏପରି ଅପେକ୍ଷା କରିଥିଲବେଳେ ସେମାନେ ଭୂମି ଉପରେ ପେଟକୁ ଶୁଆଇ ରଖନ୍ତି, ଆଗ ଦୁଇ ପାଦ ମଧ୍ୟରେ ନାକ ରହେ, କାନ ସମ୍ମୁଖ ଆଡକୁ ବଙ୍କାଇ ରହେ ଓ ଆଖି ଜାଗ୍ରତ ଭାବେ ଦୃଷ୍ଟି ନିବଦ୍ଧ କରେ । ଏଭଳି ଅବସ୍ଥାରେ ଦୃଷ୍ଟି ଓ କର୍ଣ୍ଣ ଶକ୍ତି କେବଳ ଯେ ପୂର୍ଣ୍ଣ ଭାବରେ ବ୍ୟବହୃତ ହୁଏ ତା' ନୁହେଁ, ଏହି ଆନତ ବସିବା ଭଙ୍ଗୀ ଦ୍ୱାରା ସେ ଭୂମିରେ ହେଉଥିବା ଶବ୍ଦ ମଧ୍ୟ ଗ୍ରହଣ କରିପାରେ । ଅତର୍କିତ ଭାବରେ ଶିକାର ଆସି ପାଖରେ ପହଞ୍ଚିଗଲେ ସେ ସିଧା ସଳଖ ତାକୁ ଅକ୍ଲାନ୍ତ ଭାବେ ଗୋଡାଇପାରେ । ଏମାନେ ବହୁ ସମୟ ଧରି ବହୁ ପଥ ଦୌଡି ପାରନ୍ତି । ସେମାନଙ୍କର ପାଦ ସେଥିଲାଗି ତଦନୁସାରେ ଗଠିତ । ଅଙ୍ଗୁଳି ଓ ପାଦ ତଳେ ଗଦିଥାଏ । ଶକ୍ତ ଭୂମିରେ ଦୌଡିବା ଭିନ୍ନ ଏମାନଙ୍କର ପାଦ ଆହାର ଧରିବା ବା ଅନ୍ୟ କୌଣସି କାର୍ଯ୍ୟରେ ବ୍ୟବହୃତ ହୁଏ ନାହିଁ । ଜଣେ ଶିକାରୀ ଘୋଡାରେ ବସି ଗୋଟିଏ ନେକେଡାର ପିଛା ଧରିଲେ । ନେକେଡା ପ୍ରାୟ ଦୁଇ ଘଣ୍ଟା କାଳ ଦୌଡିଥିଲା ଓ ଏହି ସମୟ ମଧ୍ୟରେ 29 କିଲୋମିଟାର ଦୌଡିଥିଲା ।

ଅନ୍ୱେଷିତ ଶିକାର ଜନ୍ତୁ ଉପରେ ଆକ୍ରମଣ ପରିସ୍ଥିତି ଉପରେ ନିର୍ଭର କରେ । ସେ ଗୁଡିକ ହେଲା —ଶିକାର ଜନ୍ତୁ କିପ୍ରକାର ପ୍ରାଣୀ, ତାକୁ କେତୋଟି ପଶୁ ଶିକାର କରୁଅଛନ୍ତି, ସେ ପଳାୟନରତ ନାଁ ଆକ୍ରମଣକାରୀ ହସ୍ତରୁ ଅବ୍ୟାହତିର ଆଶା ନଥିବାରୁ ହଠାତ୍ ଫେରି ଲଢିବା ପାଇଁ ଦଣ୍ଡାୟମାନ, ଇତ୍ୟାଦି । ନେକେଡା ବାଘ ଧାବମାନ ମୃଗ ଜାତୀୟ ପ୍ରାଣୀ ବା ମେଷର

ତଣ୍ଟିକୁ ଲକ୍ଷ୍ୟ କରି ଡୁଦା ମାରେ । ତା' ବେକକୁ ଧରି ମୁଣ୍ଡକୁ ତଳକୁ ମାଡି ଦିଏ । ଫଳରେ ପ୍ରାଣୀ ମୁହଁ ମାଡି ତଳେ ପଡିଯାଏ । ଦ୍ରୁତ ବେଗରେ ଦୌଡ଼ୁଥିଲା ବେଳେ ଆକ୍ରମଣ ଯୋଗୁ ଓ ମୁହଁମାଡ଼ି ପଡିବା ଫଳରେ ସେ ହତବଳ ହୋଇଯାଏ । ବଳିଆ କୁକୁରମାନଙ୍କ ପରି ନେକେଡା ଧାବମାନ ଶିକାରପ୍ରାଣୀକୁ କଡରୁ ମଧ୍ୟ ଆକ୍ରମଣ କରିଥାଏ ଏବଂ ପେଟପାଖରେ କୋମଳ ଅଂଶକୁ କାମୁଡି ଧରି ଅନ୍ତ ନାଡି ଭିଡି ଓଟାରି ବାହାର କରିଦିଏ । ଶିକାର ପ୍ରାଣୀ ଟଟସ୍ଥ ଅବସ୍ଥାରେ କିଛି ବାଟ ଦୌଡିଲା ପରେ ଆଉ ପଳାଇଯିବାର ବାଟ ନପାଇ ବିପନ୍ନାବସ୍ଥାରେ ଠିଆ ହୋଇଥିଲେ, ବଳିଆ କୁକୁର ସାଧାରଣତଃ ତାକୁ ସାମନା ପଟୁ ଆକ୍ରମଣ କରି ମୁଖର ଯେଉଁ ଅଂଶକୁ (ଯଥା—ଆଖି, କାନ, ନାକ, ପାଟି) କାମୁଡି ଧରି ପାରିବ ସେ ଅଂଶ କାମୁଡି ଖଣ୍ଡିଆ କରି ପକାଏ । ବଳିଆ କୁକୁର ଯଦି ବେଶୀ ସଂଖ୍ୟାରେ ଥାନ୍ତି ତେବେ କେତେକ ପଛ ପଟରୁ ମଧ୍ୟ ଆକ୍ରମଣ କରନ୍ତି । ବଳିଆ କୁକୁର ବେଶୀ ସଂଖ୍ୟାରେ ଥିଲେ ଯାଇ ସେମାନେ ବଡ ଜନ୍ତୁ ବା ହିଂସ୍ର ଜନ୍ତୁକୁ ଆକ୍ରମଣ କରନ୍ତି । ସେତେବେଳେ ଆଗ ଓ ପଛ ଉଭୟ ପଟୁ ଚଢାଉ ହୁଏ । ସାମନା ପଟେ ବ୍ୟସ୍ତ ଥିଲାବେଳେ ପଛ ପଟରେ ଥିବା ବଳିଆ କୁକୁର ପଛରୁ କାମୁଡନ୍ତି । ଭାରତର କେତେକ ସ୍ଥାନରେ ଲୋକବିଶ୍ୱାସ ରହିଛି ଯେ ବଳିଆ କୁକୁର ପଛରୁ ଅଣ୍ଡିରା ଜନ୍ତୁର ଅଣ୍ଡକୋଷକୁ ଆଗ ଆକ୍ରମଣ କରେ । ଏହା ସତ୍ୟ ନୁହେଁ । ପଛପଟରୁ ଆକ୍ରମଣ କଲାବେଳେ ଯାହା କାମୁଡି ଧରିପାରିବେ ତାହା କାମୁଡନ୍ତି । ସେମାନେ ଅଣ୍ଡିରା ପ୍ରାଣୀକୁ ପୁରୁଷତ୍ୱହୀନ କରିବା ପାଇଁ କାମୁଡନ୍ତି ଏଭଳି ଧାରଣା କରିବା ଠିକ୍ ନୁହେଁ । ଆହୁରି ଏକ ବିଶ୍ୱାସ ଅଛି ଯେ ବଳିଆ କୁକୁର ବୁଦାରେ ମୂତ୍ର ତ୍ୟାଗ କରେ । ତା' ପରେ ଶିକାର ପ୍ରାଣୀକୁ ସେଇ ବୁଦାବାଟେ ଘଉଡ଼ାଇ ଆଣେ । ଉଦ୍ଦେଶ୍ୟ, ତୀବ୍ର ମୂତ୍ର ଗନ୍ଧରେ ସେମାନେ ଅନ୍ଧ ପ୍ରାୟ ହୋଇଯିବେ । ମାତ୍ର ଏହା ସତ୍ୟ ନୁହେଁ । ୟୁରୋପରେ ନେକେଡ଼ା ବାଘ ସମ୍ବନ୍ଧରେ ସେଇପରି ଏକ ବିଶ୍ୱାସ ଅଛି । ତାହା ହେଲା, ସେମାନେ ପାଣିରେ ତାଙ୍କ ଲାଞ୍ଜ ବୁଡ଼ାଇ ଶିକାର ପ୍ରାଣୀ ଆଖି ଆଗରେ ଲାଞ୍ଜ ଛିଞ୍ଚାଡ଼ି ତାକୁ ଅନ୍ଧ କରି ଦିଅନ୍ତି । ଏ ସବୁ କପୋଳକଳ୍ପିତ । ସେ ଯାହା ହେଉ, ବଳିଆ କୁକୁରମାନେ ବେଶ ବୁଦ୍ଧିମାନ୍ ଓ ସଂଘବଦ୍ଧ ଭାବେ ଶିକାର କରନ୍ତି ।

ନେକେଡ଼ା ଓ କୁକୁର ଶିକାର ପ୍ରାଣୀକୁ ତାଙ୍କର ହନୁ ଓ ଦାନ୍ତ ସାହାଯ୍ୟରେ କାମୁଡ଼ି ଧରନ୍ତି ଏବଂ ସେମାନଙ୍କର ଜାବ ସହଜରେ ଛାଡ଼େ ନାହିଁ । ଏମାନଙ୍କର ହନୁ ହାଡ଼ ଲମ୍ବା । ଗଣ୍ଡ ଦେଶର ଶକ୍ତିଶାଳୀ ମାଂସ ପେଶୀର ସଞ୍ଚାଳନଦ୍ୱାରା ଦୀର୍ଘ ହନୁ ଓ ଅଧିକ ସଂଖ୍ୟକ ଦାନ୍ତଦ୍ୱାରା ସେମାନେ ଶିକାର ପ୍ରାଣୀକୁ ନଛୋଡ଼ବନ୍ଧା ଭାବେ କାମୁଡ଼ି ଧରନ୍ତି । କୁକୁର ପାଟିରେ ମୋଟ ଦାନ୍ତ ସଂଖ୍ୟା 42, ବିରାଡ଼ି ବଂଶର ପ୍ରାଣୀମାନଙ୍କ ପାଟିରେ ହାରାହାରି 30 ଓ ଗନ୍ଧମାର୍ଜାରଙ୍କ ପାଟିରେ 40ଟି ଦାନ୍ତ ଥାଏ । କୁକୁର ପାଟିରେ ଛେଦକଦନ୍ତ (canine) ଓ କର୍ତ୍ତନ ଦାନ୍ତ (incisor) ମଧ୍ୟରେ ଯଥେଷ୍ଟ ବ୍ୟବଧାନ ଅଛି ଏହା ଫଳରେ କର୍ତ୍ତନ–ଦାନ୍ତର ଜାବ ଭଲଭାବରେ ପଡ଼ିଯାଏ ଏବଂ ଜୀବନ୍ତ ଶିକାରପ୍ରାଣୀକୁ କ୍ଷତ ବିକ୍ଷତ କରିବା ସହଜ ହୁଏ । ସାମନା ଆଡ଼କୁ ଥିବା ସେମାନଙ୍କର କର୍ତ୍ତନ ଦାନ୍ତ କାମୁଡ଼ିବା, କାଟିବା ଓ ଚମଡ଼ା ଉତାରିନେବା ଲାଗି ଉପଯୋଗୀ । ସେମାନଙ୍କର "ମାଂସ-ଦନ୍ତ" (flesh tooth) ବା ଦାରକ ଦନ୍ତ (carnassial teeth) ସବୁଠାରୁ ବଡ଼ । ସେଥିରେ ତ୍ରିଭୁଜାକାର ଦନ୍ତଶିଖର ଥାଏ । ଉପର ପାଖର ପ୍ରତି ପାଖରେ ଥିବା ପ୍ରଥମ ପେଷଣଦନ୍ତ (molar) ଦାରକଦନ୍ତ ଗଠନ କରେ । ଏହି ଦାନ୍ତସାହାଯ୍ୟରେ ସେମାନେ କଇଞ୍ଚିରେ କାଟିଲା ପରି ଶିକାର ପ୍ରାଣୀର ଅଂଗକୁ ବଡ଼ ବଡ଼ ହାଡ଼–ମାଂସ ଖଣ୍ଡରେ କାଟି ଗିଳି ପକାନ୍ତି । ଗନ୍ଧମାର୍ଜାର ଓ କୁକୁରମାନଙ୍କର ଦନ୍ତରେ ଅଦ୍ଭୁତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । କାନିଡ଼ି ବଂଶର ପ୍ରାଣୀମାନେ ଅନ୍ୟ ଶିକାରୀ ପ୍ରାଣୀମାନଙ୍କ ତୁଳନାରେ ସବୁଠାରୁ ଅଧିକ ବିସ୍ତୃତ ଅଞ୍ଚଳରେ ଦେଖାଯାନ୍ତି, ଏହି ବଂଶଭୁକ୍ତ ଅଧିକାଂଶ ଜାତୀୟ ପ୍ରାଣୀ ଉତ୍ତର ଗୋଲାର୍ଦ୍ଧରେ ବାସ କରନ୍ତି । ଉତ୍ତର ଗୋଲାର୍ଦ୍ଧର ଉତ୍ତରାଞ୍ଚଳ ଏମାନଙ୍କର ଆଦିମ ଜନ୍ମଭୂମି ବୋଲି ମନେହୁଏ, ପରବର୍ତ୍ତୀ କାଳରେ ଏମାନେ ୟୁରୋପ, ଏସିଆ, ଆଫ୍ରିକା ଓ ଆମେରିକାର ପ୍ରାୟ ସବୁ ଅଞ୍ଚଳକୁ ବ୍ୟାପ୍ତ ହୋଇଥିଲେ । କୁକୁର ବଂଶର କୌଣସି ଜାତି ପ୍ରାଣୀ ମାଡ଼ାଗାସ୍କର ବା ଅଷ୍ଟ୍ରେଲିଆରେ ଦେଖାଯାନ୍ତି ନାହିଁ । ବିଶ୍ୱାସ କରାଯାଏ, ଅଷ୍ଟ୍ରେଲିଆର ବନ୍ୟ କୁକୁର ଡିଙ୍ଗୋ (dingo) ଦକ୍ଷିଣ-ପଶ୍ଚିମ ଏସିଆରୁ ଆଦିମ ଅଧିବାସୀ ମାନଙ୍କ ଦ୍ୱାରା ଆନୀତ ଗୃହ ପାଳିତ କୁକୁରର ବନ୍ୟ ବଂଶଧର ଅଟନ୍ତି । କୁକୁର ବଂଶର ପ୍ରାଣୀମାନେ ମେରୁ ପ୍ରଦେଶ,

ସମ ଶୀତୋଷ୍ଣ ଓ ବିଷୁବ ଅଞ୍ଚଳରେ ଦେଖାଯାନ୍ତି । ପରିବେଶର ତାରତମ୍ୟ ସହିତ ସେମାନେ ନିଜକୁ ଖାପ ଖୁଆଇ ନେଇ ପାରି ଅଛନ୍ତି । ନେକେଡ଼ା ବାଘ (wolf), ଲାଲ କୋକିଶିଆଳି (red fox), ଶୃଗାଳ (jackal) ଏବଂ ବଳିଆ କୁକୁର ଉତ୍ତରଅଞ୍ଚଳରୁ ଭାରତକୁ ଆସି ଅଛନ୍ତି ସେମାନେ ଏ ଦେଶର ଆଦିମ ଅଧିବାସୀ ନୁହନ୍ତି । ସେମାନଙ୍କର ପୂର୍ବ ବଂଶଧରମାନେ ସମ୍ଭବତଃ ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳର ଗିରିପଥ ଦେଇ ଭାରତରେ ପ୍ରବେଶ କରିଥିଲେ । ଅନ୍ୟାନ୍ୟ ଦେଶ ପରି ଭାରତରେ ମଧ୍ୟ ସେମାନେ ଅତି ଶୀତଳ, ଅତି ଉଷ୍ଣ, ଶୁଷ୍କ ଓ ଆର୍ଦ୍ର ବିଭିନ୍ନ ପ୍ରକାର ଜଳବାୟୁରେ ବାସ କରନ୍ତି । ଏ ଦିଗରେ ବିଲୁଆ ସବୁଠାରୁ ବେଶୀ ସଫଳତା ହାସଲ କରିଅଛି. ଏହା ଭାରତର ସର୍ବତ୍ର ଦେଖାଯାଏ । ଶୃଗାଳ ମରୁଭୂମି, ଅରଣ୍ୟ, ସମତଳ ଭୂମି ଓ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ବାସ କରେ । ନେକେଡ଼ା ବାଘ ଓ କୋକିଶିଆଳି ବିଲୁଆ ପରି ସର୍ବବ୍ୟାପି ନୁହଁନ୍ତି । ଭାରତରେ ସେମାନେ ଖୋଲା ଅଞ୍ଚଳମାନଙ୍କରେ ଦେଖା-ଯାନ୍ତି । ଅପର ପକ୍ଷରେ ବଳିଆ କୁକୁର କେବଳ ଜଙ୍ଗଲରେ ବାସ କରନ୍ତି । ବଳିଆ କୁକୁରର ପୂର୍ବ ବଂଶଧର ମହାବଳ ବାଘର ପୂର୍ବ ବଂଶଧରମାନଙ୍କ ପରି ସମ୍ଭବତଃ ଉତ୍ତର—ପୂର୍ବ ସୀମାନ୍ତ ଅଞ୍ଚଳ ଦେଇ ଭାରତରେ ପ୍ରବେଶ କରିଥିଲେ । ଜଙ୍ଗଲରେ ବାଘ ତଥା ବଳିଆ କୁକୁର ପାଇଁ ଯଥେଷ୍ଟ ଖାଦ୍ୟ ଓ ପାଣି ଉଭୟର ସୁବିଧା ଥିବାରୁ ତାହା ସେମାନଙ୍କର ବାସପାଇଁ ଉପଯୋଗୀ ହୋଇ ପାରିଲା । ବାଘପରି ବଳିଆକୁକୁର ଭାରତୀୟ ଉପଦ୍ୱୀପର ଦକ୍ଷିଣାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ; ମାତ୍ର ବୃକ୍ଷହୀନ ଓ ମରୁଭୂମି ଅଞ୍ଚଳରେ ବାସ କରେ ନାହିଁ । ଉଭୟ ପ୍ରାଣୀ ଶ୍ରୀଲଙ୍କାରେ ଦେଖା ଯାନ୍ତି ନାହିଁ । ସେମାନେ ଦକ୍ଷିଣ ଭାରତର ଦକ୍ଷିଣ ସୀମାରେ ପହଞ୍ଚିବା ପୂର୍ବରୁ ସମ୍ଭବତଃ ଶ୍ରୀଲଙ୍କା ମୁଖ୍ୟ ଭୂମିଖଣ୍ଡ ଠାରୁ ବିଚ୍ଛିନ୍ନ ହୋଇ ସାରିଥିଲା ।

ବିଭିନ୍ନ ଜଳବାୟୁ ଓ ପରିସ୍ଥିତିରେ ବାସ କଲେ ମଧ୍ୟ କୁକୁରବଂଶର ପ୍ରାଣୀମାନଙ୍କଠାରେ ମୌଳିକ ଗଠନରେ ବିଶେଷ ପରିବର୍ତ୍ତନ ଦେଖା ଯାଏ ନାହିଁ । ଭାରତର ନେକେଡ଼ା ବାଘ, ହିମାଳୟ ତଥା ଉତ୍ତର—ପଶ୍ଚିମ ମରୁଭୂମିର ଲାଲ କୋକିଶିଆଳି, ସର୍ବବ୍ୟାପୀ ଶୃଗାଳ ଓ ଜଙ୍ଗଲବାସୀ ବଳିଆ କୁକୁର ପୃଥିବୀର ଯେକୌଣସି ଅଞ୍ଚଳରେ ବାସ କରୁଥିବା ସେହି ପ୍ରାଣୀମାନଙ୍କ

ଠାରୁ ବିଶେଷ ଭିନ୍ନ ନୁହଁନ୍ତି, ସେମାନେ ଭାରତୀୟ ସଂସ୍କରଣ ମାତ୍ର । ଜଳବାୟୁ ଓ ଖାଦ୍ୟର ପ୍ରଭାବହେତୁ ସେମାନଙ୍କର ଆକାର ଓ ଲୋମର ଘଞ୍ଚତାରେ ଯାହ କିଛି ତଫାତ୍ ଦେଖାଯାଏ । ସୁମେରୁଅଞ୍ଚଳ (Arctic region) ମଧ୍ୟଏସିଆର ଉଚ୍ଚ ଭୂମି ଓ ତିବ୍ବତର ମାଳଭୂମି ଅଞ୍ଚଳ ବୃକ୍ଷହୀନ ଓ ସେଠାରେ ଶୀତ ପ୍ରଚଣ୍ଡ । ଏହି ଅଞ୍ଚଳରେ କୁକୁର ବଂଶଜ ପ୍ରାଣୀମାନଙ୍କର ଲୋମ ବଡ଼, ଘଞ୍ଚ ଓ ଶୀତରୁ ରକ୍ଷା ପାଇବା ପାଇଁ ଉଦ୍ଦିଷ୍ଟ । ୟୁରୋପୀୟ ନେକେଡ଼ା ଭାରତୀୟ ସମତଳ ଭୂମି ବାସୀ ନେକେଡ଼ା ଠାରୁ ବହୁତ ବଡ଼ । ତଦନୁସାରେ ତା'ର ମୁଣ୍ଡ ଓ ଦାନ୍ତ ବଡ଼ । ତୁଳନାତ୍ମକ ଭାବେ ଦେଖିବାକୁ ଗଲେ ଭାରତର ନେକେଡ଼ା ଏକ ମେଞ୍ଚେଡ଼ଙ୍ଗା ନହକାଗୋଡ଼ିଆ ପ୍ରାଣୀ । ଶୃଗାଳ, ଲାଲ କୋକିଶିଆଳି ଓ ବଣିଆ କୁକୁର ପ୍ରଭୃତିଙ୍କ ପାରେ ମଧ୍ୟ ତାହାହିଁ ସତ୍ୟ । ପୃଥିବୀର ଉତ୍ତରଅଞ୍ଚଳର ପ୍ରାଣୀମାନଙ୍କ ତୁଳନାରେ ଦକ୍ଷିଣାଞ୍ଚଳର ପ୍ରାଣୀମାନେ ଅନେକ ଛୋଟ ହୁଅନ୍ତି । ଏହି ପ୍ରାଣୀମାନଙ୍କର ଦେହର ବର୍ଣ୍ଣ ଋତୁ ଓ ଭୌଗୋଳିକ ପରିସ୍ଥିତିକ୍ରମେ ଭିନ୍ନ ହୋଇଥାଏ । ୟୁରୋପୀୟ ନେକେଡ଼ାର ବର୍ଣ୍ଣ ମସିଆ ବାଦାମୀ-ଆସିଆ ଧୂସର, ହିମାଳୟ ଓ କେନ୍ଦ୍ର ଏସିଆ ଅଞ୍ଚଳର ନେକେଡାର ବର୍ଣ୍ଣ ବାଦାମୀ ଆସିଆ ଓ ଭାରତୀୟ ସମତଳ ଭୂମିର ନେକେଢ଼ାର ବର୍ଣ୍ଣ ବାଦାମୀ ବାଲି ରଙ୍ଗର । ହିମାଳୟ ଓ ଦକ୍ଷିଣ ଭାରତରେ ବାସ କରୁଥିବା ବିଲୁଆଙ୍କ ତୁଳନାରେ ମରୁଭୂମିରେ ଦେଖା ଯାଉଥିବା ବିଲୁଆଙ୍କ ରଙ୍ଗ ଫିକା । ଉତ୍ତରଅଞ୍ଚଳର ବନ୍ୟ କୁକୁରର ବର୍ଣ୍ଣ ବାଦାମୀ ଆସିଆ ବା ଫିକା ହୋଇଥିବା ସ୍ଥଳେ ନେପାଳ, ବର୍ମା ଓ ମାଲୟରେ ସେମାନଙ୍କର ବର୍ଣ୍ଣ ଲାଲ । ଭୌଗୋଳିକ ଅବସ୍ଥିତ ଅନୁସାରେ ବର୍ଣ୍ଣରେ ମୋଟା ମୋଟି ଏଭଳି ବୈଷମ୍ୟ ଦେଖାଯାଏ । ଅଧିକନ୍ତୁ ମଧ୍ୟ କେତେକ ସ୍ଥାନରେ ସେହି ଗୋଟିଏ ଜାତିରେ ମଧ୍ୟ ଏକାଧିକ ବର୍ଣ୍ଣର ପ୍ରାଣୀ ଦେଖା ଯାନ୍ତି ।

ଉଦାହରଣ ସ୍ୱରୂପ, ଆମେରିକାରେ ଥିବା ଲାଲ କୋକିଶିଆଳ (Vulkes vulkes) ସେହି ଏକ ସ୍ଥାନରେ ବା ଏକା ମା' ପେଟରୁ ଜାତ ଶାବକମାନଙ୍କ ମଧ୍ୟରେ ବର୍ଣ୍ଣରୁ ଭିନ୍ନତା ପରିଲକ୍ଷିତ ହୁଏ, ଯଥା -ଲାଲ, ଧୂସର ('hoary') କଳା ଓ ରୁପେଲୀ ('silver tip') ପ୍ରଭୃତି ଭିନ୍ନ ଭିନ୍ନ ରଙ୍ଗରେ

ଶାବକ ଗୁଡିକ ଜାତ ହୁଅନ୍ତି । ହିମାଳୟ ଅଞ୍ଚଳରେ ମଧ୍ୟ ସେହି ଲାଲ କୋକିଶିଆଳି ବିଭିନ୍ନ ବର୍ଣ୍ଣର ଯଥା-ଉଜ୍ଜ୍ୱଳ ଲାଲ, ଫିକା ହଳଦିଆ, କଳା ଓ ରୁପେଲୀ ('Silver tipped') ହୋଇଥାନ୍ତି । ଅବଶ୍ୟ ହିମାଳୟ ପର୍ବତ ମାଳାର ପଶ୍ଚିମାଞ୍ଚଳରେ ମୁଖ୍ୟତଃ କଳା ଓ ଲାଲ ରଙ୍ଗର ଏବଂ ପୂର୍ବାଞ୍ଚଳରେ ମୁଖ୍ୟତଃ ହଳଦିଆ ରଙ୍ଗର "ଲାଲ କୋକିଶିଆଳି" ଦେଖାଯାନ୍ତି ।

ନେକେଡ଼ା, ବିଲୁଆ ଓ କୋକିଶିଆଳି ସୂର୍ଯ୍ୟତାପ ସହି ପାରିଲେ ମଧ୍ୟ ତାପ ମାତ୍ରା ସେମାନଙ୍କର ସ୍ୱଭାବକୁ ଅନେକ ପରିମାଣରେ ପ୍ରଭାବିତ କରିଥାଏ । ସେମାନେ ଦିନ ଓ ରାତି ଉଭୟ ସମୟରେ ଖାଦ୍ୟ ଅନ୍ୱେଷଣରେ ବାହାରନ୍ତି । ନେକେଡ଼ା ଓ କୋକିଶିଆଳି ତୁଳନାରେ ବିଲୁଆ ଅଧିକ ରାତ୍ରି-ଚର । ମେଘୁଆ ବା ଥଣ୍ଡା ପାଗରେ ସେମାନେ ଅନେକ ସମୟରେ ଦିନ ବେଳେ ମଧ୍ୟ ବାହାରନ୍ତି । ଖୁବ୍ ଗରମ ପଡ଼ିଲେ ବିଲୁଆ ଓ ବଣିଆ କୁକୁର ଥଣ୍ଡା ପାଇଁ ପାଣି ଭିତରେ ଯାଇ ପଶନ୍ତି । ଖୋଲା ସମତଳ ଭୂମିଅଞ୍ଚଳରେ ନେକେଡ଼ା, ବିଲୁଆ ଓ କୋକିଶିଆଳି ସାଧାରଣତଃ ଦିନର ସବୁଠାରୁ ଗରମ ସମୟରେ ଛାଇରେ ବିଶ୍ରାମ ନେଇଥାନ୍ତି । ନେକେଡ଼ା ଉଚ୍ଚଘାସ ଭିତରେ, ଗଛ ତଳେ ବା ବୁଦାଝାଟି ଭିତରେ ବିଶ୍ରାମ ନିଏ । ବିଲୁଆ ଓ କୋକିଶିଆଳି ସେମାନଙ୍କ ବିଲରେ ଯାଇ ଶୁଅନ୍ତି । ମରୁଭୂମିରେ ତ ଗଛର ଛାଇ ନାହିଁ; ସେଠାରେ ବାଲିକୁଦ ଭିତରେ ଗଭୀର ଗାତ ଭିତରେ ଖରାବେଳେ ସେମାନେ ବିଶ୍ରାମ ନିଅନ୍ତି । ମଧ୍ୟାହ୍ନ ତାପ ସମୟରେ ଗାତ ମୁହଁରେ ଧୂଆଁ ଦେଲେ ନେକେଡା ପଦାକୁ ବାହାରି ଆସିବାକୁ ବାଧ୍ୟ ହୁଏ । ଜୀବନ ବିକଳରେ ଦୌଡି ପଳାଇଲା ବେଳେ ଖଇଫୁଟା ବାଲିରେ ଗୋଡ଼ ପୋଡି ଫୋଟକା ହୋଇଯାଏ ଓ ସହଜରେ ଶିକାରୀର ଶିକାର ହୁଏ । କୁକୁର ବଂଶର ପ୍ରାଣୀ ମାନଙ୍କର ଖାଦ୍ୟ ଓ ଖାଦ୍ୟଗ୍ରହଣରୀତି ପରିବେଷ୍ଟନୀ ଅନୁସାରେ ଭିନ୍ନ ହୋଇଥାଏ । ସମଶୀତୋଷ୍ଣ ଅଞ୍ଚଳରେ ନେକେଡା ଜଙ୍ଗଲ ଓ ଖୋଲା ଅଞ୍ଚଳ ଉଭୟତ୍ର ଶିକାର କରେ । ଏ କ୍ଷେତ୍ରରେ ସେମାନେ ବିବିଧ ଜାତିର ପ୍ରାଣୀ ଉପରେ ଚଢ଼ାଉ କରନ୍ତି । ଭାରତୀୟ ନେକେଡ଼ା ଖୋଲା ଅଞ୍ଚଳରେ ବାସ କରେ । ତେଣୁ ସେମାନଙ୍କର ଆହାରପ୍ରାଣୀର ପ୍ରକାର ଭେଦ ସୀମିତ । ଲାଲ କୋକିଶିଆଳି ବେଳକୁ ମଧ୍ୟ ସେହି କଥା । ସମଶୀତୋଷ୍ଣ ଅଞ୍ଚଳରେ

ସେମାନେ ନାନା ପ୍ରକାର ଖାଦ୍ୟପ୍ରାଣୀ ପାଉଥିବା ବେଳେ, ଭାରତୀୟ ମରୁଭୂମି-ବାସୀ ଲାଲ କୋକିଶିଆଳିର ପ୍ରଧାନ ଆହାର ମରୁବାସୀ ମୂଷାଶ୍ରେଣୀର ପ୍ରାଣୀ । ଋତୁର ପରିବର୍ତ୍ତନ ଅନୁସାରେ କୁକୁର ବଂଶର ପ୍ରାଣୀମାନଙ୍କର ଖାଦ୍ୟ ପ୍ରାଣୀରେ ମଧ୍ୟ ପରିବର୍ତ୍ତନ ଘଟିଥାଏ । ଗ୍ରୀଷ୍ମକାଳରେ ଲଦାଖ ଓ ତିବ୍ବତର ମାଳଭୂମିରେ ନେକେଡ଼ାମାନେ ବିଳବାସୀ ଗୁଣ୍ଡୁଚିମୂଷା (marmot), ଠେକୁଆ, ଅନ୍ୟାନ୍ୟ କ୍ଷୁଦ୍ର କ୍ଷୁଦ୍ର ପ୍ରାଣୀ ଓ ପକ୍ଷୀ ଶିକାର କରନ୍ତି । ଶୀତକାଳରେ ଏ ସବୁ ଶିକାରପ୍ରାଣୀ ମିଳନ୍ତି ନାହିଁ । ସେତେବେଳେ ସେମାନେ ବଡ ବଡ଼ ପ୍ରାଣୀ ଯଥା:-ବନ୍ୟ ମେଷ ଓ ଏଣ୍ଟିଲେପ (antelope) ଶିକାର କରନ୍ତି । ବଡ ପ୍ରାଣୀକୁ ଶିକାର କରିବାକୁ ହେଲେ ଅଧିକ ସଂଖ୍ୟକ ଶିକାରୀ ଏକତ୍ର ହେବା ଆବଶ୍ୟକ । ସେଥିପାଇଁ ରୁଷ ଓ ଅନ୍ୟାନ୍ୟ ଉତ୍ତରାଞ୍ଚଳ ଦେଶରେ ଶୀତଦିନେ ଦଳ ଦଳ ହୋଇ ନେକେଡ଼ା ଦେଖାଯାନ୍ତି । ଆମ ଭାରତରେ ଶୀତ ଋତୁରେ ନେକେଡ଼ା ଏପରି ଦଳବାନ୍ଧି ବୁଲନ୍ତି ନାହିଁ । ଏହାର କାରଣ ଏହି ଯେ ଭାରତରେ ନେକେଡ଼ାକୁ ଶୀତଋତୁ ଭିନ୍ନ ଅନ୍ୟ ଋତୁରେ ଶିକାର କରିବାକୁ ଯେତିକି ପରିଶ୍ରମ ପଡ଼େ, ଶୀତ ଋତୁରେ ମଧ୍ୟ ସେତିକି ପରିଶ୍ରମ ପଡ଼େ । ଶୀତ ଋତୁର ପ୍ରଚଣ୍ଡ ଶୈତ୍ୟରେ ହିମାଳୟ ଅଞ୍ଚଳରେ କୋକିଶିଆଳିଙ୍କୁ ଯଥେଷ୍ଟ ଖାଦ୍ୟ ନ ମିଳିଲେ ସେମାନେ ପଶୁ ମାଂସ ଖାଇ ଆଂଶିକ ଭାବେ କ୍ଷୁଧା ନିବୃତ୍ତି କରନ୍ତି ଏବଂ ନିକଟସ୍ଥ ଲୋକବସତି ନିକଟକୁ ଆସି ନିହତ ପଶୁର ଫୋପଡ଼ା ହେଉଥିବା ଆବର୍ଜନା ଓ ଅନ୍ୟାନ୍ୟ ଖାଦ୍ୟ ଟୁକୁରା ଖାନ୍ତି । କୋକିଶିଆଳି ଓ ବିଲୁଆ, ମାଂସ ବ୍ୟତୀତ ଉଦ୍ଭିଦ ଓ ତଜ୍ଜାତ ପଦାର୍ଥ ମଧ୍ୟ ବହୁ ପରିମାଣରେ ଖାନ୍ତି । ଏଣୁ ଋତୁ ଅନୁସାରେ ସେମାନଙ୍କର ଖାଦ୍ୟରେ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ଗ୍ରୀଷ୍ମକାଳରେ ହିମାଳୟ ଅଞ୍ଚଳରେ ଲାଲ କୋକିଶିଆଳି ଓକ୍ ଗଛର ଫଳ, ବୃନ୍ତାକ ( berries ) ଓ ଫଳ ( nut ) ଆଦି ଖାଆନ୍ତି । ଶୀତ କାଳରେ ବିଲୁଆ ମଡ଼ ସାଙ୍ଗକୁ ବରକୋଳି, କଫି ଫଳ ଆଦି ଖାଇଥାଏ । ଏପରିକି ବଳିଆ କୁକୁର ମଧ୍ୟ ମାଂସ ସାଙ୍ଗକୁ କେତେକ ଜାତିର ପାଚିଲା ଫଳ ମଧ୍ୟ ଆହାର କରେ । ଦକ୍ଷିଣ ଭାରତର ପର୍ବତମାଳା ଅଞ୍ଚଳରେ ବଳିଆ କୁକୁର ତଳେ ଝଡ଼ି ଥିବା ପାଚିଲା ବେଲ ଓ ପାହାଡ଼ି ଶିଶୁ ଗଛ ( blackwood tree ) ଫଳ ଆଗ୍ରହରେ ଖାଆନ୍ତି ବୋଲି ଜଣାଯାଏ ।

ଜଙ୍ଗଲରେ ମାଂସାହାରୀ ପ୍ରାଣୀ ଖାଦ୍ୟ ସଂଗ୍ରହ କରିବା ସହଜ କଥା ନୁହେଁ । ମାଂସାଶୀ ପ୍ରାଣୀମାନଙ୍କର ଅନ୍ୟ ପ୍ରାଣୀମାନଙ୍କ ସହିତ ସମ୍ପର୍କ ଖାଦ୍ୟ-ଖାଦକ ଓ ଖାଦକ-ଖାଦକର ସମ୍ପର୍କ । ଏ ସମ୍ପର୍କରେ ଆମ ଦେଶରେ ବିଶେଷ ଅନୁସନ୍ଧାନ ହୋଇ ନାହିଁ । କୌଣସି ସମୟରେ କୌଣସି ମାଂସାଶୀ ପ୍ରାଣୀର ଅଧିକ ସଂଖ୍ୟାବୃଦ୍ଧି ଘଟିଲେ ସେତେବେଳେ ଉଦ୍ଭିଦଭୋଜୀ ଖାଦ୍ୟ-ପ୍ରାଣୀର ସଂଖ୍ୟାବୃଦ୍ଧି ମଧ୍ୟ ଘଟୁଥିବା ସମ୍ଭବ । ଖାଦ୍ୟ ଯଥେଷ୍ଟ ନ ହେଲେ ମାଂସାଶୀ ପ୍ରାଣୀ ମଢ଼, ଉଦ୍ଭିଦ ଖାଦ୍ୟ ଖାଇପାରେ ଏବଂ ଗୃହପାଳିତ ପଶୁଙ୍କୁ ବଧ କରିପାରେ । ଖାଦକ-ଖାଦକ ମଧ୍ୟରେ ଅକସ୍ମାତ୍ ଭେଟ ହେବା ଓ ପଶୁ ଉପରେ ଅଧିକାର ନେଇ ସଂଘର୍ଷ ହେବା ସ୍ୱାଭାବିକ । ବଣିଆ କୁକୁର ଦଳବାନ୍ଧି ଶିକାର କଲାବେଳେ ବେଳେବେଳେ ବାଘ ସହିତ ସଂଘର୍ଷ ହେଲେ ତାକୁ ଆକ୍ରମଣ କରି ମାରି ପକାଇବାର ଦୃଷ୍ଟାନ୍ତ ଅଛି । ଅବଶ୍ୟ ଜଙ୍ଗଲରେ ଏହା ସାଧାରଣ କଥା ନୁହେଁ । ଖାଦ୍ୟ ସଂଗ୍ରହ କରି ଜୀବନ ଧାରଣପାଇଁ ଯେଝା ବାଟରେ ସେଝା ଥାନ୍ତି ।

ବିଭିନ୍ନ ମାଂସାଶୀ ପ୍ରାଣୀ ଶିକାର କରିବା ସମୟରେ ସହଯୋଗିତା କରିବା ନେଇ ନାନା କଥା ବିଭିନ୍ନ ଦେଶ ତଥା ଭାରତୀୟ ଲୋକ-କାହାଣୀରେ ସ୍ଥାନ ପାଇଅଛି । କେଉଁ ପୁରାକାଳରୁ ବିଲୁଆ ସିଂହର ଖାଦ୍ୟ ସନ୍ଧାନ କାରୀ ଆଖ୍ୟା ଲାଭ କରିଅଛି । କାହାଣୀ ଅନୁସାରେ ବିଲୁଆ ବାଟ କଢ଼େଇ କଢ଼େଇ ସିଂହକୁ ଶିକାର ପାଖକୁ ନେଇଯାଏ ଓ ସିଂହ ତା'ର ମୁଖ୍ୟ ଭାଗ ଖାଇ ସାରିଲେ ବଳକାଟକ ବିଲୁଆ ଭାଗରେ ପଡ଼େ । ଆମ ଦେଶରେ ସାଧାରଣ ବିଶ୍ୱାସ, ବିଲୁଆମାନେ ବାଘକୁ ଖାଦ୍ୟ ପ୍ରାଣୀ ପାଖକୁ ବାଟ କଢ଼େଇ ନେଇ ଯାନ୍ତି । ପ୍ରକୃତପକ୍ଷେ, ବିଲୁଆ ମାଂସାଶୀ ପ୍ରାଣୀର ପଥପ୍ରଦର୍ଶକ ରୂପେ କାର୍ଯ୍ୟ କରେ ନାହିଁ । ବାଘ ଶିକାରରେ ବାହାରିଲେ ବିଲୁଆ ବଳକା ମାଂସ ଖାଇବା ଉଦ୍ଦେଶ୍ୟରେ ତା ପଛେ ପଛେ ବା ସାଥି ସାଥି ଯାଏ । ବିଲୁଆ ହୁଣ୍ଡାର ସହିତ ଏକତ୍ର ମାଂସ ଖାଇବାର ଦେଖା ଯାଉଅଛି । ଆହୁରି ମଧ୍ୟ, ବିଲୁଆ ଓ ବଣିଆ କୁକୁର ଏକାଠି ମିଶି ଶିକାର କରନ୍ତି ।

ଭାରତରେ ବିଭିନ୍ନ ମାଂସାଶୀ ପ୍ରାଣୀମାନଙ୍କ ମଧ୍ୟରେ ଖାଦ୍ୟ ନେଇ ସାଧାରଣତଃ ସଂଘର୍ଷ ହୁଏ ନାହିଁ । କାରଣ, ବଣିଆ କୁକୁର ଜଙ୍ଗଲରେ

ଶିକାର କରେ; ନେକେଡ଼ା ଖୋଲା ଅଞ୍ଚଳରେ ବାସ କରେ । କେତେକ କୋକିଶିଆଳି ନେକେଡ଼ା ପରି ଖୋଲା ଅଞ୍ଚଳରେ ବାସ କରନ୍ତି; ମାତ୍ର ସେମାନଙ୍କର ଆହାର କ୍ଷୁଦ୍ରତର ପ୍ରାଣୀ । ବିଲୁଆ ମୁଖ୍ୟତଃ ଗୋଟିଏ ମଇଳା ସଫାକାରୀ ପ୍ରାଣୀ । ଅନ୍ୟ ପ୍ରାଣୀ ଶିକାରକୁ ଖାଇସାରି ଯାହା ଛାଡ଼ି ଚାଲିଯାଏ ତାହା ବିଲୁଆର ହୁଏ ଆହାର ।

କୁକୁର ବଂଶର ବିଭିନ୍ନ ପ୍ରାଣୀ ପରସ୍ପରକୁ ଏକ ବଂଶର ପ୍ରାଣୀ ବୋଲି ଚିହ୍ନି ପାରନ୍ତି । ବିଲୁଆ ଓ ନେକେଡ଼ା ଗୃହପାଳିତ କୁକୁର ସହିତ ମିଶି ଶିକାର କରିବାର ଦେଖା ଯାଇଅଛି । ବଳିଆ କୁକୁର ବିଲୁଆ ଓ ଗଧିଆକୁ ଆକ୍ରମଣ କରେ ନାହିଁ ବୋଲି ସାଧାରଣ ବିଶ୍ୱାସ ।

ଗଧିଆ ପରି ନେକେଡ଼ା ଓ ବିଲୁଆ ଆତ୍ମରକ୍ଷା କରିବା ପାଇଁ ତଳେ ନିଶ୍ଚଳ ଭାବେ ପଡ଼ିରହି ମୃତ ବୋଲି ଛଳନା କରନ୍ତି । କୋକିଶିଆଳି ଯେଉଁ ଗାତ ଭିତରେ ଶୁଏ ତା'ର ଏକାଧିକ ଦ୍ୱାର ଥାଏ । ଗୋଟିଏ ଦ୍ୱାର ଦେଇ ଶତ୍ରୁ ପ୍ରାଣୀ ପଶିଲେ ସେ ଅନ୍ୟ ଦ୍ୱାର ଦେଇ ପଳାଇ ଯାଏ ।

କୁକୁର ବଂଶର ପ୍ରାଣୀମାନଙ୍କର ସବୁଠାରୁ ବଡ଼ ଶତ୍ରୁ ମନୁଷ୍ୟ । ମନୁଷ୍ୟ ଶିକାର କରିବା ଫଳରେ ୟୁରୋପ ଓ ଆମେରିକାରେ ନେକେଡ଼ା ଆଜି ଲୁପ୍ତ । ଭରତରେ ମଧ୍ୟ ତାହାହିଁ ହେବାକୁ ବସିଲାଣି । ଜନବସତି ବୃଦ୍ଧି ସଂଗେ ସଂଗେ ନେକେଡ଼ାର ସଂଖ୍ୟା ହ୍ରାସ ହେଉଛି । ନେକେଡ଼ା ପାଇଁ ମନୁଷ୍ୟ ଚଳାଚଳ ହେଉନଥିବା ଯଥେଷ୍ଟ ପତିତ ଭୂମି ବା ମରୁଭୂମି ଆବଶ୍ୟକ । ମଣିଷ କେଉଁ କାଳରୁ କୋକିଶିଆଳି ଶିକାର କରୁଛି । କିନ୍ତୁ ଏମାନେ ପ୍ରତିକୂଳ ପରିସ୍ଥିତିରେ ନିଜକୁ ଅଭିଯୋଜିତ କରି କୌଣସି ମତେ ତିଷ୍ଠିରହି ପାରିଛନ୍ତି । ବଣରେ ବଳିଆ କୁକୁର ରହନ୍ତି । ସେମାନେ ବନରେ ନିଶବ୍ଦରେ ଯାତାୟତ କରନ୍ତି । ତେଣୁ ମନୁଷ୍ୟ ସହିତ ବିଶେଷ ସଂଘର୍ଷରେ ଆସନ୍ତି ନାହିଁ । ମାତ୍ର ଜଙ୍ଗଲ ସବୁ କାଟି ଦିଆ ଯାଉଛି ଓ ଖାଦ୍ୟ ପ୍ରାଣୀ ଜଙ୍ଗଲରେ ଦୁଷ୍ପ୍ରାପ୍ୟ ହେଲେଣି । ତେଣୁ ବଳିଆ କୁକୁର ଯେ ବେଶୀଦିନ ତିଷ୍ଠି ପାରିବେ ଏ ବିଶ୍ୱାସ ହୁଏ ନାହିଁ । ବିଲୁଆ ବେଳେବେଳେ କୁକୁଡ଼ା, ମେଣ୍ଢା-ଛୁଆ ଓ ଛେଳି ଘେରଇବାର ଦେଖା ଯାଏ ।

କୁକୁର ବଂଶର ପ୍ରାଣୀମାନେ ମନୁଷ୍ୟ ସହିତ ବିଶେଷ ସଂଘର୍ଷରେ ଆସନ୍ତି ନାହିଁ । ଏ ଦିଗରେ ଏକମାତ୍ର ଦୋଷୀ ନେକେଡ଼ା ବାଘ । ରୁଷିଆରେ ଶୀତ କାଳରେ ନେକେଡ଼ା ଦଳ କ୍ଷୁଧାତୁର ହୋଇ ଅଭିଯାତ୍ରୀଙ୍କ ଉପରେ ଚଢ଼ାଉ କରିବାର ବିବରଣୀ ଅଛି । ଭାରତରେ ଯେତିକି ଯୋଡ଼ି ବା ଦଳ ଦଳ ହୋଇ ନେକେଡ଼ା ମନୁଷ୍ୟଶିଶୁ , ସ୍ତ୍ରୀଲୋକ ଓ ବେଳେ ବେଳେ ପୁରୁଷଙ୍କୁ ମଧ୍ୟ ଆକ୍ରମଣ କରିବାର ଦେଖା ଯାଇଅଛି ।

ନେକେଡ଼ା ମନୁଷ୍ୟ ପିଲାକୁ ନେଇ ପଳାଏ । କେତେକ କ୍ଷେତ୍ରରେ ଏହି ପିଲା ତା' ପିଲା ସହିତ ବଢ଼ି ଏକ ହିଂସ୍ର ପ୍ରାଣୀରେ ପରିଣତ ହେବାର ବହୁ ଦୃଷ୍ଟାନ୍ତ ଭାରତରୁ ମିଳିଅଛି । ରାମୁ ନାମକ ଏକ "ନେକେଡ଼ା ପିଲା" (wolf boy)କୁ ବଣରୁ ଉଦ୍ଧାର କରାଯାଇଥିଲା । ସେ ଦୁଇହାତ ଓ ପାଦରେ ଚତୁଷ୍ପଦ ପ୍ରାଣୀ ପରି ଚାଲୁଥିଲା, କଥା କହି ପାରୁ ନ ଥିଲା, ଉଦ୍ଭଟ ଶବ୍ଦ କରୁଥିଲା ଓ କଞ୍ଚା ମାଂସ ଖାଇବାକୁ ଭଲ ପାଉଥିଲା । "ନେକେଡ଼ା ପିଲା" ମାନଙ୍କୁ ଡାକ୍ତରଖାନାରେ ରଖି ଚିକିତ୍ସା କରାଯାଏ । ଅଧିକାଂଶ କ୍ଷେତ୍ରରେ ସେମାନେ ବେଶୀ କାଳ ବଞ୍ଚନ୍ତି ନାହିଁ ।

ଜନସଂଖ୍ୟା ଅତି ଦ୍ରୁତ ବେଗରେ ବଢ଼ୁଛି । ଜଙ୍ଗଲ ଆଉ ଜଙ୍ଗଲ ହୋଇ ନାହିଁ । ବନ୍ୟ ପ୍ରାଣୀମାନେ ହ୍ରାସ ପାଇବାରେ ଲାଗିଛନ୍ତି । କେତେକ ବିଶେଷଜ୍ଞମାନଙ୍କର ମତରେ ଆଉ କେତେ ବର୍ଷପରେ ବନ୍ୟ ପ୍ରାଣୀ ପ୍ରାକୃତିକ ଜଙ୍ଗଲରେ ନଥିବେ । ଯେଉଁ ସାମାନ୍ୟ କେତେ ଜାତି ପ୍ରାଣୀ ବଞ୍ଚି ରହିବେ ସେମାନେ ଗୃହପାଳିତ ପ୍ରାଣୀଭାବେ ବଞ୍ଚି ରହିବେ, ବନ୍ୟ ପ୍ରାଣୀ ଭାବେ ନୁହେଁ ।

କୁକୁର ଆମର ଏକ ଅତି ଉପକାରୀ ଗୃହପାଳିତ ପ୍ରାଣୀ । ବିଶେଷଜ୍ଞମାନଙ୍କ ମତରେ କୁକୁରର ପୂର୍ବ ବଂଶଧର ନେକେଡ଼ା । ନେକେଡ଼ା ପ୍ରଥମେ କିପରି ଗୃହପାଳିତ ପ୍ରାଣୀରେ ପରିଣତ ହେଲା ତାହା କେହି ଜାଣେ ନାହିଁ । ଅତି ଉପକାରୀ ଆଲସେସିଆନ୍ (Alsatian) ଓ ମେରୁ ଦେଶର ଏସ୍କିମୋ (Eskimo) କୁକୁରଙ୍କର ନେକେଡ଼ା ସହିତ ଅଦ୍ଭୁତ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଗଠନଦୃଷ୍ଟିରୁ କୁକୁର ଓ ନେକେଡ଼ା ପ୍ରାୟ ସମାନ; ମାତ୍ର ନେକେଡ଼ାର ଦାନ୍ତ ବଡ଼ । ସେମାନଙ୍କର ସ୍ୱଭାବରେ ମଧ୍ୟ କେତେକ ସାମଞ୍ଜସ୍ୟ ପରିଲକ୍ଷିତ

ହୁଏ । କୌଣସି ଜିନିଷ ଗନ୍ଧ କରୁଥିଲେ ତା' ଉପରେ କୁକୁର ନେକେଡା ପରି ଗଡେ । କୁକୁର ନେକେଡ଼ା ପରି ବସିବା ବା ଶୋଇବା ପୂର୍ବରୁ ଥରେ ଘୂରିପଟ ଘୂରି ଦେଖେ । ବିଲୁଆମାନେ କୁକୁରଙ୍କ ପରି ଶୋଇବା ବା ବସିବା ଆଗରୁ ଘୂରନ୍ତି ନାହିଁ, ମାତ୍ର ଖୁସି ହେଲେ ସେମାନଙ୍କ ପରି ଲଙ୍ଗୁଡ ହଲାନ୍ତି । ବିଲୁଆ କେତେକ କୁକୁରପରି ହାଡ ଖଣ୍ଡିଏକୁ ନାକ ଅଗରେ ଠେଲି ଠେଲି ମାଟି ଭିତରେ ଲୁଚାଏ । ବିଶେଷଜ୍ଞମାନେ କହନ୍ତି ଅନ୍ତତଃ କେତେକ କିସମର ଗୃହ ପାଳିତ କୁକୁର ବିଲୁଆଙ୍କଠାରୁ ଜାତ । ଏହା ଅସମ୍ଭବ ନୁହେ, କାରଣ ଭାରତରେ ନେକେଡା ଓ ବିଲୁଆ ଗୃହପାଳିତ କୁକୁରଙ୍କ ସହିତ ମୈଥୁନରେ ଲିପ୍ତ ହେବାର ଦେଖାଯାଇଅଛି । ଅନେକଙ୍କର ଧାରଣା, ଭଲ କିସମର ଭାରତୀୟ ଗୃହପାଳିତ କୁକୁର ନାହାନ୍ତି, ଯାହା ସବୁ ଭଲ କୁକୁର ସେସବୁ 'ବିଲାତି'—ଏହା ସତ୍ୟ ନୁହେଁ । ନାନା କିସମର ଭାରତୀୟ ଶିକାରୀ ଓ ଜଗୁଆଳି କୁକୁର୍ ଅଛନ୍ତି, ଯଥା-ରାଜାପାଲୟମ୍ ଶିକାରୀ କୁକୁର, କୋମ୍ବଇ ଶିକାରୀ, କୁକୁର ଚିପପିପାରଇ ଶିକାରୀ କୁକୁର, କାରଭନ ଶିକାରୀ କୁକୁର, ରାମପୁରୀ ଶିକାରୀ କୁକୁର, ରାମପୁର ଶିକାରୀ କୁକୁର, 'ଭଟିଆ" (ହିମାଳୟର ମେଷ ଜଗୁଆଳ କୁକୁର), ମହାରାଷ୍ଟ୍ରର "ଧଙ୍ଗରୀ" ନାଗା ଗୁଡ, ଭଞ୍ଜାରୀ ଓ ତାଜି ।

କୁକୁରଜାତୀୟ ପ୍ରାଣୀମାନେ ବିଭିନ୍ନ ପ୍ରକାର ପରିସ୍ଥିତିରେ ବିଭିନ୍ନ ପ୍ରକାର ଶବ୍ଦ କରନ୍ତି । ତଦ୍ୱାରା ସେମାନେ ଭୀତ, ରାଗାନ୍ୱିତ ବା ଈର୍ଷାନ୍ୱିତ ତାହା ଜଣା ପଡେ । ଯେଉଁ ପ୍ରାଣୀମାନେ ଦଳବଦ୍ଧ ଭାବେ ବାସ କରନ୍ତି, ବିଚ୍ଛିନ୍ନ ହୋଇଗଲେ ବା ଶିକାର ସମୟରେ ପରସ୍ପର ସହିତ ସମ୍ପର୍କ ସ୍ଥାପନ ପାଇଁ ବିଭିନ୍ନ ପ୍ରକାର ଶବ୍ଦ ବିଶେଷ ସହାୟକ । ବାଘ ଶିକାରରେ ବାହାରିଥିଲାବେଳେ ବିଲୁଆ ମାଂସ ଖଣ୍ଡେ ବା ଖଣ୍ଡି ନାଣ୍ଡି ଟିକିଏ ପାଇଁ ତା' ପଛରେ ଲାଗିଥାଏ । ଏ ସମୟରେ ସେ ଏକ ପ୍ରକାର ଭୀତିପ୍ରଦ ଶବ୍ଦ କରେ । ତାକୁ "ପିହୁଆ ଡାକ" କହନ୍ତି । ଏହା ଶୁଣିଲେ ଦେହ ଡରରେ ଚାଙ୍କୁରି ଉଠେ । ବାଘ ପଛରେ ଏପରି ଯାଉଥିବା ବିଲୁଆକୁ "ପିହାଲ", "ପିହିଉ" ବା "ପିହିନିଉ" ବୋଲି କୁହାଯାଏ । ଏହି ଶବ୍ଦ ଭୀତିର ଡାକ । ବାଘ ନ ଥିଲେ ମଧ୍ୟ କେତେକ ସ୍ଥଳରେ ବିଲୁଆ ଏହି ଭୀତପ୍ରଦ ଡାକ ଦେଇଥାଏ । ଗୃହପାଳିତ କୁକୁର ଭୟ ପାଇଲେ କେତେକ ପରିମାଣରେ ଏହିପରି ଶବ୍ଦ କରିପାରେ ।

ହଠାତ୍ ତରକିଲେ ବା ଭୟ ପାଇଲେ ବଳିଆ କୁକୁର ଗଧିଆ ପରି ଶବ୍ଦ କରନ୍ତି । ବଳିଆ କୁକୁର ଆତଙ୍କିତ ହେଲେ ଏକ ପ୍ରକାର ଚିର୍‌ଚିରିଆ ଶବ୍ଦ କରେ ।

ନେକେଡ଼ା ଓ ବଳିଆ କୁକୁର ଦଳବାନ୍ଧି ଶିକାର କଲାବେଳେ ତାଙ୍କ ଭିତରେ ଦଳପତି ଶବ୍ଦ ଦ୍ୱାରା ଅନ୍ୟମାନଙ୍କୁ ଏକଜୁଟ ହେବାକୁ ଜଣାଏ । ଅନ୍ୟ ସମୟରେ ପରସ୍ପରର ଉପସ୍ଥିତି ଜଣାଇବାକୁ ସେମାନେ ଭିନ୍ନ ପ୍ରକାର ଶବ୍ଦ କରିଥାନ୍ତି । ଗୋଧୂଳି ଓ ପ୍ରଦୋଷ ପୂର୍ବରୁ ବିଲୁଆର ଡାକ ସହିତ ଅନେକ ପରିଚିତ । ଗୋଟିଏ ବିଲୁଆ ଡାକ ଦେଲେ, ଆଉ ଗୋଟିଏ ବୋବାଏ, ଏଇପରି ଭାବେ ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ସେମାନଙ୍କର ଡାକ ନିନାଦିତ ହୁଏ । ଏହାର ପ୍ରକୃତ କାରଣ କେହି ଜାଣେ ନାହିଁ । ରାତିରେ ବିଲୁଆ ଦଳ ବାନ୍ଧି ବୁଲନ୍ତି । ଏହି ଡାକ କ'ଣ ଏକଜୁଟ ହେବାର ଡାକ ? ଭାରତର କେତେକ ଅଞ୍ଚଳରେ କୋକିଶିଆଳି ନିୟମିତ ଭାବେ ସନ୍ଧ୍ୟାବେଳେ ଏକ ପ୍ରକାର ଡାକ ଦିଅନ୍ତି; କିନ୍ତୁ ସେମାନେ ଦଳବାନ୍ଧି ବୁଲନ୍ତି ନାହିଁ । ଏ ଡାକ ବ୍ୟତୀତ ମୈଥୁନ ପାଇଁ ପୁରୁଷ ଓ ସ୍ତ୍ରୀ ପ୍ରାଣୀ ଡକାଡ଼କି ହେବା ଏବଂ ମା' ତା ପିଲାକୁ ଡାକିବା ଶବ୍ଦ ରହିଛି । ନେକେଡ଼ା ଓ ବଳିଆ କୁକୁର ପ୍ରଜନନ ପାଇଁ ଡକାଡ଼କି ହେବାପାଇଁ ସ୍ୱତନ୍ତ୍ର ଶବ୍ଦ କରନ୍ତି । ଥରେ ଗୋଟିଏ ମା' ବଳିଆ କୁକୁରଠାରୁ ଛୁଆ ନେଇଯିବାରୁ ସେ ସାରାରାତି ଏକ ସ୍ୱତନ୍ତ୍ର ପ୍ରକାର ଶବ୍ଦ ଦ୍ୱାରା ଛୁଆଙ୍କୁ ଡାକିଥିଲା । ପ୍ରାଣୀମାନଙ୍କର ଡାକ ଖୁବ୍ ସମ୍ଭବତଃ ସହଜାତ । କେତେକ ପ୍ରକାର ଡାକ ସେମାନେ ପରସ୍ପରଠାରୁ ଶୁଣି ଶିଖିଥାଇ ପାରନ୍ତି । ନେକେଡ଼ା ଭୁକେ ନାହିଁ । ବଳିଆ କୁକୁର ମଧ୍ୟ ଭୁକେ ନାହିଁ । ଗୃହପାଳିତ କୁକୁର ଭୁକେ । ବନ୍ଦୀ ନେକେଡ଼ାକୁ ଶିଖାଇଲେ ଭୁକେ । ଭୁକିବା ଗୃହପାଳନର ଲକ୍ଷଣ ବୋଲି ମନେ ହୁଏ । କାରଣ ଗୃହପାଳିତ କୁକୁରଙ୍କୁ ନିର୍ଜନ ଦ୍ୱୀପରେ ଛାଡ଼ି ଦେଇ ଆସି ବହୁ ବର୍ଷପରେ ସେଠାକୁ ଯାଇ ଦେଖାଯାଇଛି ସେହି ଗୃହପାଳିତ କୁକୁରଙ୍କର ବନ୍ୟ ବଂଶଜମାନେ ଆଉ ଭୁକୁ ନାହାନ୍ତି । ଶବ୍ଦ ବ୍ୟତୀତ କୁକୁର ବଂଶଜ ପ୍ରାଣୀମାନେ ଅନ୍ୟ ଉପାୟରେ ମଧ୍ୟ ପରସ୍ପର ସହିତ ଭାବ ଆଦାନ ପ୍ରଦାନ କରିଥାନ୍ତି । ଗୃହପାଳିତ କୁକୁର ଯିବା ରାସ୍ତାରେ ବାରମ୍ବାର ମୂତ୍ର ତ୍ୟାଗ କରିଥାଏ । ବଳିଆ କୁକୁର ବାଟରେ ବାରମ୍ବାର ମଳତ୍ୟାଗ କରି, ଯାଇଥିବା ପଥରେ ଚିହ୍ନ ରଖିଯାଏ ।

ଏତଦ୍ୱାରା ନିଜେ ଓ ସାଙ୍ଗସାଥୀ ଯାତ୍ରାପଥ ଚିହ୍ନି ପାରନ୍ତି ଓ ଏକାଠି ମିଳିତ ହୋଇ ପାରନ୍ତି । ସବୁ କୁକୁରବଂଶଜ ପ୍ରାଣୀମାନଙ୍କର ଗନ୍ଧଗ୍ରନ୍ଥି ଅଛି । ଆଡ଼ ବାଘରେ ଲାଞ୍ଜର ମଝି ଅଂଶରେ ଏକ କଳାଚିହ୍ନ ଦେଖି ଏ ସ୍ଥାନ ଠଉରାଇ ହେବ । ଗନ୍ଧମାର୍ଜାର ଓ ନେଉଳଙ୍କ ପରି ଏମାନଙ୍କର ଯୋନିଗ୍ରନ୍ଥି (Perineal gland) ଓ ଗୁଦ-ଗ୍ରନ୍ଥି (Anal gland) ନାହିଁ । ସେ ଯାହାହେଉ କୁକୁରବଂଶ ପ୍ରାଣୀମାନଙ୍କର ଘ୍ରାଣଶକ୍ତି ପ୍ରବଳ । ଏହା ପରସ୍ପରର ଉପସ୍ଥିତି ଓ ଚଳବାଟ ଜାଣିବାରେ ବିଶେଷ ସହାୟକ । ଲାଲ କୋକିଶିଆଳିର ପାଦର ଗଦି ଭିତରେ ଗନ୍ଧଗ୍ରନ୍ଥି ଥାଏ । ସେ ଯିବା ବାଟରେ ସେହି ଗ୍ରନ୍ଥିର ସ୍ରାବ ଲାଗି ରହେ । ବଳିଆ କୁକୁର ଯିବା ବାଟରେ ଗନ୍ଧ ଛାଡ଼ି ଯାଏ । ପ୍ରଜନନ ଋତୁରେ କୁକୁର ବଂଶର ମାଈ ପ୍ରାଣୀମାନଙ୍କର ଦେହରୁ ଏକ ବିଶେଷ ପ୍ରକାର ଗନ୍ଧ ବାହାରେ, ଓ ପୁରୁଷ ପ୍ରାଣୀ ତଦ୍ୱାରା ତା'ପାଖକୁ ଆକୃଷ୍ଟ ହୁଏ ।

ଭାରତୀୟ ଉପଦ୍ୱୀପରେ କୁକୁର ବଂଶର ପ୍ରାଣୀମାନଙ୍କର କୌଣସି ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ଥିଲାପରି ମନେ ହୁଏ ନାହିଁ । କାରଣ ନେକେଡ଼ା, ବିଲୁଆ, ବଳିଆ କୁକୁରର ଛୁଆ ବର୍ଷର ସବୁ ମାସରେ ଧରା ଯାଇଥାନ୍ତି । ମାଈ କୁକୁର ପ୍ରାକୃତିକ ଗର୍ତ୍ତ, ଗୁହା, ବଡ଼ ବଡ଼ ପଥର ସନ୍ଧିରେ ଥିବା ଗାତ ବା ନିଜେ ଖୋଳିଥିବା ଗାତରେ ଛୁଆ କରନ୍ତି । କେତୋଟି ମାଈ ପ୍ରାଣୀ ଏକାଠି ମିଶି କୌଣସି ସ୍ଥାନରେ ଛୁଆ କରି ପାରନ୍ତି । ବେଳେବେଳେ ବଳିଆ କୁକୁର ଏହିପରି ଛୁଆ କରନ୍ତି । ନେକେଡ଼ା, ଶୃଗାଳ ଓ ଗୃହପାଳିତ କୁକୁରମାନଙ୍କର ଗର୍ଭଧାରଣ କାଳ 60-63 ଦିନ, ବଳିଆ କୁକୁରର 70 ଦିନ ଓ କୋକିଶିଆଳି ମାନଙ୍କର 51ରୁ 53 ଦିନ । ଏମାନଙ୍କର ଜନନ ଶକ୍ତି ଅଧିକ ଓ ଥରକେ ବେଶୀ ଛୁଆ କରନ୍ତି । ଜନ୍ମବେଳେ ଅଧିକାଂଶ ମାଂସାହାରୀ ପ୍ରାଣୀଙ୍କ ଛୁଆଙ୍କର ଆଖି ଫିଟି ନଥାଏ । ସେତେବେଳେ ମା'ମାନେ ସେମାନଙ୍କର ବିଶେଷ ଯତ୍ନ ନିଅନ୍ତି । ମା'ପ୍ରାଣୀ ଛୁଆ କରିଥିଲା ବେଳେ ପୁରୁଷ ପ୍ରାଣୀ ସାଧାରଣତଃ ନିକଟରେ ରହି ପହରା ଦିଏ । ପୁରୁଷ ନେକେଡ଼ା ପତ୍ନୀ ଓ ଶାବକ ମାନଙ୍କୁ କେବଳ ଯେ ପହରା ଦିଏ ତା' ନୁହେଁ, ପଶୁ ଶିକାର କରି ସେମାନଙ୍କୁ ଖାଦ୍ୟ ଆଣି ଯୋଗାଏ । ଥରେ ଗୋଟିଏ ନେକେଡ଼ା ଛୁଆ କରିଥିବା ସ୍ଥାନର ନିକଟରେ ଏକ ଯାତ୍ରୀଦଳ ଛାଉଣି ସ୍ଥାପନ କରିଥିଲେ । କାଳେ ଏମାନେ

ଶାବକମାନଙ୍କର କ୍ଷତି କରିବ ଏଥିପାଇଁ ମାଈ ନେକେଡ଼ା ପ୍ରସବ ପୂର୍ବ ତାପରେ ଘଣ୍ଟା ଘଣ୍ଟା ଧରି ଠିଆ ହୋଇ ସେମାନଙ୍କ ଉପରେ ନଜର ରଖିଥିବାର ବିବରଣୀ ଅଛି । ମାଈ ନେକେଡ଼ାଟିଏ ଛୁଆ କରିଥିଲା ଓ ପୁରୁଷ ନେକେଡ଼ା ପାଖରେ ପହରା ଦେଉଥିଲା । ଲୋକେ ଯାଇ ସେମାନଙ୍କୁ ଘଉଡ଼ାଇ ଦେଲେ ଓ ଦୁଇଟି ଛୁଆଙ୍କୁ ନେଇ ଚାଲି ଆସିଲେ । ତହିଁ ଦିନ ଦେଖାଗଲା ରାତ୍ରିର ଅନ୍ଧକାରରେ ନେକେଡ଼ା ଜନକ ଜନନୀ ଆସି ବାକୀ ଛୁଆଗୁଡ଼ିକୁ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କରି ଅଛନ୍ତି । ପ୍ରକୃତି ବିଜ୍ଞାନବିତମାନଙ୍କର ବିଶ୍ୱାସ ଗୋଟିଏ ଯୋଡ଼ ମାଈ ଅଣ୍ଡିରା ନେକେଡ଼ା ବାଘ ସାରା ଜୀବନ ଏକତ୍ର ବାସ କରନ୍ତି । ଇଲ କୋକିଶିଆଳି ଓ କୋୟୋଟ (Coyote)* ମଧ୍ୟ ତାହାହିଁ କରନ୍ତି । ବଣିଆ କୁକୁରମାନଙ୍କ ମଧ୍ୟରେ ପ୍ରଜନନର ବହୁ ପୂର୍ବରୁ ସାଥୀ ନିର୍ବାଚନ ହୋଇଥାଏ । ମୈଥୁନର ଅନେକ ଆଗରୁ ମାଈ ଅଣ୍ଡିରା ପରସ୍ପରକୁ ବାଛି ଯୋଡ଼ି ଯୋଡ଼ି ହୋଇ ବାସ କରନ୍ତି । ବିଲୁଆ ଓ ଆମର ସାଧାରଣ କୋକିଶିଆଳିମାନଙ୍କ ମଧ୍ୟରେ ଦାମ୍ପତ୍ୟ ବନ୍ଧନ ବିଷୟରେ ବିବରଣୀ ନାହିଁ । ଗୃହପାଳିତ କୁକୁରମାନଙ୍କର ମୈଥୁନରେ କିଛି ବାଛ ବିଚାର ନଥାଏ । ପ୍ରଜନନ ଋତୁରେ ମାଈ ଯେ କୌଣସି ଅଣ୍ଡିରା ସହିତ ମୈଥୁନରେ ଲିପ୍ତ ହୁଏ । ଏହା ସମ୍ଭବତଃ ଗୃହପାଳନର ଫଳ । କେତେଦିନ ଯାଏ କୁକୁର ବଂଶର ଛୁଆ ମା'ଠାରୁ କ୍ଷୀର ପାନ କରନ୍ତି ସେ ବିଷୟରେ ଜଣା ନାହିଁ । ଛୁଆ ଖୁବ୍ ଶୀଘ୍ର ବୃଦ୍ଧି ପାଇଥା'ନ୍ତି । ବଣିଆ କୁକୁର ପ୍ରାୟ ବର୍ଷକର ହୋଇଗଲେ ବୟଃପ୍ରାପ୍ତ ହୋଇ ପ୍ରଜନନକ୍ଷମ ହୁଏ । ନେକେଡ଼ା ଛୁଆ ତୃତୀୟ ବର୍ଷରେ ପ୍ରଜନନକ୍ଷମ ହୁଅନ୍ତି । ଶିକାର କୁକୁର ବଂଶ ପ୍ରାଣୀମାନଙ୍କର ସହଜାତ ପ୍ରବୃତ୍ତି । ବନ୍ଦୀ ନେକେଡ଼ା ଛୁଆ ତିନି ସପ୍ତାହର ହୋଇଥିଲା ବେଳେ କ୍ଷୁଦ୍ର ହରିଣ ଜାତୀୟ ପ୍ରାଣୀକୁ ଆକ୍ରମଣ କରି ତା'ର ବେଣି କାମୁଡ଼ି ପକାଇବାର ଦେଖାଯାଇଅଛି । ବଣିଆ କୁକୁର ଛୁଆ ସାତ ଆଠ ମାସର ହେଲେଯାଏଁ ନିଜ ନିଜ ଭିତରେ ଭୀଷଣ ଲଢ଼ାଇ କରନ୍ତି । ତା' ପରେ ଯୁଦ୍ଧ ବନ୍ଦ ହୋଇଯାଏ । ତାଙ୍କ ଭିତରେ ସବୁଠାରୁ ବଡ଼ ଓ ବଳଶାଳୀ ଜଣକ ଦଳପତି ହୁଏ । ତାକୁ ଏଣିକି ବାକି

---

* କୋୟୋଟ ( Coyote ) ଉତ୍ତର ଆମେରିକାର ନେକେଡ଼ା ।

ସମସ୍ତେ ସମ୍ମାନ କରନ୍ତି । ମା'ଠାରୁ କ୍ଷୀର ଛାଡ଼ିବା ପରେ ପରେ, ମା' ଖାଇଥିବା ଖାଦ୍ୟକୁ ବାନ୍ତି କରି ଛୁଆଙ୍କୁ ଖୁଆଏ । ତା'ପରେ ଆସ୍ତେ ଆସ୍ତେ ସେମାନେ ଶିକାର ମାଂସ ଖାଆନ୍ତି । ତାଙ୍କ ଦେହରେ ବଳ ହୋଇଗଲେ ମା' ସହିତ ଏଣିକି ଶିକାରରେ ବାହାରନ୍ତି । ସାଧାରଣ ବିଶ୍ୱାସ ଏହି ଯେ ଦୁଇ କିସମର ବଳିଆ କୁକୁର ଅଛନ୍ତି । ଗୋଟିଏ କିସମ ବଡ । ସେମାନେ ବଡ଼ ବଡ଼ ଜନ୍ତୁ ଶିକାର କରନ୍ତି । ଛୋଟ କିସମ ଛୋଟ ଛୋଟ ପ୍ରାଣୀ ଶିକାର କରନ୍ତି । ଏହି ଧାରଣା ସତ୍ୟ ନୁହେଁ । ପିଲା ବଳିଆ କୁକୁର ଛୋଟ ଛୋଟ ପ୍ରାଣୀ ଶିକାର କରିବାର ଦେଖି ଏଭଳି ଧାରଣାର ସୃଷ୍ଟି ହୋଇଥିବ ବୋଲି ଅନୁମାନ ।

ଏକାଧିକ ପରିବାର ଏକାଠି ମିଶି ଦଳବନ୍ଧି ଖାଦ୍ୟ ଅନ୍ୱେଷଣରେ ବାହାରି ପାରନ୍ତି । ଶୀତ କାଳରେ ୟୁରୋପରେ ନେକେଡ଼ାମାନେ ଏକାଠି ଦଳ ବାନ୍ଧି ଶିକାର କରନ୍ତି । ଭାରତରେ ଏକାଧିକ ପରିବାର ବଳିଆ କୁକୁର ଏକାଠି ମିଶି ବାହାରନ୍ତି । ଗ୍ରୀଷ୍ମ ଓ ବର୍ଷା ଋତୁରେ ଏହି ସଙ୍ଘବଦ୍ଧତା ବେଶୀ ଦେଖାଯାଏ । ଦଳବଦ୍ଧ ହୋଇ ଶିକାର କରିବା ଦ୍ୱାରା ସେମାନେ ବଡ଼ ବଡ଼ ପ୍ରାଣୀଙ୍କୁ ମାରିବା ମଧ୍ୟ ସହଜ ହୁଏ । ପ୍ରଜନନ ଋତୁର ଆଗମନ ସଙ୍ଗେ ସଙ୍ଗେ ଏହି ଦଳ ଭାଙ୍ଗିଯାଏ ଓ ଅଣ୍ଡିରା ମାଈ ଯୋଡ଼ି ଯୋଡ଼ି ହୁଅନ୍ତି ।



# ନେଟକେଡ଼ା ବାଘ

ନେକେଡ଼ା ବାଘ ଦେଖିବାକୁ ବେଶ ମଜବୁତ୍ । ଏହାର ମୁଣ୍ଡ ବଡ଼ ଓ ଦାନ୍ତ ତୀକ୍ଷ୍ଣ । ବାସ ଅନୁସାରେ ଦେହର ବର୍ଣ୍ଣ ବିଭିନ୍ନତା ଦେଖାଯାଏ । ଭାରତର ସମତଳ ଅଞ୍ଚଳରେ ଦେଖାଯାଉଥିବା ନେକେଡାର ଦେହର ବର୍ଣ୍ଣ ବାଲିର ରଙ୍ଗପରି ବାଦାମୀ ଓ ଲୋମର ଅଗ୍ରଭାଗ କଳା । ଛୁଆ ନେକେଡ଼ା ଧୂସର ବର୍ଣ୍ଣର ହୋଇଥାନ୍ତି । ଗ୍ରୀଷ୍ମ କାଳରେ ନେକେଡ଼ାଙ୍କର କଳା ରଙ୍ଗ ସେତେ ଜଣାପଡେ ନାହିଁ । ତିବ୍ବତ୍, ଲଦାଖ ଓ ହିମାଳୟର ଉତ୍ତରାଞ୍ଚଳର ଢାଲୁ ସ୍ଥାନମାନଙ୍କରେ ଏମାନଙ୍କର ବର୍ଣ୍ଣ ସମୟ ସମୟରେ କଳା ବା କଳାମିଶା ହୋଇଥାଏ । ଶୀତ ଋତୁରେ ନେକେଡ଼ାମାନଙ୍କର ଲୋମ ଲମ୍ବା ଏବଂ ଘନ । ଛୋଟ ଲୋମର ବର୍ଣ୍ଣ ଧୂସର ବା ଉଜ୍ଜ୍ୱଳ ଫିକା ହଳଦିଆ ଓ ବାହାର ଆଡ଼କୁ ରହିଥିବା ଲମ୍ବା ଲୋମ କଳାଧଳା ବା କଳା–ଫିକା ହଳଦିଆ ହୋଇଥାଏ ।

ନେକେଡାର ଉଚ୍ଚତା 65-75 ସେଣ୍ଟିମିଟର (ପ୍ରାୟ $2\frac{1}{2}$ ଫୁଟ) ଦେହର ଲମ୍ବ 90-105 ସେଣ୍ଟିମିଟର, ଲାଞ୍ଜ 35–40 ସେଣ୍ଟିମିଟର, ଓଜନ 18-27 କିଲୋଗ୍ରାମ (40–60 ପାଉଣ୍ଡ) ଯାଏ ହୁଏ ।

ୟୁରୋପ, ଉତ୍ତର ଆମେରିକା ଏବଂ ଉତ୍ତର, ମଧ୍ୟ ଓ ଦକ୍ଷିଣ ପଶ୍ଚିମ ଏସିଆରେ ନେକେଡ଼ା ବାଘ ବାସ କରନ୍ତି । ଭୌଗୋଳିକ ଭାରତରେ ଏମାନେ ତିବ୍ବତ, ଲଦାଖ, କାଶ୍ମୀରର କେତେକ ଅଞ୍ଚଳ ମରୁଭୂମିର କେତେକ ଅଞ୍ଚଳ ଓ ସମତଳ ଅଞ୍ଚଳରେ ଶୁଷ୍କ ସ୍ଥାନମାନଙ୍କରେ ରହନ୍ତି ।

ଅନ୍ୟତ୍ର ନେକେଡ଼ା ବାଘ ବଣ ଜଙ୍ଗଲରେ ବାସ କଲେ ମଧ୍ୟ ଭାରତରେ ଏମାନେ ସାଧାରଣତଃ ଖୋଲା ଅପନ୍ତରା ସ୍ଥାନରେ ବାସ କରନ୍ତି । କାଶ୍ମୀର, ଲଦାଖ ଓ ତିବ୍ବତର ବୃକ୍ଷହୀନ ଉଚ୍ଚଭୂମିରେ ଏମାନେ ଯାଯାବର ପରି ଜୀବନ କଟାନ୍ତି । ଗ୍ରୀଷ୍ମକାଳରେ ଯେତେବେଳେ ବରଫ ତରଳେ ଓ ଗୁଳ୍ମଲତା ଉଠେ ସେ ସମୟରେ "ତୁଷାର ରେଖା" (Snow line) ଯାଏ ଚରିବାକୁ ଉଠୁଥିବା ଗୃହପାଳିତ ପଶୁପଲ ନିକଟରେ ଏମାନେ ଦେଖାଯାନ୍ତି । ପୁଣି ଶୀତ କାଳରେ ପଶୁପଲ ନିମ୍ନ ଉପତ୍ୟକା ଅଞ୍ଚଳକୁ ଫେରି ଆସିଲେ ସେମାନେ ତାଙ୍କ ପିଛା ଧରି ଚାଲି ଆସନ୍ତି । ଅନ୍ୟ କଥାରେ ଖାଦ୍ୟ ପ୍ରାଣୀ ଯେଉଁଠା

ସେମାନେ ସେଇଠି । ସେ ସବୁ ଅଞ୍ଚଳରେ ଶୀତଦିନେ ଗାତ, ଗୁହା ଓ ବଡ଼ ବଡ଼ ପଥର ସନ୍ଧିରେ ସେମାନଙ୍କୁ ରହିବାକୁ ସୁବିଧା ହୁଏ । ପୁଣି ଖରାଦିନେ ବୁଦାଝାଟିରେ ଆତ୍ମଗୋପନ କରିବା ସହଜ ହୋଇଯାଏ । ଭାରତର ମରୁ ଅଞ୍ଚଳରେ ବାସ କରୁଥିବା ନେକେଡ଼ା ବାଲିକୁଦ ତଳେ ଗାତ କରି ରହି ଖରତାପରୁ ନିଜକୁ ରକ୍ଷା କରନ୍ତି । ଅନ୍ୟ ସ୍ଥାନମାନଙ୍କରେ ଗାତ ନକରି ଭୂମି ଉପରେ ଝାଟି ବୁଦା ଭିତରେ, କ୍ଷେତ ବା ପଡ଼ିଆରେ ସେମାନେ ବାସ କରିଥାନ୍ତି ।



[ଚିତ୍ର ନଂ ୩୨, ନେକେଡ଼ା ବାଘ]

ନେକେଡ଼ା ଦିନରେ ନ ହେଲେ ରାତିରେ ଶିକାର କରିବାକୁ ବାହାରନ୍ତି । ଶିକାର ସେମାନେ ବାସ କରୁଥିବା ଅଞ୍ଚଳରେ ମିଳୁଥିବା ପ୍ରାଣୀ ଉପରେ ନିର୍ଭର କରେ । ଜନବସତି ନିକଟରେ ଶିକାର କରିବାକୁ ବନ୍ୟ ପ୍ରାଣୀ ନ ମିଳିଲେ ସେମାନେ ଛୋଟ ଛୋଟ ଗୃହପାଳିତ ପଶୁଙ୍କ ଉପରେ ଚଢ଼ାଉ କରନ୍ତି । ବେଳେବେଳେ କଅଁଳ ମଣିଷ ପିଲାକୁ ନେଇ ପଳାନ୍ତି । ସମୟ ସମୟରେ ସେମାନଙ୍କ ଉତ୍ପାତ ଯୋଗୁ ସହରମାନଙ୍କରେ ଆତଙ୍କ ସୃଷ୍ଟି ହୋଇଯାଏ । ଜନବସତିଠାରୁ ଦୂରରେ ବାସ କରୁଥିବା ନେକେଡ଼ା କୃଷ୍ଣସାର, ଚିଙ୍କାର, ଠେକୁଆ, କୋକିଶିଆଳି ଏବଂ ଅନ୍ୟାନ୍ୟ ଛୋଟ ଛୋଟ ପ୍ରାଣୀ ଓ

ପକ୍ଷୀ ଶିକାର କରନ୍ତି । ହିମାଳୟ ଅଞ୍ଚଳରେ ଶୀତଦିନେ ନେକେଡ଼ା ବନ୍ୟମେଷ, ଚିଙ୍କାର ଆଦି ମାରି ଖାନ୍ତି । ଖରଦିନେ ରଡ଼େଣ୍ଟ ( rodents ) ଓ କ୍ଷୁଦ୍ର କ୍ଷୁଦ୍ର ପ୍ରାଣୀ ସେମାନଙ୍କର ଆହାର ।

ଭାରତରେ ବର୍ଷାଋତୁ ଶେଷ ଆଡ଼କୁ ନେକେଡ଼ାମାନେ ରମଣରତ ହୁଅନ୍ତି ଏବଂ ଡିସେମ୍ବର ମାସରେ ଛୁଆ ଜନ୍ମ କରନ୍ତି । ହିମାଳୟ ଅଞ୍ଚଳରେ ସେମାନଙ୍କର ପ୍ରଜନନ କାଳ ଡେ଼ରିରେ ଆରମ୍ଭ ହୁଏ ଓ ବସନ୍ତ ବା ଗ୍ରୀଷ୍ମ ଋତୁର ଆଦ୍ୟ ଭାଗରେ ଛୁଆ ଜନ୍ମ ହୁଅନ୍ତି । ଥରକେ ତିନୋଟିରୁ ନଅଟି ଯାଏ ଛୁଆ ଜନ୍ମ ହୁଅନ୍ତି । ନେକେଡ଼ା 1?-15 ବର୍ଷ ବଞ୍ଚନ୍ତି । ଛୁଆବେଳୁ ପାଳିଲେ ସେମାନେ ସହଜରେ ପୋଷା ମାନନ୍ତି ।

ବାଘ ମନୁଷ୍ୟକୁ ଶିକାର କରି ନେଇ ପଳାଏ । ନେକେଡ଼ା ମନୁଷ୍ୟ ଶିଶୁକୁ ନେଇ ପଳାଉ ଥିବାରୁ ସମ୍ଭବତଃ ବାଘ ଆଖ୍ୟା ପାଇଅଛି । ପ୍ରକୃତ ପକ୍ଷେ, ନେକେଡ଼ା ବିଲେଇ ବଂଶର ପ୍ରାଣୀ ନୁହେଁ; କୁକୁର ବଂଶର ପ୍ରାଣୀ । ମନୁଷ୍ୟ—ଶିଶୁ ନେକେଡ଼ାଦ୍ୱାରା ଅପହୃତ ହୋଇ ନେକେଡ଼ା ଛୁଆଙ୍କ ସହିତ ବର୍ଦ୍ଧି ମନୁଷ୍ୟପଶୁରେ ପରିଣତ ହେବାର ଓ ଶିକାରୀମାନଙ୍କ ଦ୍ୱାରା ଉଦ୍ଧାର ପାଇବାର ରୋମାଞ୍ଚକର ବିବରଣୀ ରହିଅଛି । "ନେକେଡ଼ା ବାଳକ" ( "wolf boy" ) ଗମ୍ଭ ଇତିହାସ ସୃଷ୍ଟି କରିଅଛି ।

ନେକେଡ଼ା ବାଘର ବୈଜ୍ଞାନିକ ନାମ Canis lupus Linnaeus । ଇଂରାଜି wolf । ବିଭିନ୍ନ ଭାରତୀୟ ଭାଷାରେ ନାମ :- ହିନ୍ଦି-ଭେରିଆ, ନେକର, ବିଘାନା, ହୁଣ୍ଡାର, ହୁଗର ( ଉତ୍ତର ଓ ମଧ୍ୟ ଭାରତ ); ମାରାଠି-ଲାଣ୍ଡଗା ; କାନାଡ଼ି-ଥୋଲ୍ଲ, ଭୁକା ; ତେଲୁଗୁ-ତୋଡେଲୁ ; ତାମିଲ-ଓନାୟ ; ତିବ୍ବତୀୟ-ଗ୍ୟାଙ୍ଗୁ ।



# ବିଲୁଆ

ଶୃଗାଳ ଉଚ୍ଚରେ 38-43 ସେଣ୍ଟିମିଟାର ( 15-17 ଇଞ୍ଚ ) । ମୁଣ୍ଡ ଓ ଦେହର ଲମ୍ବ 60-75 ସେଣ୍ଟିମିଟାର ( 2-2½ ଫୁଟ ), ଲାଞ୍ଜ 20-27 ସେଣ୍ଟିମିଟାର (8-11 ଇଞ୍ଚ) । ଓଜନ 8-11 କିଲୋଗ୍ରାମ (17-25 ପାଉଣ୍ଡ) । ଉତ୍ତର ଭାରତର ଶିଆଳମାନେ ସାଧାରଣତଃ ଆକାରରେ ବଡ଼ ହୁଅନ୍ତି ।

ଯେଉଁମାନେ ଜଙ୍ଗଲ ନିକଟରେ ବା ଗ୍ରାମରେ ବାସ କରନ୍ତି ସେମାନେ ଗୋଧୂଳି ସମୟରେ ଓ ଭୋର ପୂର୍ବରୁ ବିଲୁଆର "ହୁକେ ହୁଆ" ଡ଼ାକ ସହିତ ଅଭ୍ୟସ୍ତ । ନେକେଡ଼ା ଶିଆଳର ନିକଟତମ ଜ୍ଞାତି । ମାତ୍ର ନେକେଡ଼ା ତୁଳନାରେ ବିଲୁଆ ଦୁର୍ବଳିଆ ଓ ତଦନୁସାରେ ତା'ର ପ୍ରତାପ କମ୍ । ନେକେଡ଼ା ପରି ଏହାର ଲଞ୍ଜ ଉଚ୍ଚା ନୁହେଁ ଓ ଭ୍ରୂ ଖିଲାଣଆକୃତିରେ ନୁହେଁ । ବିଲୁଆର ଦେହର ବର୍ଣ୍ଣ ବାସସ୍ଥାନ ଓ ଋତୁ ଅନୁସାରେ ଭିନ୍ନ ହୋଇଥାଏ । ସାଧାରଣତଃ ଏହାର ବର୍ଣ୍ଣ କଳା ଧଳା ମିଶା । କାନ୍ଧ, କାନ ଓ ଗୋଡ଼ରେ ଏହି ରଙ୍ଗ ଉପରେ ଫିକା ହଳଦିଆ ପ୍ରଲେପ ଥାଏ ।

ଶୃଗାଳ ଦକ୍ଷିଣ ପୂର୍ବ ୟୁରୋପ, ଦକ୍ଷିଣ ପଶ୍ଚିମ ଏସିଆ, ଭାରତ ଓ ସିଂହଳର ସବୁ ଅଞ୍ଚଳ, ବର୍ମା ଦେଇ ଦକ୍ଷିଣ-ପୂର୍ବ ଶ୍ୟାମ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବାସ କରନ୍ତି । ଭାରତରେ ତିନୋଟି ରେସ ( race )ର ବିଲୁଆ ଦେଖାଯାନ୍ତି ।

ବିଲୁଆ ପ୍ରାୟ ସବୁଠି ରହନ୍ତି । ଓଦାଳିଆ ଜଙ୍ଗଲ ଅଞ୍ଚଳ, ଶୁଖିଲା ଖୋଲା ଜାଗା, ଏପରିକି ମରୁଭୂମିରେ ମଧ୍ୟ ଏମାନେ ବାସ କରନ୍ତି । ହିମାଳୟ ଅଞ୍ଚଳରେ 3660 ମିଟାର (12,000 ଫୁଟ) ଉଚ୍ଚତାରେ ଶୃଗାଳ ଦେଖା ଯାଇଅଛନ୍ତି । 1220-2135 ମିଟାର (4000-7000ଫୁଟ) ଉଚ୍ଚ ଗ୍ରୀଷ୍ମ ନିବାସମାନଙ୍କରେ ଏମାନେ ରୀତିମତ ବସା ବାନ୍ଧି ରହିଥିବାର ଦେଖାଯାଏ । ଅବଶ୍ୟ ବିଲୁଆମାନଙ୍କର ପ୍ରଧାନ ବାସ, ନିମ୍ନ ଭୂମିରେ ଥିବା ଗାଁ ଗଣ୍ଡା ଓ ସହର । ସେମାନେ ଭୂମିରେ ଗାତ କରି, ନଚେତ୍ ଭଙ୍ଗାଘର, ଉଚ୍ଚ ଘାସ ଓ ବୁଦାଝାଟି ଭିତରେ ରହନ୍ତି । ସାଧାରଣତଃ ଗୋଧୂଳି ପରେ

ସେମାନେ ଗାତରୁ ବାହାରନ୍ତି ଓ ଭୋର ହେଲା ବେଳକୁ ଗାତରେ ଯାଇ ପଶନ୍ତି । ପାଗ ଥଣ୍ଡା ବା ମେଘୁଆ ହୋଇଥିଲେ ସେମାନେ ଦିନବେଳେ ମଧ୍ୟ ଦେଖିବାକୁ ମିଳନ୍ତି । ଖୁବ୍ ଗରମ ପଡ଼ିଲେ, ପାଣି ପିଇବା ପାଇଁ ଏବଂ ଛାଇ ଓ ଥଣ୍ଡା ଜାଗା ଦେଖି ବିଶ୍ରାମ ନେବା ପାଇଁ ଦିନବେଳେ ବାହାରି ପଡ଼ନ୍ତି । ବିଲୁଆ ସାଧାରଣତଃ ଏକାକୀ ଖାଦ୍ୟ ଅନ୍ୱେଷଣରେ ବାହାରେ । ବେଳେବେଳେ ସେମାନେ ଦୁଇ ବା ଅଧିକ ସଂଖ୍ୟାରେ ଦଳବାନ୍ଧି ଶିକାରରେ ବାହାରନ୍ତି । ଶାଗୁଣାମାନଙ୍କ ପରି ବିଲୁଆ ପ୍ରକୃତି ଦ୍ୱାରା ନିଯୁକ୍ତ ଏକ ମଇଳା ସଫାକାରୀ ପ୍ରାଣୀ । ଏମାନଙ୍କ ଯୋଗୁ ଆମର ସହର ଓ ଗାଁ ଆଖପାଖ ସଫାରହେ । କାରଣ, ମୃତ ପଶୁର ଶବ ଏବଂ ନିହତ ପଶୁର ନିକ୍ଷିପ୍ତ ଅଙ୍ଗାଦି ଏମାନଙ୍କର ଆହାର । କୁକୁର ବଂଶର



(ଚିତ୍ର ନଂ 40, ବିଲୁଆ)

ଜନ୍ମଗତ ଶିକାର ପ୍ରବୃତ୍ତି ବିଲୁଆଠାରେ ମଧ୍ୟ ଦେଖାଯାଏ । ବେଳେବେଳେ ଏମାନେ କୁକୁଡ଼ା ଘେରି କରି ନେଇଯାନ୍ତି ଏବଂ ମେଣ୍ଢା ଓ ଛେଳି ଛୁଆ, ଗେରିଣୀ ମେଣ୍ଢା ଓ ଛେଳିକୁ ଆକ୍ରମଣ କରନ୍ତି । ଛୋଟ ଛୋଟ ପ୍ରାଣୀ ଓ ଜଖମ ହୋଇଥିବା ପ୍ରାଣୀକୁ ଏମାନେ ମାରି ଖାଇଯାନ୍ତି । ବଣିଆ କୁକୁରଙ୍କ ପରି ବିଲୁଆ ଦଳ ବାନ୍ଧି ଛୋଟ ଛୋଟ ହରିଣ ଓ ଏଣ୍ଟିଲୋପକୁ ଆକ୍ରମଣ କରିବାର ଜଣା ଅଛି । ଫୁଟି, ତରଭୁଜ, କାକୁଡ଼ି ଓ ଆଖୁଗଛ ବେଳେ ଏମାନେ କ୍ଷେତରେ ପଶି ଖାଇଯାନ୍ତି । ଶୀତଦିନେ କଫି ବଗିଚାମାନଙ୍କରେ ଆସି ଠୁଳ ହୁଅନ୍ତି । ଝଡ଼ିକରି ତଳେ ପଡ଼ିଥିବା ପାଚିଲା କୋଳି ଏମାନଙ୍କର ଏକ ପ୍ରିୟ ଖାଦ୍ୟ ।

ବିଲୁଆ ଅତ୍ୟନ୍ତ ଆତ୍ମଗୋପନ–ପ୍ରିୟ । ଏଣୁ ସର୍ବତ୍ର ଦେଖାଗଲେ ମଧ୍ୟ ଏମାନଙ୍କ ପରିବାରଜୀବନସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ କମ୍ । ଅଣ୍ଡିରା ମାଈ ଏକାଠି କେତେଦିନ ରହନ୍ତି, ଅଣ୍ଡିରା ଶାବକ ପାଳନରେ

କୌଣସି ଅଂଶ ଗ୍ରହଣ କରେ କି ନାହିଁ, ଶାବକମାନେ ମା'ପାଖରେ କେତେ ଦିନ ରହନ୍ତି, ଏ ସବୁ ବିଷୟରେ କିଛି ଜଣା ନାହିଁ । ବର୍ଷର ପ୍ରାୟ ସବୁ ସମୟରେ ବିଲୁଆ ଛୁଆ କରନ୍ତି । ଶାବକ ଗାତ ଭିତରେ ବା କୌଣସି ପ୍ରାକୃତିକ ଗୁହାରେ ରହିଥାନ୍ତି । ବିଲୁଆ ପ୍ରାୟ 12 ବର୍ଷ ବଞ୍ଚେ ।

ବିଲୁଆ ଗୋଟିଏ ଅତି ଚତୁର ପ୍ରାଣୀ । ସେ ସିଂହ ବାଘ ପ୍ରଭୃତି ବଳବାନ ପ୍ରାଣୀଙ୍କୁ ବାଟ କଢ଼େଇ ଶିକାର ପାଖକୁ ନେଇଯାଏ ଓ ସେମାନେ ଖାଇ ସାରିଲେ ବଳକା ଅଂଶ ତା'ପାଖରେ ପଡ଼େ । ଏହି କାଳ୍ପନିକ ଧାରଣା ଯୋଗୁ ବହୁ ଗଳ୍ପରେ ବିଲୁଆର ଚତୁର ପଣିଆର ଉଲ୍ଲେଖ ନାନା ଭାବରେ ସ୍ଥାନ ପାଇଅଛି । ଓଡ଼ିଶାର ଲୋକ କଥାରେ ବିଲୁଆ ବିଲୁଆ ନନା ହୋଇଅଛି ଏବଂ "ବିଲୁଆ ନନା, ଘର ପୋଡ଼ିଗଲା ପଛକୁ ଅନା"; "ଖରା ହେଉଛି, ମେଘ ହେଉଛି, ବିଲୁଆ ନନା ବାହା ହେଉଛି", ଇତ୍ୟାଦି ଗ୍ରାମ୍ୟ କଥା ପିଲଙ୍କ ତୁଣ୍ଡରେ ଶୁଣିବାକୁ ମିଳେ । ବିଲୁଆ ଚତୁର ମାତ୍ର । ତାହା ହିଂସ୍ର ପଶୁକୁ ଶିକାର ପାଖକୁ ବାଟ ଦେଖାଇ ଦିଏ ନାହିଁ । ବରଂ ସେ ବଡ଼ ହିଂସ୍ର ପ୍ରାଣୀ ଶିକାରରେ ବାହାରିଲା ବେଳେ ଉଚ୍ଛିଷ୍ଟ ଟିକିଏ ପାଇବା ପାଇଁ ତା' ପଛେ ପଛେ ଯାଏ ।

ବିଲୁଆର ବୈଜ୍ଞାନିକ ନାମ Canis aureus Linnacus ଇଂରାଜୀ Jackal । ବିଭିନ୍ନ ଭାରତୀୟ ଭାଷାରେ ଏହାର ନାମ — ହିନ୍ଦି — ଗିଧର (ଉତ୍ତର ଭାରତ), କୋଲା (ଦାକ୍ଷିଣାତ୍ୟ ଓ ଦକ୍ଷିଣ); ମାରାଠି — କୋଲ୍‌ହା; ବଙ୍ଗଳା — ଶିଆଲ; ତାମିଲ — ନୁରୀ; କାନାରୀ — ନୁରୀ; କୁର୍ଗି ନୁରୀ; ତେଲୁଗୁ — ନାକ୍‌କା; ମାଲୟାଳୀ — କୁ (ଉ)ଲ୍ଲ କାନ୍; ବର୍ମା — କ୍ୱେ ଆଟ୍ ।



# କୋକିଶିଆଳି

କୋକିଶିଆଳି ଛୋଟ ପ୍ରାଣୀଟିଏ । ମୁଣ୍ଡ ଓ ଦେହର ଲମ୍ବ 45-60 ସେଣ୍ଟିମିଟର (1½-2ଫୁଟ); ଲାଞ୍ଜ25-35 ସେଣ୍ଟିମିଟର (10-14ଇଞ୍ଚ); ଓଜନ 1.8-3 2 କିଲୋ ଗ୍ରାମ (4-7ପାଉଣ୍ଡ)

କୋକିଶିଆଳି ଗୋଟିଏ ଛୋଟ କୌତୁକିଆ ପ୍ରାଣୀ । ଏହାର ସାଧାରଣ ବର୍ଣ୍ଣ ଧୂସର । ଗୋଡ଼ ଲାଲ ଆସିଆ ବାଦାମୀ । ଲାଞ୍ଜର ଅଗ ଅଂଶ ଧଳା । ଶୀତ ଦିନରେ ଲୋମ ଲମ୍ବା ଓ ଘନ ହୁଏ ।



(ଚିତ୍ର ନଂ 41, କୋକିଶିଆଳି)

ହିମାଳୟର ପାଦ ଦେଶରୁ କୁମାରିକା ପର୍ଯ୍ୟନ୍ତ ଭାରତର ସର୍ବତ୍ର କୋକିଶିଆଳି ଦେଖିବାକୁ ମିଳେ । ଏହା ଜଙ୍ଗଲର ପ୍ରାଣୀ ନୁହେଁ । ସମତଳ ଭୂମିର ଖୋଲା ଅଞ୍ଚଳରେ ଏହା ଏକ ସାଧାରଣ ପ୍ରାଣୀ । ଅପନ୍ତରା ଭୂମି, କେନାଲ କୂଳ ଘାସ ଜମି, ବୁଦି ବୁଦିକିଆ ପାହାଡ଼ିଆ ଅଞ୍ଚଳରେ କୋକିଶିଆଳି ବାସ କରନ୍ତି । ଏମାନେ ମରୁ ଅଞ୍ଚଳରେ ବାସ କରନ୍ତି ନାହିଁ, ଯଦିଓ ମରୁ ଦେଶର ପ୍ରାନ୍ତ ଅଞ୍ଚଳରେ ବୁଦା ଭିତରେ ଦେଖାଯାନ୍ତି । ବର୍ଷା ଦିନେ ଯେଉଁ ସ୍ଥାନ ଯାଏ ପାଣି ମାଡ଼ିଆସେ, ତା' ଠାରୁ ଉଚ୍ଚ ଯାଗା ଦେଖି ନିଜେ ଗାତ ଖୋଳି କୋକିଶିଆଳି ବାସ କରେ । ଯେଉଁ ଗାତରେ ସେ ରହେ, ତାହା ଭୂମିଠାରୁ 60-90 ସେଣ୍ଟିମିଟର ଗଭୀରରେ ଥାଏ । ବାହାରକୁ ଏଠାରୁ ଅନେକଗୁଡ଼ିଏ ସୁଡଙ୍ଗ ପଥ ଥାଏ । ବିପଦ ଆପଦବେଳେ କୋକିଶିଆଳିର ଶତ୍ରୁ ଗୋଟିଏ ପଟେ ଲାଗିଥିଲାବେଳେ ସେ ଅନ୍ୟ ବାଟରେ ଖସି ପଳାଇଯାଏ । କେବଳ ସେତିକି ନୁହେଁ, କୋକିଶିଆଳି ଯେଉଁଠି ଗାତ କରିଥାଏ, ସେଠି ବାହାରୁ ଭିତରଆଡକୁ କେତେ ଗୁଡ଼ିଏ ସୁଡଙ୍ଗ ଥାଏ, କିନ୍ତୁ ତାହା କୋକିଶିଆଳି ରହିବା ଗାତ ଭିତରକୁ ଫିଟି ନ ଥାଏ । ଏ ସବୁ ଶତ୍ରୁକୁ ଭୁଆଁ ବୁଲାଇ ଆତ୍ମରକ୍ଷା କରିବା ପାଇଁ କୌଶଳ ମାତ୍ର ।

ଦିନବେଳେ କୋକିଶିଆଳି ତା' ଗାତ ଭିତରେ ଶୋଇଥାଏ ; ଗୋଧୂଳି ସମୟରେ ପଦାକୁ ବାହାରେ । ଏହାର ଡାକ ଏକ ପ୍ରକାର ତୀକ୍ଷଣ ଛଡ଼କଡ଼ିଆ ଆର୍ତ୍ତନାଦ ପରି । ପର ପର ତିନି ଚାରିଥର ଏପରି ଡାକ ଦେଇଥାଏ । ମନୁଷ୍ୟ ବାସଗୃହ ନିକଟରେ ବାସ କରୁଥିବା କୋକିଶିଆଳି ବରିଗୁ ଭିତରେ ପଶନ୍ତି, ମାତ୍ର ସାଧାରଣତଃ କୁକୁଡ଼ାଙ୍କୁ ଆକ୍ରମଣ କରନ୍ତି ନାହିଁ । କ୍ଷୁଦ୍ର କ୍ଷୁଦ୍ର ସ୍ତନ୍ୟପାୟୀ ପ୍ରାଣୀ, ସରୀସୃପ ଓ କୀଟ ଏମାନଙ୍କର ପ୍ରଧାନ ଆହାର । କ୍ଷେତରେ ମୂଷା ଓ କଙ୍କଡ଼ାଙ୍କୁ ନିୟମିତ ଆହାର କରିବା ଫଳରେ କୋକିଶିଆଳି କୃଷକର ପରମ ଉପକାର କରେ । କଙ୍କଡ଼ା ଗଛଚେରକୁ ମୂଳରୁ କାଟି ପକାନ୍ତି ଏବଂ ମୂଷା ଗାତ କରି କ୍ଷେତକୁ ନଷ୍ଟ କରଦିଏ । ବର୍ଷା ପୂର୍ବରୁ ଭଇଁହୁଙ୍କାରୁ ଝଡ଼ି ପୋକ ବାହାରନ୍ତି । ଏହା କୋକିଶିଆଳିର ଏକ ପ୍ରିୟ ଖାଦ୍ୟ । ଫୁଟି, କାକୁଡ଼ି, ତରଭୁଜ, ବରକୋଳି ଓ ବୁଟଗଛର କଡକୁ ଏମାନେ ଖାଇଥାନ୍ତି ।

କ୍ଷିପ୍ରଗତି ଦ୍ୱାରା କୋକିଶିଆଳି ଶତ୍ରୁ ହସ୍ତରୁ ରକ୍ଷା ପାଇଥାଏ । ଧୀର ମନ୍ଥର ଗତିରେ ଯାଉଥିଲାବେଳେ ତା' ଲାଞ୍ଜ ତଳେ ଘୁଷୁରୁ ଥାଏ । ମାତ୍ର କ୍ଷିପ୍ରଗତିରେ ଦୌଡ଼ିବା ସମୟରେ ଉତ୍ତୋଳିତ ହୋଇ ଆନୁଭୂମିକ ଭାବେ ରହେ ଏବଂ ମୋଡ ଭାଙ୍ଗିବା ବା ଦିଗ ପରିବର୍ତ୍ତନ କରିବା ସମୟରେ ଉପରଆଡକୁ ସିଧା ଠିଆ ହୋଇଯାଏ । ବସ୍ତୁତଃ, ଗତି ସମୟରେ ଲାଞ୍ଜ ଭାରସାମ୍ୟ ରକ୍ଷାକରେ ।

କୋକିଶିଆଳିର ସାମାଜିକ ଜୀବନ ସମ୍ବନ୍ଧରେ ବିଶେଷ କିଛି ଜଣା ନାହିଁ । କାନିଡ଼ି ବଂଶଭୁକ୍ତ ଅଧିକାଂଶ ପ୍ରାଣୀ ପରି ପିତାମାତା ଉଭୟ ଶାବକର ଯତ୍ନ ନିଅନ୍ତି । ଶୀତଦିନେ ମାଇ କୋକିଶିଆଳି ଗର୍ଭ ଧାରଣ କରେ । ଫେବୃୟାରୀ–ଏପ୍ରିଲ ମାସରେ ପ୍ରାୟ ଚାରିଟି ଶାବକ ଜାତ ହୁଅନ୍ତି । ସେମାନେ ମା' ସହିତ ଭୂଇଁତଳେ ଗାତ ଭିତରେ ରହନ୍ତି ଓ କ୍ୱଚିତ୍ ଦେଖିବାକୁ ମିଳନ୍ତି ।

କୋକିଶିଆଳିର ବୈଜ୍ଞାନିକ ନାମ Vulpes bengalensis (Shaw) ଇଂରାଜୀ । –Indian Fox । ବିଭିନ୍ନ ଭାଷାରେ ଏହାର ନାମ ହିନ୍ଦି–ଲୋମ୍ରି, ଲୋମ, ଲୋଙ୍କି, ଲେକେରିଆ (ମଧ୍ୟ ଭାରତ) ମାରାଠି–କୋଲ୍ହି; କାନାରି–ସାନ୍ନାନାରି; ତାମିଲ–କୁଲ୍ଲାନୁରୀ; ତେଲୁଗୁ–କୋଙ୍କା ନାକ୍କା ।

# ବଣୁଆ କୁକୁର

ବଣୁଆ ବା ବଳିଆ କୁକୁର ଦେଖିବାକୁ ଅନେକ ଲକ୍ଷଣରେ ଗୃହପାଳିତ କୁକୁର ପରି । ସାଧାରଣତଃ ମୁଣ୍ଡ ଓ ଦେହର ଲମ୍ବ 86-96 ସେଣ୍ଟିମିଟାର (34-38 ଇଞ୍ଚ) ଲାଞ୍ଜ 40-43 ସେଣ୍ଟିମିଟାର (16-17 ଇଞ୍ଚ) ଓ ଉଚ୍ଚତା 43-55 ସେଣ୍ଟିମିଟାର (17-22 ଇଞ୍ଚ) ହୁଏ । ଓଜନରେ ବଡ ଅଣ୍ଡିରା 20 କିଲୋଗ୍ରାମ (43 ପାଉଣ୍ଡ) ଯାଏ ହୁଅନ୍ତି । ମାଈର ଓଜନ କମ ।

ବଳିଆ କୁକୁରର ଦେହର ବର୍ଣ୍ଣ ଲାଲ । ଋତୁ ଓ ସ୍ଥାନ ଭେଦରେ ଏଥିରେ ତାରତମ୍ୟ ଦେଖାଯାଏ । ହିମାଳୟ ଓ ଭାରତୀୟ ଉପଦ୍ୱୀପ ଭିନ୍ନ ଅନ୍ୟତ୍ର ବାସ କରୁଥିବା ବଳିଆ କୁକୁରର ଲାଲବର୍ଣ୍ଣ ଫିକା, ହିମାଳୟ ଅଞ୍ଚଳରେ କୁକୁର ଘନ ଲାଲ ଏବଂ ଭାରତୀୟ ଉପଦ୍ୱୀପବାସୀ ବଳିଆ କୁକୁର ହଳଦିଆ–ବାଦାମୀ–ଆସିଆ ଲାଲ । ଏହି ତିନି ଅଞ୍ଚଳର କୁକୁର ଏକ ଜାତିର ମାତ୍ର ତିନୋଟି 'ରେସ' (race)ର ବୋଲି ଧରାଯାଏ । ବନ୍ୟ କୁକୁରର ଦେହ ନେକେଡ଼ା ପରି ଲମ୍ବା ଓ ଚଟାଳିଆ, ମାତ୍ର ନେକେଡ଼ା ତୁଳନାରେ ଏହାର ଥୋମଣି ଓ ଗୋଡ ଛୋଟ । କାନର ଅଗ ଅଂଶ ଅଧିକ ଗୋଲାକାର ଓ ଲାଞ୍ଜ ବେଶ ଲୋମଶ । ନେକେଡା, ଶୃଗାଳ ଓ ଗୃହପାଳିତ କୁକୁରଙ୍କର ତଳ ହନୁରେ ସାତଟି କରି ପେଷଣ (molar) ଦନ୍ତ ଥାଏ; ମାତ୍ର ବଳିଆ କୁକୁରର ଏପରି ଦାନ୍ତର ସଂଖ୍ୟା ଛଅଟି । ପ୍ରକୃତ କୁକୁର (frue dogs) ଅର୍ଥାତ୍ ଶୃଗାଳ, ନେକେଡା, ଗୃହପାଳିତ କୁକୁର ଓ ଆମେରିକାର କୋୟୋଟ୍ (coyote) ମାନେ 'କାନିସ' (canis) ପ୍ରଜାତି ଭୁକ୍ତ । ଏମାନଙ୍କର ପାଞ୍ଚ ଯୋଡା ସ୍ତନ ଥାଏ । ବଳିଆ କୁକୁର 'କୁଅନ' (cuon) ପ୍ରଜାତି (genus) ର । ଏମାନଙ୍କର 12ବା14 ଯୋଡା ସ୍ତନ ଥାଏ ।

ଉତ୍ତରରେ ମଧ୍ୟ ଏସିଆର ପ୍ରାୟ 50° ଅକ୍ଷାଂଶରେ ଅବସ୍ଥିତ ଆଲଟାଇ ପର୍ବତ ମାଳା ଓ ପୂର୍ବରେ ପ୍ରାୟ 70° ଦ୍ରାଘିମାରେ ମାଞ୍ଚୁରିଆଠାରୁ ମାଲୟ ଦେଶ ସମୂହ ଦେଇ ଭାରତ ସମେତ ଏସିଆ ମହାଦେଶର ସମସ୍ତ

ଅଞ୍ଚଳର ଜଙ୍ଗଲରେ ବଳିଆ କୁକୁର ଦେଖାଯାନ୍ତି । ଜାଭା, ସୁମାତ୍ରା ପ୍ରଭୃତି ଦ୍ୱୀପପୁଞ୍ଜରେ ମଧ୍ୟ ବନ୍ୟ କୁକୁର ବାସ କରନ୍ତି । କିନ୍ତୁ ଯାପାନ, ବୋର୍ନିଓ ଓ ଶ୍ରୀଲଙ୍କା ଦ୍ୱୀପମାନଙ୍କରେ ବଳିଆ କୁକୁର ଦେଖାଯାନ୍ତି ନାହିଁ ।

ମଧ୍ୟଏସିଆରେ ବଳିଆ କୁକୁର ଜଙ୍ଗଲବାସୀ ହେଲେ ମଧ୍ୟ, ସେମାନେ ବେଳେବେଳେ ଖୋଲା ବୃକ୍ଷହୀନ ସମତଳ ଭୂମିରେ ଦେଖାଯାନ୍ତି । ଲଦାଖ ଓ ତିବ୍ବତରେ ସେମାନେ ଖୋଲା ଅଞ୍ଚଳରେ ବାସ କରନ୍ତି । ଏ ସବୁ ଶୀତଳ ଉପତ୍ୟକା ଜଙ୍ଗଲହୀନ । ଭାରତ ପରି ଗ୍ରୀଷ୍ମ ଓ ନାତି-ଗ୍ରୀଷ୍ମ ମଣ୍ଡଳୀୟ ସ୍ଥାନରେ ବଳିଆ କୁକୁର କେବଳ ଜଙ୍ଗଲରେ ବାସ କରନ୍ତି । ଗ୍ରୀଷ୍ମ କାଳରେ ଏମାନଙ୍କର ତୃଷା ନିବାରଣ ପାଇଁ ଜଳ ଏବଂ ବିଶ୍ରାମ ପାଇଁ ତରୁଛାୟା ଆବଶ୍ୟକ । ଏସବୁ ସାଙ୍ଗକୁ ଜଙ୍ଗଲ ଖାଦ୍ୟ ପ୍ରାଣୀ ମଧ୍ୟ ଯୋଗାଏ । ନେକେଡ଼ା ପରି ବଳିଆ କୁକୁର ଦଳ ଦଳ ହୋଇ ବିଚରଣ କରିବାର ଦେଖାଯାନ୍ତି । ପ୍ରତି ଦଳ ଗୋଟିଏ ପରିବାର ବା ଏକାଧିକ ପରିବାର ଦ୍ୱାରା ଗଠିତ ହୋଇଥାଏ ।

ବଳିଆ କୁକୁର ଦିନବେଳେ ବିଶେଷରେ ଭୋରରେ ଶିକାର କରନ୍ତି । ଜ୍ୟୋତ୍ସ୍ନା ରାତିରେ ସେମାନେ କେବେକେବେ ଶିକାର କରିବା ବିରଳ ନୁହେଁ ଓ କୃଷ୍ଣପକ୍ଷ ରାତିରେ ଖୁବ୍ କ୍ୱଚିତ୍ ଶିକାର କରିବାର ଦେଖାଯାଏ । ଗନ୍ଧଦ୍ୱାରା ସେମାନେ ଖାଦ୍ୟ ପ୍ରାଣୀ ପ୍ରତି ଆକୃଷ୍ଟ ହୁଅନ୍ତି । ଶିକାର ପ୍ରାଣୀ ଉପରେ ନଜର ରଖି ତା ପିଛା ଧରନ୍ତି । କ୍ଷିପ୍ର ଗତିରେ ଦୌଡ଼ି ପ୍ରଚଣ୍ଡ ହିଂସ୍ରତା ସହ ସେମାନେ ଖାଦ୍ୟ ପ୍ରାଣୀକୁ ଆକ୍ରମଣ କରନ୍ତି ନାହିଁ ବରଂ ଅବିଶ୍ରାମ ଭାବରେ ଖାଦ୍ୟ ପ୍ରାଣୀର ଅନୁଧାବନ କରି ଶେଷରେ ତା' ଉପରେ ଯେତେବେଳେ ଚଢ଼ାଉ କରନ୍ତି ସେତେବେଳେକୁ ପ୍ରାଣୀଟି ସମ୍ପୂର୍ଣ୍ଣ କ୍ଲାନ୍ତ ଓ ଅବସନ୍ନ ହୋଇଯାଇଥାଏ ଏବଂ ସେତେବେଳେ ତାର ଆଉ ପଳାଇ ଯିବାର ବାଟ ନ ଥାଏ । ନିଶବ୍ଦରେ ସେମାନେ ଗଛର ଆଢ଼ୁଆଳରେ ଶିକାର ପ୍ରାଣୀକୁ ଅନୁଧାବନ କରନ୍ତି । ମଧ୍ୟେ ମଧ୍ୟେ ଦଳପତିମାନେ ପରସ୍ପର ମଧ୍ୟରେ ଯୋଗାଯୋଗ ପାଇଁ ଏକ ପ୍ରକାର ଭୁକିଲା ପରି ଶବ୍ଦ କରନ୍ତି । ଶିକାରର ପାଖ ପହଞ୍ଚିଲେ ଉତ୍ତେଜିତ ଭାବେ ସେମାନେ ଅନ୍ୟ ଏକ ପ୍ରକାର, କୁକୁର କାନ୍ଦିଲା ପରି ଶବ୍ଦ କରନ୍ତି । ତା'ପରେ ଉଚ୍ଚସ୍ୱରରେ ଭୁକିଲା ପରି ଡାକ ଦେଇ ତାକୁ ଘୂରିଆଡ଼ୁ ଘେରି

ଆକ୍ରମଣ କରନ୍ତି । ହରିଣ ଆଦି ଶିକାର ପ୍ରାଣୀର ଅନୁଧାବନ କରୁ କରୁ ଦଳର ବିଭିନ୍ନ କୁକୁର ପରସ୍ପର ଠାରୁ ବିଚ୍ଛିନ୍ନ ହୋଇଗଲେ ପରସ୍ପରକୁ ଡାକିବା ପାଇଁ ବା ହଠାତ୍ ମନୁଷ୍ୟ ହାବୁଡ଼ି ଗଲେ ଏମାନେ ଏକ ପ୍ରକାର ହୁଇସିଲ୍ ମାରିଲା ପରି ଶବ୍ଦ କରନ୍ତି ।



(ଚିତ୍ର ନଂ 42 ବଳିଆ କୁକୁର)

ବଳିଆ କୁକୁରର ଖାଦ୍ୟ, ସ୍ଥାନ ଓ ମିଳୁଥିବା ପ୍ରାଣୀ ଉପରେ ନିର୍ଭର କରେ । ତିବ୍ବତ ଓ ଲଦାଖରେ ଏମାନେ ବନ୍ୟ ମେଷ ଓ ଏଣ୍ଟିଲୋପ ଶିକାର କରନ୍ତି । କାଶ୍ମୀର ଉପତ୍ୟକାରେ ଏମାନଙ୍କର ଶିକାର ପ୍ରାଣୀ ହେଲେ ମାର-ଖୋର (Markhor) ଏକ ଜାତି ବନ୍ୟ ଛାଗଳ, କସ୍ତୁରୀ ମୃଗ (Musk deer ଓ ଗୋରାଲ (Groal) ଏକ ଜାତିର ବନ୍ୟ ଛାଗଳ । ହିମାଳୟ ଅଞ୍ଚଳରେ ସେମାନଙ୍କର ଶିକାର ଜୀବ 'ଟେହର' (Tahr) ନାମକ ଏକ ଜାତି ବନ୍ୟ ଛାଗଳ । ଭାରତୀୟ ଉପଦ୍ୱୀପରେ ବିଭିନ୍ନ ଜାତିର ମୃଗ ସେମାନଙ୍କର ସାଧାରଣ ଶିକାର ଜୀବ । ବଡ ବଳିଆ କୁକୁର–ଦଳ ପୂର୍ଣ୍ଣ ବୟସ୍କ ଗୟଳ ଓ ବଣ ମଇଁଷି ଛଡ଼ା ବଣର ପ୍ରାୟ ଅନ୍ୟ ସବୁ ପ୍ରକାର ପ୍ରାଣୀ ଯଥା–ବାଘ, ଚିତା, ସମ୍ବର, ହରିଣ ଓ ବନ୍ୟ ଶୂକର ଶିକାର କରିବାର ଦେଖାଯାଏ । ଗୋଠ ବାନ୍ଧି ରହୁଥିବା ପ୍ରାଣୀଙ୍କୁ ଘଉଡ଼ାଇବା ଫଳରେ ସେମାନେ ଆତଙ୍କରେ ଛିନ୍ନଛତ୍ର ହୋଇ ପଳାଇବା ସମୟରେ ବଳିଆ କୁକୁର ଛୋଟ ଛୋଟ ଶାବକଙ୍କୁ ଆକ୍ରମଣ

କରନ୍ତି । ଏମାନେ ତଟକା ମାଂସ ଭଲ ପାଆନ୍ତି । ଅବଶ୍ୟ କ୍ଷୁଧା ନିବୃତ୍ତି ପାଇଁ ବଳିଆ କୁକୁର ମୃତ ପ୍ରାଣୀକୁ ଯେ ଖାଆନ୍ତି ନାହିଁ ତା' ନୁହେଁ । କ୍ଷୁଧା ନଥିଲେ ଏମାନେ ଜୀବଜନ୍ତୁଙ୍କୁ ଆକ୍ରମଣ କରି ଅକାରଣ ମାରନ୍ତି ନାହିଁ ।

ବଳିଆ କୁକୁର ଯେଉଁ ଶବ୍ଦ କରେ ତାକୁ ଠିକ୍ 'ଭୁକିବା' କୁହା ନଗଲେ ମଧ୍ୟ ବିଭିନ୍ନ ଉପଲକ୍ଷରେ ଏମାନଙ୍କର ଧ୍ୱନି ଭିନ୍ନ ଭିନ୍ନ ହୁଏ । ପ୍ରଜନନ ପାଇଁ ସଙ୍ଗିନୀକୁ ଡାକିବା ବେଳର ଧ୍ୱନି ହଠାତ୍ ମନୁଷ୍ୟକୁ ଦେଖି ଡାଟକା ହୋଇ ଯିବାର ଧ୍ୱନିଠାରୁ ଭିନ୍ନ । ଖାଇବା ସମୟରେ ନିଜ ଭିତରେ ଛଡ଼ା ଗଣ୍ଡଗୋଳ ହେବାବେଳେ ବା ଡାଟକା ହୋଇଗଲେ ଏମାନେ ଏକ ପ୍ରକାର 'ଘକ୍, ଘକ' ଶବ୍ଦ କରନ୍ତି । ଦଳବଦ୍ଧ ଭାବେ ଶିକାର କରିବା ବେଳ ଛଡ଼ା ଅନ୍ୟ ସମୟରେ ପରସ୍ପର ମଧ୍ୟରେ ଯୋଗାଯୋଗ ପାଇଁ ଏମାନେ ଯେଉଁ ଶବ୍ଦ କରନ୍ତି, ତାହା ଏକ ପ୍ରକାର କୋମଳ ସ୍ୱରରେ ସୁସୁରି ମାରିଲା ପରି । ଏକ ଆରେକକୁ ଡାକିଲା ବେଳେ ଯେଉଁ ଶବ୍ଦ କରେ, ତାହା ଏକ ପ୍ରକାର 'ଓଭ, ଓଭ, ଓଭ'' । ଶିକାରୀମାନେ ଏହି ସ୍ୱରକୁ ନକଲ କରି ଡାକ ଦେଲେ ସେମାନେ ପାଖକୁ ଚାଲି ଆସନ୍ତି ଓ ବନ୍ଧୁକର ଶିକାର ହୁଅନ୍ତି । ଏହି ଧ୍ୱନିକୁ ସଫଳତାର ସହିତ ଦୁଇ ପ୍ରକାରେ କରାଯାଇପାରେ । ପ୍ରଥମ, 318 ନମ୍ବର ଗୁଳିର ଶୂନ୍ୟ ଖୋଳ ସାହାଯ୍ୟରେ ତିନିଥର ସୁସୁରି ମାରିବା, ଦ୍ୱିତୀୟ, ଗୋଟିଏ ପତ୍ରର ଦୁଇ କଡ଼ ମୋଡ଼ି ଦୁଇ ହାତର ଟିପରେ ଧରି ପେଁକାଳି ପରି ବଜାଇବା ।

ବଣୁଆ କୁକୁର ବିଷୟରେ ଗୋଟିଏ ତାଜୁବ କଥା ଅଛି । ଏମାନେ ଆଘାତ ପାଇଲେ, ଆଘାତ ଯେତେ ଗୁରୁତର ହୋଇଥାଉ ନା କାହିଁକି, ଯନ୍ତ୍ରଣାରେ ଟୁଁ ଟିଏ ଶବ୍ଦ ନକରି ପଳାଇ ଯାନ୍ତି । ଏପରିକି ଗୋଟେ ଗୋଡ଼ ଗୁଳି ବାଜି ଭାଙ୍ଗି ଯାଇଥିଲେ ବି କିଲୋମିଟାର କିଲୋମିଟାର ପଥ ଦୌଡ଼ି ପଳାଇ ଯାନ୍ତି । ବଣରେ ଏମାନେ ନିଃଶବ୍ଦରେ ବିଚରଣ କରନ୍ତି ।

କୌତୁହଳର କଥା ଏହି ଯେ ଗୃହପାଳିତ କୁକୁର ଯେପରି ଭୁକନ୍ତି, ବନ୍ୟ କୁକୁର ସେପରି ଭୁକି ପାରନ୍ତି ନାହିଁ । ଭୁକିବା ଗୃହପାଳନର ଏକ ଲକ୍ଷଣ ବୋଲି କୁହାଯାଇପାରେ । ହୁଆନ ଫାରନାନଡେଜ (Juan Fernandez) ନାମକ ଦ୍ୱୀପରେ ସ୍ୱାଧୀନ ଭାବେ ବାସ କରିବାକୁ ଗୁଡ଼ିଏ ଗୃହପାଳିତ କୁକୁରଙ୍କୁ ଛାଡ଼ି ଦିଆଯାଇଥିଲା । ତେତିଶ ବର୍ଷପରେ ଦେଖାଗଲା ଏହି କୁକୁରଙ୍କ ବଂଶଧର ମାନେ ଆଉ ଭୁକି ପାରୁ ନାହାନ୍ତି ।

ଭାରତୀୟ ଉପଦ୍ୱୀପରେ ସାଧାରଣତଃ ନଭେମ୍ବର-ଡ଼ିସେମ୍ବର ମାସରେ ବଳିଆ କୁକୁରମାନଙ୍କର ପ୍ରଜନନ ହୁଏ । ଥରକେ ସ୍ୱାରିଟିରୁ ଛଅଟି ଯାଏ ଛୁଆ ଜନ୍ମ ହୁଏ । କୌଣସି କୌଣସି ସ୍ଥଳରେ ସାତଟି ଓ ଦଶଟି ପିଲା ହେବାର ମଧ୍ୟ ଜଣା ଅଛି । ସାଧାରଣତଃ ଜାନୁଆରୀ—ଫେବୃଆରୀ ମାସରେ ଛୁଆ ଜନ୍ମ ହୋଇଥାନ୍ତି । ଭୂମିରେ ବା ପଥର ତଳେ ଗାତ ଖୋଳି ବା ଗୁହା ଜାଗା ଦେଖି ମା' କୁକୁର ପିଲାମାନଙ୍କୁ ଲୁଚାଇ ରଖେ । ଏକାଧିକ ମାଈ କୁକୁର କୌଣସି ସ୍ଥାନରେ ଛୁଆ କରିପାରନ୍ତି । ପିଲାଏ ଗାତରୁ ବାହାରି ବୁଲିଚାଲି କରିବା ପରଠାରୁ ବଡ଼ ହେବାଯାଏ, ମା' ନିଜର ଅର୍ଦ୍ଧଜୀର୍ଣ୍ଣ ଖାଦ୍ୟ ବାନ୍ତି କରି ସେମାନଙ୍କୁ ଖୁଆଏ ।

ବଳିଆ କୁକୁର ବନ୍ୟ ଜନ୍ତୁଙ୍କ ପାଇଁ ଭୀଷଣ ହେଲେ ମଧ୍ୟ ମନୁଷ୍ୟକୁ ଭୟ କରନ୍ତି; ଦେଖିଲେ ପଳାଇ ଯାନ୍ତି । ଏମାନେ ମନୁଷ୍ୟକୁ ଆକ୍ରମଣ କରିବାର ଦୃଷ୍ଟାନ୍ତ କଦବା କେମିତି ଦେଖିବାକୁ ମିଳେ । ଜଙ୍ଗଲ ନିକଟରେ ଚରୁଥିବା ଗୋରୁଙ୍କୁ ଏମାନେ ସାଧାରଣତଃ ଆକ୍ରମଣ କରନ୍ତି ନାହିଁ । ଗାଡ଼ିରେ ଯୋଗ ହୋଇଥିବା ବଳଦ ଓ ଲୋକ ଚଢ଼ିଥିବା ଟଟୁ ଘୋଡ଼ାକୁ ଏମାନେ କିଛି କରନ୍ତି ନାହିଁ ।

ଶିକାର ପ୍ରାଣୀକୁ ଖାଇବା ବେଳେ ବା ମାଈ କୁକୁର ଛୁଆ କରିଥିବା ସ୍ଥାନକୁ ଗଲେ ସେମାନେ ହିଂସ୍ରତା ପ୍ରଦର୍ଶନ କରନ୍ତି । ବଳିଆ କୁକୁରମାନଙ୍କ ଆଘ୍ରାଣ ଶକ୍ତି ଏତେ ପ୍ରଖର ଯେ ବାଘ କେଉଁଠି ଜନ୍ତୁମାରି ଖାଉଥିଲେ ଏମାନେ ଦଳ ବାନ୍ଧି ଯାଇ ସେଠାରେ ପହଞ୍ଚି ତାକୁ ଘଉଡ଼ାଇ ଦେଇ ତା ଶିକାରକୁ ଖାଆନ୍ତି । ଏମାନେ ଗ୍ରୀଷ୍ମ ଓ ବର୍ଷା ଋତୁରେ ବେଶୀ ଦଳ ବାନ୍ଧିବାର ଦେଖାଯାଏ ।

ବଳିଆ କୁକୁରଙ୍କ ଦେହରୁ ଏକ ପ୍ରକାର ଉଗ୍ର ଗନ୍ଧ ବାହାରେ । ଭାରତରେ ପ୍ରାୟ ସବୁ ଅଞ୍ଚଳରେ ବିଶ୍ୱାସ ଯେ ବଣୁଆ କୁକୁରମାନେ ବୁଦା ଉପରେ ମୂତ୍ର ତ୍ୟାଗ କରି ସେଇ ଆଡ଼କୁ ଶିକାର ଜନ୍ତୁଙ୍କୁ ଘଉଡ଼ାଇ ନେଇ ମାରନ୍ତି । ଅଥବା ମୂତ୍ର ତ୍ୟାଗ କରି ଲାଞ୍ଜ ସାହାଯ୍ୟରେ ଶିକାର ଜୀବର ଆଖିକୁ ଛାଟମାରି ତାକୁ ଅନ୍ଧ କରି ଦିଅନ୍ତି । ଏତାଦୃଶ ଧାରଣା ଭ୍ରମାତ୍ମକ । ଉତ୍ତେଜିତ ହେଲେ ବଳିଆ କୁକୁର ମୂତ୍ର ତ୍ୟାଗ କରେ । ଏହାର ମୂତ୍ରରେ ଆଖିକୁ ନଷ୍ଟ କଲା ଭଳି କୌଣସି ବିଷାକ୍ତ ପଦାର୍ଥ ନଥାଏ ।

ବାଳୁଚକାଳୁ ପାର୍ନ୍ତିଲେ ବର୍ଳିଆ କୁକୁର ପୋଷମାନେ ।

ବଳିଆ କୁକୁରର ବୈଜ୍ଞାନିକ ନାମ Cuon alpinus (Pallas ! ଇଂରାଜୀ– Dhole, Indian wild dog । ବିଭିନ୍ନ ଭାରତୀୟ ଭାଷାରେ ଏହାର ନାମ:–ହିନ୍ଦୀ -ଧୋଲ, ସୋନ୍, ରମ୍, ଜଙ୍ଗଲୀ କୁତ୍ତା, ବନ୍ କୁତ୍ତା, ମାରଠି–କୋଲସୁନ୍, କୋଲ୍‌ସା, କୋଲସାର, ଗୁଜରଟି–କୋଲ କୁତ୍ରା, କାନାଡ଼ି-କାଦୁନ୍ନାଇ, ଚିଗନାଇ; ତେଲୁଗୁ–ରେଜା କୁତ୍ତା, ମାଲୟାଲୀ ଓ ତାମିଲ–ଚେନ୍ ନାଇ; କାଟ୍‌ଟୁ ନାଇ; ହିମାଳୟ ଅଞ୍ଚଳ–ଭଓସା, ଭୁନ୍‌ସା, ବୁଆନ୍‌ସୁ; କାଶ୍ମିରୀ–ରମକୁନ; ତିବତୀୟ–ସିଡ୍‌ଡ଼ାକି; ବର୍ମା–ଚୋର କୋୟେ; ଓଡ଼ିଆ–ଢ୍ୋଲ (କୋରାପୁଟ), କୋକ (ବଲାଙ୍ଗିର), ବଳିଆ କୁକୁର ।



# ନବମ ଅଧ୍ୟାୟ

# ଭଲ୍ଲୁକ ବଂଶ

ଭାଲୁର ଚେହେରା ଦେଖି କେହି ଭାବିବ ନାହିଁ ଯେ କୁକୁରମାନଙ୍କ ସହିତ ସେମାନଙ୍କର ଜ୍ଞାତିତ୍ୱ ଅଛି । ଜୀବାଶ୍ମ (Fossil) ପରୀକ୍ଷାରୁ ଜଣାଯାଏ ଯେ ଭାଲୁ ଓ କୁକୁରମାନଙ୍କର ପୂର୍ବ ବଂଶଧର ଏକ । ବିଭିନ୍ନ ପରିବେଶରେ ଦୀର୍ଘକାଳ ଧରି ଚଳିବା ଫଳରେ କାଳର ପ୍ରଭାବରେ ସେମାନେ ଦୁଇଟି ସ୍ୱତନ୍ତ୍ର ବଂଶର ପ୍ରାଣୀରେ ପରିଣତ ହୋଇ ଅଛନ୍ତି । କୁକୁର ବଂଶର ପୂର୍ବ ପୁରୁଷମାନେ ଶିକାରୀ ଜୀବନ ଗ୍ରହଣ କରିବାରୁ ସେମାନଙ୍କୁ ଶିକାର ପଛରେ କ୍ଷିପ୍ର ଗତିରେ ଦୌଡ଼ିବାକୁ ହେଲା । ସେମାନଙ୍କର ଶରୀର ଗଠନ ତଦନୁଯାୟୀ ପରିବର୍ତ୍ତିତ ହେଲା । ଗୋଡ଼ ପାତଳ ମାତ୍ର ପେଶୀବଦ୍ଧ ଏବଂ ନଖର କ୍ଷୁଦ୍ର ଓ ଘନ ସନ୍ନିବିଷ୍ଟ ହେଲା । ଅପର ପକ୍ଷରେ ଭାଲୁମାନଙ୍କର ପୂର୍ବ ପୁରୁଷ ଏବ ପରି ତୃଣ ଲତା, ଫଳମୂଳ ଓ ପୋକ ଖାଇ ଜୀବନ ଧାରଣ କଲେ । ମାଂସ ଯେତେବେଳେ ମିଳିଲା ସେତେବେଳେ ଖାଇଲେ ସିନା, ମାତ୍ର ତାହା ତାଙ୍କର ମୁଖ୍ୟ ଖାଦ୍ୟ ହେଲା ନାହିଁ । ଏଭଳି ଜୀବନ ପାଇଁ କ୍ଷିପ୍ର ଗତି ଆବଶ୍ୟକ ନାହିଁ । ବରଂ ଗଛ ଚଢ଼ିବା ଓ ମାଟି ଖୋଳିବା ପାଇଁ ପାଦ ଉପଯୋଗୀ ହେବା ଆବଶ୍ୟକ । ଓଜନଦାର ଦେହକୁ ପାହାଡ଼ ପଥର ଉପର ଦେଇ ଓ ଗଛ ଉପରକୁ ବହନ କରିବା ପାଇଁ ତା'ର ଗୋଡ଼ ସ୍ଥୂଳ । ପଞ୍ଝା ଭିତର ଆଡ଼କୁ ବଙ୍କା ହୋଇଥିବାରୁ ବୃକ୍ଷର ଗଣ୍ଡି ଓ ଶାଖାକୁ ଧରିବାପାଇଁ ତାକୁ ସୁବିଧା ହୁଏ ।

ଭାଲୁ ବଂଶର ପ୍ରାଣୀଙ୍କୁ ଚିହ୍ନିବା ସହଜ । ଏମାନଙ୍କର ମୁଣ୍ଡ ବଡ଼, ଆଖି ଛୋଟ, କାନ ବର୍ତ୍ତୁଳ, ଦେହ ଓଜନିଆ, ଅଙ୍ଗପ୍ରତ୍ୟଙ୍ଗ ଖୁନ୍ଦି ହେଲାପରି ଏବଂ ଲାଞ୍ଜ ଏତେ କ୍ଷୁଦ୍ର ଯେ ଘନ ଓ ଦୀର୍ଘ ଲୋମ ଭିତରେ ପ୍ରାୟ ଦୃଶ୍ୟମାନ ହୁଏ ନାହିଁ । ଏମାନଙ୍କ ପଂଝା କ୍ଷୁଦ୍ର, ଓସାରିଆ ଓ ସେଥିରେ ପାଞ୍ଚଟି ଅଙ୍ଗୁଳି ଥାଏ । ଅଙ୍ଗୁଳିର ନଖର ଲମ୍ବା, ଭିତର ଆଡ଼କୁ ବଙ୍କା ଓ ସଂକୋଚନଶୀଳ ନୁହେଁ । ଭାଲୁ ଆରସିଡ଼ି (Urcidae) ବଂଶ ଅନ୍ତର୍ଭୁକ୍ତ ।

ଭାଲୁର ଘ୍ରାଣ ଶକ୍ତି ପ୍ରବଳ । ଖାଦ୍ୟ ଅନ୍ୱେଷଣରେ ଏହା ତାକୁ ବିଶେଷ ସାହାଯ୍ୟ କରେ । ଏମାନଙ୍କର ଶୁଣିବା ଓ ଦେଖିବା ଶକ୍ତି କ୍ଷୀଣ । ଯେଉଁ ସ୍ତନ୍ୟପାୟୀ ପ୍ରାଣୀମାନେ ଭଲ ଶୁଣି ପାରନ୍ତି, ସେମାନଙ୍କର କରୋଟି (Skull)ର ଶ୍ରବଣ ବୁଟି (auditory bulla) ସାଧାରଣତଃ ସ୍ଫୀତ ଓ ଉତ୍ତମ ବର୍ଦ୍ଧିତ । କର୍ଣ୍ଣ ରନ୍ଧ୍ର ପଛକୁ ଏହି ହାଡ଼ ଉଚ୍ଚା ହୋଇ ରହିଥାଏ । ଭାଲୁର ଶ୍ରବଣ ବୁଟି ସ୍ଫୀତ ନୁହେଁ । ଭାଲୁ ଗୋଟିଏ ବେଶ ବଡ଼ ପ୍ରାଣୀ ହୋଇଥିଲେ ମଧ୍ୟ ଏହାର ଚକ୍ଷୁ କ୍ଷୁଦ୍ର । ତେଣୁ ସନ୍ଦେହ ହେଲେ, ସେ ପଛ ଦୁଇଗୋଡ଼ରେ ଠିଆ ହୋଇ ପଡ଼ି ଚାରିଆଡ଼କୁ ଅନାଏ । ଦୃଷ୍ଟି ଶକ୍ତି କ୍ଷୀଣ ହୋଇ ଥିବାରୁ ଏହି ଉପାୟରେ ଚାରିଆଡ଼କୁ ନଜର ଦେବା ସୁବିଧା । ବିଭିନ୍ନ ଜାତିର ଭାଲୁଙ୍କଠାରେ ଘ୍ରାଣ ଶକ୍ତିରେ ପ୍ରଭେଦ ଦେଖାଯାଏ । 1·6 କିଲୋମିଟାର (1ମାଇଲ) ଦୂରରେ ଯଦି ମଣିଷଟିଏ ଥାଏ ଓ ସେଇଆଡୁ ପବନ ବହୁଥାଏ, ତେବେ ହିମାଳୟବାସୀ ଲାଲ ଭାଲୁ (Brown Bear) ଗନ୍ଧ ବାରି ଜାଣିପାରେ । ଆମର ପରିଚିତ ସାଧାରଣ ଭାଲୁର ଘ୍ରାଣ ଶକ୍ତି ଅନ୍ୟ ଭାଲୁମାନଙ୍କ ତୁଳନାରେ ସେତେ ପ୍ରଖର ନୁହେଁ । ହିମାଳୟର କଳା ଭାଲୁ (Himalayan black bear) ଲାଲ ଭାଲୁ ଓ ସାଧାରଣ ଭାଲୁ ତୁଳନାରେ ଅଧିକ ଦେଖି ପାରେ ଓ ଶୁଣିପାରେ । ଶିକାରୀ ପ୍ରାଣୀମାନଙ୍କ ପରି ଭାଲୁମାନଙ୍କର ଉତ୍ତମ ବର୍ଦ୍ଧିତ ଶ୍ମଶ୍ରୁ ଲୋମ ନାହିଁ । ଜୀବନ ଧାରଣରେ ଏମାନେ ଘ୍ରାଣ ଶକ୍ତି ଉପରେ ବେଶୀ ନିର୍ଭର କରନ୍ତି । ଏମାନଙ୍କର ଅନ୍ୟ ଇନ୍ଦ୍ରିୟଗୁଡ଼ିକ ସମବର୍ଦ୍ଧିତ ନୁହେଁ । ସେଥିପାଇଁ ଯେଉଁ ପ୍ରାଣୀମାନଙ୍କର ବିଭିନ୍ନ ଇନ୍ଦ୍ରିୟ ଭଲା ଅଧିକ ସମବର୍ଦ୍ଧିତ ସେମାନଙ୍କର ତୁଳନାରେ ଭାଲୁ ମାନ୍ଦା । କୌଣସି ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଭାଲୁ କିପରି ବ୍ୟବହାର କରିବ କହି ହେବ ନାହିଁ । କାରଣ ତା'ର ମାନସିକ ବିକାଶ ପ୍ରାଚୀନ ସ୍ତନ୍ୟପାୟୀ ପ୍ରାଣୀ ପରି ଅଥଚ ସେମାନଙ୍କୁ ଶିକ୍ଷା ଦେଲେ ସେମାନେ ଉଚ୍ଚ ମାନସିକ ଶକ୍ତି ପ୍ରଦର୍ଶନ କରିପାରନ୍ତି । ସର୍କସ ଓ ଚିଡ଼ିଆଖାନାରେ ସେମାନେ ଦେଖାଉଥିବା ଖେଳରୁ ତାହା ସ୍ପଷ୍ଟ ଜଣାପଡ଼େ ।

ଖାଦ୍ୟ ଅନ୍ୱେଷଣରେ ଭାଲୁ ବହୁ ଦୂର ପଥ ଭ୍ରମଣ କରେ । ସେ ଧୀର ପଦକ୍ଷେପରେ ଘୋଷାରି ହୋଇ ଚାଲିଲା ପରି ଲାଗେ । ତା'ର ଚାଲିକୁ "ପାଦ ତଳଚରା" (Plantigrads) ଆଖ୍ୟା ଦିଆଯାଏ । ମନୁଷ୍ୟର

ମଧ୍ୟ ଗ୍ଲି ଏଇପରି । ଏଥିରେ ପୂର ପାଦ ତଳେ ଲଗେ । ମନୁଷ୍ୟ ଓ ଭାଲୁର ପଦ ଚିହ୍ନରେ ସାମଞ୍ଜସ୍ୟ ପ୍ରଭୂତ । ଏଥିପାଇଁ ମାଟି ଓ ବରଫ ଉପରେ ଭାଲୁର ପଦଚିହ୍ନ ଦେଖି ମନୁଷ୍ୟର ବୋଲି ଅନେକ ସମୟରେ ଭ୍ରମ ହୋଇଥାଏ । ଅବଶ୍ୟ ସବୁ ଭାଲୁ ପାଦ ତଳଗ୍ରରୀ ନୁହଁନ୍ତି । ଲାଲ ଭାଲୁ (Brown bear) ଓ ମେରୁ ପ୍ରଦେଶର ଭାଲୁ (Polar bear) ଗ୍ଲିଲା ବେଳେ ଗୋଇଠିକୁ ଭୂମିରୁ ସାମାନ୍ୟ ଉଚ୍ଚରେ ରଖି ଗ୍ଲନ୍ତି; ଅର୍ଥାତ ସେମାନଙ୍କ ଗୋଇଠି ତଳେ ଲଗେ ନାହିଁ । ଅବଶ୍ୟକତା ପଡ଼ିଲେ, ଭାଲୁ ତ୍ୱରିତ ଗତିରେ ଥାକୁଲୁ ମାକୁଲୁ ହୋଇ ଦୌଡେ । ଦେଖିଲେ ମନେ ହୁଏନା ବିରଟ ଦେହ ବହନ କରି ସେ ଦୌଡି ପାରିବ ବୋଲି । ସବୁ ଭାଲୁ ଗଛ ପହଁରି ପାରନ୍ତି ।

ଭାଲୁ ତା'ର ବେଶୀ ଭାଗ ଖାଦ୍ୟ ଭୂମି ଉପରେ ସଂଗ୍ରହ କରେ, ନଚେତ୍ ଭୂମି ଖୋଳି ସେଥିରୁ ସଂଗ୍ରହ କରେ । ସେମାନଙ୍କର ଦୀର୍ଘ ବଙ୍କା ନଖ ଅଗ୍ରପଦରେ ଅପେକ୍ଷାକୃତ ଅଧିକ ଦୀର୍ଘ ହୋଇଥାଏ । ଫଳରେ ଭୂମି ଖନନରେ ତାହା ଅତ୍ୟନ୍ତ ଉପଯୋଗୀ । ଭୂମିରେ ବା ଗଛରେ ସୁଡଙ୍ଗ ଭିତରେ ବାସ କରୁଥିବା କୀଟମାନଙ୍କୁ ଧରିବା ପାଇଁ ଭାଲୁର ଏକ ଅଭିନବ କୌଶଳ ଅଛି । ହୁଙ୍କା ବା ସୁଡ଼ଙ୍ଗଥିବା ଡାଳକୁ ଭାଙ୍ଗିଦେଇ ସେ କୀଟମାନଙ୍କୁ ମୁଖ ଦ୍ୱାରା ଶୋଷି ନିଏ । ଏହାର ଓଠ ସେଥିଲାଗି ଉପଯୋଗୀ । ମାଂସ ଖେଳୀ ପ୍ରାଣୀମାନଙ୍କର ଓଠ ମାଢି ସହିତ ଲାଗିକରି ରହିଥାଏ । ମାତ୍ର ଭାଲୁର ଓଠ ମାଢି ଠାରୁ ସ୍ୱତନ୍ତ୍ର । ଏହାର ଓଠ ଘଡିଣୀଳ ଓ ଆଗଆଡକୁ ପ୍ରସାରିତ ହୋଇ ପାରେ । ମୁଖ ମଧ୍ୟ ଦେଇ ଏହା ବାୟୁକୁ ଜୋରରେ ଶୋଷି ନେଇପାରେ ଓ ବାହାରଆଡ଼କୁ ଛାଡ଼ି ଦେଇପାରେ । ନଖର ସାହାଯ୍ୟରେ ଗଛ ହୁଙ୍କାକୁ ଭାଙ୍ଗି ଦେଇ ଭାଲୁ ଧୂଳି ଓ ଭଙ୍ଗା ଅଂଶକୁ ଫୁଙ୍କିଦେଇ ସଫା କରିଦିଏ । ତା'ପରେ ହୁଙ୍କା ଭିତରେ ଥିବା ଗଛକୁ ପାଟି ଭିତରକୁ ଶୋଷି ଆଣେ । ଏଭଳି ଶୋଷି ଖାଇବାର କ୍ଷମତା ଆମର ସାଧାରଣ ଭାଲୁଠାରେ ବେଶୀ ଦେଖାଯାଏ । ଏପରି ଶୋଷିବା ସମୟରେ ଭାଲୁର ଦୋଳନଶୀଳ ଓପର ଓଠ ନାକ ପୁଡା ସମ୍ମୁଖରେ ଓଇଟି ରହେ । ଫଳରେ ଧୂଳି ବାଲି ଓ ମଇଳା ନାକ ଭିତରେ ପ୍ରବେଶ କରିପାରେ ନାହିଁ । କୀଟ ପତଙ୍ଗମାନଙ୍କୁ ଶୋଷି ଖାଇବା ପାଇଁ ପ୍ରକୃତି ଭାଲୁକ ପାଇଁ ଆଉ ଉପାୟମାନ ଖଞ୍ଜିଛି । ତାହା ହେଲା, ଶ୍ୱାସ ପବନ ଓ ତା' ସହିତ

କ୍ଷୁଦ୍ର ଖାଦ୍ୟ ପ୍ରାଣୀ ଯେପରି ଭଲ ଭବେ ଶୋଷି ହୋଇପାରିବେ ସେଥିଲାଗି ଏହାର ଉପର ପାଟିରେ ମଝି ଯୋଡା କର୍ତ୍ତନ ଦନ୍ତ (Incisor) ନାହିଁ ଏବଂ ମୁଖ ଗହ୍ବରର ଉପର ତାଳୁ ଅଂଶ ଗଭୀର ଭବେ ଅବତଲାକାର । କେତେକ ଜାତି ଭାଲୁଙ୍କର ତାଳୁ ଅବଶ୍ୟ ଚଟାଳିଆ ।



(ଚିତ୍ର ନଂ 43 ମନୁଷ୍ୟ 'ବାମଚିତ୍ର) ଓ ହିମାଳୟର ଜଙ୍ଗାଭାଲୁ ଦକ୍ଷିଣଚିତ୍ର) ର ପଦଚିହ୍ନ ।)

ଭାଲୁମାନେ ବୃକ୍ଷାରୋହଣ କରି ଖାଦ୍ୟ ସଂଗ୍ରହ କରିବାରେ ପଟୁ । ସେମାନଙ୍କର ବଳବାନ ଅଙ୍ଗ, ଗଦିଯୁକ୍ତ ପାଦ ଓ ଦୀର୍ଘ ନଖର ଏଥପାଇଁ

ବେଶ ଉପଯୋଗୀ । ଅବଶ୍ୟ କେତେକ ଜାତି ଭଲ୍ଲୁ ଅନ୍ୟ ଭଲ୍ଲୁଙ୍କ ତୁଳନାରେ ଭଲ ଗଛ ଚଢି ପାରନ୍ତି । ମେରୁ ଅଞ୍ଚଳରେ ଚଢିବା ପାଇଁ ଗଛ ନାହିଁ । ସେଠା ଭଲ୍ଲୁଙ୍କ ପାଦତଳେ ବରଫ ଉପରେ ଗତି କରିବା ଉପଯୋଗୀ ଲୋମ ଥାଏ । ଫଳରେ ବରଫରେ ଚାଲିଲା ବେଳେ ଗୋଡ ଖସିଯାଏ ନାହିଁ । ଆମ ଦେଶର ଲାଲ ଭଲ୍ଲୁ ବର୍ଷର ଅଧିକାଂଶ ସମୟ ହିମାଳୟର ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ପାଦପ ରେଖା (tree line)ର ବହୁ ଉଚ୍ଚରେ ବାସ କରନ୍ତି । ସେମାନେ ନିମ୍ନ ଅଞ୍ଚଳକୁ ଓହ୍ଲାଇଲେ ମଧ୍ୟ ସାଧାରଣତଃ ବୃକ୍ଷାରୋହଣ କରନ୍ତି ନାହିଁ । ଏମାନଙ୍କର ପାଦତଳେ ମଧ୍ୟ ଲୋମ ଥାଏ । ଯେଉଁ ଭଲ୍ଲୁ ଗଛ ଚଢନ୍ତି, ଯଥା—ହିମାଳୟର କଳା ଭଲ୍ଲୁ (Himalayan black bear), ମାଲୟର ଭଲ୍ଲୁ (Malay bear) ଓ ଆମର ସାଧାରଣ ଭଲ୍ଲୁଙ୍କର ପାଦତଳ ଲୋମହୀନ । ଆହୁରି ମଧ୍ୟ ଏମାନଙ୍କର ଅଗ୍ରପାଦ ଭିତର ଆଡକୁ ଅଧିକ ବଙ୍କା ଫଳରେ ଗଛକୁ ଜାବୁଡି ଧରି ଚଢିବା ଲାଗି ଏହା ବିଶେଷ ସହାୟକ ।

ଭଲ୍ଲୁ ମୁଖ୍ୟତଃ ଉଦ୍ଭିଦଭୋଜୀ ଓ କୀଟଭୋଜୀ ହେଲେ ମଧ୍ୟ ସେମାନେ ବେଳେବେଳେ ଅନ୍ୟ ପଶୁକୁ ଆକ୍ରମଣ କରି ତା'ର ମାଂସ ଖାନ୍ତି । ଭଲ୍ଲୁ କିପରି ଅନ୍ୟ ଜନ୍ତୁମାନଙ୍କୁ ମାରେ ସେ ବିଷୟରେ ଏକ ବିଶ୍ୱାସ ରହିଅଛି । ଭଲ୍ଲୁ ତା'ର ବଳିଷ୍ଠ ବାହୁଦ୍ୱାରା ଆଲିଙ୍ଗନ କରି ମାରେ ବୋଲି ଲୋକଙ୍କର ବିଶ୍ୱାସ । "ଭଲ୍ଲୁ ଆଲିଙ୍ଗନ" ବୋଲି କଥା ଅଛି । ଏହି ଧାରଣା ଭୁଲ । ଭଲ୍ଲୁ ଆଲିଙ୍ଗନ କରେ ନାହିଁ, ଆଘାତ କରେ । ଅଗ୍ରବାହୁର ଅଗ୍ରଭାଗ ଭିତରଆଡକୁ ବଙ୍କା ହୋଇ ଥିବାରୁ ସେ କୁଣ୍ଢାଇଲା ପରି ଆଘାତ କରେ; ସେଥିପାଇଁ ଏଭଳି ବିଶ୍ୱାସର ଉଦ୍ରେକ ହୋଇଅଛି । ଭଲ୍ଲୁ ଆଘାତ କଲେ ତା'ର ଲମ୍ବା ଲମ୍ବା ଶକ୍ତିଶାଳୀ ନଖଗୁଡ଼ିକ ଦେହ ଭିତରେ ପଶି ଯାଇ ବଡ ବଡ କ୍ଷତ କରି ପକାଏ ।

କୁକୁରଙ୍କ ଦାନ୍ତ ଯେତିକି, ଭଲ୍ଲୁଙ୍କ ଦାନ୍ତ ମଧ୍ୟ ସଂଖ୍ୟାରେ ସେତିକି । ମାତ୍ର ଭଲ୍ଲୁଙ୍କ ଦାନ୍ତ ଅନ୍ୟ ପ୍ରକାରେ ଗଢା । ସେମାନଙ୍କର କଳଦାନ୍ତ ଶକ୍ତ ଓ ତନ୍ତୁବହୁଳ, ଉଦ୍ଭିଦ ଖାଦ୍ୟ ଯଥା—ଚେର, ଘାସ ଓ ଶକ୍ତଖୋଳପାଯୁକ୍ତ ଫଳକୁ ପେଷଣ କରିବା ଉପଯୋଗୀ । କୁକୁର କଳରେ ମାଂସକୁ କାଟିବା ଲାଗି ବଡ ଓ ଉତ୍ତମ ବର୍ଦ୍ଧିତ ଦାରକ ଦନ୍ତ ('Flesh Tooth') ଥାଏ । ମାତ୍ର ଭଲ୍ଲୁ ପାଟିରେ ଏ ପ୍ରକାର ଦାନ୍ତ ଅନ୍ୟ ପେଷଣ (Motar) ଦାନ୍ତଠାରୁ ଭିନ୍ନ ନୁହେଁ ।

ଉତ୍ତର ଗୋଲାର୍ଦ୍ଧ ଭଲ୍ଲୁର ବାସ ଭୂମି । ଏଥିର ବିଭିନ୍ନ ଅଞ୍ଚଳରେ ଅନେକ ଜାତିର ଭଲ୍ଲୁ ବାସ କରନ୍ତି । ମେରୁ ପ୍ରଦେଶରେ ମେରୁ ଭଲ୍ଲୁ (Polar bear) ବାସ କରେ । ମେରୁ ଅଞ୍ଚଳର ଦକ୍ଷିଣରେ ଅର୍ଥାତ୍ ସମଶୀତୋଷ୍ଣ ଅଞ୍ଚଳ ଲାଲଭଲ୍ଲୁ ଓ କଳା ଭଲ୍ଲୁମାନଙ୍କର ବାସ । ସମଶୀତୋଷ୍ଣ ଅଞ୍ଚଳର ଦକ୍ଷିଣକୁ ଭାରତ ଓ ଦକ୍ଷିଣ-ପୂର୍ବ ଏସିଆର ଗ୍ରୀଷ୍ମମଣ୍ଡଳୀୟ ଜଙ୍ଗଲ-ମାନଙ୍କରେ ଦୁଇ ଜାତି ଭଲ୍ଲୁ ବାସ କରନ୍ତି । ସେମାନେ ହେଲେ ଭାରତର ସାଧାରଣ ଭଲ୍ଲୁ, ଏବଂ ବର୍ମା ଓ ମାଳୟ ଦେଶ ସମୂହର 'ମାଳୟ ଭଲ୍ଲୁ' (Malay bear) । ଏସିଆରେ କଳା ଭଲ୍ଲୁ (Black bear) ସମଶୀତୋଷ୍ଣ ଅଞ୍ଚଳରେ ଦେଖାଯିବା ସଙ୍ଗେ ସଙ୍ଗେ କେତେକ ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ମଧ୍ୟ ଦେଖାଯାଏ । ଏହା ଏକମାତ୍ର ଭାଲ୍ଲୁ ଯେ ସମଶୀତୋଷ୍ଣ ଓ ଗ୍ରୀଷ୍ମମଣ୍ଡଳୀୟ ଉଭୟ ଜଳବାୟୁରେ ବାସ କରେ ମେରୁ ପ୍ରଦେଶର ଭଲ୍ଲୁ ଭ୍ରମଣଶୀଳ । ସେମାନେ ବରଫ ଉପରେ, ବରଫ ତରଳିଗଲେ କେତେବେଳେ ପାଣିରେ, କେତେବେଳେ ବରଫାବୃତ ଭୂମି ଉପରେ ଜୀବନ କଟାନ୍ତି । ଲାଲଭଲ୍ଲୁ ଅନୁର୍ବର ଭୂମି, ବୃକ୍ଷହୀନ ପର୍ବତ—ଚୂଡ଼ା ଓ ଜଙ୍ଗଲରେ ବାସ କରନ୍ତି । କଳାଭଲ୍ଲୁ, ସାଧାରଣ ଭଲ୍ଲୁ (Sloth bear) ଓ ମାଳୟ ଭଲ୍ଲୁ ଜଙ୍ଗଲରେ ବାସ କରନ୍ତି । ବିଷୁବ ରେଖାର ଦକ୍ଷିଣରେ କେବଳ ଗୋଟିଏ ଜାତି ଭଲ୍ଲୁ ଦେଖାଯାଏ । ଏହାର ନାମ "ଚଷମା ଆଖିଆ ଭଲ୍ଲୁ" (Spectacleal bear) । ଏହା ଦକ୍ଷିଣ ଆମେରିକାର ମେରୁ ଅଞ୍ଚଳରେ ଅବସ୍ଥିତ ଆଣ୍ଡିଜ୍ ପର୍ବତମାଳାରେ ବାସ କରେ ।

ଉଭୟ ପ୍ରାଚୀନ ଓ ନବ ଗୋଲାର୍ଦ୍ଧର ବିସ୍ତୃତ ନାତିଶୀତୋଷ୍ଣ ଅଞ୍ଚଳରେ ବାସ କରୁଥିବାରୁ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଶ୍ରେଣୀର ଲାଲଭଲ୍ଲୁ ଦେଖିବାକୁ ମିଳନ୍ତି । ଆମେରିକାବାସୀ ରେସ୍ ସବୁଠାରୁ ବଡ଼ ହୁଅନ୍ତି । ଉତ୍ତର ଆମେରିକାର ପଶ୍ଚିମାଞ୍ଚଳବାସୀ ଧୂସର ବାଦାମୀ ଭାଲ୍ଲୁ (Grizzly bear) ଏକ ଶ୍ରେଣୀର ଲାଲଭାଲ୍ଲୁ ଅଟେ । ଏମାନେ ଓଜନରେ 455 କିଲୋଗ୍ରାମ (1000 ପାଉଣ୍ଡ) ଯାଏ ହୁଅନ୍ତି । ଆଲସ୍କାର ଅତିକାୟ ଲାଲଭାଲ୍ଲୁ (Alaskar brown bear)କୁ ତଉଲିଲେ 680 କିଲୋଗ୍ରାମ (1500 ପାଉଣ୍ଡ) ଯାଏ

ହୋଇପାରେ । ଏହା କେବଳ ଯେ ବୃହତ୍ତମ ଭାଲୁ ତାହା ନୁହେଁ, ଏହ ମାଂସହାରୀ ପ୍ରାଣୀମାନଙ୍କ ମଧ୍ୟରେ ମଧ୍ୟ ବୃହତ୍ତମ । ଉତ୍ତରାଞ୍ଚଳବାସୀ ଲାଲ ଭାଲୁ ଦକ୍ଷିଣ ଆଡ଼କୁ ବାସ କରୁଥିବା ଲାଲଭାଲୁଙ୍କ ତୁଳନାରେ ବଡ଼ ହୁଅନ୍ତି । ଲାଲଭାଲୁ ବାସପାଇଁ ପଶ୍ଚିମ ହିମାଳୟ ସବୁଠାରୁ ଦକ୍ଷିଣ ସୀମା । ଏ ଅଞ୍ଚଳରେ ବାସ କରୁଥିବା ଲାଲଭାଲୁ ୟୁରୋପବାସୀ ଲାଲଭାଲୁ ତୁଳନାରେ କ୍ଷୁଦ୍ର । ଅନ୍ୟ ଜାତି ଭାଲୁମାନଙ୍କ ବେଳକୁ ମଧ୍ୟ ସେହି ନିୟମ ଖଟେ । ବେଲୁଚିସ୍ଥାନ ଓ ମାଲୟର ଜଙ୍ଗଲ ଅଞ୍ଚଳବାସୀ ଏସିଆର କଳାଭାଲୁ କେନ୍ଦ୍ର ଓ ଉତ୍ତର ଏସିଆ ଭାଲୁଙ୍କ ତୁଳନାରେ ଛୋଟ ହୁଅନ୍ତି । ଭାରତର ସାଧାରଣ ଭାଲୁ (Sloth bear) ସିଂହଳର ସେହି ଭାଲୁଠାରୁ ବଡ ହୁଅନ୍ତି ।

ସ୍ଥଳବିଶେଷରେ ଲାଲଭାଲୁମାନଙ୍କର ବର୍ଣ୍ଣରେ ପାର୍ଥକ୍ୟ ଦେଖାଯାଏ ୟୁରୋପବାସୀ ଲାଲଭାଲୁ ତୁଳନାରେ ପଶ୍ଚିମ ହିମାଳୟର ଲାଲଭାଲୁର ବର୍ଣ୍ଣ ସାଧାରଣତଃ ଫିକା । ବେଲୁଚିସ୍ଥାନର ଦକ୍ଷିଣାଞ୍ଚଳରେ ତୃଣହୀନ ପାହାଡ଼ରେ ଦେଖାଯାଉଥିବା କଳାଭାଲୁର ରଙ୍ଗ ହାଲୁକା ବାଦାମୀ । ଅର୍ଦ୍ଧ ମରୁଭୂମିକୁ ରହିଁ ଏହି ବର୍ଣ୍ଣ ଆତ୍ମଗୋପନପାଇଁ ଉପଯୋଗୀ । ଅବଶ୍ୟ ଏ ଅଞ୍ଚଳର ଭାଲୁମାନଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ସୀମିତ । ଆମେରିକାର କଳାଭାଲୁଙ୍କର କଳା ଓ ଫିକା ଦାଲ୍ଚିନି ଉଭୟ ବର୍ଣ୍ଣର ଶାବକ ଜନ୍ମହୁଅନ୍ତି । ଏସିଆର କଳାଭାଲୁଙ୍କର ମଧ୍ୟ ସେଇପରି ହୁଅହୁଅନ୍ତ । ଏହାର କାରଣ ଏହି ଯେ କଳା ଭାଲୁ ଦୁଇ ପ୍ରକାର ଜଳବାୟୁ–ନାତିଶୀତୋଷ୍ଣରୁ ବିଷୁବରେଖା ଅଞ୍ଚଳର ଘୋର ଗ୍ରୀଷ୍ମ ଜଙ୍ଗଲରେ ବାସ କରନ୍ତି । ଜଳବାୟୁ ଓ ବାସ ଅନୁସାରେ ବର୍ଣ୍ଣରେ ପ୍ରଭେଦ ହେବା ସ୍ୱାଭାବିକ । ପୁଣି ଶୀତ ଅନୁସାରେ ଭାଲୁଙ୍କର ଲୋମର ଘନତାରେ ମଧ୍ୟ ତାରତମ୍ୟ ଦେଖିବାକୁ ମିଳେ । ବର୍ମା ଓ ମାଲୟ ଅଞ୍ଚଳରେ ବାସ କରୁଥିବା କଳାଭାଲୁର ଲୋମ ନାତିଶୀତୋଷ୍ଣ ଅଞ୍ଚଳର ଭାଲୁଙ୍କ ତୁଳନାରେ ଛୋଟ ଓ ଅଳ୍ପ ଘନ । ଶୀତଦିନେ ମଧ୍ୟ ସେମାନଙ୍କର ଲୋମ ହିମାଳୟ ଅଞ୍ଚଳର ଭାଲୁପରି ଗହଳ ହୁଏ ନାହିଁ ।

ଶୀତକାଳରେ ଯେ କେବଳ ଥଣ୍ଡା ପ୍ରବଳ ତା' ନୁହେଁ ସେତେବେଳେ ଖାଦ୍ୟର ମଧ୍ୟ ଅଭାବ ପଡ଼େ । ସେଥିପାଇଁ ଭାଲୁ ଓ ଅନ୍ୟ କେତେକ ଜାତି ସ୍ତନ୍ୟପାୟୀ ପ୍ରାଣୀ ଶୀତକାଳରେ ନିଷ୍କ୍ରିୟ ଜୀବନ ଯାପନ କରନ୍ତି । ସେମାନେ

କୌଣସି ନିଭୃତ ଗୁହା ବା ଗହ୍ୱରକୁ ଯାଇ ନିଦ୍ରା ଯାନ୍ତି । ଏହାକୁ ଶୀତ–ସୁପ୍ତି (hibernation) ବୋଲଯାଏ ଏପରି ନିଦ୍ରା ସମୟରେ ଭାଲୁ ଜଡ଼ ମୃତ; ପ୍ରାୟ ସମ୍ପୂର୍ଣ୍ଣ ନିଷ୍କ୍ରିୟ । ହୃତ୍‌ପିଣ୍ଡ ଦୁକ୍ ଦୁକ୍ କରୁଥାଏ; ମାତ୍ର ସକ୍ରିୟ ଜୀବନ ବେଳ ତୁଳନାରେ ଏହାର କାର୍ଯ୍ୟ ଅତ୍ୟନ୍ତ ମନ୍ଥର । ସକ୍ରିୟ ଜୀବନ ବେଳେ ଦେହରେ ଯେତେ ଉତ୍ତାପ ରହେ ତା' ତୁଳନାରେ ଏତେବେଳର ଉତ୍ତାପ କମ୍ ହୁଏ । ଶୀତ ନିଦ୍ରା ପୂର୍ବରୁ, ଗ୍ରୀଷ୍ମ ଓ ଶରତ୍ କାଳରେ ସ୍ତନ୍ୟପାୟୀ ପ୍ରାଣୀମାନେ ବହୁତ ଖାନ୍ତି ଏବଂ ମୋଟାସୋଟା ହୋଇଯାନ୍ତି । ସାଧାରଣ ବିଶ୍ୱାସ ଯେ, ସଞ୍ଚିତ ଚର୍ବି ଶୀତ ନିଦ୍ରା ସମୟରେ ସେମାନଙ୍କର ଖାଦ୍ୟ ଗ୍ରହିଦା ପୂରଣକର । ଏହା ସତ୍ୟ ନୁହେଁ । ଶୀତ ସୁପ୍ତି ସମୟରେ ପ୍ରାୟ ସମସ୍ତ ଶରୀର କ୍ରିୟା ବନ୍ଦ ରହେ । ଏଣୁ ସେତେବେଳେ ଏହି ଚର୍ବିକୁ ଦୈହିକ କ୍ରିୟାରେ ଲଗାଇବା ସହଜ ନୁହେଁ । ତା' ଛଡ଼ା ଶୀତ ସୁପ୍ତି ବେଳେ ଶରୀର ପରି ପୋଷଣର ଆବଶ୍ୟକତା ଅତ୍ୟନ୍ତ କମ । ଦେଖାଯାଉଛି, ଶୀତ ଶୀତ–ସୁପ୍ତି ପୂର୍ବେ ଭାଲୁ ଯେତିକି ମୋଟା ଥିଲେ, ସୁପ୍ତିରୁ ଉଠିଲା ବେଳକୁ ପ୍ରାୟ ସେତିକି ମୋଟା ଅଛନ୍ତି । ସୁପ୍ତି ପରେ ବସନ୍ତକାଳର ସକ୍ରିୟ ଜୀବନ-ବେଳେ ସେମାନଙ୍କର ସଞ୍ଚିତ ଚର୍ବି ଦ୍ରୁତ ବେଗରେ କମିଯାଏ । କାରଣ ଏତେବେଳେ ସେମାନଙ୍କ ପାଇଁ ଖାଦ୍ୟ ତଥାପି ସହଜ ଲଭ୍ୟ ହୋଇ ନଥାଏ । ଏଣୁ ସେମାନଙ୍କୁ ଯଥେଷ୍ଟ ଶ୍ରମ ସହକାରେ ଖାଦ୍ୟ ସଂଗ୍ରହ କରିବାକୁ ପଡ଼େ । ଶୀତ ଯୋଗୁ ଭାଲୁମାନେ ଶୀତ ସୁପ୍ତି ଯାନ୍ତି ନାହିଁ । ସେମାନେ ଉଷ୍ଣ ଶୋଣିତ ସ୍ତନ୍ୟପାୟୀ ପ୍ରାଣୀ । ଥଣ୍ଡା ତାଙ୍କୁ ନିଷ୍କ୍ରିୟ କରିବା ସହଜ ନୁହେଁ । ଖାଦ୍ୟା–ଭାବ ଯୋଗୁ ସେମାନେ ଶୀତ ନିଦ୍ରା ଯାନ୍ତି । ବିଭିନ୍ନ ଅଞ୍ଚଳରେ ଖାଦ୍ୟାଭାବ ଅନୁସାରେ ସେମାନଙ୍କର ଶୀତସୁପ୍ତି ହୋଇଥାଏ । ତେଣୁ ଏଥିରେ ତାରତମ୍ୟ ଦେଖାଯିବା ସ୍ୱାଭାବିକ । ପ୍ରକୃତ ଖାଦ୍ୟାଭାବ ଘଟିଲେ ଯାଇ ଭାଲୁ ଶୀତ ନିଦ୍ରା ଯାଏ । ଥଣ୍ଡା ଯୋଗୁ ପ୍ରାଣୀ ଶରୀରରେ ଜଡତା ଦେଖାଯାଏ । ଏହା ସୁପ୍ତିରେ ସାହାଯ୍ୟ କରେ । ମଝିରେ ଅଳ୍ପ ସମୟ ପାଇଁ ପାଗ ଉଷ୍ଣ ହେଲେ ସେହି ସମୟ ପାଇଁ ସାମୟିକ ନିଦ୍ରା ଭଙ୍ଗ ହୋଇ ପାରେ, ପୁଣି ଥଣ୍ଡା ପଡ଼ିଲେ ସୁପ୍ତା-ବସ୍ଥା ଆସେ । ୟୁରୋପର କେତେକ ଅଞ୍ଚଳରେ ଲାଲ ଭାଲୁ ଶୀତ ନିଦ୍ରା ଯାନ୍ତି ନାହିଁ; ଶୀତକାଳ ସାରା ସେମାନେ ସକ୍ରିୟ ଥାନ୍ତି । ଏହାର କାରଣ ଏହିଯେ

ସେମାନଙ୍କର ଖାଦ୍ୟର ଅଭାବ ପଡ଼େ ନାହିଁ । ହିମାଳୟ ଅଞ୍ଚଳରେ ଉଚ୍ଚ ତୃଣହୀନ ପାର୍ବତ୍ୟ ଅଞ୍ଚଳରେ ବାସ କରୁଥିବାରୁ ଲାଲଭାଲୁମାନଙ୍କର ଖାଦ୍ୟାଭାବ ଘଟେ । ଏଣୁ ଶୀତକାଳରେ ସେମାନେ ଶୀତନିଦ୍ରା ଯାନ୍ତି । ଖାଦ୍ୟର ଅଭାବ ଅନୁସାରେ ସେମାନେ ନିଦ୍ରା ଯାନ୍ତି । ତଦନୁସାରେ ସୁପ୍ତିର ସମୟ ପ୍ରଭାବିତ ହୋଇଥାଏ । ଉଚ୍ଚ ଅଞ୍ଚଳବାସୀ କଳା ଭାଲୁ ଶୀତକାଳଟି ଅର୍ଦ୍ଧସୁପ୍ତ ଅବସ୍ଥାରେ କୌଣସି ନିଭୃତ ଗହ୍ୱରରେ କଟାଇ ଥାଏ । ମାତ୍ର ଅଧିକାଂଶ କଳାଭାଲୁ ଶୀତକାଳରେ ନିମ୍ନ ଭୂମିକୁ ଓହ୍ଲାଇ ଆସନ୍ତି । ନିମ୍ନ ଭୂମିରେ ଖାଦ୍ୟର ଅଭାବ ପଡୁ ନଥିବାରୁ ସେମାନେ ସାରା ଶୀତକାଳ ସକ୍ରିୟ ଥାନ୍ତି । ଗ୍ରୀଷ୍ମାଞ୍ଚଳରେ ଶୀତ ଦିନେ ଖାଦ୍ୟର ଅଭାବ ଘଟେ ନାହିଁ । ଏଣୁ ଗ୍ରୀଷ୍ମାଞ୍ଚଳବାସୀ ଭାଲୁମାନେ ଶୀତକାଳରେ ସୁପ୍ତି ଯାନ୍ତି ନାହିଁ । ମାତ୍ର ଗ୍ରୀଷ୍ମ ଦେଶମାନଙ୍କରେ ଖରାଦିନେ ଗ୍ରୀଷ୍ମ ପ୍ରବଳ ଓ ବର୍ଷା ପ୍ରବଳ । ତଦନୁସାରେ ସେମାନଙ୍କର ଜୀବନଯାତ୍ରା ଭିନ୍ନ ହୋଇଥାଏ । ଶୀତକାଳରେ ଆମର ସାଧାରଣ ଭାଲୁ ସାଧାରଣତଃ ଖୋଲାରେ ଗଛତଳେ ବା ଉଚ୍ଚ ଘାସର ଆଢୁଆଳରେ ଶୁଏ; ମାତ୍ର ଗ୍ରୀଷ୍ମ ଓ ବର୍ଷା ଦିନେ ସେମାନେ ଗୁହାଭିତରେ ଯାଇ ରହନ୍ତି । ବାହାରେ ଉତ୍ତାପର ପରିବର୍ତ୍ତନ ହେଲେ ମଧ୍ୟ ଗୁହାରେ ଉଣାଅଧିକ ସ୍ଥିର ରହେ । ଆହୁରି ମଧ୍ୟ, ଗୁହାରେ ରହିବାରୁ ସେମାନଙ୍କୁ ମାଛିଙ୍କ ଦାଉରୁ କେତେକ ପରିମାଣରେ ରକ୍ଷା ମିଳେ । ଆମେ ସାଧାରଣ ଭାଲୁ ବାଘ ତୁଳନାରେ ଅଧିକ ସୂର୍ଯ୍ୟତାପ ସହ୍ୟ କରିପାରୁ । ହେଲେହେଁ, ବାଘ ଭାଲୁ ଉଭୟଙ୍କର, ତୃଷା ନିବାରଣ ପାଇଁ ଯଥେଷ୍ଟ ଜଳ ଆବଶ୍ୟକ । ଖରାଦିନେ ଜଳ ଅନ୍ୱେଷଣରେ ସେମାନେ ଦୀର୍ଘ ପଥ ଅତିକ୍ରମ କରନ୍ତି ଓ ଜଙ୍ଗଲର ନଦୀକୂଳ ବାଲିରେ ଗାତଖୋଳି ଜଳ ବାହାର କରି ତୃଷା ନିବାରଣ କରନ୍ତି ।

ଋତୁଭେଦରେ ଜଙ୍ଗଲରେ ବିଭିନ୍ନ ଫଳମୂଳ ହୁଏ । ତଦନୁସାରେ ଭାଲୁମାନଙ୍କର ଖାଦ୍ୟ ଗ୍ରହଣ ଅଭ୍ୟାସରେ ପରିବର୍ତ୍ତନ ପରିଦୃଷ୍ଟ ହୁଏ । ୟୁରୋପର ଲାଲ ଭାଲୁ ହିମାଳୟର ଲାଲ ଭାଲୁ ତୁଳନାରେ ଅଧିକ ମାଂସାସୀ । କଳା ଭାଲୁ ମନୁଷ୍ୟ ବସତି ନିକଟରେ ବାସ କରୁଥିଲେ ଗୃହପାଳିତ ପଶୁଙ୍କ ଉପରେ ଆକ୍ରମଣ କରିଥାନ୍ତି । ଆମର ସାଧାରଣ ଭାଲ ଭିନ୍ନ ଭିନ୍ନ ଋତୁରେ ମିଳୁଥିବା ଭିନ୍ନ ଭିନ୍ନ ପ୍ରକାର ଫଳ ମୂଳ ଖାଏ ।

ଭାଲୁ ରାତ୍ରିଚର । ରାତିରେ ସେମାନେ ଚେରମୂଳ ଖୋଳି ଖାନ୍ତି । ପଥର ତଳେ, ଗଛର ବକଳା ତଳେ ଗାତ ଓ ସୁଡଙ୍ଗ ଭିତରେ ଲୁଚି ରହିଥିବା କ୍ଷୁଦ୍ର କ୍ଷୁଦ୍ର ପ୍ରାଣୀ ଏମାନଙ୍କର ଆହାର । ଭାଲୁମାନଙ୍କର ଦେହ ବେଶ୍ ବଡ଼ ଓ ସେଥିକୁ ଖାଦ୍ୟ ଯୋଗାଇବା ପାଇଁ ସେମାନଙ୍କୁ ବେଶ ପରିଶ୍ରମ କରିବାକୁ ପଡ଼େ । ସେମାନେ ସର୍ବଭୁକ । ଫଳମୂଳ କୀଟ ପତଙ୍ଗ ସେମାନଙ୍କର ଆହାର । ଏ ସବୁ ସଂଗ୍ରହବେଳେ ସେମାନଙ୍କର ପ୍ରତିଦ୍ୱନ୍ଦୀ ଅଳ୍ପ । ସେଥିପାଇଁ ଭାଲୁମାନଙ୍କର ଅନ୍ୟ ପ୍ରାଣୀମାନଙ୍କ ସହିତ ପ୍ରାୟ ସଂଘର୍ଷ ହୁଏ ନାହିଁ । ଅନ୍ୟ ମାଂସାହାରୀ ଭାଲୁକୁ ସାଧାରଣତଃ ଆକ୍ରମଣ କରନ୍ତି ନାହିଁ । ଭାଲୁ ଛୋଟ ଜୀବଟିଏ ନୁହେଁ । ତେଣୁ ଅନ୍ୟ ପ୍ରାଣୀର ଶିକାର ହେବା ପାଇଁ ଭାଲୁ ଉପଯୁକ୍ତ ନୁହେଁ । ଅବଶ୍ୟ କ୍ଷୁଧାତୁର ବାଘ ବା କଲରାପତ୍ରିଆ କିମ୍ବା ଦବେ ବଳିଆ କୁକୁର ବା ନେକେଡ଼ା ହଠାତ ଭାଲୁଟିଏ ହାବୁଡରେ ପାଇଗଲେ ଆକ୍ରମଣ କରି ପାରନ୍ତି , ମାତ୍ର ଏହା ସାଧାରଣ ନୁହେ ।

ଭାଲୁମାନଙ୍କର ପଶୁ ଶତ୍ରୁ ପ୍ରାୟ ନଥିଲେ ମଧ୍ୟ ସେମାନେ ପୃଥିବୀର ଅନେକ ଅଞ୍ଚଳରୁ ଆଜ ଅବଲୁପ୍ତ । ସେମାନଙ୍କର ବଡ଼ ଶତ୍ରୁ ମନୁଷ୍ୟ । ଲାଲ ଭାଲୁ ୟୁରୋପ ଓ ଉତ୍ତର ଆମେରିକାର ଅଧିକାଂଶ ସ୍ଥାନରେ ଆଉ ଦେଖା ଯାଉ ନାହିଁ । ହିମାଳୟର ଯେଉଁ ଅଞ୍ଚଳରେ ଲାଲ ଭାଲୁ ବାସ କରନ୍ତି, ସେ ଅଞ୍ଚଳରେ ମନୁଷ୍ୟ ବାସ କରନ୍ତି ନାହିଁ ଓ ସେମାନଙ୍କର ମନୁଷ୍ୟ ସହିତ ସଂଘର୍ଷ ହୁଏ ନାହିଁ । ଭାରତରେ ଯେଉଁ ଜଙ୍ଗଲମାନଙ୍କରେ ସାଧାରଣ ଭାଲୁ ଭରପୂର ଥିଲେ, ସେ ସବୁ ସ୍ଥାନରୁ ସେମାନେ ପ୍ରାୟ ସମୂଳେ ଉତ୍ପାଟିତ ହୋଇ ଅଛନ୍ତି । ହିମାଳୟ ଅଞ୍ଚଳରେ କଳାଭାଲୁ ମନୁଷ୍ୟ ବସତି ନିକଟସ୍ଥ କେତେକ ଜଙ୍ଗଲରେ ବାସ କରନ୍ତି । ଅନ୍ୟ ଜାତି ଭାଲୁମାନଙ୍କ ତୁଳନାରେ ଏମାନେ ଭଲ ଦେଖି ପାରନ୍ତି ଓ ଶୁଣି ପାରନ୍ତି । ମନୁଷ୍ୟର ଉତ୍ପାତ ଯୋଗୁ ଏମାନେ ସମ୍ପୂର୍ଣ୍ଣ ରୂପେ ରାତ୍ରିଚର ଓ ଅତ୍ୟନ୍ତ ସତର୍କ । ସାଧାରଣତଃ ଭାଲୁ ମନୁଷ୍ୟକୁ ଭୟ କରନ୍ତି ଓ ତାଙ୍କୁ ଏଡାଇ ଯାନ୍ତି । ମାତ୍ର ଶିକାର କରିଥିଲା ବେଳେ ବା ଜଖମ ହେଲେ ସେମାନେ ନୃଶଂସ ଭାବେ ମନୁଷ୍ୟକୁ ଆକ୍ରମଣ କରନ୍ତି । ବେଳେବେଳେ ବିନା କାରଣରେ ଓ ହଠାତ୍ ଭାଲୁ ମନୁଷ୍ୟକୁ ଆକ୍ରମଣ କରେ ।

ଏହାର କାରଣ ହେଉଛି ଯେ ଭାଲୁର ଦୃଷ୍ଟି ଓ ଶ୍ରବଣ ଶକ୍ତି ସେତେ ଭଲ ନୁହେଁ । ହଠାତ୍ ତା' ନିକଟରେ ହାବୁଡ଼ି ଗଲେ ସେ ତରକି ଯାଏ ଏବଂ ଆତ୍ମରକ୍ଷା ପାଇଁ ତୀବ୍ରତାର ସହିତ ଆସି ଆକ୍ରମଣ କରେ । ଏଣୁ ମନୁଷ୍ୟ ପାଇଁ ଭାଲୁ ଏକ ଭୟଙ୍କର ପ୍ରାଣୀ । ମନୁଷ୍ୟ ହଠାତ୍ ଭାଲୁ ହାବୁଡ଼ରେ ପଡ଼ି ଅତି ଜଘନ୍ୟ ଭାବେ ଖଣ୍ଡିଆ ଖାବରା ହେବାର ବହୁ ଦୃଷ୍ଟାନ୍ତ ଅଛି । କଥା ଅଛି, ସୁବିଧା ପାଇଲେ ମଣିଷ ଗ୍ରେର । ସେହିପରି ଲାଲଭାଲୁ ଓ କଳାଭାଲୁ ସୁବିଧା ପାଇଲେ ଗୃହପାଳିତ ପଶୁଙ୍କୁ ଆକ୍ରମଣ କରି ନେଇ ଯାନ୍ତି । ସେତେ-ବେଳେ ସେମାନଙ୍କ ଦାଉ ସମ୍ଭାଳିବା କଷ୍ଟକର ହୁଏ । ଆହୁରି ମଧ୍ୟ, ଭାଲୁ ଆସି ଫଳ ବଗିଚାରେ ପଶି ନଷ୍ଟ କରନ୍ତି ।

ଭାଲୁ ପରସ୍ପର ମଧ୍ୟରେ ସମ୍ପର୍କ ସ୍ଥାପନ ପାଇଁ ଗର୍ଜନ କରନ୍ତି ଓ ଘୋତ୍ ଘୋତ୍ ଶବ୍ଦ କରନ୍ତି । ଖାଦ୍ୟ ଖାଇଲାବେଳେ ନାନା ପ୍ରକାର ଫୁତ୍କାର, ଭୁଡ଼ୁ ଭୁଡ଼ୁ ଶବ୍ଦ ଓ ପିଲାଏ ନାକରେ କାନ୍ଦିଲା ପରି ଶବ୍ଦ କରନ୍ତି । ଖଣ୍ଡିଆ ଖାବରା ହେଲେ ଭାଲୁ ଭୟଙ୍କର ଚିତ୍କାର କରେ । ଯୋଡ଼ିଏ ସାଧାରଣ ଭାଲୁ ପରସ୍ପର ସହିତ ଯୌନ ସଙ୍ଗମରେ ମିଳିତ ହେବା ପାଇଁ ଏକ ପ୍ରକାର ଶ୍ରୁତିମଧୁର ଟଣା ସ୍ୱରରେ ଏକ ଆରେକକୁ ଡାକ ଦିଏ ବୋଲି ଜଣେ ପ୍ରକୃତି-ତତ୍ତ୍ୱବିତ୍ ଥରେ ଶୁଣିଥିବାର ଲିପି ବଦ୍ଧ କରି ଅଛନ୍ତି । ବିଶେଷ କରି ସାଧାରଣ ଭାଲୁ ରମଣ ସମୟରେ ବେଶ ଶବ୍ଦ କରନ୍ତି । ମା' ଭାଲୁମାନେ ଶାବକମାନଙ୍କୁ ଡାକିବା ବେଳେ ଅନ୍ୟ ଏକ ପ୍ରକାର ଶବ୍ଦ କରନ୍ତି ।

ରମଣ ସମୟ ଓ ମା' ଛୁଆ କରିଥିବା ସମୟ ଭିନ୍ନ ଅନ୍ୟ ସମୟରେ ଭାଲୁ ଏକାକୀ ବୁଲୁଥିବାର ଦେଖାଯାନ୍ତି । ଅଧିକାଂଶ ଜାତିର ଭାଲୁଙ୍କର ଗ୍ରୀଷ୍ମ କାଳରେ ରମଣ ହୁଏ ଓ ଶୀତ ଋତୁରେ ଶାବକ ଜାତ ହୁଅନ୍ତି । ପ୍ରବଳ ଶୀତ ଅଞ୍ଚଳରେ ଶୀତ ନିଦ୍ରା ସମୟବେଳେ ଛୁଆ ଜନ୍ମ ହେଉଥିବା ସମ୍ଭବ । ଜାତି ଅନୁସାରେ ଭଲ୍ଲୁର ଗର୍ଭାଧାରଣ କାଳ ସାତ ମାସରୁ ଆଠମାସ ଥରକେ ଦୁଇରୁ ତିନୋଟି ଯାଏ ଶାବକ ଜନ୍ମ ହୁଅନ୍ତି । ଜନ୍ମ ହେଲାବେଳେ ସେମାନେ କ୍ଷୁଦ୍ର ଓ ଲୋମ ହୀନ । ତିନି ସପ୍ତାହ ବା ମାସକ ପରେ ଯାଇ ସେମାନଙ୍କର ଆଖି ଫିଟେ । ରମଣ ପରେ ଅଣ୍ଡିରା ଭାଲୁ

ମାଈକୁ ଛାଡ଼ି ଚାଲିଯାଏ । ଅସହାୟ ପିଲାର ଯତ୍ନର ଭାର ସବୁ ମା' ଉପରେ । ମାସକ ପରେ ପିଲା ମା' ସହିତ ଯିବାକୁ ବଳ ପାଇଥିଲେ ତା' ସହିତ ବାହାରେ । ପୂର୍ବେ କୁହାଯାଇଅଛି, ପିଲା ସହିତ ଥିଲାବେଳେ ମା' ଭାଲୁ ଅତି ଭୟଙ୍କର ଏବଂ ଅତର୍କିତରେ ଆସି ଆକ୍ରମଣ କରେ । ଦୁଇ ତିନି ବର୍ଷର ହେଲା ଯାଏ ଛୁଆ ମା' ସହିତ ରହନ୍ତି । ତା' ପରେ ବୟଃପ୍ରାପ୍ତ ଶାବକ ମା'କୁ ଛାଡ଼ି ଚାଲିଯାନ୍ତି । ଏଥିପାଇଁ ଭାଲୁ କ୍ଷୁଦ୍ର କ୍ଷୁଦ୍ର ଦଳରେ ବୁଲୁଥିବାର ଦେଖାଯାନ୍ତି । ପ୍ରକୃତ ପକ୍ଷେ, ଗୋଟିଏ ଭଲୁ ଦଳ ମା' ଓ ତା'ର ଛୁଆ ଦ୍ୱାରା ଗଠିତ । ଭାଲୁ ବନ୍ଦୀ ଅବସ୍ଥାରେ 40 ରୁ 50 ବର୍ଷ ଯାଏ ବଞ୍ଚେ ।



# ଚତୁର୍ଦ୍ଦଶ ଅଧ୍ୟାୟ

## କୃନ୍ତକ ପ୍ରାଣୀ (RODENTS)

ଗୁଣ୍ଡୁଚିମୂଷା, ବିଲ ଗୁଣ୍ଡୁଚି ମୂଷା(Marmot) ମୂଷା, ଚୁଟିଆ ମୂଷା ଓ ଝିଙ୍କ (Porcupine) ଆଦି ପ୍ରାଣୀଙ୍କୁ ରୋଡ଼େନ୍‌ସିଆ (Rodentia) ପ୍ରାଣୀବର୍ଗଭୁକ୍ତ କରାଯାଏ । ଏମାନେ ସମସ୍ତେ ଖାଦ୍ୟକୁ ଦାନ୍ତରେ କୁଟୁ କୁଟୁ କରି କାଟି ଖ ନ୍ତି । ସ୍ତନ୍ୟପାୟୀ ପ୍ରାଣୀ ବଂଶରେ ଯେତୋଟି ବର୍ଗର ପ୍ରାଣୀ ଅନ୍ତର୍ଭୁକ୍ତ, ସେମାନଙ୍କ ମଧ୍ୟରେ କୃନ୍ତନକାରୀ ବର୍ଗରେ ସବୁଠାରୁ ଅଧିକ ଜାତିର ପ୍ରାଣୀ ଦେଖାଯାନ୍ତି । ସଂଖ୍ୟାରେ ମଧ୍ୟ ଏମାନେ ସବୁଠାରୁ ଅଧିକ । ପ୍ରାୟ ଏକହଜାରରୁ ଅଧିକ ବିଭିନ୍ନ ଜାତିର କୃନ୍ତକ ପ୍ରାଣୀ (Rodent) ପ୍ରାଣୀ ଦେଖାଯାନ୍ତି ଏମାନେ ଅନ୍ୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ତୁଳନାରେ ଛୋଟ ହେଲେ କ'ଣ ହେବ, ସେମାନଙ୍କ ମଧ୍ୟରୁ କେତେକ ପଙ୍ଗପାଳ ପରି ବହୁ ସଂଖ୍ୟାରେ ବୃଦ୍ଧି ପାନ୍ତି ଓ ଖାଦ୍ୟସଂଗ୍ରହ ଅଭିଯାନରେ ବାହାରି ବିସ୍ତର କ୍ଷତି କରନ୍ତି । ଏମାନଙ୍କର ବାସ ଓ ଜୀବନ ଯାପନର ଧାରାରେ ବିଭିନ୍ନତା ପରିଲକ୍ଷିତ ହୁଏ । କେତେକ ଭୂମି ଉପରେ, କେତେକ ବିଲରେ, କେତେକ ବୃକ୍ଷରେ, ପୁଣି କେତେକ ଜଳରେ ବାସ କରନ୍ତି । ତଦନୁସାରେ ସେମାନଙ୍କର ଦୈହିକ ଗଠନରେ ମଧ୍ୟ ବିଭିନ୍ନତା ପରିଲକ୍ଷିତ ହୁଏ । ସେଥିପାଇଁ ମୂଷା ଝିଙ୍କ ଠାରୁ ବହୁତ ଭିନ୍ନ । କେବଳ ଗୋଟିଏ ବିଶେଷ ଲକ୍ଷଣ ଯୋଗୁ ଉପରେ ଉଲ୍ଲିଖିତ ବିଭିନ୍ନ ପ୍ରକାର ପ୍ରାଣୀ ରୋଡେନ୍‌ସିଆ ବର୍ଗ ଅନ୍ତର୍ଭୁକ୍ତ ଏବଂ ଅନ୍ୟ ସମସ୍ତ ପ୍ରକାର ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ଠାରୁ ବାରି ହୋଇଯାନ୍ତି । ତାହା ହେଲା, ସେମାନଙ୍କର ଦାନ୍ତ । ସେମାନଙ୍କର ଖାଦ୍ୟ ଓ ଖାଇବାର ରୀତି ଅନ୍ୟ ସବୁ ପ୍ରାଣୀଙ୍କ ଠାରୁ ଭିନ୍ନ ।

ଦନ୍ତ—ସବୁ ପ୍ରକାର କୃନ୍ତକ ପ୍ରାଣୀ ମୁଖ୍ୟତଃ ତୃଣଭୋଜୀ । ଏପରି କୌଣସି ଉଦ୍ଭିଦ ପଦାର୍ଥ ନାହିଁ ଯାହା ଏହି ପ୍ରାଣୀମାନଙ୍କର ଖାଦ୍ୟ ନୁହେଁ । ଏମାନଙ୍କର ଖାଦ୍ୟ ଖାଇବା ରୀତି ସ୍ୱତନ୍ତ୍ର । ଏମାନେ ସେମାନଙ୍କର ଉତ୍ତମ ରୂପେ ବର୍ଦ୍ଧିତ ଛାମୁଦାନ୍ତ (କର୍ତ୍ତନ ଦନ୍ତ) ସାହାଯ୍ୟରେ ଖାଦ୍ୟକୁ ପ୍ରଥମେ କାଟନ୍ତି, ଘଷନ୍ତି ବା କୋରନ୍ତି । କୃନ୍ତକ ପ୍ରାଣୀଙ୍କର କର୍ତ୍ତନ ଦନ୍ତ ବଟାଳି ପରି ଓ ତୀକ୍ଷ୍ଣ । ଏମାନଙ୍କର ଉପର ପାଟିରେ ଦୁଇଟି ଓ ତଳ ପାଟିରେ ଦୁଇଟି, ଏପରି ଚାରିଗୋଟି ଛାମୁଦାନ୍ତ ଥାଏ । ଏହି ଦାନ୍ତଗୁଡ଼ିକ ହନୁର ଅତି ଭିତରକୁ ଖୋଲ (socket) ଭିତରେ ରହିଥାଏ । ଦୀର୍ଘକାଳ ଧରି ବ୍ୟବହାର ଫଳରେ ଯେପରି ସେସବୁ ଘୋରି ହୋଇ ନଯିବ ଏବଂ ଅଗ ତୀକ୍ଷ୍ଣ ବଟାଳି ପରି ରହିଥିବ ସେଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ରହିଛି । ଏମାନଙ୍କର ଦାନ୍ତ ବଟାଳି ଢାଞ୍ଚରେ ଗଠିତ । ବଟାଳି କୋମଳ ଲୌହ (soft iron) ଦ୍ୱାରା ତିଆରି ହୋଇଥାଏ ଓ ତା'ର ଅଗ୍ରଭାଗରେ ପାତଳ କଠିନ ଇସ୍ପାତ ଥାଏ । କୃନ୍ତନକାରୀ ପ୍ରାଣୀମାନଙ୍କର କର୍ତ୍ତନ ଦନ୍ତ କୋମଳ ଦନ୍ତାସ୍ଥି (dentine) ଦ୍ୱାରା ଗଠିତ ଓ ତା'ର ଅଗ୍ରଭାଗ ଶକ୍ତ କ୍ଷୟରୋଧକ ଏନାମେଲ (enamel) ଦ୍ୱାରା ମଣ୍ଡିତ ହୋଇଥାଏ । ଫଳରେ ଏମାନଙ୍କର ଛାମୁଦାନ୍ତ ସବୁବେଳେ ବଟାଳି ପରି ତୀକ୍ଷ୍ଣ ହୋଇ ରହିଥାଏ । ଏମାନଙ୍କର ଦାନ୍ତ ଅଗ୍ରଭାଗରେ ଥିବା ଏନାମେଲ ଉଜ୍ଜ୍ୱଳ ହଳଦିଆ ବା କମଳା ବର୍ଣ୍ଣ । ଏହି ଦାନ୍ତ ଦୀର୍ଘକାଳ ଧରି ବ୍ୟବହାର ଫଳରେ ଘୋରି ହୋଇଯାଏ ନାହିଁ ଓ ସାରା ଜୀବନକାଳ ବଢ଼ୁଥାଏ । ଏମାନଙ୍କର ଶ୍ୱାଦନ୍ତ (Canine) ଆଦୌ ନାହିଁ । ସେଥିପାଇଁ ପଛ ଓ ଆଗ ଦାନ୍ତ ମଧ୍ୟରେ ଖାଲି ସ୍ଥାନ ରହିଥାଏ । ଏହି ଖାଲିସ୍ଥାନ ଯୋଗୁ ସେମାନଙ୍କର ଖାଦ୍ୟ ଗ୍ରହଣରେ ସୁବିଧା ହୁଏ । ଖାଲିସ୍ଥାନ ରହି ଥିବାରୁ ଦୁଇ ପାଖର ଗାଲ ପାଖାପାଖି ହୋଇ ପ୍ରାୟ ଲାଗି ଯାଇପାରେ; ଫଳରେ ପାଟି ଦୁଇଟି କୋଠରୀରେ ବିଭକ୍ତ ହୋଇପାରେ । ଆଗ କୋଠରୀରେ ରହିଥାଏ କର୍ତ୍ତନ ଦନ୍ତ ଓ ପଛ କୋଠରୀରେ ପେଷଣ ଦନ୍ତ । ଦୁଇ କଡ଼ର ଗାଲକୁ ଭିତରକୁ ଟାଣିନେବା ଦ୍ୱାରା ପାଟି ଦୁଇଟି କୋଠରୀରେ ବିଭକ୍ତ ହୁଏ ଏବଂ ଆଗ କୋଠରୀରୁ ପଛ କୋଠରୀକୁ ପଥ ସଙ୍କୀର୍ଣ୍ଣ ହୋଇଯାଏ । କୃନ୍ତନକାରୀ ପ୍ରାଣୀମାନଙ୍କର ଗାଲ ଭିତର ପାଖରେ ଆଂଶିକ ବା ସମ୍ପୂର୍ଣ୍ଣ ରୂପେ ଲୋମ ଥାଏ ।

ଗାଲ ଦୁଇଟି ଭିତରକୁ ଟାଣି ନେଲେ ପାଟିର ଆଗ ଓ ପଛ କୋଠରୀ ମଧ୍ୟରେ ଥିବା ସଂକୀର୍ଣ୍ଣ ପଥରେ ପାଟି ଭିତରର ଲୋମ ଗଲୁଣି ପରି କାର୍ଯ୍ୟ କରେ । ଫଳରେ ଉତ୍ତମ ରୂପେ ଟୁକୁର ଟୁକୁର ହୋଇ କଟାଯାଇଥିବା ଖାଦ୍ୟ ପଦାର୍ଥ ପାଟିର ଭିତର କୋଠରୀ ମଧ୍ୟକୁ ପଶିପାରେ ଓ ମୋଟା ଖଦଡ଼ା ପଦାର୍ଥ ପରିତ୍ୟକ୍ତ ହୋଇପାରେ । ଏହିପରି ଭବେ ଖାଦ୍ୟ, କର୍ତ୍ତନ ଦାନ୍ତ ସାହାଯ୍ୟରେ କ୍ଷୁଦ୍ରକ୍ଷୁଦ୍ର ଖଣ୍ଡରେ କର୍ତ୍ତିତ ହୋଇ ଲୋମର ଗଲୁଣୀ ଦେଇ ଦ୍ୱୀତୀୟ କୋଠରୀରେ ପହଞ୍ଚେ ଓ ପେଷଣ ଦନ୍ତ ଦ୍ୱାରା ପେଷିତ ହୁଏ । ଏମାନଙ୍କର ପାଟିର ପ୍ରତ୍ୟେକ ପାଖରେ ସାଧାରଣତଃ ତିନୋଟି କରି ପେଷଣ ଦନ୍ତ (molar) ଅର୍ଥାତ୍ ତଳ ଉପର ହୋଇ ଉଭୟ ପାଖରେ ମୋଟ ବାରଟି ଦନ୍ତଥାଏ । ଏହି ଦନ୍ତ ଗୁଡ଼ିକର ଉପର ଅଂଶ ଓସାରିଆ ଓ ସେଥିରେ ଦନ୍ତ-କୋଟି (Cusp) ଥାଏ । ବ୍ୟବହାର ଫଳରେ ଏହି ଦାନ୍ତ ଗୁଡ଼ିକର ଉପର ଅଂଶରେ ଅନୁପ୍ରସ୍ଥ ଭବେ କଠିନ ଏନାମେଲର କ୍ଷୁଦ୍ରକ୍ଷୁଦ୍ର ହୁଡ଼ା (ridge) ହୋଇପାଏ ( ଚିତ୍ର ) । କୃନ୍ତନକାରୀ ପ୍ରାଣୀମାନଙ୍କର ପାଟିର ଏହି ବୈଶିଷ୍ଟ୍ୟ ଯୋଗୁ ସେମାନେ ଅନ୍ୟ ସମସ୍ତ ପ୍ରକାର ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ଠାରୁ ଭିନ୍ନ ।

ପରିବେଶ–କେବଳ ମେରୁ ଅଞ୍ଚଳକୁ ଛାଡ଼ିଦେଲେ ପୃଥିବୀର ସର୍ବତ୍ର କୃନ୍ତକ ପ୍ରାଣୀ ବାସ କରନ୍ତି । ଅତି ଉଚ୍ଚ ସ୍ଥାନରେ ମଧ୍ୟ ସେମାନେ ବାସ କରନ୍ତି । ତିବ୍ବତର ମାଳଭୂମି ସମୁଦ୍ର ସମତଳ ଠାରୁ ୫୫୦୦ ମିଟର (୧୮,୦୦୦ ଫୁଟ) ଉଚ୍ଚତାରେ ଅବସ୍ଥିତ । ସେହି ଅତିଶୟ ଥଣ୍ଡା ଅଞ୍ଚଳରେ ବିଲଗୁଣ୍ଡୁ ଚିମୁଷା (Marmot) ବର୍ଷସାରା ଦେଖାଯାନ୍ତି । ଏମାନେ ସବୁଠାରୁ ଉଚ୍ଚ ସ୍ଥାନରେ ବାସ କରୁଥିବା ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ । କେତେକ ଜାତିର କୃନ୍ତକ ପ୍ରାଣୀ ପରିବେଶ ସହିତ ନିଜକୁ ଖାପ ଖୁଆଇବାରେ ଅଧିକ ଧୁରନ୍ଧର । ମୂଷା ତା'ର ଏକ ଉଦାହରଣ । ଏମାନେ ମନୁଷ୍ୟ ଦ୍ୱାରା ପୃଥିବୀର ବିଭିନ୍ନ ପ୍ରାନ୍ତକୁ ନୀତ ହୋଇ ସେଇ ସବୁ ଅଞ୍ଚଳରେ ବାସିନ୍ଦା ହୋଇ ଯାଇଛନ୍ତି । ଘର ମୂଷା (House rat, Rattus rattus) ଓ ବାଦାମୀ ମୂଷା (Brown rat, Rattus nor vegicus) ପୃଥିବୀର ସବୁ ଅଞ୍ଚଳକୁ ବ୍ୟାପି ଲାଭ କରି ଅଛନ୍ତି ଏବଂ ବିଭିନ୍ନ ପରିବେଶରେ

ଆବଶ୍ୟକତା ଅନୁସାରେ ସେମାନଙ୍କର ବର୍ଣ୍ଣ ଓ ଲୋମର ପରିବର୍ତ୍ତିତ ହୋଇଅଛି । ମିଳୁଥିବା ଖାଦ୍ୟର ପେଷଣ ପାଇଁ ନିୟୋଜିତ ମାଂସପେଶୀର ତଦନୁଯାୟୀ ପରିବର୍ତ୍ତନ ଘଟିଅଛି ଏବଂ ତା' ସଙ୍ଗେ ସଙ୍ଗେ କରୋଟି (Skull) ର ଆକାର ଓ କଳ ଦାନ୍ତର ଦୈର୍ଘ୍ୟରେ ହ୍ରାସ ବୃଦ୍ଧି ଘଟିଅଛି ।

ପରିବେଶର ବର୍ଣ୍ଣ ଅନୁସାରେ ସାଧାରଣ ଘର ମୂଷା (Rattus rattus) ର ଦେହର ବର୍ଣ୍ଣରେ ବିଶେଷ ପ୍ରଭେଦ ଦେଖିବାକୁ ମିଳେ । ଆଦିମ ମୂଷା ମୁକ୍ତ ପ୍ରାନ୍ତର ବା ଜଙ୍ଗଲରେ ବାସ କରୁଥିଲେ । ସେତେବେଳେ ସେମାନଙ୍କର ପେଟ ପାଖ ଧଳା ଓ ପିଠି ପାଖ ଉଜ୍ଜ୍ୱଳ ଲାଲ–ବାଦାମୀ ବା ବାଦାମୀ–ଆସିଆ ଲାଲ ଥିଲା ବୋଲି ବିଶେଷଜ୍ଞମାନଙ୍କର ଧାରଣା । ଏବର ସାଧାରଣ ଘର ମୂଷା ଜଙ୍ଗଲ ବା ଖୋଲା ଜାଗାରେ ବାସ କରୁଥିଲେ, ସେମାନଙ୍କ ବର୍ଣ୍ଣ ଉପରୋକ୍ତ ପରି, ମାତ୍ର ଯେଉଁମାନେ ମନୁଷ୍ୟର ବାସ ଗୃହରେ ରହନ୍ତି ସେମାନଙ୍କର ପେଟ ପାଖର ବର୍ଣ୍ଣ ମଳିନ ଓ ପିଠି ପାଖର ବର୍ଣ୍ଣ ଉଜ୍ଜ୍ୱଳ ନ ହୋଇ ଅନୁଜ୍ଜ୍ୱଳ ଲାଲ–ବାଦାମୀ ବା ବାଦାମୀ–ଆସିଆ ଲାଲ । ଗୁଣ୍ଡୁଚି ମୂଷାମାନଙ୍କର ସ୍ଥାନ ଭେଦରେ ଓ ସେହି ଏକ ସ୍ଥାନରେ ଋତୁ ଭେଦରେ, ଏପରିକି ସେହି ଏକ ସ୍ଥାନରେ ଓ ଏକା ସମୟରେ ବର୍ଣ୍ଣରେ ବିଭିନ୍ନତା ଦେଖିବାକୁ ମିଳେ । ବାସସ୍ଥାନର ଆର୍ଦ୍ରତା ଓ ଶୁଷ୍କତା ଏଭଳି ପ୍ରଭେଦର ଏକ ପ୍ରଧାନ କାରଣ । ନେପାଳି ମୂଷା ( Giant squirrel ) ଭାରତୀୟ ଉପଦ୍ୱୀପର (Perinsular India) ବିଭିନ୍ନ ଅଞ୍ଚଳରେ ଦେଖାଯାନ୍ତି । ବିଶେଷଜ୍ଞମାନେ କହନ୍ତି, ବର୍ଣ୍ଣ ଓ ଅନ୍ୟାନ୍ୟ ଲକ୍ଷଣ ଭେଦରେ ଗୋଟିଏ ଜାତି ହେଲେ ମଧ୍ୟ, ଅନ୍ତତଃ ପକ୍ଷେ ସାତ କିସମର (Variety) ନେପାଳି ମୂଷା ଅଛନ୍ତି : ମାଲବାରର ଆର୍ଦ୍ର ଚୀର ସବୁଜ ଜଙ୍ଗଲରେ ବାସ କରୁଥିବା ନେପାଳି ମୂଷ ର ବର୍ଣ୍ଣ ସବୁଠାରୁ ନିଷ୍ପ୍ରଭ । ପ୍ରତିବର୍ଷ ପତ୍ରଝଡ଼ା ହେଉଥିବା (dry deciduous) ଶୁଷ୍କ ଜଙ୍ଗଲ ଓ ପ୍ରତିବର୍ଷ ପତ୍ରଝଡ଼ା ହେଉଥିବା (mixed deciduous) ମିଶ୍ରିତ ଜଙ୍ଗଲରେ ମଝି ମଝିଆ ବିଭିନ୍ନ ରଙ୍ଗର ନେପାଳି ମୂଷା ବାସ କରନ୍ତି । ଏକା ଜଳବାୟୁରେ ପାଖପାଖ ଅଞ୍ଚଳରେ ବାସ କରୁଥିବା ଭିନ୍ନ ପ୍ରାଣୀମାନଙ୍କର ଦେହର ବର୍ଣ୍ଣରେ ମଧ୍ୟ ପ୍ରଭେଦ ଦେଖିବାକୁ ମିଳେ । ବିଶେଷଜ୍ଞମାନଙ୍କର ଧାରଣା, ମୃତ୍ତିକାର ବର୍ଣ୍ଣ

ଅନୁସାରେ ସେମାନଙ୍କର ବର୍ଣ୍ଣର ପରିବର୍ତ୍ତନ ଘଟିବା ଫଳରେ ସେମାନେ ଆତ୍ମରକ୍ଷା କରିବାରେ ଅଧିକ ସମର୍ଥ ହୁଅନ୍ତି ଏବଂ ଏହି ବର୍ଣ୍ଣ ସେମାନଙ୍କର ରକ୍ଷା ବର୍ଣ୍ଣ (protective colouration) ଅଟେ । ମୃତ୍ତିକାର ବର୍ଣ୍ଣ ଅନୁସାରେ ଦେହର ବର୍ଣ୍ଣ ରୂପାନ୍ତରୀତ ନହେଲେ ପ୍ରାଣୀମାନେ ଶତ୍ରୁର ସହଜ ଶୀକାର ହୁଅନ୍ତି ଓ କାଳକ୍ରମେ ସେ ସ୍ଥାନରୁ ସେମାନଙ୍କର ବଂଶ ଲୋପ ହୁଏ । ତେଣୁ କୌଣସି ପ୍ରାଣୀର ବର୍ଣ୍ଣ ଜଳବାୟୁ ବା ବାସ (ମୃତ୍ତିକା) ବା ଉଭୟ କାରଣ ଦ୍ୱାରା ପ୍ରଭାବିତ ହୋଇଥାଏ ।

ମାରମୋଟ (Marmot) ଅତି ଉଚ୍ଚ ସ୍ଥାନରେ, ତିବ୍ବତରେ, ବାସ କରେ । ଅନ୍ୟ କୃନ୍ତନକାରୀ ପ୍ରାଣୀମାନଙ୍କ ପରି ସେମାନେ ଖାଦ୍ୟ ସଞ୍ଚୟ କରନ୍ତି ନାହିଁ । ଶୀତ କାଳରେ ସେମାନଙ୍କ ପାଇଁ ଖାଦ୍ୟ ଅଭାବ ହୁଏ । ଶୀତଋତୁରେ ସେମାନେ ଶୀତନିଦ୍ରା ଯାନ୍ତି ଓ ତଦ୍ୱାରା ସେମାନଙ୍କର ଜୀବନ ରକ୍ଷା ସମ୍ଭବ ହୁଏ । ହିମାଳୟର ଉଚ୍ଚ ଅଞ୍ଚଳରେ ଭୋଲ୍ (Vole) ବାସ କରନ୍ତି । ଏମାନେ ଶୀତ ଦିନ ପାଇଁ ମାଟିତଳେ ସୁଡଙ୍ଗରେ ଖାଦ୍ୟ ସଞ୍ଚୟ କରି ରଖନ୍ତି । ଖୁବ ସମ୍ଭବତଃ ଆଲପାଇନ ପର୍ବତମାଳାର ଭୋଲମାନଙ୍କ (Alpine voles) ପରି ସେମାନେ ଶୀତକାଳ ସାରା ସକ୍ରିୟ ଥାନ୍ତି । ସଞ୍ଚିତ ଖାଦ୍ୟ ଶେଷ ହୋଇଗଲେ ବରଫ ତଳେ ସୁଡ଼ଙ୍ଗ କରି ଖାଦ୍ୟ ଅନ୍ୱେଷଣରେ ବାହାରନ୍ତି । ଶୀତ ଶେଷରେ ବରଫ ତରଳି ଗଲେ ଏ ସବୁ ସୁଡଙ୍ଗ ପଥ (run) ପଦାକୁ ଦେଖାଯାଏ । ଉଚ୍ଚ ହିମାଳୟ ଅଞ୍ଚଳରେ ଉଡନ୍ତା ଗୁଣ୍ଡୁଚି ମୂଷା (Flying squirrel) ଶୀତନିଦ୍ରା ଯାଏ ନାହିଁ । 3050 ମିଟାର ( 10,000 ଫୁଟ) ଉଚ୍ଚତାରେ ସେମାନେ ଶୀତ ଋତୁରେ ସକ୍ରିୟଭାବେ ଚଳପ୍ରଚଳ କରିବାର ଦେଖା ଯାଇଅଛି ।

ହିମାଳୟ ଅଞ୍ଚଳରେ ଶୀତ ଋତୁରେ ଉଚ୍ଚ ସ୍ଥାନରୁ ନିମ୍ନାଞ୍ଚଳକୁ ଗୁଣ୍ଡୁଚି ମୂଷା ସ୍ଥାନାନ୍ତରକୁ ଗମନ କରନ୍ତି ବୋଲି ବିଶ୍ୱାସ କରାଯାଏ । ଗ୍ରୀଷ୍ମକାଳରେ ମଧ୍ୟ ଏଭଳି ଅଭିଗମନ ପରିଲକ୍ଷିତ ହୁଏ । ଋତୁଅନୁସାରେ ଏହା ଘଟିଲେ ମଧ୍ୟ ପ୍ରକୃତ ପକ୍ଷେ ଜଳବାୟୁର ପରିବର୍ତ୍ତନ ଦ୍ୱାରା ଏହି ପ୍ରବ୍ରଜନ ପ୍ରଭାବିତ ହୁଏ ନାହିଁ; ହୁଏ ମିଳୁଥିବା ଖାଦ୍ୟ ଦ୍ୱାରା । ଋତୁଭେଦରେ ଗଛରେ ଫଳପାଚେ । ଯେଉଁ ଅଞ୍ଚଳରେ ଯେତେବେଳେ ଖାଦ୍ୟ ମିଳେ ତଦନୁସାରେ ସେମାନେ ଉଚ୍ଚ

ସ୍ଥାନରୁ ନିମ୍ନ ଅଞ୍ଚଳକୁ ଓ ନିମ୍ନାଞ୍ଚଳରୁ ଉଚ୍ଚ ସ୍ଥାନକୁ ଯାଇଥାନ୍ତି । ସିକିମରରେ ବହୁରଙ୍ଗୀ ଉଡନ୍ତା ଗୁଣ୍ଡୁଚି ମୂଷା (Parti-Colourd Flying squirrel) ଖାଦ୍ୟ ଅନ୍ୱେଷଣରେ ବିଭିନ୍ନ ଋତୁରେ କେତେବେଳେ ଉଚ୍ଚାଞ୍ଚଳକୁ ପୁଣି କେତେବେଳେ ନିମ୍ନାଞ୍ଚଳକୁ ଉପରତଳ ହେବାର ଦେଖା ଯାଇଥାଏ ।

ଭାରତର ଉପଦ୍ୱୀପ ଅଞ୍ଚଳରେ ଗ୍ରୀଷ୍ମ ଓ ବର୍ଷା ଋତୁରେ ଫସଲ ଓ ଖାଦ୍ୟ ଅନୁସାରେ କର୍ତ୍ତନ ଦନ୍ତୀ ପ୍ରାଣୀମାନଙ୍କର ସଂଖ୍ୟା–ବୃଦ୍ଧିରେ ତାରତମ୍ୟ ଘଟିଥାଏ । ଉଦାହରଣ ସ୍ୱରୂପ ଦକ୍ଷିଣ ଭାରତରେ ଧାନ ଗଛରେ ଶିଁଷା ଧରିଲେ ବିଲମାନଙ୍କରେ ଦକ୍ଷିଣ ଭାରତୀୟ ମୋଲ–ମୂଷା (Southern mole-Rat, Bandicota bengal nsis) ମାନଙ୍କର ଗାତ ବହୁ ସଂଖ୍ୟାରେ ଦେଖିବାକୁ ମିଳେ ଏବଂ ସେହି ଗାତମାନଙ୍କରେ ସେମାନଙ୍କ ଦ୍ୱାରସଞ୍ଚିତ ହୋଇ ରହିଥିବା ଧାନ ରହିଥାଏ । ଧାନ ଅମଳ ଭିନ୍ନ ଅନ୍ୟ ଋତୁରେ, କେନାଲ କୂଳିଆ ସ୍ଥାନରେ ସେମାନଙ୍କର ଗର୍ତ୍ତ ଦେଖାଯାଏ । ସେଥିରେ ଘାସ, ଚେର ଓ ବେଳେବେଳେ ଭୂମିବାସୀ କଙ୍କଡା ଖୋଳ ଦେଖିବାକୁ ମିଳେ । ସୁବିଧାରେ ପାଣିକୁ ଯାଇ ପାରିବେ ବୋଲି ସମ୍ଭବତଃ ଅନ୍ୟ ଋତୁରେ ସେମାନେ କେନାଲ ବନ୍ଧର ମାଟିରେ ଗର୍ତ୍ତ କରି ରହିଥାନ୍ତି । ବର୍ଷା ଋତୁରେ ସାଧାରଣ ଘରମୂଷା (Rattus rattus) ଘରେ ଅଧିକ ସଂଖ୍ୟାରେ ଦେଖାଯାନ୍ତି । କାରଣ ସେତେବେଳେ ବାହାରେ ସେମାନଙ୍କର ବିଲସବୁରେ ପାଣି ପଶିଯାଏ । ବର୍ଷା ଋତୁ ଭିନ୍ନ ଅନ୍ୟ ସମୟରେ ସେମାନେ ପଡିଆ, ହତା ଏବଂ ବଗିଚାମାନଙ୍କରେ ଅଧିକ ସଂଖ୍ୟାରେ ଦେଖାଯାନ୍ତି । ଆହୁରି ମଧ୍ୟ, ଯେଉଁ ଅଞ୍ଚଳ ବର୍ଷା ଋତୁରେ ଜଳମଗ୍ନ ହୁଏ, ସେସବୁ ସ୍ଥାନରେ ମୂଷାମାନେ ଉଚ୍ଚ ସ୍ଥାନ ଦେଖି ବିଲ ଖନନ କରନ୍ତି ।

ମୂଷାମାନେ ଅତି ଦ୍ରୁତଗତିରେ ବଂଶବୃଦ୍ଧି କରନ୍ତି । ଖାଦକ ପ୍ରାଣୀ, ରୋଗ ଓ ପରଜୀବୀ ପ୍ରାଣୀ ଆକ୍ରମଣ ଫଳରେ ସେମାନଙ୍କର ସଂଖ୍ୟା ହ୍ରାସ ହୋଇଥାଏ । ଖାଦ୍ୟର ସ୍ୱଳ୍ପତା ଓ ବହୁଳତା ସେମାନଙ୍କର ବଂଶବୃଦ୍ଧିକୁ ନିୟନ୍ତ୍ରିତ କରେ । ଦୀର୍ଘକାଳ ଧରି ମରୁଡ଼ି ପଡ଼ିଲେ ସେମାନଙ୍କର ସଂଖ୍ୟା କମିଯାଏ । ତା'ପରେ ଭଲ ଫସଲ ହେବାର ଦ୍ୱିତୀୟ ବର୍ଷ ବେଳକୁ ମୂଷା ମାନଙ୍କର ସଂଖ୍ୟା ବହୁତ ବେଶୀ ହୋଇଯାଏ । ଦାକ୍ଷିଣାତ୍ୟରେ ମଧ୍ୟେ ମଧ୍ୟେ

ଏହିପରି ଭାବରେ ମୂଷିକମାନଙ୍କର ସଂଖ୍ୟା ଅତି ଅଧିକ ବୃଦ୍ଧି ପାଇବାର ଦେଖା ଯାଇଥାଏ ।

କୃନ୍ତନକାରୀ ପ୍ରାଣୀମାନେ କ୍ଷୁଦ୍ର ସ୍ତନ୍ୟପାୟୀ ପ୍ରାଣୀହେଲେ କ'ଣ ହେବ, ସେମାନେ ସ୍ୱଭାବତଃ ଅତ୍ୟନ୍ତ ସତର୍କ, ଚତୁର, ଭୟ କାତର, ଚଞ୍ଚଳ, ସଂଗୋପନଶୀଳ ଓ ଅତି ଦ୍ରୁତ ବେଗରେ ବଂଶବୃଦ୍ଧି କରିଥାନ୍ତି । ଏସବୁ ସେମାନଙ୍କର ରକ୍ଷା କବଚ ଏଣୁ ନାନା ପ୍ରାକୃତିକ ବିପର୍ଯ୍ୟୟ ଓ ସେମାନଙ୍କୁ ନିପାତ କରିବା ଲାଗି ମନୁଷ୍ୟର ଅହରହ ଅଭିଯାନ ସତ୍ତ୍ୱେ ସେମାନେ ଯେ କେବଳ ତିଷ୍ଠି ରହି ପାରିଛନ୍ତି ତାହାନୁହେଁ, ବେଳେବେଳେ ସେମାନେ ଅତି ଅଧିକ ସଂଖ୍ୟାରେ ବଂଶବୃଦ୍ଧି କରି, ମନୁଷ୍ୟର ମୂଲ୍ୟବାନ ଫସଲକୁ ଖାଇ ଓ ନଷ୍ଟକରି ଆତଙ୍କ ସୃଷ୍ଟି କରନ୍ତି । ଉପରୋକ୍ତ ସ୍ୱଭାବଗୁଡ଼ିକ ବ୍ୟତୀତ ଆତ୍ମରକ୍ଷା କରିବା ପାଇଁ ଏମାନଙ୍କର କିଛି ଆୟୁଧ ନାହିଁ । ଅବଶ୍ୟ ଝିଙ୍କ ଗୋଟିଏ କୃନ୍ତକ-ପ୍ରାଣୀ ଓ ସେମାନଙ୍କର ଦେହ ଶକ୍ତ ଓ ମୁନିଆଁ କାଠି ଦ୍ୱାରା ଆବୃତ ହୋଇ ଥିବାରୁ ସହଜରେ ଶତ୍ରୁ ସେମାନଙ୍କୁ ମାରି ପାରେ ନାହିଁ। ଆମ ଜଙ୍ଗଲମାନଙ୍କରେ ବଳବାନ୍ ମାଂସାଶୀ ପ୍ରାଣୀ ଯଥା—ବାଘ, ଜଲରପତ୍ରିଆ ଆଦି, ହିଂସ୍ରଜନ୍ତୁ ଝିଙ୍କକୁ ଆକ୍ରମଣ କରିବାକୁ ଯାଇ ଝିଙ୍କ କାଠିରେ ବିଦ୍ଧ ହୋଇ ପ୍ରାଣ ହରାଇବାର ଦୃଷ୍ଟାନ୍ତ ବିରଳ ନୁହେଁ । କୃନ୍ତନକାରୀ ପ୍ରାଣୀମାନେ ସ୍ୱଭାବତଃ ଭୟକାତର ହେଲେ କ'ଣ ହେବ, ଖାଦ୍ୟାଭାବ ଘଟିଲେ ସେମାନେ ଅତ୍ୟନ୍ତ ଦାମ୍ଭିକ ହୋଇ ଉଠନ୍ତି । କ୍ଷୁଧାତୁର ମୂଷା ମନୁଷ୍ୟ ଓ ବଡ଼ ବଡ଼ ପ୍ରାଣୀଙ୍କୁ ଆକ୍ରମଣ କରିବାର ଦେଖାଯାଇଅଛି । ମୂଷା ଧର ହୋଇଥିବା ହାତୀଙ୍କ ଗୋଡକୁ ଆସି କୋରି ଖାଇବାର ଓ ଗୃହପାଳିତ ଘୁଷୁରିକୁ ଆକ୍ରମଣ କରିବାର ଦୃଷ୍ଟାନ୍ତ ଅଛି । ଶସ୍ୟ ବ୍ୟତୀତ ମୂଷା ଅନ୍ୟ କ୍ଷୁଦ୍ର ପ୍ରାଣୀ, ପକ୍ଷୀର ଅଣ୍ଡା ଓ ଶାବକମାନଙ୍କୁ ଖାଆନ୍ତି ।

କୃନ୍ତକ ପ୍ରାଣୀମାନେ ସଂଖ୍ୟାରେ ଅଧିକ ହୋଇଥିବାରୁ ପ୍ରାକୃତିକ ଉପାପଚୟ (economy of Nature) ଭାରସାମ୍ୟରେ ସେମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେମାନେ ମୁଖ୍ୟତଃ ଉଦ୍ଭିଦଜୀବୀ ହୋଇଥିବାରୁ ଉଦ୍ଭିଦ ଜୀବନଉପରେ ସେମାନଙ୍କର ପ୍ରଭାବ ପ୍ରଭୂତ । ସେମାନଙ୍କର ସାଧାରଣ ଅଭ୍ୟାସ ଓ ସ୍ୱଭାବ ଏପରି ଯେ ସେମାନେ ବହୁ ସଂଖ୍ୟାର ଅନ୍ୟ ମାଂସାଶୀ

ପ୍ରାଣୀମାନଙ୍କର ଆହାର ହୋଇଥାନ୍ତି । ବିଗତି ବଂଶର କ୍ଷୁଦ୍ର କ୍ଷୁଦ୍ର ପ୍ରାଣୀ, ନେଉଳ ଉଇଜେଲ (Weasel), ଶିକାରୀ ପକ୍ଷୀ (Birds of prey), ସାପ, ବଡ଼ ବଡ଼ କୃକଳାସ (lizard) ଓ ପରଜୀବୀମାନଙ୍କର ଆକ୍ରମଣ ହେତୁ ବହୁ ସଂଖ୍ୟାରେ କୃନ୍ତକ ପ୍ରାଣୀମାନେ ନିହତ ହୁଅନ୍ତି । ତା' ନହେଲେ ଆମର ଜୀବନ ଦୁର୍ବିସହ ହୋଇ ଉଠନ୍ତା । ଯେଉଁଠି ଅବିବେକିତା ଫଳରେ ମନୁଷ୍ୟ ଉପରୋକ୍ତ ପ୍ରାଣୀମାନଙ୍କୁ ନିପାତ ବା ସେମାନଙ୍କର ସଂଖ୍ୟା ହ୍ରାସ କରିଛି, ସେଠାରେ କୃନ୍ତନକାରୀ ପ୍ରାଣୀମାନଙ୍କର ଦୌରାତ୍ମ୍ୟ ସବୁଠାରୁ ଅଧିକ ।

କୃନ୍ତନକାରୀ ପ୍ରାଣୀମାନଙ୍କର ବିଳ ଅନ୍ୟ ଅନେକ ପ୍ରାଣୀମାନଙ୍କୁ ଆବାସ ଯୋଗାଏ । ଝିଙ୍କର ଗର୍ତ୍ତକୁ ପରଷ୍ତ କରି ସେଥିରେ ଗଧିଆ (Hyaena) ରହନ୍ତି । ଅନ୍ୟ କ୍ଷୁଦ୍ର ସ୍ତନ୍ୟପାୟୀ ପ୍ରାଣୀ, ଏପରିକି ବାଦୁଡ଼ି କୃନ୍ତନକାରୀ ପ୍ରାଣୀଙ୍କ ଗର୍ତ୍ତରେ ଆଶ୍ରୟ ନେଇଥାନ୍ତି । ମରୁଭୂମି ମୂଷିକ (Desert gerbille, Meriones hurrianae)–ମାନେ ରହୁଥିବା ଗାତରେ ତାଙ୍କ ସହିତ ଲୁଣିବେଙ୍ଗ (toad), କୋଟକି (beetle) ଓ ଅନ୍ୟ ଛୋଟ ଛୋଟ ଜୀବ ବାସ କରିବାର ଦେଖାଯାଏ । ଧୂଳି ନାଗ ବା କାଳକୂଟ ନାଗ (Sawscaled viper) ସାପ ଏମାନଙ୍କ ଗାତରେ ପଶି ସେମାନଙ୍କୁ ଆହାର କରନ୍ତି ଓ ସେହି ବିଳକୁ ବାସ ରୂପେ ବ୍ୟବହାର କରନ୍ତି ।

ରୋଗିଣା ବା ଅକ୍ଷମ ହୋଇଥିବା ମୂଷାକୁ ଅନ୍ୟ ସୁସ୍ଥ ମୂଷା ଆକ୍ରମଣ କରି ଖାଇଯାନ୍ତି । ଖାଦ୍ୟ ପାଇଁ ଦୁଇଟି ବିଭିନ୍ନ ଜାତିର ମୂଷା ମଧ୍ୟରେ ପ୍ରତିଯୋଗିତା ଫଳରେ ଏକ ଆରେକକୁ ସ୍ଥାନଚ୍ୟୁତ କରିବାର ଦେଖାଯାଇଅଛି । ଇଂଲଣ୍ଡର ସାଧାରଣ ଘରମୂଷା (Common house rat, Rattus rattus) ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରୁ ଆସି ସେଠାରେ ବସବାସ କରିଥିଲା । ସେହିପରି ବାଦାମୀ ମୂଷା (Brown rat, Rattus norvegicus) ଏସିଆର ନାତିଶୀତୋଷ୍ଣ ଅଞ୍ଚଳରୁ ଆସି ଇଂଲଣ୍ଡରେ ପ୍ରବେଶ କରିଥିଲା । ସାଧାରଣ ଘର–ମୂଷା ତୁଳନାରେ ବାଦାମୀ ମୂଷା ଅଧିକ ଶୀତ ସହିଷ୍ଣୁ, ବଳବାନ ଓ ଦୁର୍ଜ୍ଜୟ । ଫଳରେ ବାଦାମୀ ମୂଷା ସାଧାରଣ ଘର–ମୂଷା ଉପରେ ଆକ୍ରମଣ କରି ସେମାନଙ୍କୁ ହଟାଇବାକୁ ଲାଗିଲା । ସେଥିପାଇଁ ଇଂଲଣ୍ଡର

କାଁ ଭାଁ ଅଞ୍ଚଳ ବ୍ୟତୀତ ଅନ୍ୟତ୍ର ବାଦାମୀ ମୂଷା ସାଧାରଣ ଘର ମୂଷାର ସ୍ଥାନ ଅଧିକାର କରିଅଛି ।

ଯେଉଁ ସ୍ତନ୍ୟପାୟୀ ପ୍ରାଣୀମାନେ ମନୁଷ୍ୟ ଉପରେ ପରଜୀବୀ ହୋଇ ଅଛନ୍ତି, ସେମାନଙ୍କ ମଧ୍ୟରେ ମୂଷା ଓ ଚୁଟିଆ ମୂଷା ଶ୍ରେଷ୍ଠ । ସେମାନେ ଏତେ ଦ୍ରୁତ ଗତିରେ ବଂଶବୃଦ୍ଧି କରନ୍ତି ଓ ଏତେ ଧୂର୍ତ୍ତ ଯେ ସେମାନଙ୍କୁ ଦମନ କରିବାକୁ ସମସ୍ତ ପ୍ରକାର ଚେଷ୍ଟା ବିଫଳ ହୋଇଅଛି । ଗୋଟିଏ ଯୋଡ଼ା ମୂଷା ବଂଶବୃଦ୍ଧି କରି ବର୍ଷରେ ଋରିଶହ ମୂଷା ଉତ୍ପାଦନ କରନ୍ତି । ଭାରତରେ କୃଷି ଓ କୃଷିଜାତ ଦ୍ରବ୍ୟର ସେମାନେ କି ବ୍ୟାପକ କ୍ଷତି ଘଟାନ୍ତି, ତାହା ଠିକ୍ ଭାବେ କଳି ହୁଏ ନାହିଁ । ତାହାର ମୂଲ୍ୟାୟନ କଲେ ନିଶ୍ଚୟ କୋଟି କୋଟି ଟଙ୍କା ହେବ । ସେମାନେ ସମସ୍ତ ପ୍ରକାର ଶସ୍ୟ ଖାଆନ୍ତି । ଏମାନଙ୍କ ଯୋଗୁ ବର୍ଷରେ ପ୍ରାୟ ପଚିଶ ଲକ୍ଷ ଟନ ଓଜନର ଖାଦ୍ୟ ନଷ୍ଟ ହୁଏ । ବୀଜ ବପନ କରା ହୋଇଥିବା ସମୟରେ, ଶସ୍ୟ ଗଛର ବିଭିନ୍ନ ବୃଦ୍ଧିକାଳରେ, ଶସ୍ୟ କଟା ବା ଉପୁଡ଼ା ହେବା ସମୟରେ ଓ ସାଇତା ହୋଇଥିବା ସମୟରେ ସବୁ କ୍ଷେତ୍ରରେ ମୂଷିକମାନଙ୍କର ଦୌରାତ୍ମ୍ୟ ସହିବାକୁ ପଡିଥାଏ । ସାଗ ସବଜି ଓ ଫଳ ଗଛମାନଙ୍କର ମଧ୍ୟ ସେମାନେ ବିସ୍ତର କ୍ଷତି କରନ୍ତି । ସେମାନଙ୍କ ଯୋଗୁ କୁକୁଡ଼ା ଓ ଅନ୍ୟ ଜୀବଜନ୍ତୁ ପାଳନରେ ବାଧା ଉପୁଜି ଥାଏ । ସେମାନେ ଖାଆନ୍ତି ଯେତେ ତା'ଠୁ ନଷ୍ଟ କରନ୍ତି ବେଶୀ । ବୀଜ ସହିତ ସେମାନଙ୍କର ମଳ ଓ ଅନ୍ୟାନ୍ୟ କାଟିଥିବା ପଦାର୍ଥ ମିଶିବା ଫଳରେ ତାହା ଅଖାଦ୍ୟ ହୋଇଯାଏ । ଭାରତରେ ମୂଷାଙ୍କ ସଂଖ୍ୟା ଦୁଇଶହ ଋଳିଶ କୋଟି ବୋଲି ଆନୁମାନିକ ହିସାବ କରଯାଇଅଛି ।

ମୂଷା ଯେ କେବଳ ଆମର ଶସ୍ୟ ଭଣ୍ଡାରକୁ ଲୁଟ କରନ୍ତି ତା' ନୁହେଁ, ସେମାନଙ୍କ ଯୋଗୁ ମନୁଷ୍ୟ ଓ ବିଭିନ୍ନ ଗୃହ ପାଳିତ ପଶୁ ରୋଗାକ୍ରାନ୍ତ ହୋଇ ପ୍ରାଣ ହରାଇ ଥାନ୍ତି । ପ୍ଲେଗ ରୋଗ ଆକ୍ରମଣରେ ଅତୀତରେ ୟୁରୋପ ଓ ଭାରତରେ ହଜାର ହଜାର ସଂଖ୍ୟାରେ ଲୋକଙ୍କର ମୃତ୍ୟୁ ଘଟିଅଛି । ମୂଷିକ-ପୋତକ (Rat flea) ଗୋଟିଏ ପ୍ରକାର କୀଟ । ସେମାନେ ମୂଷିକମାନଙ୍କ ଲୋମ ଭିତରେ ବାସ କରି ତା'ର ରକ୍ତ ପାନ କରନ୍ତି । ମୂଷିକମାନଙ୍କ ଠାରେ ପ୍ଲେଗ ବେମାରୀ ହୁଏ । ସେଥିରେ ସେମାନେ ମରି ଶୁଅନ୍ତି । ଯେଉଁ ମୂଷିକ-

ପୋତକ ପ୍ଲେଗ ରୋଗାକ୍ରାନ୍ତ ମୂଷା ଦେହରୁ ରକ୍ତ ପାନ କରିଥାଏ, ସେ ଅନ୍ୟ ସୁସ୍ଥ ମୂଷାଙ୍କ ଦେହରୁ ରକ୍ତ ଖାଇଲାବେଳେ, ସୁସ୍ଥ ମୂଷା ରୋଗାକ୍ରାନ୍ତ ହୁଏ । ମହାମାରୀ ସମୟରେ ହଜାର ହଜାର ସଂଖ୍ୟାରେ ମୂଷା ମରି ଶୁଅନ୍ତି । ପ୍ଲେଗ ଜୀବାଣୁ ବହନକାରୀ ପୋତକ ମନୁଷ୍ୟକୁ ଦଂଶନ କଲେ ମନୁଷ୍ୟ ପ୍ଲେଗ ରୋଗାକ୍ରାନ୍ତ ହୋଇ ମୃତ୍ୟୁ ବରଣ କରେ । ମୂଷିକ–ପୋତକ ଅନ୍ୟ କୃନ୍ତନକାରୀ ପ୍ରାଣୀ (rodents) ଏବଂ ଘୋଡ଼ା, କୁକୁର ଶୂକର ଓ ମାଙ୍କଡ଼ଙ୍କୁ ମଧ୍ୟ ଆକ୍ରମଣ କରି ସେମାନଙ୍କ ଶରୀରକୁ ପ୍ଲେଗ ଜୀବାଣୁ ସ୍ଥାନାନ୍ତରିତ କରିଥାଏ । ଯେଉଁ ମୂଷାମାନଙ୍କ ଯୋଗୁ ଭାରତରେ ପ୍ଲେଗ ରୋଗ ହୁଏ, ସେମାନେ ହେଲେ ସାଧାରଣ ଘର ମୂଷା (Common house rat, Rattus rattus), ବାଦାମୀ ମୂଷା (Brown rat, Rattus norvegicus), ଚୁଟିଆ ମୂଷା (House mouse, Mus musculus), ଗାତୁଆ ମୂଷା (Indian mole rat, Bandicota bengalensis), ଓ ପଢ଼ିଆ ମୂଷା (Bandicoot rat, Bandicota indica)। ଗୁଣ୍ଡୁଚିମୂଷା ମୂଷା ପରି ମନୁଷ୍ୟର ଏକ ସହବାସୀ । ତଫାତ୍ ଭିତରେ ମୂଷା ମନୁଷ୍ୟ ଗୃହରେ ବାସ କରେ, ଗୁଣ୍ଡୁଚିମୂଷା ମନୁଷ୍ୟର ବାସଗୃହ ବାହାରେ ବାସ କରନ୍ତି । ଗୁଣ୍ଡୁଚିମୂଷା ମଧ୍ୟ ପ୍ଲେଗ ରୋଗର ବାହକରୂପେ କାର୍ଯ୍ୟ କରନ୍ତି । ମୂଷା–ଜ୍ୱର (rat fever) ନାମକ ରୋଗ ମୂଷା ଦଂଶନରେ ମନୁଷ୍ୟକୁ ହୋଇଥାଏ । ଏଥିରେ ରୋଗୀ ଦୀର୍ଘକାଳ ଧରି ବେମାରିଆ ରହି କ୍ଷୀଣରୁ କ୍ଷୀଣତର ହୋଇଥାଏ । ବେଳେ-ବେଳେ ମୂଷା ଦାର୍ଢ଼ିକ ହୋଇ ଶିଶୁ ଓ ନିଦ୍ରିତ ବ୍ୟକ୍ତିମାନଙ୍କୁ କାମୁଡ଼ିବାର ଦେଖାଯାଇଅଛି । ଘୋଡ଼ାମାନଙ୍କ ଠାରେ ହେଉଥିବା ସଂକ୍ରାମକ ଶର୍ଦ୍ଦିଜ୍ୱର ଏକ ଘୋଡ଼ାଶାଳରୁ ଅନ୍ୟ ଘୋଡ଼ାଶାଳକୁ ମୂଷାମାନଙ୍କ ଦ୍ୱାରା ବ୍ୟାପିଥାଏ ।

ବିଶେଷଜ୍ଞମାନେ ରୋଡେନସିଆ (Rodentia) ପ୍ରାଣୀବର୍ଗକୁ ବିଭିନ୍ନ ପ୍ରକାରେ ଶ୍ରେଣୀବିଭାଗ କରି ଅଛନ୍ତି । ତନ୍ମଧ୍ୟରୁ ମୁଖ୍ୟ ଶ୍ରେଣୀ ଗୁଡ଼ିକର ପ୍ରାଣୀମାନଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦିଆଗଲା ।

ବଂଶ ସିଉରିଡ଼ି (Family Sciuridae) ଗୁଣ୍ଡୁଚିମୂଷା ଓ ମାରମୋଟ (Marmot) ଏହି ଶ୍ରେଣୀଭୁକ୍ତ । ଗୁଣ୍ଡୁଚିମୂଷାକୁ ଅନ୍ୟ ସମସ୍ତ ପ୍ରକାର କୃନ୍ତକ ପ୍ରାଣୀମାନଙ୍କ ଠାରୁ ତିନୋଟି ଲକ୍ଷଣ ଦ୍ୱାରା ପୃଥକ କରା-

ଯାଇପାରେ; ଯଥା—ନହକା ଦେହ, ଲମ୍ବା ବୁଦାଳିଆ ଲାଞ୍ଜ ଓ ବୃକ୍ଷବାସ । କେତେକ ଜ ତି ଗୁଣ୍ଡୁଚିମୂଷା ଆକାଶରେ ଖଣ୍ଡେଦୂର ପବନରେ ଭସି ଭସି ଯାଇ ପାରନ୍ତି । ସେମାନଙ୍କୁ ଉଡନ୍ତା ଗୁଣ୍ଡୁଚିମୂଷା (Flying squirrels) ବୋଲଯାଏ ।

ଉଡନ୍ତା ଗୁଣ୍ଡୁଚିମୂଷା—ଉଡ଼ନ୍ତା ଗୁଣ୍ଡୁଚି ମୂଷାମାନଙ୍କର ହସ୍ତଠାରୁ ପଦ ପର୍ଯ୍ୟନ୍ତ ଏକ ଲୋମଶ ଝିଲ୍ଲୀ ରହିଥାଏ । ଭୂମି ଉପରେ ବା ଗଛରେ ଏମାନେ ସାଧାରଣ ଗୁଣ୍ଡୁଚିମୂଷା ଠାରୁ ଭିନ୍ନ ଜଣା ପଡନ୍ତି ନାହିଁ । ଆଗ ଓ ପଛ ଗୋଡ ଝିଲ୍ଲୀ ସଯୁକ୍ତ ହୋଇଥିବାରୁ ସାଧାରଣ ଗୁଣ୍ଡୁଚିମୂଷା ତୁଳନାରେ ସେମାନେ କେତେକ ପରିମାଣରେ ଖଲେଇ ଖଲେଇ ଚାଲନ୍ତି ଓ ଅପେକ୍ଷାକୃତ ଅଳ୍ପ ଚଞ୍ଚଳ । ସ୍ଥିର ହୋଇ ବସିଥିଲା ବେଳେ ସେମାନଙ୍କର ଝିଲ୍ଲୀ ଅଛି ବୋଲି ଜଣା ପଡେ ନାହିଁ । ଏହା ଇଲାସଟିକ ହୋଇଥିବାରୁ ଦେହକୁ ଲାଗି ରହିଥାଏ । ଗୁଣ୍ଡୁଚିମୂଷା ଯେପରି ଏ ଡାଳରୁ ସେ ଡାଳକୁ ଡିଅଁନ୍ତି, ଉଡନ୍ତା ଗୁଣ୍ଡୁଚିମୂଷା ସେହିପରି ଡାଳରୁ ଶୂନ୍ୟକୁ ଡିଅନ୍ତି । ଆଗ ଏବଂ ପଛ ଗୋଡଗୁଡିକୁ ପ୍ରସାରିତ କରିଦେବା ଫଳରେ ଝିଲ୍ଲୀ ପୂର୍ଣ୍ଣ ରୂପେ ଖୋଲି ଯାଇ ପାରାଚୁଟ ପରି କାମ କରେ । ଏହା ଫଳରେ ଉଡନ୍ତା ଗୁଣ୍ଡୁଚିମୂଷା ଦ୍ରୁତ ଗତିରେ ଓ ସହଜଭାବେ ପବନରେ ଭସି ଭସି ତଳକୁ ଚାଲିଯାଏ । ଏପରି ଭାବେ ସେମାନେ ୩୬ରୁ 54 ମିଟର (40—60 ଫୁଟ) ଦୂର ଯାଏ ଭସି ଭସି ଯାଇ ପାରନ୍ତି । ବାଦୁଡି ବା ପକ୍ଷୀ ପରି ଏମାନେ ଦୀର୍ଘ ସମୟଯାଏ ଉଡି ପାରନ୍ତି ନାହିଁ । ଏହା କେବଳ ଅଧିକ ସମୟ ସ୍ଥାୟୀ ଏକ ଲମ୍ଫ ମାତ୍ର । ଏତେବେଳେ ଏମାନେ ହଠାତ୍ ଦିଗ ପରିବର୍ତ୍ତନ କରିପାରନ୍ତି ନାହିଁ । ଚେପଟା ବକ୍ର (flat curve) ରେଖାରେ କେବଳ ଉଚ୍ଚ ସ୍ଥାନରୁ ତଳକୁ ପବନରେ ଖସି ଆସି ପାରନ୍ତି । ଅବୟବର ଅବସ୍ଥିତିକୁ ପରିବର୍ତ୍ତନ କରିବା ଫଳରେ ଅଗ୍ର ଓ ପଶ୍ଚାତ୍ ଅବୟବକୁ ସଂଯୋଗ କରୁଥିବା ଝିଲ୍ଲୀର ମଧ୍ୟ ଦିଗ ପରିବର୍ତ୍ତନ ଘଟେ । ଉଡନ୍ତା ଗଣ୍ଡୁଚିମୂଷା ଏହିପରି ଭାବେ ନିଜକୁ ଚାଳିତ କରି ଅନ୍ୟ ଗୋଟିଏ ଗଛ ପାଖରେ ପହଞ୍ଚୁ ଉପର ଆଡକୁ ବଙ୍କେଇ ଯାଏ । ବଙ୍କେଇ ଯିବା ଫଳରେ ଗତିରୋଧ ହୁଏ ଓ ସେ ବୃକ୍ଷର କାଣ୍ଡ ବା ଡାଳରେ ସହଜ ଭାବେ ଓହ୍ଲାଇ ପଡ଼ି ଗଛ ଉପର ଆଡକୁ ଦ୍ରୁତ ଗତିରେ ଉଠିଯାଏ ।

ଭାରତରେ ଦେଖାଯାଉଥିବା ଉଡନ୍ତା ଗୁଣ୍ଡୁଚିମୂଷାମାନଙ୍କୁ ଆକାର ଅନୁସାରେ ଦୁଇଭାଗରେ ବିଭକ୍ତ କରାଯାଇପାରେ ଯଥା—ବଡ ଉଡନ୍ତା ଗୁଣ୍ଡୁଚି-ମୂଷା (Large flying squirrel) ଓ କ୍ଷୁଦ୍ର ଉଡ଼ନ୍ତା ଗୁଣ୍ଡୁଚିମୂଷା (Small flying squirrel) । ବଡମାନଙ୍କର ମୁଣ୍ଡ ଓ ଦେହର ଲମ୍ବ ହୁଏ ପ୍ରାୟ 45 ସେଣ୍ଟିମିଟାର (1 ଫୁଟ 6 ଇଞ୍ଚ), ଲାଞ୍ଜ 60 ସେଣ୍ଟିମିଟାର (2 ଫୁଟ) ବା ଅଧିକ । ସାନମାନଙ୍କର ମୁଣ୍ଡ ଓ ଦେହର ଲମ୍ବ ହୁଏ ପ୍ରାୟ 25-30 ସେଣ୍ଟି-ମିଟାର (10-12 ଇଞ୍ଚ ) ।

ଭାରତରେ ଅନେକ ଜାତିର ଉଡନ୍ତା ଗୁଣ୍ଡୁଚିମୂଷା ଦେଖାଯାନ୍ତି । ସେମାନଙ୍କର ସାଧାରଣ ନାମ, ବୈଜ୍ଞାନିକ ନାମ ଓ ବିସ୍ତୃତି ନିମ୍ନରେ ଉଲ୍ଲେଖ କରାଗଲା ।

(କ) ବଡ ଉଡନ୍ତା ଗୁଣ୍ଡୁଚି ମୂଷା—

1. କାଶ୍ମୀର ଲୋମଶ ଉଡନ୍ତା ଗୁଣ୍ଡୁଚି ମୂଷା (Kashmir wolly Flying squirrel), Eupetaurus Cinereus Thomas—ବାସ ହୁନଜା ଓ ଗଲଗିଟ୍ ।

2 ସାଧାରଣ ବୃହତ୍ ଉଡନ୍ତା ଗୁଣ୍ଡୁଚିମୂଷା (Common Giant flying squirrel); Petaurista petaurista (pallas)—ଏହା ଦୁଇ କିସମର । ପ୍ରଥମ କିସମ—ବୃହତ୍ ବାଦାମୀ ଉଡନ୍ତା ଗୁଣ୍ଡୁଚିମୂଷା (Large brown flying squirrel); Petaurista petaurista philippensis (Elliot) । ବାସ—ଗଙ୍ଗାନଦୀର ଦକ୍ଷିଣକୁ ଥିବା ଉପଦ୍ୱୀପର ସମସ୍ତ ବଡ ବଡ ଅରଣ୍ୟାଞ୍ଚଳ । ଏହା ଓଡ଼ିଶାର ଜଙ୍ଗଲମାନଙ୍କରେ ଦେଖିବାକୁ ମିଳେ । ଦ୍ୱିତୀୟ କିସମ—ଲାଲ ଉଡନ୍ତା ଗୁଣ୍ଡୁଚିମୂଷା ( Red flying squirrel); Petaurista petaurista albi venter (Gray) । ଗଙ୍ଗାନଦୀର ଉତ୍ତରକୁ ପଶ୍ଚିମ ହିମାଳୟ ଅଞ୍ଚଳରେ ଦେଖାଯାଏ ।

3. ହଡସନ୍ ଉଡନ୍ତା ଗୁଣ୍ଡୁଚିମୂଷା (Hodson's flying squirrel); Petaurista magnificus ( Hodgson ) । ପୂର୍ବ ହିମାଳୟ ଓ ଆସାମର ଜଙ୍ଗଲରେ ଦେଖାଯାଏ ।

4. ମଝିଆ ବୃହତ୍ ଉଡନ୍ତା ଗୁଣ୍ଡୁଚିମୂଷା (Lesser giant flying squirrel); Petaurista elegans (Muller) । ବାସ—ପୂର୍ବ ହିମାଳୟ ଅଞ୍ଚଳ ।

(ଖ) ସାନ ଉଡନ୍ତା ଗୁଣ୍ଡୁଚିମୂଷା—

5. କାଶ୍ମୀର ଉଡନ୍ତା ଗୁଣ୍ଡୁଚିମୂଷା (Kashmir flying squirrel); Hylopetes fimbriatus (Gray); ବାସ—ପଶ୍ଚିମ ହିମାଳୟ ଅଞ୍ଚଳ । 1830 ମିଟାର (6000 ଫୁଟ) ଉଚ୍ଚ ସ୍ଥାନରେ ଉତ୍ତରରେ ପାଦପ ରେଖା (tree line) ପର୍ଯ୍ୟନ୍ତ ଦେଖାଯାଏ ।

6. ବହୁରଙ୍ଗୀ ଉଡନ୍ତା ଗୁଣ୍ଡୁଚିମୂଷା (Particoloured flying squirrel); Hylopetes alboniger ( Hodgson ), ବିସ୍ତୃତି—ପୂର୍ବ ହିମାଳୟ ଓ ଆସାମ ।

7. ଲୋମଶ—ପାଦ ଉଡନ୍ତା ଗୁଣ୍ଡୁଚି ମୂଷା ( Hairy footed flying squirrel); Belomys pearsoni (Gray), ବିସ୍ତୃତି—ପୂର୍ବ ହିମାଳୟ ଓ ଆସାମ ।

8. କ୍ଷୁଦ୍ର ଟ୍ରାଭନ୍‌କୋର ଉଡନ୍ତା ଗୁଣ୍ଡୁଚି ମୂଷା (Small Travancore flying squirrel); Petinomys fuscocapillus (Jerdon); ଟ୍ରାଭନ୍‌କୋର ଓ ନୀଳଗିରିର ଜଙ୍ଗଲରେ ବାସ କରେ । ଏହି ଜାତିର ମାତ୍ର ଆଉ ଗୋଟିଏ କିସମ (race)ର ଉଡନ୍ତା ଗୁଣ୍ଡୁଚିମୂଷା ସିଂହଳରେ ଦେଖାଯାଏ ।

ଉଡନ୍ତା ଗୁଣ୍ଡୁଚିମୂଷାମାନଙ୍କର ସାଧାରଣ ସ୍ୱଭାବ ଏକା ପ୍ରକାରର । ଜଙ୍ଗଲ ସେମାନଙ୍କର ମୁଖ୍ୟ ବାସ । ସମତଳର ଜଙ୍ଗଲଠାରୁ ପାଦପ ରେଖା (Tree line) ଯାଏ ବିଭିନ୍ନ ଜଙ୍ଗଲରେ ବିଭିନ୍ନ ଜାତି ଗୁଣ୍ଡୁଚିମୂଷା ରହନ୍ତି । କେବଳ କାଶ୍ମୀର ଲୋମଶ ଉଡନ୍ତା ଗୁଣ୍ଡୁଚିମୂଷା ହୁଞ୍ଜା ଓ ଗିଲଗିଟ୍‌ର ଅନୁର୍ବର ପଥୁରିଆ ପାହାଡ଼ ଅଞ୍ଚଳରେ ବାସ କରେ ।

ଅନ୍ୟ ଗୁଣ୍ଡୁଚିମୂଷାମାନେ ଦିବାଚର ହୋଇଥିଲାବେଳେ ଉଡନ୍ତା ଗୁଣ୍ଡୁଚିମୂଷା ରାତ୍ରିଚର । ସନ୍ଧ୍ୟାହେଲେ ସେମାନେ ଆଶ୍ରୟ ସ୍ଥଳରୁ ବାହାରି ଆସନ୍ତି ଓ ଚରିବୁଲି ଭୋର ବେଳକୁ ଫେରିଯାନ୍ତି । ଗଛର କୋରଡ ନହେଲେ

ଗଛପତ୍ର ଭିତରେ ଲୁଚି ରହିବା ସ୍ଥାନ ସେମାନଙ୍କର ଆଶ୍ରୟ ସ୍ଥଳ । କ୍ଷୁଦ୍ର କାଶ୍ମୀର ଉଡ଼ନ୍ତା ଗୁଣ୍ଡୁଚିମୂଷା ଜଙ୍ଗଲରେ ଥିବା ଡାକବଙ୍ଗଳା ଛାଚତଳେ ଏକାଧିକ ଏକ ସାଙ୍ଗରେ ରହିବାର ଦେଖାଯାଏ । ଶୋଇଥିଲାବେଳେ ସେମାନେ ମୁଣ୍ଡକୁ ଆଗ ଓ ପଛ ପାଦ ମଧ୍ୟରେ ଗୁଞ୍ଜି ତା' ଉପରେ ଲାଞ୍ଜକୁ ଗୁଡ଼ାଇ ଦିଅନ୍ତି । ଏତେବେଳେ ଗୁଣ୍ଡୁଚିମୂଷାର ଦେହ ଗୋଟିଏ ବଲପରି ହୋଇଯାଏ । ସେମାନେ ପେଟତଳକୁ କରି ଚା କଡ଼ପଟିଆ ଭାବେ ମଧ୍ୟ ବିଶ୍ରାମ ନିଅନ୍ତି । ବୃହତ ବାଦାମୀ ଉଡନ୍ତା ଗୁଣ୍ଡୁଚିମୂଷା ଖରଦିନେ ପିଠି ଉପରେ ଭର ଦେଇ, ଗୋଡ଼ ଓ ଚର୍ମ ଝିଲୀକୁ ପୂର୍ଣ୍ଣ ବିସ୍ତୃତ କରି ଶୋଇଥାଏ । ଦେହକୁ ଥଣ୍ଡା ରଖିବା ପାଇଁ ଏହା ଏକ ପ୍ରଚେଷ୍ଟା ମାତ୍ର ।



(ଚିତ୍ର ନଂ 65, ବୃହତ୍ ବାଦାମୀ ଉଡନ୍ତା ଗୁଣ୍ଡୁଚିମୂଷା)

ବିଭିନ୍ନ ଜାତିର ଫଳ ଉଡ଼ନ୍ତା ଗୁଣ୍ଡୁଚିମୂଷାଙ୍କ ଆହାର । ସେମାନେ ଗଛର ଛାଲି, ଗଛରୁ ବାହାରି ଶୁଖି ଯାଇଥିବା ଅଠା, କୀଟ ଓ ସେମାନଙ୍କର ଲାର୍ଭା ମଧ୍ୟ ଖାନ୍ତି । ହିମାଳୟ ଅଞ୍ଚଳବାସୀ କ୍ଷୁଦ୍ର ଉଡନ୍ତା ଗୁଣ୍ଡୁଚିମୂଷା ଶଙ୍କୁବୃକ୍ଷ (Conifer)ର ପତ୍ର ଓ କଢ଼ ଖାଇବାର ଦେଖାଯାଏ । ଖାଇଲାବେଳେ ଏମାନେ ସାଧାରଣ ଗୁଣ୍ଡୁଚିମୂଷା ପରି ପିଚ୍ଛ ଉପରେ ବସି ଖାଦ୍ୟକୁ ଆଗ ଦୁଇ ପାଦ ସାହାଯ୍ୟରେ ଧରି ଏପଟ ସେପଟ କରି ଖାଆନ୍ତି ।

ସେମାନେ ପଛ ପାଦରେ ଖାଦ୍ୟକୁ ଧରି ମୁହଁ ପାଖକୁ ମଧ୍ୟ ନେଇ ପାରନ୍ତି । ସେମାନଙ୍କର ପାଟି ସଦାବେଳେ ଖୋଲିଥାଏ । ସେମାନଙ୍କର ବଟାଳି ସଦୃଶ୍ୟ ଛାମୁଦାନ୍ତ ସାହାଯ୍ୟରେ ଶକ୍ତ ପୂଗ (nut) ଜାତୀୟ ଫଳକୁ ଭାଙ୍ଗିଲାବେଳେ କରତରେ କାଟିଲାପରି ଶବ୍ଦ ହୁଏ । ଏବଂ ଏହି ଶବ୍ଦ କିଛିଦୂର ଯାଏ ଶୁଣାଯାଏ । ଡାଳ ଶାଖା ସେମାନଙ୍କର ଖାଦ୍ୟସଂଗ୍ରହ ସ୍ଥାନ, ସେମାନେ ଭୂମି ଉପରେ ସାଧାରଣତଃ ଖାଦ୍ୟ ସଂଗ୍ରହ କରନ୍ତି ନାହିଁ ।

ରାତିରେ ଉଡନ୍ତା ଗୁଣ୍ଡୁଚିମୂଷା ପରସ୍ପରକୁ ଡାକିଲାବେଳେ ଏକ ପ୍ରକାର କ୍ଷୀଣ ଶବ୍ଦ ଲଗ ଲଗ କରିଥାନ୍ତି । ଏ ଶବ୍ଦ କେଉଁଠୁ ଆସୁଛି ଠିକ୍ ବାରି ହୁଏନାହିଁ; କିନ୍ତୁ ଏହି ଶବ୍ଦର ସ୍ଥାନ ଠଉରାଇ ନ ହେଲେ ମଧ୍ୟ ପାଖ ଆଖରେ ଗୁଣ୍ଡୁଚିମୂଷା ଅଛନ୍ତି ବୋଲି ଏଥିରୁ ଜଣାପଡେ । ଭାରତର ଉପଦ୍ୱୀପ ଅଞ୍ଚଳର ବୃହତ୍ ବାଦାମୀ ଉଡନ୍ତା ଗୁଣ୍ଡୁଚିମୂଷା ଉଚ୍ଚ ସ୍ୱରରେ ଚିତ୍କାର ଧ୍ୱନି କରେ ।

ଆମର ଉଡନ୍ତା ଗୁଣ୍ଡୁଚିମୂଷା ମାନଙ୍କର ପ୍ରଜନନ ସ୍ୱଭାବ (breeding habits) ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ସାମାନ୍ୟ । ଗଛ କୋରଡ ସେମାନଙ୍କର ସାଧାରଣ ଆଶ୍ରୟ ସ୍ଥାନ । ମା' ଉଡନ୍ତା ଗୁଣ୍ଡୁଚିମୂଷା କୋରଡ ଭିତରେ ପତ୍ର, ହରିତା (moss), ଲୋମ ଓ ଅନ୍ୟାନ୍ୟ ନରମ ପଦାର୍ଥ ଆଣି ନୀଡ ରଚନା କରିଥାଏ । ବୃହତ ବାଦାମୀ ଉଡନ୍ତା ଗୁଣ୍ଡୁଚିମୂଷା (Petaurista petaurista philppensis) ମାଇ ଅଣ୍ଡିରା ଯୋଡି ଯୋଡି ହୋଇ କୋରଡରେ ବାସ କରିବାର ଦେଖାଯାନ୍ତି । ମାତ୍ର ସେମାନଙ୍କର ଦାମ୍ପତ୍ୟ ଜୀବନ କେତେଦିନ ତାହା ଜଣାନାହିଁ । ଶାବକ ଜନ୍ମ ପୂର୍ବରୁ ପୁରୁଷ ମୂଷା ଗ୍ଲି ଯାଇଥାଏ । ଏବଂ ସେହି କୋରଡରେ କେବଳ ମା' ଓ ଶାବକ ବାସ କରନ୍ତି । ଗଛ କୋରଡ ବ୍ୟତୀତ ଉଡ଼ନ୍ତା ଗୁଣ୍ଡୁଚି ମୂଷା ଅନ୍ୟ ଗୁଣ୍ଡୁଚି ମୂଷାଙ୍କ ପରି ପତ୍ରରେ ତିଆରି ବସାରେ ମଧ୍ୟ ରହନ୍ତି ।

ଉଡନ୍ତା ଗୁଣ୍ଡୁଚି ମୂଷାକୁ ପୋଷ ମନାଇଲେ ପୋଷ ମାନନ୍ତି, ମାତ୍ର ବନ୍ଦୀ ଅବସ୍ଥାରେ ବେଶୀ କାଳ ବଞ୍ଚନ୍ତି ନାହିଁ ।

ଓଡିଶାରେ ବୃହତ୍ ବାଦାମୀ ଉଡ଼ନ୍ତା ଗୁଣ୍ଡୁଚିମୂଷା (P. petaurista philippensis) ଢେଙ୍କାନାଳ, ବଣାଇ (ସମ୍ବଲପୁର ଜିଲ୍ଲା) ମୟୂରଭଞ୍ଜ (ସିମିଳିପାଳ ଓ ସୁନ୍ଦରଗଡର ଜଙ୍ଗଲରେ ଦେଖାଯାନ୍ତି ।

ବଡ଼ ଗୁଣ୍ଡୁଚି ମୂଷା (Giant squirrels)–ଚିନିଜାତିର ବଡ଼ ଗୁଣ୍ଡୁଚିମୂଷା ଭୌଗୋଳିକ ଭାରତରେ ଦେଖାଯାନ୍ତି ।

1. ବେଲଗ ମୂଷା ବା ନେପାଳି ମୂଷା ( Indian Giant squirrel); Ratufa indica (Erxleben) । ପ୍ରାୟ ସାତ କିସମର ବେଲଗ ମୂଷା ଅଛନ୍ତି । ଗଙ୍ଗା ନଦୀର ଦକ୍ଷିଣକୁ ସମଗ୍ର ଉପଦ୍ୱୀପ ଅଞ୍ଚଳରେ ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ଗଛର ଜଙ୍ଗଲ (deciduous), ମିଶ୍ରିତ ପତ୍ରଝଡ଼ା (mixed deciduous) ଓ ଆର୍ଦ୍ର ଚିର ସବୁଜ (moist evergreen) ଜଙ୍ଗଲ ଏମାନଙ୍କର ବାସ । ଏହାର ପିଠି ପାଖର ବର୍ଣ୍ଣ କଷା ବାଦାମୀ; ପେଟ ପାଖ ହାଲୁକା ବାଦାମୀ ।



(ଚିତ୍ର ନଂ 66, ବେଲଗ ମୂଷା)

2. ଧୂସର ନେପାଳି ମୂଷା (Grizzled giant squirrel); Ratufa macroura (Pennant)–ଏହାର ଲାଞ୍ଜର ଉପର ଭାଗ ଧୂସର ବା ବାଦାମୀ ଧୂସର । ସେଥିରେ ଧଳା ଟିପଟିପିଆ ଚିହ୍ନ ଥାଏ । ଏହା ଦକ୍ଷିଣ ଭାରତର ପର୍ବତମାଳା ଓ ସିଂହଳର ଜଙ୍ଗଲରେ ବାସ କରେ ।

3. ମାଲୟ ନେପାଳି ମୂଷା (Malayan Giant squirrel); Ratufa bicolor (Sparrman) । ଏହାର ପିଠି ପାଖର ବର୍ଣ୍ଣ ଘନ

ବାଦାମୀ, ପ୍ରାୟ କଳା କହିଲେ ଚଳେ । ପେଟ ପାଖର ବର୍ଣ୍ଣ ଫିକା ହଳଦିଆ । ଏମାନେ ବର୍ମା ଓ ମାଳୟର ଜଙ୍ଗଲାଞ୍ଚଳରେ ବାସ କରନ୍ତି ।

ବିଭିନ୍ନ ଭାଷାରେ ବୃହତ୍ ଗୁଣ୍ଡୁଚି ମୂଷାଙ୍କ ନାମ–

ହିନ୍ଦି–କାର୍‌ଗଟ, ଗସ୍ସୁ, ମାରଠୀ–ସେକ୍ରା, କାନାଡ଼ି–କେଶଲିଲୁ, ତାମିଲ–ଅନୀଲ ।

ଏମାନଙ୍କର ମୁଣ୍ଡ ଓ ଦେହର ଲମ୍ବ 35-40 ସେଣ୍ଟିମିଟର (14-16 ଇଞ୍ଚ), ଲାଞ୍ଜର ଲମ୍ବ 60 ସେଣ୍ଟିମିଟର (2) ଫୁଟ ।

ବୃହତ୍ ଗୁଣ୍ଡୁଚି ମୂଷାମାନେ ଜଙ୍ଗଲବାସୀ । ସେମାନେ ବଡ଼ ଗଛମାନଙ୍କର ଉପର ଅଂଶରେ ରହନ୍ତି, କ୍ୱଚିତ୍ ତଳକୁ ଓହ୍ଲାନ୍ତି । ଏମାନେ ଡ଼ାଳରୁ ଡ଼ାଳକୁ, ଗଛରୁ ଗଛକୁ ସ୍ୱଚ୍ଛନ୍ଦ ଭାବେ ଡ଼େଇଁ ପାରନ୍ତି । ଡ଼େଇଁଲା ବେଳେ ଚାରି ଗୋଡ଼ ପୂରା ମେଲାଇ ହୋଇଯାଏ । ଥରକେ ଛଅ ମିଟର (20 ଫୁଟ) ଯାଏ ଡ଼ିଅନ୍ତି । ଏମାନଙ୍କର ପ୍ରକୃତି ଚଞ୍ଚଳ । ପ୍ରତ୍ୟୁଷରୁ ବେଶୀ ଖରା ପଡ଼ିଲା ଯାଏ ଓ ଉପର ବେଳା ଖରା କମିଗଲେ, ଏ ସମୟତକ ସେମାନେ ବେଶୀ ଡ଼ିଆଁ ଡ଼େଇଁ କରନ୍ତି । ମଧ୍ୟାହ୍ନ ବୃହତ୍ ଗୁଣ୍ଡୁଚି ମୂଷାମାନଙ୍କର ବିଶ୍ରାମର ସମୟ । ମେଘୁଆ ବା ଅଣ୍ଡା ପାଗ ହୋଇଥିଲେ, ଏ ସମୟରେ ସେ ତା'ର ନୀଡ଼ରେ ବିଶ୍ରାମ ନିଏ ନଚେତ୍ ଚାରିକାତ ମେଲାଇ ତରୁଶାଖାରେ ଶୋଇ-ଥାଏ । ଏ ସମୟରେ ଲମ୍ବା ଲାଞ୍ଜ ତଳକୁ ଝୁଲି ରହିଥାଏ ।

ବୃହତ୍ ଗୁଣ୍ଡୁଚି ମୂଷା ନୀରବ ପ୍ରକୃତିର, ଭୟାଳୁ ଓ ସାବଧାନତା ସହକାରେ ଚଳ ପ୍ରଚଳ ହୁଏ । ଏଣୁ ଗାଢ଼ ଚକ୍ ଚକ୍ ରଙ୍ଗର ହୋଇଥିଲେ ମଧ୍ୟ ବେଲର ମୂଷା ଜଙ୍ଗଲରେ ସହଜରେ ଆଖିରେ ପଡ଼ନ୍ତି ନାହିଁ ।

ବୃହତ୍ ଗୁଣ୍ଡୁଚି ମୂଷା ବଡ଼ ପାଟିରେ ଏକ ପ୍ରକାର ଚିରିଚିରିଆ ଶବ୍ଦ କରନ୍ତି । ଏଥିରୁ ସେମାନଙ୍କର ଉପସ୍ଥିତି ଜଣା ପଡ଼ିଯାଏ । କୌଣସି ପ୍ରକାର ଅନଭ୍ୟସ୍ତ ଦୃଶ୍ୟ ଦେଖିଲେ ଅବା ଶବ୍ଦ ଶୁଣିଲେ ସେମାନେ ଚିତ୍କାର କରି ଏଣେ-ତେଣେ ପଳାଇ ଯିବାକୁ ଚେଷ୍ଟା କରନ୍ତି । ମାଙ୍କଡମାନଙ୍କ ପରି ଏମାନେ ବ୍ୟଥା ପ୍ରକାଶ କରି ବା ସତର୍କ କଲା ପରି ଚିତ୍କାର କରନ୍ତି । ଭୟଭୀତ ହେଲେ ଏମାନେ ଯେ ସବୁବେଳେ ପଳାଇ ଯାନ୍ତି, ତା' ନୁହେଁ, ଧୀର

ସନ୍ତର୍ପଣରେ ଗଛ ଡାଳର ଆର ପଟକୁ [ଅଦୃଶ୍ୟ ପଟକୁ] ଖସି ଚାଲିଯାନ୍ତି ।

ବୃହତ୍ ଗୁଣ୍ଡୁଚି ମୂଷା ଏକାକୀ ବା ଯୋଡି ଯୋଡ଼ି ହୋଇ ବାସ କରନ୍ତି । ଡାଳ ପତ୍ରରେ ଏମାନେ ବଡ଼ ଗୋଲକାର ନୀଡ ରଚନା କରିଥାନ୍ତି । ନହକା ଡାଳ ଭିତରେ ଏହି ନୀଡ ଥାଏ । ଏଣୁ ଓଜନଦାର ମାଂସାଶୀ ପ୍ରାଣୀ ସେ ଡାଳକୁ ଯାଇ ତାଙ୍କ ଉପରେ ଚଡାଉ କରି ପାରେ ନାହିଁ । ଜଙ୍ଗଲରେ ଶରତ୍ ଋତୁରେ ଗଛରୁ ପତ୍ର ଝଡିଗଲେ ଏମାନଙ୍କ ବସା ବାରି ହୋଇଯାଏ କୌଣସି କ୍ଷୁଦ୍ର ଅଞ୍ଚଳ ଭିତରେ ବୃହତ ଗୁଣ୍ଡୁଚି ମୂଷା ଏକାଧିକ ନୀଡ ରଚନା କରେ । ସେଥିରୁ ଗୋଟିଏ ଶିଶୁ ପାଳନ ପାଇଁ ଏବଂ ଅନ୍ୟଗୁଡିକ ଶୟନ ପାଇଁ ବ୍ୟବହୃତ ହୋଇଥାଏ ।

ଭାରତର ସାଧାରଣ ବୃହତ୍ ମୂଷା— ବେଲଗ ମୂଷା ଭାରତର ଉପଦ୍ୱୀପ ଅଞ୍ଚଳରେ ସ୍ଥାନର ଭୌଗୋଳିକ ଅବସ୍ଥିତି ଅନୁସାରେ ଅନ୍ତତଃ ସାତ ବିଭିନ୍ନ କିସମର ହୁଅନ୍ତି ବୋଲି ପୂର୍ବେ କୁହାଯାଇ ଅଛି । ଅନ୍ତତଃ ବର୍ଣ୍ଣ ଦ୍ୱାରା ଏହି ସାତ ପ୍ରକାର ବେଲଗ ମୂଷାକୁ ପୃଥକ୍ କରଯାଇ ପାରେ । ଏମାନଙ୍କୁ ଓଡିଆରେ କାହିଁକି ନେପାଳୀ ମୂଷା କୁହାଯାଏ ଜଣାନାହିଁ ।

## ହିମାଳୟ ଅଞ୍ଚଳର ଗୁଣ୍ଡୁଚିମୂଷା

ନେପାଳ, ସିକିମ୍, ଭୁଟାନ ଓ ଆସାମ ଦେଇ ବର୍ମା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଦୁଇଟି ଜାତିର ଗୁଣ୍ଡୁଚି ମୂଷା ଦେଖାଯାନ୍ତି । ସେମାନେ ହେଲେ କମଳା ପେଟ ହିମାଳୟ ଗୁଣ୍ଡୁଚି ମୂଷା (Orange bellied



(ଚିତ୍ର ନଂ 67, କମଳାପେଟ ହିମାଳୟ ଗୁଣ୍ଡୁଚି ମୂଷା )

Himalayan Squirrel, Dremomys lokriah) ଓ ଧଳାପେଟ ହିମାଳୟ ଗୁଣ୍ଡୁଚି ମୂଷା (Hoary bellied Himalayan Squirrel, Callosciurus pygerythrus) । ଏମାନଙ୍କର ମୁଣ୍ଡ ଓ ଦେହର ଲମ୍ବ 20 ସେଣ୍ଟିମିଟାର [8 ଇଞ୍ଚ], ଲାଞ୍ଜ ତା'ଠୁ ଟିକିଏ ବେଶୀ ଲମ୍ବ । କମଳାପେଟ ଗୁଣ୍ଡୁଚି ମୂଷାର ପିଠି ପଟର ବର୍ଣ୍ଣ ଘନ ଲାଲ ବାଦାମୀ, ସେଥିରେ ବେଳେ-ବେଳେ ଘନ ହଳଦିଆ-ବାଦାମୀ ଚିହ୍ନ ଥାଏ, ପେଟ ପାଖର ବର୍ଣ୍ଣ ଭଣା ଅଧିକ କମଳା ରଙ୍ଗର । ନାସାଗ୍ର ଟିକିଏ ଲମ୍ବାଳିଆ ଓ ଗୋଳିଆ । ଏହା 1525 ମିଟାରରୁ 2745 ମିଟାର (5000 ଫୁଟରୁ 9000 ଫୁଟ) ଉଚ୍ଚତା ଯାଏ ଜଙ୍ଗଲରେ ବାସ କରେ । ଗଛର ନିମ୍ନ ଆଡକୁ ଥିବା କୋରଡରେ ରହେ । ଝଡି ପଡିଥିବା ଫଳ ଖାଇବା ପାଇଁ ତଳକୁ ଆସେ । ଏହା ଏକ ନୀରବ ପ୍ରାଣୀ । ବେଳେ ବେଳେ ବଡ ପାଟିରେ ଡାକଦିଏ ।

ଧଳାପେଟ ଗୁଣ୍ଡୁଚି ମୂଷାର ପିଠ ପାଖର ବର୍ଣ୍ଣ ଧୂସର-ବାଦାମୀ ବା ଫିକା ଲାଲ ବାଦାମୀ । ପେଟ ପାଖର ବର୍ଣ୍ଣ ଧଳା ବା ଧୂସରିଆ ଧଳା । ଏହା ସିକିମର ନିମ୍ନାଞ୍ଚଳରେ 150ରୁ 1525 ମିଟାର (500-5000ଫୁଟ) ଉଚ୍ଚତା ମଧ୍ୟରେ ଘନ ଜଙ୍ଗଲ ଓ ଗ୍ରାମ ନିକଟସ୍ଥ ଜଙ୍ଗଲରେ ବାସ କରେ । ଏମାନେ କମଳା ଖାଇବାକୁ କମଳା ବଗିଚାକୁ ଆସନ୍ତି । କ୍ଷୁଦ୍ର ପ୍ରାଣୀଟିଏ ହେଲେ କ'ଣ ହେବ, ଏହା ଉଚ୍ଚ ସ୍ୱରରେ ଡାକ ଦିଏ । ଗଛର ଉଚ୍ଚ ଭାଗରେ ଘାସ ଓ କାଠିରେ ନୀଡ ରଚନା କରେ ।

## ରେଖାଯୁକ୍ତ ଗୁଣ୍ଡୁଚିମୂଷା

(Striped squirrel)

ପିଠିରେ ଗାର ଥିବା ଗୁଣ୍ଡୁଚି ମୂଷା ଆମର ଅତି ପରିଚିତ । ଉତ୍ତର ଓ ଦକ୍ଷିଣ ଭାରତରେ ଏଭଳି ଦୁଇ ଜାତିର ଗୁଣ୍ଡୁଚି ମୂଷା ଅତି ସାଧାରଣ । ସେମାନେ ହେଲେ ପଞ୍ଚରେଖ ଗୁଣ୍ଡୁଚି ମୂଷା Five Striped palm squirrel) ଓ ତିନିରେଖ ଗୁଣ୍ଡୁଚି ମୂଷା (Three striped palm squirrel) । ହିମାଳୟର ପାଦଦେଶ ଠାରୁ ଭାରତର ଦକ୍ଷିଣ ସୀମା ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳରେ ଏମାନେ ଦେଖାଯାନ୍ତି । ଓଡ଼ିଆ ରାମାୟଣରେ

ଲିଖିତ ଅଛି, ପୁରୁଷୋତ୍ତମ ରାମଚନ୍ଦ୍ର ଅପହୃତା ସତୀ ସୀତାଙ୍କୁ ରାବଣପୁରୀ ଲଙ୍କାରୁ ଉଦ୍ଧାର କରିବା ପାଇଁ ରାମେଶ୍ୱରଠାରେ ସେତୁବନ୍ଧ ପକାଇଥିଲେ । କ୍ଷୁଦ୍ର ଗୁଣ୍ଡୁଚି ମୂଷା ଶ୍ରୀରାମଙ୍କୁ ଏହି ବିରାଟ କାର୍ଯ୍ୟରେ ଅକିଞ୍ଚିତ ହେଲେ ମଧ୍ୟ ସାହାଯ୍ୟ କରିବା ପାଇ ପାଣିରେ ବୁଡ଼ି ଆସି ମାଟିରେ ଗଡ଼ି ବନ୍ଧ



[ ଚିତ୍ର ନଂ 68, ସାଧାରଣ ପଞ୍ଚରେଖ ଗୁଣ୍ଡୁଚିମୂଷା ]

ଉପରେ ଯାଇ ଦେହକୁ ଝାଡୁଥିଲା । ମହାପ୍ରଭୁ ରାମଚନ୍ଦ୍ର ସ୍ନେହରେ ତା' ପିଠି ଆଉଁଶି ଦେଇଥିଲେ । ସେଇଦିନୁ ସେମାନଙ୍କ ପିଠିରେ ରାମଙ୍କ ଅଙ୍ଗୁଳିଗାର ରହିଯାଇଛି ।

ପଞ୍ଚରେଖ ଗୁଣ୍ଡୁଚି ମୂଷା ପିଠିରେ ପାଞ୍ଚଟି ଫିକା ଗାର ଦେଖିବାକୁ ମିଳେ । ସେଥିରୁ ତିନୋଟି ମଝିରେ ଓ କଡ଼ରେ ଗୋଟିଏ ଗୋଟିଏ କରି । ତିନିରେଖ ଗୁଣ୍ଡୁଚି ମୂଷା ପିଠିରେ କେବଳ ତିନୋଟି ଫିକା ରେଖା ଥାଏ । କଡର ରେଖା ଦୁଇଟି ନ ଥାଏ । ପଞ୍ଚରେଖ ଗୁଣ୍ଡୁଚିମୂଷା ଉତ୍ତର ଭାରତର ସାଧାରଣ ଗୁଣ୍ଡୁଚିମୂଷା ଏବଂ ଅପେକ୍ଷାକୃତ ଶୁଷ୍କ ଅଞ୍ଚଳରେ ଦେଖାଯାଏ । ତିନିରେଖ ଗୁଣ୍ଡୁଚିମୂଷା ଦକ୍ଷିଣ ଭାରତ ଏବଂ ପୂର୍ବ ଓ ପଶ୍ଚିମ ଅଞ୍ଚଳର ଅଧିକ ଆର୍ଦ୍ର ସ୍ଥାନର ସାଧାରଣ ଗୁଣ୍ଡୁଚିମୂଷା । ଉଭୟ ଜାତି ଗୁଣ୍ଡୁଚିମୂଷା ଏକା ଅଞ୍ଚଳରେ ମଧ୍ୟ ଦେଖିବାକୁ ମିଳନ୍ତି । ପିଠିର ବର୍ଣ୍ଣ ବ୍ୟତୀତ ଉଭୟ ଗୁଣ୍ଡୁଚିମୂଷାଙ୍କ ଆକାର ଓ ସ୍ୱଭାବ ପ୍ରାୟ ଏକା ପରି । ପଞ୍ଚରେଖ ଗୁଣ୍ଡୁଚିମୂଷା ମନୁଷ୍ୟ ସହିତ ଅଧିକ ଘନିଷ୍ଠ ଭାବେ ବାସ କରେ । ଗୁଣ୍ଡୁଚି-

ମୂଷାଙ୍କର ମୁଣ୍ଡ ଓ ଦେହର ଲମ୍ବ 13-15 ସେଣ୍ଟିମିଟର (5-6 ଇଞ୍ଚ ) ଓ ଲାଞ୍ଜ ତା'ଠାରୁ ଟିକିଏ ବେଶୀ ଲମ୍ବର ।

ବନ୍ୟ ପ୍ରାଣୀମାନଙ୍କ ମଧ୍ୟରେ ପଞ୍ଚରେଖ ଗୁଣ୍ଡୁଚିମୂଷା ସବୁଠାରୁ ସାଧାରଣ ଓ ଆମର ଅତି ପରିଚିତ । ଏହା ଓଡ଼ିଶାର ସାଧାରଣ ଗୁଣ୍ଡୁଚି-ମୂଷା । ଏହା ଜଙ୍ଗଲର ପ୍ରାଣୀ ନୁହେଁ; ମନୁଷ୍ୟ ବସତି ଓ ତା'ର ଆଖପାଖରେ ବାସ କରେ । ମୂଷା ପରି ଗୁଣ୍ଡୁଚିମୂଷା ମନୁଷ୍ୟ ସହିତ ବାସ କରେ ଏବଂ ଅନେକ ପରିମାଣରେ ମନୁଷ୍ୟ ଦ୍ୱାରା ରୋପିତ ବୃକ୍ଷରୁ ଖାଦ୍ୟ ସଂଗ୍ରହ କରେ । ଗ୍ରାମ, ସହର, ବଜାର ଯେତେ ଜନଗହଳି ହୋଇଥାଉ ନା କାହିଁକି ସେମାନେ ଘରେ, ବାହାରେ, ବଗିଚାରେ, ବୁଦାରେ, ଗଡ଼ା କଡ଼ରେ, ଗଛରେ ସର୍ବତ୍ର ଦେଖିବାକୁ ମିଳନ୍ତି । ପ୍ରକୃତି ରାଜ୍ୟରେ ଅତ୍ୟନ୍ତ ଚଞ୍ଚଳ, ସ୍ଫୂର୍ତ୍ତ ଏହି ପ୍ରାଣୀ-ମାନେ । ଏମାନେ ଘର ଉପରେ, ଛାତରେ, ଗଛରେ, ଡାଳରୁ ଡାଳକୁ ଚଞ୍ଚଳ ଭାବେ ଦୌଡ଼ି ବୁଲନ୍ତି ଓ ଖେଳନ୍ତି । ଦଣ୍ଡେ ଠିଆ ହୋଇ ସେମାନଙ୍କର ଖେଳ ଦେଖିବାକୁ ଓ ମଧୁର ରବ ଶୁଣିବାକୁ କେଉଁ ଆନନ୍ଦ ନ ଲାଗେ ! ଅପର ପକ୍ଷରେ ତିନିରେଖ ଗୁଣ୍ଡୁଚିମୂଷା ବଣର ଜୀବ । ଏହାର ଡ଼ାକ କର୍କଶ ଓ ପକ୍ଷୀର ରବ ପରି ଏବଂ ବାରମ୍ବାର ଉଚ୍ଚାରିତ ହୁଏ । ଡାକ ସହିତ ଲାଞ୍ଜ ଦୋଳାୟିତ ହେଉଥାଏ ।

ଫଳ, କଅଁଳିଆ କଢ଼ ଓ ଗଛର ଛାଲି ଗୁଣ୍ଡୁଚିମୂଷାମାନଙ୍କର ପ୍ରିୟ ଖାଦ୍ୟ । ଶିମିଳି ଗଛରେ ଫୁଲ ଫୁଟିଲେ ଗୁଣ୍ଡୁଚିମୂଷା ଗଛରେ ଚଢ଼ି ଫୁଲରୁ ମଧୁ ପିଏ । ଏତଦ୍ୱାରା ଶମିଳି ଗଛରେ ପର ପରାଗ ସଙ୍ଗମରେ ସାହାଯ୍ୟ କରେ ବୋଲି ଅନୁମାନ । ଏମାନେ ନାଗଫେଣୀ ( Prickly pear ) ଫଳ ଖାଇବାକୁ ଖୁବ ଭଲ ପାନ୍ତି । ପାଚିଲା ଫଳ ଖାଇବାରୁ ମୁହଁ ଓ ପାଦରେ ଫଳ ରସ ଲାଗି ଲାଲ ଦେଖାଯାଏ । ଏମାନେ କୀଟ ଓ ପକ୍ଷୀର ଅଣ୍ଡା ମଧ୍ୟ ଖାନ୍ତି । ଏମାନେ ରୀତିମତ ପକ୍ଷୀଅଣ୍ଡା ଚୋରି କରନ୍ତି ।

ମାଈ ଅର୍ଣ୍ଡିରା ଗୁଣ୍ଡୁଚିମୂଷା ଦିନେ ବା ଦୁଇଦିନ ପାଇଁ ଏକତ୍ର ହୋଇ ରମଣ କରନ୍ତି । ଏ ସମୟରେ ଗୋଟିଏ ମାଈ ଗୁଣ୍ଡୁଚିମୂଷା ଏକାଧିକ ପତି ଗ୍ରହଣ କରେ ବୋଲି ଅନୁମାନ । ଗର୍ଭଧାରଣ କାଳ ଛଅ ସପ୍ତାହ । ପ୍ରସବ ପୂର୍ବରୁ ମାଈ ଗୁଣ୍ଡୁଚିମୂଷା ଗଛରେ ବା ଘରର ବରଗା ସନ୍ଧି ବା କାନ୍ଥର

ଗାତରେ ଘାସ, ପତ୍ର ଓ ଚେର ବା ତନ୍ତୁରେ ଅସ୍ତୁତର ନୀଡ଼ଟିଏ ରଚନା କରେ । ଥରକେ ଦୁଇ-ତିନୋଟି ଛୁଆ ଜନ୍ମ ହୁଅନ୍ତି । ଜନ୍ମବେଳେ ସେମାନଙ୍କର ଆଖି ଫିଟି ନ ଥାଏ । ବଡ଼ ହୋଇ ଆପେ ଖାଦ୍ୟ ସଂଗ୍ରହ କରିବା ଅବସ୍ଥା ନ ଆସିଲା ଯାଏ ଶାବକମାନେ ନୀଡ଼ରେ ରହନ୍ତି ।

ଗୁଣ୍ଡୁଚିମୂଷାକୁ ହିନ୍ଦିରେ–ଗିଲହେରୀ, ବଙ୍ଗଳା–ବେଗଲ, ମାରଠୀ–ଖାଦିଖାର, ତାମିଲ–ଆନ୍ନା ପିଲ୍ଲୀ କହନ୍ତି । ଇଂରାଜୀରେ Palm squirrel ବୋଲାଯାଏ । ଏହାର ଆକ୍ଷରୀକ ଅର୍ଥ ଦୁଇଟି "କରତଳ ଗୁଣ୍ଡୁଚିମୂଷା" ଓ "ତାଳଗଛ ଗୁଣ୍ଡୁଚିମୂଷା" । ପଞ୍ଚରେଖା ଗୁଣ୍ଡୁଚିମୂଷାର ବୈଜ୍ଞାନିକ ନାମ



(ଚିତ୍ର ନଂ 69, ତିନିରେଖା (ଉପର ଚିତ୍ର) ଓ ପଞ୍ଚରେଖା (ତଳ ଚିତ୍ର) ଗୁଣ୍ଡୁଚିମୂଷା )

Funambulus Pennanti Wroughton ଓ ତିନିରେଖା ଗୁଣ୍ଡୁଚିମୂଷାର Funambulus Palmarum (Lonnaeus).

ଦକ୍ଷିଣ ଭାରତ ଓ ଶ୍ରୀଲଙ୍କାରେ ଆଉ ଜାତିଏ ଗୁଣ୍ଡୁଚିମୂଷା ଦେଖାଯାନ୍ତି । ଏହାକୁ ଅସ୍ପଷ୍ଟ ରେଖାଯୁକ୍ତ ଗୁଣ୍ଡୁଚିମୂଷା (Duskystriped squirrel) ବୋଲାଯାଏ । ବୈଜ୍ଞାନିକ ନାମ Funambulus sublineatus (water house) । ଏହାର ପିଠିରେ ମଳିନ ସବୁଜ–ଧୂସର ବର୍ଣ୍ଣର ଛିଟା ଚିହ୍ନ ଥାଏ । ପିଠିରେ ଚାରିଟି ଲମ୍ବା ଘନ ବାଦାମୀ ରେଖା ଥାଏ । ତା' ଭିତରେ ତିନୋଟି ଫିକା ଲମ୍ବା ରେଖା ପଡ଼ିଥାଏ । ଦକ୍ଷିଣ ଭାରତର ଘନ

ଜଙ୍ଗଲରେ ଏହା ବାସ କରେ । ଏମାନେ ଢୁରୁଡ଼ା ସ୍ୱଭାବର । ସେଥିପାଇଁ ସାଧାରଣତଃ ଆଖିରେ ପଡ଼ନ୍ତି ନାହିଁ । ଏମାନେ ବନ୍ୟ ରସପବେରୀ (Raspberry, ଏକ ଜାତୀୟ କଣ୍ଟକାବୃତ ଫଳ ) ଫଳ ଖାଇବାକୁ ଭଲ ପାନ୍ତି । ପୂର୍ବ ହିମାଳୟ ଅଞ୍ଚଳରେ ଆଉ ଗୋଟିଏ କ୍ଷୁଦ୍ର ଗୁଣ୍ଡୁଚି ମୂଷା ଦେଖିବାକୁ ମିଳେ । ଏହାର ନାମ "ହିମାଳୟର ରେଖିତ ଗୁଣ୍ଡୁଚିମୂଷା" (Himalayan striped squirrel), ବୈଜ୍ଞାନିକ ନାମ, Callosciurus macclell andi (Hors field) । ଏହା ନାକ ଅଗରୁ ଲାଞ୍ଜ ମୂଳ ପର୍ଯ୍ୟନ୍ତ ଲମ୍ବରେ ହୁଏ 13 ସେଣ୍ଟିମିଟାର (5 ଇଞ୍ଚ) । ପିଠିର ବର୍ଣ୍ଣ ଧୂସର ବାଦାମୀ । ତା' ଉପରେ କଳା, ବାଦାମୀ ଓ ଫିକା ହଳଦିଆ ରେଖା ପଡ଼ିଥାଏ । ଏମାନେ 1525 ମିଟାର (5000ଫୁଟ) ଉଚ୍ଚ ଭୂମିରେ ଜଙ୍ଗଲରେ ବାସ କରନ୍ତି । ଆସାମ ଓ ବର୍ମାର ନିମ୍ନାଞ୍ଚଳ ଜଙ୍ଗଲରେ ମଧ୍ୟ ବାସ କରନ୍ତି । ଏକ ସାଧାରଣ ଗୁଣ୍ଡୁଚି-ମୂଷା ହୋଇଥିଲେ ମଧ୍ୟ ଢୁରୁଡ଼ା ପ୍ରକୃତି, କ୍ଷୁଦ୍ର ଆକାର ଓ ବର୍ଣ୍ଣ ଯୋଗୁ ସହଜରେ ଆଖିରେ ପଡ଼ନ୍ତି ନାହିଁ ।

## ମାରମୋଟ
## (Marmot)

ପୂର୍ବେ କୁହାଯାଇଅଛି, ଗୁଣ୍ଡୁଚିମୂଷା ଓ ମାରମୋଟ ଏକ ବଂଶ—ସାଇଉରିଡି (Sciuridae) ଅନ୍ତର୍ଭୁକ୍ତ । ମାରମୋଟମାନେ ବିଲବାସୀ ଓ ଭୂମିରେ ଗାତ କରି ରହନ୍ତି । ଏମାନଙ୍କର ଦେହ ମଜବୁତ ଓ ଡ଼ଉଲ ଡ଼ାଉଲ । ଲାଞ୍ଜ କ୍ଷୁଦ୍ର ବା ଅଳ୍ପ ଲମ୍ବା, କାନ ଅତ୍ୟନ୍ତ କ୍ଷୁଦ୍ର ।

ଭାରତରେ ଦୁଇ ଜାତି ମାରମୋଟ ଦେଖାଯାନ୍ତି । ଯଥା—ହିମାଳୟ ମାରମୋଟ (Himalayan marmot) ଓ ଲମ୍ବା ଲାଞ୍ଜ ମାରମୋଟ (Long tailed marmot) । ହିମାଳୟ ମାରମୋଟର ମୁଣ୍ଡ ଓ ଦେହର ଲମ୍ବା 60 ସେଣ୍ଟିମିଟାର (2 ଫୁଟ) ଓ ଲାଞ୍ଜ 13 ସେଣ୍ଟିମିଟାର (5 ଇଞ୍ଚ) । ଦେହ ଓ ଅବୟବ ଧୂସର ହଳଦିଆ ବାଦାମୀ ଓ ଉପରି ଭାଗ କଳା ବର୍ଣ୍ଣ ମିଶା । ମୁହଁ ଓ ଲାଞ୍ଜ ଅଗ୍ର ଭାଗର (ମୋଟ ଲାଞ୍ଜର ପ୍ରାୟ ଏକ ତୃତୀୟାଂଶ) ରଙ୍ଗ ଘନ ବାଦାମୀ । ଏହା ନେପାଳ, ସିକିମ, ଗଡ଼ୱାଲ, କାଶ୍ମୀର ଓ ଲଦାଖରେ 4000/4300 ମିଟାର (13,000-14,000ଫୁଟ) ଉଚ୍ଚତାରୁ

5500 ମିଟାର (18,000 ଫୁଟ) ଉଚ୍ଚତା ପର୍ଯ୍ୟନ୍ତ ଅଞ୍ଚଳରେ ବାସ କରେ । ଏହାର ବୈଜ୍ଞାନିକ ନାମ Marmota bobak (Muller) ।



( ଚିତ୍ର ନଂ 70, ଦୀର୍ଘ ଲାଞ୍ଜ ମାରମୋଟ )

ଲମ୍ବା ଲାଞ୍ଜ ମାରମୋଟ ଆକାରରେ ହିମାଳୟ ମାରମୋଟ ପରି; ମାତ୍ର ଏହାର ଲାଞ୍ଜ 30 ସେଣ୍ଟିମିଟାର (1 ଫୁଟ) ଯାଏ ଲମ୍ବ ହୁଏ । ଏହା ଦେଖିବାକୁ ହିମାଳୟ ମାରମୋଟଠାରୁ ଅଧିକ ସୁନ୍ଦର । ଦେହର ଲୋମ ହଳଦିଆ ବାଦାମୀ, ଘନ କମଳା ରଙ୍ଗ ବା ଲାଲ ବାଦାମୀ ହୋଇଥାଏ । ପିଠି ପାଖର ବେଶୀ ଭାଗ ବା ପୁରାପୁରି କଳା । ଏହା 2400 ମିଟାରରୁ 4300 ମିଟାର (8000—14000 ଫୁଟ) ଉଚ୍ଚତାରେ କାଶ୍ମୀରର ଉତ୍ତର ଉପତ୍ୟକା ଅଞ୍ଚଳରୁ ଗିଲଗିଟ୍ ଓ ଲଦାଖ ଦେଇ ମଧ୍ୟ ଏସିଆର ଉଚ୍ଚ ମାଳଭୂମି ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବାସ କରେ । ଏହାର ବୈଜ୍ଞାନିକ ନାମ (Marmota Caudata ( Jacquemont ) ।

ମାରମୋଟମାନେ ବହୁ ସଂଖ୍ୟାରେ ଦଳବାନ୍ଧି ରହନ୍ତି । ଭୂମିରେ ଏମାନେ ଗଭୀର ଗର୍ତ୍ତ କରନ୍ତି ଓ ଶୀତ କାଳରେ ବିଳ ମଧ୍ୟରେ ଶୀତନିଦ୍ରା ଯାନ୍ତି । ବସନ୍ତ ଋତୁରେ ପଦାକୁ ବାହାରନ୍ତି । ଶରତକାଳ ପର୍ଯ୍ୟନ୍ତ ତାଙ୍କ ପାଇଁ ଖାଦ୍ୟର ଅଭାବ ହୁଏ ନାହିଁ । ସେମାନେ ଚେରମୂଳ, ଘାସପତ୍ର, ଓ ବିଭିନ୍ନ ଗଛର ମଞ୍ଜି ଖାନ୍ତି । ପାଗ ଭଲ ଥିବା ଦିନମାନଙ୍କରେ ସେମାନେ ବିଳ ବାହାରେ ବୁଲୁଥିବାର ଦେଖାଯାନ୍ତି । ଭୟଭୀତ ହେଲେ କାରଣ ଠାଉରାଇବା ପାଇଁ ଏମାନେ ହିଡ଼ ଗୋଡ଼ ଓ ପିଚ୍ଛ ଉପରେ ବସି ଚାରିଆଡ଼କୁ ନିରୀକ୍ଷଣ କରନ୍ତି । ବିପଦର ଆଭାସ ପାଇଲେ ମାରମୋଟ ଉଚ୍ଚ ସ୍ୱରରେ ଚିତ୍କାର କରେ ଓ ଅନ୍ୟମାନେ ସତର୍କ ହୋଇ କ୍ଷିପ୍ର ବେଗରେ ଗାତ ଭିତରେ

ପଶିଯାନ୍ତି । ଗୋଟିଏ ଗୋଟିଏ ଗାତରେ ଦଶଟିରୁ ଚୌଦଟି ଯାଏ ମାରମୋଟ ଏକ ସାଙ୍ଗରେ ଡ଼ଙ୍କାଡ଼ଙ୍କି ହୋଇ ରହନ୍ତି । ବସନ୍ତ କାଳରେ ଏହା ଛୁଆ କରେ । ଥରକେ ଦୁଇଟିରୁ ଚାରିଟି ଯାଏ ଛୁଆ ଜନ୍ମ ହୁଅନ୍ତି ।

## ମୂଷିକ ବଂଶ (Muridae)

ସମସ୍ତ ପ୍ରକାର ମୂଷା ମୁରିଡ଼ି (Muridae) ବଂଶ ଅନ୍ତର୍ଭୁକ୍ତ । ଲକ୍ଷଣ, ବାସ ଓ ପ୍ରକୃତି ଅନୁସାରେ ସେମାନେ ବିଭିନ୍ନ ।

## ଏଣ୍ଟିଲୋପ-ମୂଷିକ (Gerbille or Antelope rat)

ଏଣ୍ଟିଲେପ-ମୂଷିକମାନଙ୍କୁ ସାଧାରଣ ମୂଷା ଓ ଚୁଟିଆ ମୂଷାଙ୍କ ଠାରୁ ସହଜରେ ପୃଥକ କରାଯାଇ ପାରେ । ଏମାନଙ୍କର ଲାଞ୍ଜ ଲୋମଶ ଓ ସାଧାରଣତଃ ଲାଞ୍ଜ ଅଗରେ ଗୋଛାଏ ଲୋମ ଥାଏ । ଅପର ପକ୍ଷରେ, ଅନ୍ୟ ମୂଷାମାନଙ୍କର ଲାଞ୍ଜ ପ୍ରାୟ ଲୋମହୀନ । ଆହୁରି ମଧ୍ୟ ଏଣ୍ଟିଲେପ-ମୂଷିକ ମାନଙ୍କର ପଛ ଗୋଡ ବହୁତ ଲମ୍ବା । ଗତି କଲାବେଳେ ଏହା ଡେଇଁ ଡେଇଁ ଗତି କରେ । ଆମ ଭାରତରେ ଦୁଇଜାତି ଏଣ୍ଟିଲେପ-ମୂଷିକ ସାଧାରଣ । ଯଥା— ଭାରତୀୟ ଏଣ୍ଟିଲେପ-ମୂଷିକ (Indian Gerbille) ଓ ଭାରତୀୟ ମରୁ ଏଣ୍ଟିଲେପ-ମୂଷିକ (Indian Desert Gerbille)

ଭାରତୀୟ ଏଣ୍ଟିଲେପ ମୂଷିକ, ଭାରତୀୟ ମରୁ-ଏଣ୍ଟିଲେପ ମୂଷିକ ଠାରୁ ଆକାରରେ ବଡ । ଏହାର ମୁଣ୍ଡ ଓ ଦେହର ଲମ୍ବ 15—17 ସେଣ୍ଟିମିଟାର (6-7ଇଞ୍ଚ) । ପିଠିର ବର୍ଣ୍ଣ ଲାଲ-ବାଦାମୀ, ଫିକା ହଳଦିଆ ବାଦାମୀ ବା ଧୂସର ହଳଦିଆ ବାଦାମୀ । ଲାଞ୍ଜର ଦୁଇକଡରେ ଗୋଟିଏ କରି ବାଦାମୀ ରେଖା ଚିହ୍ନ ପଡିଥାଏ । ହିମାଳୟରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଏମାନେ ବାସ କରନ୍ତି । ପଶ୍ଚିମରେ ପାରସ୍ୟ ଓ ମେସୋପୋଟାମିଆ ଓ ଦକ୍ଷିଣରେ ଶ୍ରୀଲଙ୍କା ଦ୍ୱୀପ ପର୍ଯ୍ୟନ୍ତ ଏମାନଙ୍କର ବିସ୍ତୃତି । ଭାରତୀୟ ଏଣ୍ଟିଲେପ-ମୂଷିକ ମୁକ୍ତ ସମତଳ ଓ ନିମ୍ନଭୂମିରେ ବାସ କରେ । ସାଧାରଣତଃ ଏହା କ୍ଷେତର ଆଖପାଖରେ ବଣବୁଦା ତଳେ ଗର୍ତ୍ତ କରି ରହେ । ଯେଉଁଠାରେ ବନ୍ୟାରେ ବିଳ ଭିତରେ ପାଣି ପଶିଯିବାର ଆଶଙ୍କା ଥାଏ,

ସେଭଳି ସ୍ଥାନରେ ଏମାନେ ଉଚ୍ଚ ସ୍ଥାନ ଦେଖି ଗର୍ତ୍ତ କରିଥାନ୍ତି । ଏମାନଙ୍କର ବିଲ ଚିହ୍ନିବାରେ ଅସୁବିଧା ହୁଏ ନାହିଁ । କାରଣ, ଗର୍ତ୍ତକୁ ବାରମ୍ବାର ଯିବା ଆସିବା ଫଳରେ ଭୂମିରେ ରାସ୍ତା ଚିହ୍ନ ପଡ଼ିଯାଏ । ମାଈ ଅଣ୍ଡିରା ଅଲଗା ଅଲଗା ଗାତରେ ରହନ୍ତି ଓ ସେମାନଙ୍କର ବିଲ ଭିନ୍ନ ଢାଞ୍ଚରେ ତିଆରି ହୋଇଥାଏ । ଅଣ୍ଡିରାର ଗର୍ତ୍ତ ଭିତରକୁ କେବଳ ଗୋଟିଏ ମୁହଁ ଥାଏ; ମାତ୍ର ମାଈର ବିଲରୁ ଏକାଧିକ ମୁଖ ଥାଏ । ଭୂମିଠାରୁ ପ୍ରାୟ 30 ସେଣ୍ଟିମିଟାର (1ଫୁଟ) ଗହୀରରେ ପ୍ରକୋଷ୍ଠ ରହିଥାଏ । ଏହା ତା'ର ଶୟନ କକ୍ଷ । ଭାରତୀୟ ଏଣ୍ଟିଲୋପ–ମୂଷିକ ବିଲ ମଧ୍ୟକୁ ବିଲର ମୁଖଦେଇ ପ୍ରବେଶ କରେ, ମାତ୍ର ବିପଦ ଆପଦ ବେଳେ ବାହାରକୁ ଖସି ପଳାଇ ଯିବା ପାଇଁ ଏକ ଗୁପ୍ତ ଦ୍ୱାର ରହିଥାଏ । ଗୁପ୍ତ ଦ୍ୱାର ହାଲୁକା ମାଟି ଦ୍ୱାରା ଢଙ୍କା ଥାଏ ଓ ପଳାଇଲା ବେଳେ ଢଙ୍କା ମାଟିକୁ ଆଡ଼େଇ ଗଳିଯାଇ ପାରେ । ଏମାନେ ଦିନ ବେଳେ ଗାତ ଭିତରେ ଶୋଇଥାନ୍ତି ଓ ସନ୍ଧ୍ୟା ହେଲେ ପଦାକୁ ବାହାରନ୍ତି । ସାମାନ୍ୟ ବିପଦର ଆଶଙ୍କା କଲେ ତତ୍‌କ୍ଷଣାତ୍ ବିଲ ମଧ୍ୟରେ ପ୍ରବେଶ କରନ୍ତି । ଆତଙ୍କିତ ହେଲେ ଡେଇଁ ଡେ଼ଇଁ ପଳାଇ ଯା'ନ୍ତି ଓ ଗୋଟିଏ ଲମ୍ଫରେ 1.2-15 ମିଟାର (4-5 ଫୁଟ) ଡେ଼ଇଁ ଗଳିଯାନ୍ତି । ଶସ୍ୟ, ଚେର ମୂଳ, ପତ୍ର ଓ ଘାସ ଏମାନଙ୍କର ଖାଦ୍ୟ । ସଂଖ୍ୟାବୃଦ୍ଧି ଘଟିଥିବା ସମୟରେ ସେମାନେ ଫସଲର ବିଶେଷ କ୍ଷତି କରନ୍ତି । ଫସଲ ଗଜେଇଥାଉ, ଫୁଲ ଧରିଥାଉ ଅବା ବୀଜ ଧରିଥାଉ, ଫସଲର କୌଣସି ଅବସ୍ଥା ଏମାନଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇ ପାରେ ନାହିଁ । ଫସଲ ଅମଳ ସମୟ ସେମାନଙ୍କ ପାଇଁ ଶସ୍ୟ ସଞ୍ଚୟ ସମୟ । ଖରାଦିନ ପାଇଁ ସେମାନେ ଶସ୍ୟ ଆଣି ଗାତରେ ବହୁ ପରିମାଣରେ ସଞ୍ଚୟ କରନ୍ତି । ସଞ୍ଚିତ ଖାଦ୍ୟ ସରିଗଲେ ତେଣିକି ସେମାନେ ଅନ୍ୟ ପ୍ରକାର ଖାଦ୍ୟ, ଯଥା– ବଣୁଆ ଗଛର ପତ୍ର, ଫଳ ଓ ମୂଳ ଖାଆନ୍ତି । ସେମାନେ ନାଗଫେଣୀ ଗଛର ଫଳ ଖାଇବାକୁ ଖୁବ ଭଲପାନ୍ତି । ଖରାଦିନେ ଏଥିରେ ଫଳ ପାଚେ । ସେମାନେ କୀଟ ଓ କୀଟଶୂକ, ପକ୍ଷୀର ଅଣ୍ଡା ଓ ଛୁଆଙ୍କ ଖାନ୍ତି । ସେମାନେ ସେମାନଙ୍କ ଠାରୁ କ୍ଷୁଦ୍ର କୃନ୍ତକ ପ୍ରାଣୀଙ୍କୁ ମଧ୍ୟ ମାରି ଖାଉଥିବେ ବୋଲି ଅନୁମାନ କରାଯାଏ ।

ଭରତୀୟ ଏଣ୍ଟିଲେପ-ମୂଷିକମାନଙ୍କର ଗୋଟିଏ ବିଳରୁ ଅନ୍ୟ ଗୋଟିଏ ବିଳକୁ ଭୂମିତଳେ ଓ ଭୂମି ଉପରେ ରାସ୍ତା ଥିବାର ଦେଖିବାକୁ ମିଳେ । ଭୂମିତଳେ ବିଶ୍ରାମ ପ୍ରକୋଷ୍ଠରେ ଘାସ ପତ୍ର ଦିଆଯାଇ ନରମ କରା ଯାଇଥାଏ ।



ଭାରତୀୟ ଏଣ୍ଟିଲୋପ ମୂଷିକ



ଭାରତୀୟ ମରୁ ଏଣ୍ଟିଲୋପ ମୂଷିକ

( ଚିତ୍ର ନଂ 71, ଭରତୀୟ ଏଣ୍ଟିଲେପ ମୂଷିକ ଓ
ଭରତୀୟ ମରୁ ଏଣ୍ଟିଲେପ ମୂଷିକ )

ଥରକେ ଗୋଟିଏ ମାଈ ଚାରିଟି ଛୁଆ ଜନ୍ମ କରେ । ଅବଶ୍ୟ ଗୋଟିଏ ଗୋଟିଏ ବିଳରେ ୫ରୁ 12ଟି ଯାଏ ଶାବକ ଦେଖା ଯାଇ ଅଛି । ଭରତୀୟ ଏଣ୍ଟିଲେପ-ମୂଷିକର ବୈଜ୍ଞାନିକନାମ Tatera indica (Hardwicke) ।

ଭରତୀୟ ମରୁ ଏଣ୍ଡିଲେପ ମୂଷିକ ଉପରୋକ୍ତ ମୂଷିକ ଠାରୁ କ୍ଷୁଦ୍ରତର । ନାକ ଠାରୁ ଲାଞ୍ଜ ମୂଳଯାଏ ଏହାର ଲମ୍ବ ହୁଏ ପ୍ରାଏ 13 ସେଣ୍ଟିମିଟାର (5ଇଞ୍ଚ) । ଦେହ ଓ ଅବୟବ ବାଲି ପରି ହଳଦିଆ । ପେଟପାଖର ବର୍ଣ୍ଣ ମଳିନ ଧଳା । ମରୁ ମୂଷିକ ଭରତର ଉତ୍ତର-ପଶ୍ଚିମ ଓ ମଧ୍ୟଭରତର ମରୁ ଅଞ୍ଚଳ ଓ ଅର୍ଦ୍ଧ ମରୁ-ଅଞ୍ଚଳରେ ବାସ କରେ । ଏହାର ସାଧାରଣ ସ୍ୱଭବ ଭରତୀୟ ଏଣ୍ଡିଲେପ-ମୂଷିକ ପରି । ଏମାନେ ଅଳ୍ପ ଅଳ୍ପ ସଂଖ୍ୟାରେ ଦଳ ବାନ୍ଧି ରହନ୍ତି । ଏମାନଙ୍କର ଏହି ଦଳ ବାନ୍ଧିବା ସ୍ୱଭବ ଭରତୀୟ ଏଣ୍ଡିଲେପ ମୂଷିକ ଠାରୁ ଅଧିକ । ଭୂଇଁତଳେ ପ୍ରାୟ 30 ସେଣ୍ଟିମିଟାର (ଏକ ଫୁଟ) ଗହୀରରେ ପ୍ରକୋଷ୍ଠ ରହିଥାଏ । ଆପଦ ବିପଦ ବେଳେ ପ୍ରକୋଷ୍ଠରୁ ବାହାରକୁ ଖସି ପଳାଇବାକୁ 'ଗୁପ୍ତ ଦ୍ୱାର' ଥାଏ । ମରୁଭୂମି ଓ ଅର୍ଦ୍ଧ ମରୁଭୂମି ଅଞ୍ଚଳରେ ପବନରେ ବାଲି ଉଡ଼ି ଗଠିତ ହୋଇଥିବା ଢୂହ, ବାଲି ବନ୍ଧ, ପଡିଆ ଭୂମି ଓ କଣ୍ଟା ବୁଦାର ଜଙ୍ଗଲ ଭିତରେ ଏମାନଙ୍କର ବିଳ ଥାଏ । ମରୁ ଓ ଅର୍ଦ୍ଧ ମରୁ ଅଞ୍ଚଳରେ ବାସ କରୁଥିବାରୁ ଏମାନେ ଭରତୀୟ ଏଣ୍ଡିଲେପ-ମୂଷିକ ପରି ଖାଦ୍ୟ ପାଇ ଅତି ବେଶୀ ମନୁଷ୍ୟର ଗୃହବାସ ଉପରେ ନିର୍ଭର କରନ୍ତି ନାହିଁ । ଅବଶ୍ୟ ଏମାନଙ୍କର ବିଳ ଗୃହଜମି ନିକଟରେ ଯେ ନମିଳେ ତାହା ନୁହେଁ । ଆହୁରି ମଧ୍ୟ ମରୁ-ମୂଷିକର ସ୍ୱଭବ ଭରତୀୟ ଏଣ୍ଡିଲୋପ ମୂଷିକ ତୁଳନାରେ ଗୋଟିଏ ଦିଗରୁ ଠିକ୍ ଓଲଟା । ତାହା ହେଉଛି, ଭରତୀୟ ଏଣ୍ଡିଲୋପ ମୂଷିକ ରତିରେ ଆହାର ସଂଗ୍ରହରେ ବାହାରେ; ମାତ୍ର ମରୁ-ମୂଷିକ ଦିନବେଳେ ଖାଦ୍ୟ ଅନ୍ୱେଷଣରେ ବାହାରିଥାଏ । ସବୁ ଋତୁରେ ଦିନର ସବୁ ସମୟରେ ସେମାନଙ୍କୁ ଦେଖିବାକୁ ମିଳେ । ଅବଶ୍ୟ ସକାଳବେଳା ଏମାନେ ସବୁଠାରୁ ଅଧିକ ଚଞ୍ଚଳ । ଆତଙ୍କିତ ହେଲେ ଏହି ମୂଷିକ ପଛ ଗୋଡକୁ ବାଲି ଉପରେ କଋଡ଼ି ଏକପ୍ରକାର ଶବ୍ଦ କରେ । ପଳାୟନ ପୂର୍ବରୁ ଲାଞ୍ଜକୁ ଉପର ଆଡ଼କୁ ଉଠାଇ ଦିଏ ଓ ଦ୍ରୁତଗତିରେ ଦୌଡ଼ିଯାଇ ବିଳ ଭିତରେ ପଶିଯାଏ । ବେଶୀ ସମୟ ଯାଏ ନ ରହି ଅଳ୍ପ ସମୟ ପରେ ଦ୍ୱାରରେ ମୁହଁ ଦେଖାଏ । ଟିକିଏ ପରେ ଦ୍ୱାର ବାହାରକୁ ଆସି ଘରିଗୋଡ଼ରେ ବସେ ବା ଦୁଇ ଗୋଡରେ ଠିଆହୋଇ ଚାରିଆଡ଼କୁ ଆଖିବୁଲାଇ ଦେଖେ । ଏହିପରି ଭବରେ ଆସ୍ତେ ଆସ୍ତେ ସାଙ୍ଗ ସାଥୀ ଗାତରୁ ବାହାରି ଆସି ପୁଣି ଆହାର

ବିହାରରେ ଲିପ୍ତ ହୁଅନ୍ତି । କନ୍ଦ, ଘାସ, ପତ୍ର, ଫୁଲ ଓ ଫଳ ଏମାନଙ୍କର ଆହାର । ଖାଦ୍ୟର ପ୍ରାଚୁର୍ଯ୍ୟ ଅନୁସାରେ ଏମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ବିଳ କରି ରହୁଥିବେ ବୋଲି ଅନୁମାନ କରାଯାଏ । ଏମାନଙ୍କର ଯୌନ–ଜୀବନ ସମ୍ବନ୍ଧରେ କିଛି ଜଣା ନାହିଁ । କଚ୍ଛ ଅଞ୍ଚଳରେ ସେପଟେମ୍ବର ମାସରେ ଏମାନେ ଗର୍ଭବତୀ ଥିବାର ଓ ଛୁଆ ସହିତ ବୁଲିବାର ଦେଖା ଯାଇ ଅଛନ୍ତି । ମରୁ ମୂଷିକର ବୈଜ୍ଞାନିକ ନାମ Meriones hurrianae (Jerdon)

## ମୂଷା ଓ ଚୁଟିଆ ମୂଷା (Rats and mice)

ମୂଷା ଓ ଚୁଟିଆ ମୂଷା ମଧ୍ୟ ମୁରିଡି (Muridae) ବଂଶ ଅନ୍ତର୍ଭୁକ୍ତ । ଭାରତରେ ବହୁ ଜାତିର ମୂଷା ଦେଖାଯାନ୍ତି । ଏମାନଙ୍କୁ ଅନ୍ୟ କୃନ୍ତକ ପ୍ରାଣୀମାନଙ୍କ ଠାରୁ ଚିହ୍ନିବାର ସହଜ ଉପାୟ ହେଲା– ମୂଷାଙ୍କ ଲାଞ୍ଜ କାତିଆ ଓ ସେଥିରେ ଖୁବ୍ କମ ପରିମାଣରେ ଲୋମ ଥାଏ । ସ୍ୱଭାବ ଅନୁସାରେ ଭାରତୀୟ ମୂଷାଙ୍କୁ ତିନୋଟି ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମ ଭାଗ– କ୍ଷେତ ମୂଷା । ଏମାନେ କ୍ଷେତମାନଙ୍କରେ ଗାତ କରି ରହନ୍ତି ଏବଂ କ୍ଷେତ ଫସଲ ନଷ୍ଟ କରନ୍ତି । ଦ୍ୱିତୀୟ ଭାଗ– ବନ୍ୟ ମୂଷିକ । ଏମାନେ ବୁଦା, ଜଙ୍ଗଲରେ ରହନ୍ତି ଓ ଜଣା ଅଧିକେ ବୃକ୍ଷବାସୀ । ତୃତୀୟ ଭାଗ– ଗୃହ ମୂଷିକ । ଏମାନେ ମନୁଷ୍ୟ ଗୃହରେ ବାସ କରନ୍ତି ଓ ଜିନିଷପତ୍ର ନଷ୍ଟ କରନ୍ତି ।

## କ୍ଷେତ ମୂଷା ବା ଗାତୁଆ ମୂଷା (Mole rat)

ଭାରତରେ ସାଧାରଣ ଗାତୁଆ ମୂଷାକୁ "ଭାରତୀୟ ଗାତୁଆ ମୂଷା" (Indian mole-rat) ବୋଲାଯାଏ । ଏହାର ଦେହ ବଳିଷ୍ଠ, ମୁଣ୍ଡ ଗୋଲ, କାନ ଗୋଲ, ଥୋମଣି ଛୋଟ ମାତ୍ର ଓଷାରିଆ । ଏହାର ଲମ୍ବା ଲୋମକୁ ଠିଆ କରିଦିଏ ଓ ଉତ୍ତେଜିତ ହେଲେ ଏକ ପ୍ରକାର ଘୁଷୁରିଆ ଶବ୍ଦ କରେ । ଆମର ସାଧାରଣ ଗାତୁଆ ମୂଷାର ମୁଣ୍ଡ ଓ ଦେହର ଲମ୍ବ 15 ରୁ 23 ସେଣ୍ଟିମିଟାର (6–9 ଇଞ୍ଚ), ଲାଞ୍ଜ 13-18 ସେଣ୍ଟିମିଟାର (5-7ଇଞ୍ଚ) । ପିଠି ପାଖର ସାଧାରଣ ବର୍ଣ୍ଣ ଧୂସର–ବାଦାମୀ, ସେଥିରେ ଫିକା ହଳଦିଆ ଟିପିଟିପିଆ ଚିହ୍ନ ଥାଏ । ପେଟ ପାଖର ବର୍ଣ୍ଣ ଫିକା ।

ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ, ଭାରତର ପ୍ରାୟ ସର୍ବତ୍ର ଆର୍ଦ୍ର ବନ୍ୟା ବାହିତ ମୃତ୍ତିକା (alluvial soil) ଅଞ୍ଚଳରେ ଏମାନେ ଏକ ସାଧାରଣ ମୂଷା । ଗାତ ବାହାରେ ସଦ୍ୟ ଖୋଳା ଯାଇଥିବା ମାଟି ଗଦା ଦେଖି ଗାତୁଆ ମୂଷାର ବାସ ଠଉରାଇବା ସହଜ । ଚାଷ କ୍ଷେତ, ବାଡି ବଗିଚା ଓ ଗୋଚରଣ ଭୂମିରେ ଏମାନେ ବାସ କରନ୍ତି । ଚିର ସବୁଜ ଓ ପତ୍ରଝଡ଼ା ଦେଉଥିବା ଗଛର ଜଙ୍ଗଲରେ ଏବଂ ପତିତ ଭୂମିରେ ମଧ୍ୟ ଏମାନଙ୍କର ବିଲ ଦେଖିବାକୁ ମିଳେ । ଗାତ ମୁହଁ ଠାରୁ ପ୍ରାୟ 60 ସେଣ୍ଟିମିଟାର (2ଫୁଟ) ନିମ୍ନରେ ପ୍ରାୟ ଗୋଲକାର ପ୍ରକୋଷ୍ଠ ରହିଥାଏ । ପ୍ରକୋଷ୍ଠଟିର ଓସାର 18 ମିଟର (20ଗଜ) ବା ତା' ଠାରୁ ଅଧିକ ହୋଇ ପାରେ । ଅବଶ୍ୟ ମୃତ୍ତିକା ଓ ଅବସ୍ଥିତି ଅନୁସାରେ ପ୍ରକୋଷ୍ଠ ଛୋଟ ବି ହୋଇପାରେ । ଫସଲ ହୋଇଥିଲା ବେଳେ ଚାଷ କ୍ଷେତର ହିଡ଼ରେ ଏମାନଙ୍କର ଗାତ ସାଧାରଣତଃ ଦେଖିବାକୁ ମିଳେ । ଏପ୍ରକାର ଗର୍ତ୍ତରେ ପ୍ରକୋଷ୍ଠ



( ଚିତ୍ର ନଂ72, କ୍ଷେତ ମୂଷା )

ଛୋଟ; ମାତ୍ର ଖୋଲା ପଡ଼ିଆରେ ଗାତୁଆ ମୂଷାର ପ୍ରକୋଷ୍ଠ ବେଶ ବଡ଼ ହୋଇଥାଏ । ଏହି ନିଦ୍ରା–ପ୍ରକୋଷ୍ଠର କଡ଼ରେ ବା ଚାରିପାଖରେ ଗୋଲକାର ସୁଡ଼ଙ୍ଗ ପଥ ଥାଏ ଓ ସେହି ସୁଡ଼ଙ୍ଗ ମଝିରେ ମଝରେ ଗୋଲକାର ପ୍ରକୋଷ୍ଠ ଥାଏ । ଏ ସବୁ ଭଣ୍ଡାର ଘର । ଫସଲ ଅମଳ ସମୟରେ ଗାତୁଆ ମୂଷା ବହୁ ପରିମାଣରେ ଶସ୍ୟ ବୋହି ନେଇ ସୁଡ଼ଙ୍ଗ ପଥରେ ଥିବା ଗୋଲକାର ପ୍ରକୋଷ୍ଠରେ ସଞ୍ଚୟ କରି ରଖେ । ସୁଡ଼ଙ୍ଗ ପଥ କେଉଁଠି ହେଲେ ଉପରକୁ

ଖୋଲ ନ ଥାଏ । ଆବଶ୍ୟକ ସମୟରେ ଅସ୍ଥାୟୀ ଭାବେ ଖୋଲ ଯାଇଥିଲେ ପୁଣି ବୁଜି ଦିଆଯାଇଥାଏ । ଆତ୍ମରକ୍ଷା ପାଇଁ ପଳାଇଗଲା ବେଳେ ଗାତୁଆ ମୂଷା ଅଳ୍ପ ମାଟି ଢ଼ଙ୍କାଥିବା ଦ୍ୱାର ଦେଇ ବାହାରି ଚାଲିଯାଏ । ମୂଷାମାନଙ୍କ ମଧ୍ୟରେ "ଭାରତୀୟ ଗାତୁଆ ମୂଷା" ଆମ ଫସଲ ଓ କ୍ଷେତର ସବୁଠାରୁ ବେଶୀ କ୍ଷତି କରେ ।

ଗୋଟିଏ ଗାତରେ ସାଧାରଣତଃ ଗୋଟିଏ ମୂଷା ବା ମାଈ ମୂଷା ଓ ତା'ର ଛୁଆ ଥାନ୍ତି । ଛୁଆ କରିବା ପୂର୍ବରୁ ମା' ମୂଷା ପ୍ରକୋଷ୍ଠ ଭିତରେ କୁଟା ପତ୍ର ଆଣି ଜମା କରେ । ଥରକେ 10-12ଟି ଛୁଆ ଜନ୍ମ ହୁଅନ୍ତି । ଜନ୍ମବେଳେ ଏମାନଙ୍କ ଦେହରେ ଲୋମ ନ ଥାଏ ଓ ଆଖି ଫିଟି ନ ଥାଏ । ମାସକ ଭିତରେ ବହଳ ହୋଇ ଲୋମ ଉଠେ । ପ୍ରାୟ ତିନି ମାସରେ ବୟଃପ୍ରାପ୍ତ ହୋଇ ସେମାନେ ଛୁଆ କରିବାକୁ ଆରମ୍ଭ କରନ୍ତି ।

"ଭାରତୀୟ ଗାତୁଆ ମୂଷା" (Indian mole-rat) ର ବୈଜ୍ଞାନିକ ନାମ Bandicota bengalensis (Gray Hard wicke) । ବିଭିନ୍ନ ଭାଷାରେ ଏହାର ନାମ:– ବଙ୍ଗଳା–ଚେନଡ଼ାଇ, କାନାଡ଼ି–କୋକ୍, ହେଗ୍‌ଗାନା; ତେଲୁଗୁ–ଗୋଲଟା କୋକୁ; ମାରଠି–ଘୁସ ।

ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳର ମରୁଭୂମି ଓ ଅର୍ଦ୍ଧ ମରୁଭୂମି ଅଞ୍ଚଳରେ ଜାତିଏ ଗାତୁଆ ମୂଷା ଦେଖାଯାନ୍ତି । ସେମାନଙ୍କୁ 'କ୍ଷୁଦ୍ରଲାଞ୍ଜ ଗାତୁଆ ମୂଷା" ( Short tailed bandicoot ) ବୋଲାଯାଏ । ବୈଜ୍ଞାନିକ ନାମ, Nesokia indica ( Gray & Hardwicke ) ଏହାର ଲୋମ ଘନ ଓ ବର୍ଣ୍ଣ ହଳଦିଆ-ବାଦାମୀ । ଲାଞ୍ଜ ଛୋଟ, ପ୍ରାୟ 8-13 ସେଣ୍ଟିମିଟର ( 3-5 ଇଞ୍ଚ ) ।

## କୋମଳ ଲୋମ ପଡ଼ିଆ ମୂଷା

### ( Metad or Soft furred field rat )

ପଞ୍ଜାବ ଓ ଉତ୍ତର ପ୍ରଦେଶ ଠାରୁ ଦକ୍ଷିଣକୁ ଓ ପଶ୍ଚିମକୁ ଏବଂ ଦକ୍ଷିଣ ଭାରତରେ ଜାତିଏ ମୂଷା ଦେଖାଯାନ୍ତି, ଏମାନଙ୍କର ଦେହ ଲୋମ ବହୁଳ ଓ କୋମଳ, କାନ ଗୋଲ ଓ ବଡ଼ । ଏହା ସାଧାରଣତଃ କ୍ଷେତ ନିକଟରେ ବାସ

କରେ । ଏହାର ସାଧାରଣ ବର୍ଣ୍ଣ ମଳିନ ବାଦାମୀ ଧୂସର, ପେଟ ପାଖ ଧୂସରିଆ ଧଳା । ମୁଣ୍ଡ ଓ ଦେହର ଲମ୍ବ 13-15 ସେଣ୍ଟିମିଟାର (5-6 ଇଞ୍ଚ), ଲାଞ୍ଜ ପ୍ରାୟ ସେତିକି ଲମ୍ବ । କୋମଳ-ଲୋମ ପଡ଼ିଆ-ମୂଷା ସାଧାରଣତଃ ଚାଷ ଜମି ନିକଟରେ ବାସ କଲେ ମଧ୍ୟ ବୁଦା ଝାଟି ଥିବା ଜଙ୍ଗଲ, ପଥର



( ଚିତ୍ର ନଂ 73, କୋମଳ ଲୋମ ପଡିଆ ମୂଷା )

ତଳେ ଓ ଧ୍ୱଂସୋନ୍ମୁଖ ପ୍ରାଚୀରରେ ଛୋଟ ଗାତ କରି ରହିଥିବାର ଦେଖିବାକୁ ମିଳେ । ଏମାନେ ଯୋଡ଼ି ଯୋଡ଼ି ହୋଇ ବା ଅଧିକ ସଂଖ୍ୟାରେ ଛୋଟ ଛୋଟ ଗର୍ତ୍ତରେ ବାସ କରନ୍ତି । ବୁଦା, ବିଶେଷ କରି ନାଗଫେଣୀ କଣ୍ଟା ଗଛ ମୂଳରେ ଗାତ ଥାଏ । ଦାକ୍ଷିଣାତ୍ୟରେ କଳା-କପା ମୃତ୍ତିକା ( Black Cotton soil ) ଥିବା ସମତଳ ଅଞ୍ଚଳରେ ଏହା ଏକ ସାଧାରଣ ମୂଷା । କପା କ୍ଷେତରେ ସେମାନଙ୍କ ଉତ୍ପାତ ଅଧିକ ନୁହେଁ; ମାତ୍ର ସଂଖ୍ୟାଧିକ ଘଟିଲେ ଧାନ ଓ ଅନ୍ୟାନ୍ୟ ଫସଲର କ୍ଷତି କରନ୍ତି । ଥରକେ 6-8ଟି ଛୁଆ ଜନ୍ମ ହୁଅନ୍ତି । ଦାକ୍ଷିଣାତ୍ୟ ଓ ଦକ୍ଷିଣ ଭାରତରେ ଥରେ ଥରେ ଏମାନଙ୍କର ସଂଖ୍ୟା ବହୁତ ବଢ଼ିଯାଏ ଏବଂ ଏମାନେ ଚାଷର ବିଶେଷ କ୍ଷତି କରନ୍ତି ।

କୋମଳ-ଲୋମ ପଡିଆ ମୂଷାର ବୈଜ୍ଞାନିକ ନାମ Millardia meltada ( Gray )

## ପଡିଆ ଚୁଟିଆ ମୂଷା ( Field mouse )

ଭାରତର ଉପଦ୍ୱୀପ ଅଞ୍ଚଳରେ ପଡ଼ିଆମାନଙ୍କରେ ମୂଷା ସାଙ୍ଗକୁ ଚୁଟିଆ ମୂଷା ମଧ୍ୟ ଦେଖାଯାନ୍ତି । ଏମାନେ ଆକାରରେ ଘର ଚୁଟିଆ ମୂଷା ପରି; ମାତ୍ର ପଡ଼ିଆମାନଙ୍କରେ ରହନ୍ତି । ସେମାନଙ୍କ ମଧ୍ୟରେ "ଭାରତୀୟ

ପଡ଼ିଆ ଚୁଟିଆ ମୂଷା" ( Indian field mouse ) ଅତି ସାଧାରଣ । ମୁଣ୍ଡ ଓ ଦେହର ଲମ୍ବ ଘର ଚୁଟିଆ ମୂଷା ପରି 5 ରୁ 8 ସେଣ୍ଟିମିଟାର; ଲାଞ୍ଜ 5 ସେଣ୍ଟିମିଟାର (2ଇଞ୍ଚ) ରୁ ସାମାନ୍ୟ ଅଧିକ । ମରୁଭୂମି ଓ ବୁଦାଝାଟି



ଭାରତୀୟ ପଡିଆ ଚୁଟିଆ ମୂଷା



କଣ୍ଟାଳିଆ ପଡିଆ ଚୁଟିଆ ମୂଷା

( ଚିତ୍ର ନଂ 74, ଭରତୀୟ ପଡିଆ ଚୁଟିଆ ମୂଷା ଓ
କଣ୍ଟାଳିଆ ପଡ଼ିଆ ଚୁଟିଆ ମୂଷା )

ଜଙ୍ଗଲ ଅଞ୍ଚଳରେ ଏହାର ବର୍ଣ୍ଣ ମଳିନ ବାଲି ରଙ୍ଗର ଏବଂ ଆର୍ଦ୍ର ଅଞ୍ଚଳରେ ଧୂସରିଆ ବାଦାମୀ । ପେଟ ପାଖ ଧଳା । ଏହା ହତା ଓ ବଗିଚ୍ଛମାନଙ୍କରେ ମଧ୍ୟ ଦେଖାଯାଏ । ବୈଜ୍ଞାନିକ ନାମ Mus booduga (gray) ।

ପଡ଼ିଆମାନଙ୍କରେ ରହୁଥିବା ଆଉ ଗୋଟିଏ ସାଧାରଣ ଚୁଟିଆ ମୂଷା ହେଲ "କଣ୍ଟାଳିଆ ପଡ଼ିଆ ଚୁଟିଆ ମୂଷା" ( Spiny field mouse)

ଏହାର ଲୋମ ଚଟାଳିଆ ଓ କର୍କଶ । ପିଠି ପାଖର ଲୋମ ପେଟପାଖର ଲୋମଠାରୁ ଅଧିକ ରକ୍ଷ ଓ ମୋଟା । ପିଠି ଉପରେ ହସ୍ତ ସଞ୍ଚାଳନ କଲେ ବା ବର୍ଦ୍ଧନୀ କାଚ (Magnifying glass) ରେ ପରୀକ୍ଷା କଲେ ଏହା ସ୍ପଷ୍ଟ ଜଣାପଡ଼େ । ପିଠି ଉପରର ବର୍ଣ୍ଣ ବାଲିଆ ବା ଘନ ବାଦାମୀ । ପିଠି ଓ ପେଟର ଦୁଇ ପ୍ରକାର ବର୍ଣ୍ଣ ସ୍ପଷ୍ଟ । ଦାକ୍ଷିଣାତ୍ୟରେ କଣ୍ଟାଳିଆ ପଡ଼ିଆ ଚୂଟିଆ ମୂଷାର ବିଳ ଅଳ୍ପ ଗଭୀର । ଗାତ ଭିତରେ ପଶିଲା ବେଳେ ସେ ଗାତ ମୁହଁକୁ ସାନ ସାନ ଗୋଡ଼ିରେ ବନ୍ଦ କରି ଦେଇଥାଏ । ଖୁବ୍ ସମ୍ଭବତଃ ଶୟନକକ୍ଷରେ ସାନ ସାନ ଗୋଡ଼ି ନେଇ ମଧ୍ୟ ରଖୁଥିବ । ଏହାର ବୈଜ୍ଞାନିକ ନାମ, Mus Platythrix Bennit ।

## ଗଛ ମୂଷା

( Tree and bush rats )

ଅନେକ ଜାତିର ବଣୁଆ ମୂଷା ଅଛନ୍ତି । ସେମାନେ ବୁଦା ଜଙ୍ଗଲରେ ରହନ୍ତି ଓ ଖାଦ୍ୟ ପାଇଁ ମନୁଷ୍ୟର କ୍ଷେତବାଡ଼ି ଅନ୍ୟ ମୂଷାମାନଙ୍କ ତୁଳନାରେ ସେତେ ଉଜାଡ଼ନ୍ତି ନାହିଁ । ସେପରି କେତୋଟି ଜାତିର ମୂଷାଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦିଆଗଲା ।

## ଝାଟି ମୂଷା

( Indian busn rat )

ଏ ମୂଷାଟି ନାସାଗ୍ରଠାରୁ ଲାଞ୍ଜ ମୂଳଯାଏ ଲମ୍ବରେ ହୁଏ 10 ସେଣ୍ଟିମିଟାର ( 4 ଇଞ୍ଚ ) । ଲାଞ୍ଜର ଲମ୍ବ ପ୍ରାୟ ସେତିକି । ଏହାର ମୁଣ୍ଡ ଛୋଟ, ଅନେକ ପରିମାଣରେ ଗୋଲକାର, କାନ ଗୋଲକାର ଓ ଲାଞ୍ଜ କେତେକ ପରିମାଣରେ ଲୋମଶ । ପିଠି ପାଖର ବର୍ଣ୍ଣ ହଳଦିଆ ବାଦାମୀ, ସେଥିରେ କଳା ଓ କସରା ଛିଟା ଚିହ୍ନଥାଏ । ଭାରତର ଉପଦ୍ୱୀପ ଅଞ୍ଚଳର ବହୁ ସ୍ଥାନରେ ଏହା ଦେଖିବାକୁ ମିଳେ । ଏହା ମୁଖ୍ୟତଃ ଘନ ଜଙ୍ଗଲରେ ରହୁଥିଲେ ମଧ୍ୟ ସାନ ସାନ ବୁଦାଳିଆ ଝାଟି ଜଙ୍ଗଲ ଜାଗାରେ ରହେ । ଗଛର ଗହଳିଆ ସ୍ଥାନରେ ଘାସ, ଡ଼ାଳ ଓ ଛୁଆରେ ଘନ ଭାବେ ବୁଣାଯାଇଥିବା ବସା କରିଥାଏ । ବେଳେ ବେଳେ ଏମାନେ ଭୂମିରେ ମଧ୍ୟ ଗାତ କରି

ରହନ୍ତି ଓ କ୍ଷେତକୁ ଆସନ୍ତି । ଏହାର ଗତି ଧୀର ଓ ନିୟମିତ ଭବେ ସେଇ ଏକ ପଥରେ ଖାଦ୍ୟ ସଂଗ୍ରହ ସ୍ଥାନକୁ ଯାତାୟତ କରୁଥିବାରୁ ତା'ର ଚଲାପଥ ବାରି ହୋଇଯାଏ । ଚେର, ଘାସର କାଣ୍ଡ ଓ ବୀଜ ଏହାର ପ୍ରଧାନ ଖାଦ୍ୟ ।



( ଚିତ୍ର ନଂ 75, ଝାଟି ମୂଷା

ନାଗଏରୀ ଗଛର ବୀଜ ଖାଇବାକୁ ଏମାନେ ଭଲ ପାନ୍ତି । ପୂର୍ବେ ଶ୍ରୀଲଙ୍କାର କଫି ଉଦ୍ୟାନମାନଙ୍କରେ ଏମାନଙ୍କର ବହୁତ ଦୌରାତ୍ମ୍ୟ ଥିଲା । କଫି ଗଛ ସେଠାରେ କମିଯିବା ଫଳରେ ଝାଟି ମୂଷାଙ୍କ ସଂଖ୍ୟା କମିଗଲାଣି । ଏହାର ବୈଜ୍ଞାନିକ ନାମ Golunda elliote gray ।

## ଧଳାଲାଞ୍ଜ ମୂଷା

( White tailed wood rat )

ଏ ମୂଷାଟିର ମୁଣ୍ଡ ଓ ଦେହର ଲମ୍ବ 15-18 ସେଣ୍ଟିମିଟାର (6-7 ଇଞ୍ଚ ) । ଲାଞ୍ଜର ଲମ୍ବ ଏଥିରୁ ସାମାନ୍ୟ ଅଧିକ । ଲାଞ୍ଜର ବର୍ଣ୍ଣ ଏହାର ବିଶେଷ ଲକ୍ଷଣ । ଲାଞ୍ଜର ମୋଟ ଚାରିଭାଗରୁ ମୂଳ ତିନିଭାଗ ବାଦାମୀ, ଶେଷ ଏକ ଚତୁର୍ଥାଂଶ ଅପେକ୍ଷାକୃତ ଲମ୍ବ ଧଳା ଲୋମରେ ଆଚ୍ଛାଦିତ । ଲୋମ କୋମଳ; ପିଠି ପାଖର ବର୍ଣ୍ଣ ଧୂସର ବାଦାମୀ, ପେଟ ପାଖ ଧଳା । ଏମାନେ ଶୁଷ୍କ ବା ଆର୍ଦ୍ର ଚିର ସବୁଜ ବା ପତ୍ର ଝଡ଼ା ଦେଉଥିବା ଗଛର ଜଙ୍ଗଲ ମାନଙ୍କରେ ମୁଖ୍ୟତଃ ବୃକ୍ଷରେ ବାସ କରନ୍ତି । ଭାରତର କେନ୍ଦ୍ର, ମଧ୍ୟ, ଦକ୍ଷିଣ

ଓ ଉତ୍ତରରେ ବଙ୍ଗଳା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଏମାନେ ଦେଖାଯାନ୍ତି । ଦକ୍ଷିଣ ଭାରତରେ ମୁଖ୍ୟତଃ ଜଙ୍ଗଲରେ ରହୁଥିବା ବେଳେ, ମହୀଶୂରରେ ଏମାନେ ଝାଟି ଜଙ୍ଗଲରେ ରହନ୍ତି ଏବଂ ମଧ୍ୟପ୍ରଦେଶରେ ପଥର ଓ ଗଛ ନଥିବା ପାହାଡ଼ରେ ରହନ୍ତି । ଗଛର କୋରଡ଼ରେ ଏହି ମୂଷା ବାସ କରେ । ଯେଉଁଠି



( ଚିତ୍ର ନଂ 76, ଧଳା ଲାଞ୍ଜ ମୂଷା )

ସେଠେ ଗଛ ନାହିଁ, ସେଠାରେ ବୁଦା ମୂଳେ ବା ପଥର ତଳେ ଗାଡ଼ରେ ରହେ । କାଠି ଓ ଶୁଖିଲା ପତ୍ରରେ ସେ କ୍ଷୁଦ୍ର ନୀଡ଼ ରଚନା କରିଥାଏ । କେତେକଙ୍କର ଆଦୌ ନୀଡ଼ ନଥାଏ । ଏହା ଶ୍ରୀଲଙ୍କାରେ ମଧ୍ୟ ଦେଖିବାକୁ ମିଳେ । ବୈଜ୍ଞାନିକ ନାମ Rattus blanfordi ( Thomas )

## ଲମ୍ବା ଲାଞ୍ଜ ବୃକ୍ଷ ମୂଷିକ

( Long tailed tree mouse )

ଏ ମୂଷାଟି ଦେଖିବାକୁ ସୁନ୍ଦର, ଦେହର ଲୋମ କୋମଳ, ପିଠି ପଟର ବର୍ଣ୍ଣ ବାଦାମୀ, ପେଟ ପାଖ ଧଳା ଓ ଲାଞ୍ଜ ବହୁତ ଲମ୍ବା । ମସ୍ତକ ଓ ଦେହର ଲମ୍ବ 5ରୁ 9 ସେଣ୍ଟିମିଟାର (2-3½ ଇଞ୍ଚ) ଲାଞ୍ଜ 8-11 ସେଣ୍ଟିମିଟାର (3-4½ ଇଞ୍ଚ) । ଏହା ସମ୍ପୂର୍ଣ୍ଣରୂପେ ବୃକ୍ଷବାସୀ । ସେଥିପାଇଁ ଏହାର ସବୁ ଗୋଡ଼ରେ ପ୍ରଥମ ଓ ପଞ୍ଚମ ଅଙ୍ଗୁଳି ଆଂଶିକ ଭାବେ ପରସ୍ପର-ମୁଖୀ ଏବଂ

ସେଥିରେ ନଖର ପରିବର୍ତ୍ତେ ଚେପ୍‌ଟା ନଖ ଥାଏ । ସେମାନେ ଭାରତର ସର୍ବାଞ୍ଚଳରେ ବାସ କରନ୍ତି ।

ଗଛ ଉପରେ ଏହା କ୍ଷିପ୍ର ବେଗରେ ଦୌଡ଼ି ବୁଲି ଖାଦ୍ୟ ସଂଗ୍ରହ କରୁଥିବାର ଦେଖିବାକୁ ମିଳେ । ଫଳ, କଢ଼ ଓ କୋମଳ ଅଙ୍କୁର ଏହାର ଖାଦ୍ୟ । ଆରୋହଣ କଲାବେଳେ ଭଲ ଭାବେ ଧରି ଉଠି ପାରିବା ପାଇଁ ଲମ୍ବା ଲାଞ୍ଜକୁ ବ୍ୟବହାର କରେ । ଗଛ ଓ ବୁଦାରେ ଏହା ଦେଖିବାକୁ ମିଳେ । ପାଦ ଭୂମିରେ ଗତି ଲାଗି ଉପଯୋଗୀ ହୋଇ ନଥିବାରୁ ତଳେ ଏହା ସେତେ ଚଞ୍ଚଳ ନୁହେଁ ।



(ଚିତ୍ର ନଂ 77, ଲମ୍ବାଲାଞ୍ଜ ବୃକ୍ଷ ମୂଷିକ)

ଛୁଆ କରିବା ବେଳ ହେଲେ ମା' ମୂଷା ବଡ ନୀଡ଼ଟିଏ ରଚନା କରେ । ବାଉଁଶ ବଣରେ ଶୁଖିଲା ବାଉଁଶ ପତ୍ର ବ୍ୟବହାର କରେ; ଅନ୍ୟତ୍ର ଶୁଖିଲା ବା ମଲା ଘାସ ଓ ପତ୍ର ବ୍ୟବହାର କରେ । ଗଛର କୋରଡ଼ ବା ଗର୍ତ୍ତରେ ବା ଗଛ ଡାଳରେ ନୀଡ ରଚିତ ହୋଇଥାଏ । ଘରଘର ଛାତ ତଳେ ଆସି ମଧ୍ୟ ବସା କରିବାର ଦେଖା ଯାଇଛି । କେତେକ କ୍ଷେତ୍ରରେ ପକ୍ଷୀ ଓ ଓ ଅନ୍ୟାନ୍ୟ ପ୍ରାଣୀର ପରିତ୍ୟକ୍ତ ନୀଡରେ ଆସି ବାସ କରେ । ସେଥିରେ କେବଳ ମା' ଓ ତା'ର ଛୁଆ ରହନ୍ତି । ଥରକେ 3ରୁ 6ଟି ଛୁଆ ଦିଏ । ପୁରୁଷ

ମୂଷା ଅଲଗା ନୀଡ଼ରେ ନିଦ୍ରାଯାଏ । ସେମାନଙ୍କର ନୀଡ଼ ମାଈ ମୂଷାର ନୀଡ଼ ପରି ସେତେ ପରିପାଟୀ ଯୁକ୍ତ ନୁହେଁ । ଏହାର ବୈଜ୍ଞାନିକ ନାମ Vande leuria oleracea (Bennett) ।

## ଘର ମୂଷା ଓ ଚୁଟିଆ ମୂଷା

( House rats, bandicoots, mice )

ଭାରତର ସାଧାରଣ ଘର ମୂଷାମାନେ ଆମର ଖାଦ୍ୟ ଭଣ୍ଡାର ଲୁଟ କରନ୍ତି ଓ ମହାମାରୀ ପ୍ଲେଗ ରୋଗ ଉପୁଜାଇ ବିଭୀଷିକା ସୃଷ୍ଟି କରନ୍ତି, ଏସବୁ ପୂର୍ବେ ଉଲ୍ଲେଖ କରଯାଇଅଛି । କେତୋଟି ସାଧାରଣ ଘର ମୂଷା ଓ ଚୁଟିଆ ମୂଷା ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣୀ ଦିଆଗଲା ।

## ସାଧାରଣ ଘର ମୂଷା

( Common house rat )

ପ୍ରାଣୀ ବିଜ୍ଞାନବିତ୍‌ମାନଙ୍କର ବିଶ୍ୱାସ ଏହାର ଆଦିଭୂମି ଭାରତ ଓ ବର୍ମାର କୌଣସି ଅଞ୍ଚଳ । କାଳକ୍ରମେ ମନୁଷ୍ୟର ବାଣିଜ୍ୟ ସାମଗ୍ରୀ ମଧ୍ୟରେ



( ଚିତ୍ର ନଂ 74, ସାଧାରଣ ଘର ମୂଷା )

ଦେଶ ଦେଶାନ୍ତରକୁ ନୀତ ହୋଇ ଏବେ ପୃଥିବୀର ପ୍ରାୟ ସର୍ବତ୍ର ବସା ବାନ୍ଧିଅଛି । ଏହାର ବୈଜ୍ଞାନିକ ନାମ Rattus rattus Linnaeus ।

ଏମାନଙ୍କର ବର୍ଣ୍ଣରେ ବିଶେଷ ପ୍ରଭେଦ ପରିଲକ୍ଷିତ ହୁଏ । ବର୍ଣ୍ଣଭେଦରେ ତେର କିସମର (variety) ସାଧାରଣ ଘର ମୂଷା ଭାରତରେ ଦେଖାଯାନ୍ତି । ସେଥିରୁ ତିନୋଟି ସାଧାରଣ କିସମର ମୂଷାମାନଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ନିମ୍ନରେ ଦିଆଗଲା ।

1 । Rattus rattus rattus (Linneaus)— ଏହାର ପିଠି ପାଖର ବର୍ଣ୍ଣ କଳା ଓ ପେଟ ପାଖ ଧୂଆଁଳିଆ ଧୂସର । ଏହା ୟୁରୋପର ଥଣ୍ଡା ଓ ନାତିଶୀତୋଷ୍ଣ ଅଞ୍ଚଳରେ ବାସ କରେ ଓ ମନୁଷ୍ୟ ଗୃହରେ ମଧ୍ୟ ରହେ । ଏମାନେ ପ୍ରାଚ୍ୟରୁ ଯାଇ ପାଶ୍ଚାତ୍ୟ ଦେଶର ସ୍ଥାୟୀ ବାସିନ୍ଦା ହୋଇ ଯାଇ-ଅଛନ୍ତି । ଏମାନଙ୍କର ଆଧୁନିକ ବଂଶଧର ପୁଣି ବାଣିଜ୍ୟ ସାମଗ୍ରୀ ସହିତ ଆମ ଦେଶକୁ ଅନୀତ ହୋଇ ଅଛନ୍ତି । ଭାରତରେ ଏମାନେ କେବଳ ସମୁଦ୍ର ବନ୍ଦରମାନଙ୍କରେ ଦେଖାଯାନ୍ତି ।

2 । Rattus rattus alexandrinus (Geoffroy)— ଏହା ଆଲେକଜାଣ୍ଡ୍ରିନ୍ ମୂଷା (Alexandrine rat) ନାମରେ ମଧ୍ୟ ପରିଚିତ । ଏହାର ପିଠିପାଖ ବାଦାମୀ ଧୂସର, ପେଟ ପାଖ ମଳିନ । ଭୂମଧ୍ୟସାଗର କୂଳର ଦେଶସମୂହର ଜଳବାୟୁ ଭାରତଅଞ୍ଚଳର ଜଳବାୟୁ ତୁଳନାରେ ଉଷ୍ଣ । ଏମାନେ ସେହି ଅଞ୍ଚଳରେ ବାସ କରନ୍ତି ଓ ବାସ ପାଇଁ ମନୁଷ୍ୟଗୃହ ଉପରେ ସେତେ ନିର୍ଭର କରନ୍ତି ନାହିଁ । ଭାରତର ଉପଦ୍ୱୀପ ଅଞ୍ଚଳରେ ବାସଗୃହ ବହୁଳ ଜନାକୀର୍ଣ୍ଣ ସହର ଓ ନଗରରେ ଏମାନେ ଦେଖାଯାନ୍ତି ।

3 । Rattus rattus frugivorous (Rafinique)— ଏହାର ପିଠି ପାଖର ବର୍ଣ୍ଣ ହଳଦିଆ ବାଦାମୀ ବା ନାଲିଆସିଆ ବାଦାମୀ ଓ ପେଟ ପାଖ ପୂରା ଧଳା । ଏହା ବନ୍ୟ ଏବଂ ମୁଖ୍ୟତଃ ପଦାରେ ରହନ୍ତି; କ୍ୱଚିତ୍ ମନୁଷ୍ୟ ଗୃହରେ ବାସ କରନ୍ତି । ଭାରତରେ ଏମାନେ ପାହାଡ ଓ ସମତଳ ଭୂମିରେ ପଦାରେ ଓ ଜଙ୍ଗଲରେ ବିଲରେ ବାସ କରନ୍ତି । ଏହି ଧଳା ପେଟ ମୂଷା ବହୁ ବର୍ଣ୍ଣର ଓ ତଦନୁସାରେ ଭୌଗଳିକ ଅବସ୍ଥିତି ଅନୁସାରେ ଏମାନେ ବିଭିନ୍ନ କିସମର ହୋଇଥାନ୍ତି ।

# ବାଦାମୀ ଘର ମୂଷା

( Brown rat )

ବାଦାମୀ ମୂଷାର ଆବାସ ଘର, କେନ୍ଦ୍ର ଏସିଆର ନାତିଶୀତୋଷ୍ଣ ଅଞ୍ଚଳ ବୋଲି ଧରଯାଏ । ସେଠାରୁ କାଳକ୍ରମେ ସେମାନେ ସମଗ୍ର ପୃଥିବୀରେ ବ୍ୟାପ୍ତ ହୋଇ ଅଛନ୍ତି । ନାତିଶୀତୋଷ୍ଣ ଅଞ୍ଚଳରୁ ଶୀତଳ ଅଞ୍ଚଳକୁ ଯାଇ ସେମାନେ ସାଧାରଣ ଘର ମୂଷା ( Rattus rattus ) ଅପେକ୍ଷା ଜୀବନ ସଂଗ୍ରାମରେ ଅଧିକ ଜୟୀ ହୋଇ ଅଛନ୍ତି । ମାତ୍ର ଭାରତରେ ପରିସ୍ଥିତି ନିଆରା । ଏଠାରେ ଗ୍ରୀଷ୍ମାଞ୍ଚଳରେ ନିଜ ବାସ ସ୍ଥାନରେ ସାଧାରଣ ଘର ମୂଷା ଆପଣାକୁ ପ୍ରତିଷ୍ଠିତ କରି ରଖିଅଛି । ଭାରତର ସର୍ବତ୍ର ସାଧାରଣ ଘର ମୂଷା ଦେଖିବାକୁ ମିଳେ । ବାଦାମୀ ମୂଷା ଭାରତରେ କେବଳ ବନ୍ଦର, ନଗର ଓ ସହରମାନଙ୍କରେ ବସବାସ କରି ପାରିଅଛି । ବନ୍ଦରକୁ ଜାହାଜ ଦ୍ୱାରା ଆନୀତ ହୋଇଅଛି; ଏବଂ ନଗର ଓ ସହର ସବୁକୁ ଜଳପଥ, ରେଳପଥ ବା ସାଧାରଣ ରାସ୍ତା ଦ୍ୱାରା ସ୍ଥାନାନ୍ତରୀତ ହୋଇ ସେସବୁ ସ୍ଥାନରେ ବସତି କରିଅଛି । ଏହାର ବର୍ଣ୍ଣ ବାଦାମୀ ଓ ପିଠି ଉପର ସବୁଠାରୁ ଅଧିକ ବାଦାମୀ । ପେଟ ପାଖ ଧଳା ବା ଧଳାସିଆ ବାଦାମୀ । ମୁଣ୍ଡ ଓ ଦେହର ଲମ୍ବ 18-20 ସେଣ୍ଟିମିଟାର (7-8 ଇଞ୍ଚ); ଲାଞ୍ଜ 15-18 ସେଣ୍ଟିମିଟାର (6-7 ଇଞ୍ଚ ) । ବଡ଼ ବଡ଼ ଜନାକୀର୍ଣ୍ଣ ନଗର ମାନଙ୍କରେ ବାଦାମୀ ମୂଷା ସାଧାରଣତଃ ନର୍ଦ୍ଦମା ଓ ଭୂଗର୍ଭସ୍ଥ ମଳନିର୍ଗମ ନାଳୀ ( Sewer ) ରେ ଦେଖିବାକୁ ମିଳେ । ନାତିଶୀତୋଷ୍ଣ ଅଞ୍ଚଳରୁ ଗ୍ରୀଷ୍ମାଞ୍ଚଳକୁ ଆସିଥିବାରୁ ସେ ଜଳ ନିକଟରେ ରହିବାକୁ ଭଲପାଏ । ବାଦାମୀ ଘରମୂଷାର ବୈଜ୍ଞାନିକ ନାମ Rattus norvegicus ( Berkenhout ) ।

# ପନ୍ଦ୍ରିଆ ମୂଷା

( Bandicoot Rat)

ପୂର୍ବେ ଗାତୁଆ ମୂଷା ( Indian mole-rat Bandicota bengalensis ସମ୍ବନ୍ଧରେ ବିବରଣୀ ଦେଲାବେଳେ ଏ ଜାତୀୟ ମୂଷାଙ୍କର ସାଧାରଣ ଲକ୍ଷଣ ବର୍ଣ୍ଣିତ ହୋଇଅଛି । ପଢ଼ିଆ ମୂଷା ମୁଖ୍ୟତଃ

କ୍ଷେତ ଓ ଜଙ୍ଗଲରେ ବାସ କରେ । ମାତ୍ର ଗାଡୁଆ ମୂଷା ଖାଦ୍ୟ ପାଇଁ ମନୁଷ୍ୟ ଉପରେ ନିର୍ଭର କରୁଥିବାରୁ ସେମାନେ ମନୁଷ୍ୟ ବାସଗୃହରେ ବା ନିକଟରେ ରହନ୍ତି । ଆକାର ଓ ବାସ ଯୋଗୁ ପଡିଆ ମୂଷାକୁ ପାହାଡି ମୂଷା



ଚିତ୍ର ନଂ 79, ପଡିଆ ମୂଷ

ବୋଲି ମଧ୍ୟ କୁହାଯାଏ । ନାସାଗ୍ରଠାରୁ ଲଞ୍ଜ ମୂଳଯାଏ ଏହାର ଲମ୍ବ 30-40 ସେଣ୍ଟିମିଟାର ( 12-15 ଇଞ୍ଚ ), ଲଞ୍ଜ ପ୍ରାୟ ସେତିକି ଲମ୍ବା ଓଜନ 0.9-1 4 କିଲୋଗ୍ରାମ (2-3) ପାଉଣ୍ଡ । ଆକାର ବଡ ହୋଇଥିବାରୁ ପଡିଆ ମୂଷାକୁ ଅନ୍ୟ ମୂଷାମାନଙ୍କ ଠାରୁ ଚିହ୍ନିବା ସହଜ । ଭାରତର ଉପଦ୍ୱୀପ ଅଞ୍ଚଳରେ ଦେଖାଯାଉଥିବା ପାହାଡି ମୂଷାର ବୈଜ୍ଞାନିକ ନାମ Bandicota Indica ( Bechstein ) Indica ( Bechstein ) । ନେପାଳରୁ ଆସାମ ଦେଇ ବର୍ମାଯାଏ ଦେଖା ଯାଉଥିବା ପାହାଡି ମୂଷା ଆଉ ଏକ ଜାତିର ଏବଂ ତା'ର ବୈଜ୍ଞାନିକ ନାମ Bandicota indica nemorivaga (Hodgson) । ସିଂହଳରେ B indica indica କିସମ ପାହାଡ଼ି ମୂଷା ବାସ କରେ ।

ପଡିଆ ମୂଷା ସାଧାରଣତଃ ସହର ଓ ଗ୍ରାମ ନିକଟରେ ଦେଖାଯାନ୍ତି । ଦକ୍ଷିଣ ଭାରତରେ ଘରମୂଷା ( House rat, Rattus rattus ) ପରି

ଅଧିକ ସଂଖ୍ୟାରେ ନ ହେଲେ ମଧ୍ୟ ଅଳ୍ପ ସଂଖ୍ୟାରେ ପାହାଡ଼ି ମୂଷା ବାସଗୃହ ମାନଙ୍କରେ ମଧ୍ୟ ଦେଖାଯାନ୍ତି । ସେମାନେ ମୁଖ୍ୟତଃ ମନୁଷ୍ୟ ବାସ ନିକଟରେ ଅର୍ଥାତ୍ ହତା ଓ ବଗିଚାରେ, ଘୋଡ଼ାଶାଳ ବା ଗୁହାଳ ଓ ବାହାର ଘର ( out house ) ନିକଟରେ ଭୂମିରେ ସୁଡଙ୍ଗ ନିର୍ମାଣ କରି ବାସକରନ୍ତି । ବଡ଼ ବଡ଼ ପାତରୁ ସେମାନଙ୍କର ଅବସ୍ଥିତି ଜଣାପଡେ । ସୁଡଙ୍ଗ କରିବା ଦ୍ୱାରା ଏମାନେ ଘରର ଭିତ୍ତିର କ୍ଷତି କରନ୍ତି । ଅନ୍ୟ ମୂଷାମାନଙ୍କ ପରିଏମାନେ ଘରୁ ଫୋପଡା ହେଉଥିବା ଆବର୍ଜନା, ଶସ୍ୟ, ପନି ପରିବା ଇତ୍ୟାଦିଖାନ୍ତି । ବେଳେବେଳେ କୁକୁଡାଙ୍କ ଉପରେ ମଧ୍ୟ ଚଢ଼ାଉ କରନ୍ତି ।

## ଚୁଟିଆ ମୂଷା

( Houe mouse )

ଭାରତର ସମତଳ ଭୂମିରେ ଘରମାନଙ୍କରେ ଚୁଟିଆ ମୂଷାର ଦୌରାତ୍ମ୍ୟ ସମସ୍ତଙ୍କୁ ଜଣା । ସାଧାରଣ ଗଠନ ଓ ଆକାର ଦୃଷ୍ଟିରୁ ଏହାକୁ ସାଧାରଣ ଘର ମୂଷା ( House rat, Rattus rattus ) ର ଏକ କ୍ଷୁଦ୍ର ସଂସ୍କରଣ



ଚିତ୍ର ନଂ 80, ଚୁଟିଆ ମୂଷା

ବୋଲଯାଇପାରେ । ମୁଣ୍ଡ ଓ ଦେହର ଲମ୍ବ 5-8 ସେଣ୍ଟିମିଟାର ( 2-3 ଇଞ୍ଚ) ଲାଞ୍ଜ ପ୍ରାୟ ସେତିକି ଲମ୍ବର । ବର୍ଣ୍ଣ ହାଲୁକା ବାଦାମୀରୁ ଘନ ବାଦାମୀ । ପେଟ ପାଖର ବର୍ଣ୍ଣ ହାଲୁକା । ଏସିଆ ମହାଦେଶ ଚୁଟିଆ ମୂଷାର ଆଦି ଜନ୍ମଭୂମି । କାଳକ୍ରମେ ଏହା ପୃଥିବୀର ସବୁ ଅଞ୍ଚଳକୁ ବ୍ୟାପି ଯାଇଅଛି । ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଏହା ପ୍ରାୟ ସର୍ବତ୍ର ଦେଖିବାକୁ ମିଳେ ମନୁଷ୍ୟର ବାସଗୃହ ଚୁଟିଆ ମୂଷାର ମୁଖ୍ୟ ଆବାସ ।

ବେଳେ ବେଳେ ଗ୍ରାମ ଓ ସହର ନିକଟସ୍ଥ ଉଦ୍ୟାନ ଓ କ୍ଷେତରେ ମଧ୍ୟ ବାସ କରେ । ଏହା ଅତ୍ୟନ୍ତ ଚଞ୍ଚଳ, ଭଲ ଚଢାଳୀ ଓ ଭୂଲଗ୍ନ କାନ୍ଥ ଉପର ଆଡକୁ ଖପା ଖପ ଡେଇଁ ଉଠି ଯାଇପାରେ । ଦିନ ପରେ ଦିନ ସେଇ ଏକ ଘଣ୍ଟା ଦେଇ ଚୁଟିଆ ମୂଷା ଚଲବୁଲ କରେ ଓ ସାଧାରଣତଃ କାନ୍ଥ କଡେ କଡ଼େ ଯାଏ । ଏହା ସର୍ବଭୁକ୍; ଯାହା ଖାଇବାକୁ ପାଇଲ, ତାକୁ ଖାଏ । ଯେ କୌଣସି ସୁବିଧା ଜନକ ଗାତ ବା ଫାଟ ଜାଗାରେ, ଯଥା:—ବହି ତ୍ରାବଲ, ପାହାଚ ତଳ, ଚଟାଣ ତଳ ଆସବାସ କନ୍ଦିରେ ନରମ ପଦାର୍ଥ ଆଣି ଘର କରେ । ଥରକେ ୪ଟିରୁ୮ଟି ଯାଏ ଛୁଆ ଜନ୍ମ ହୁଅନ୍ତି । ଜନ୍ମ ହେଲବେଳେ ସେମାନଙ୍କର ଆଖି ଫିଟି ନଥାଏ । ଶୀଘ୍ର ସେମାନେ ବଢିଯାନ୍ତି ଓ ବର୍ଷକ ଭିତରେ ବୟଃପ୍ରାପ୍ତ ହୋଇ ଛୁଆ କରିବାକୁ ଆରମ୍ଭ କରନ୍ତି ।

## ଭୋଲ୍ (Vole)

ଭୋଲ ମାନଙ୍କୁ ମାଇକୋଟିନି ( Microtinae ) ବଂଶଭୁକ୍ତ କରଯାଏ । ଏମାନଙ୍କର ମୁଣ୍ଡ ଓ ଦେହର ଲମ୍ବ 8-10 ସେଣ୍ଟିମିଟାର ଇଞ୍ଚ(3-4) । ଭୋଲ ମୁଷା ପରି କିନ୍ତୁ ଠିକ୍ ମୂଷାପରି ନୁହଁନ୍ତି । ଏମାନେ ବିଳବାସୀ । ଏଣୁ



ଚିତ୍ର ନଂ 81 ଭୋଲ ମୂଷା

ଭୋଲର ଶରୀର ତଦନୁଯାୟୀ ଗଠିତ । ଥୋମଣି ଛୋଟ, ମୁଣ୍ଡ ଗୋଲକାର; କାନ କ୍ଷୁଦ୍ର । ଦେହର ଗଠନ ଉଣା ଅଧିକ ଲମ୍ବାଳିଆ । ଭାରତରେ ଦେଖା-ଯାଉଥିବା ସବୁ ଜାତିର ଭୋଲଙ୍କର ଲାଞ୍ଜ ଦେହର ଲମ୍ବର ଅଧକରୁ ସାନ । ଏମାନଙ୍କର ବୃଦ୍ଧାଙ୍ଗୁଳି କ୍ଷୁଦ୍ର, ବେଳେବେଳେ ନଖର ହୀନ: ଅନେକ ସମୟରେ

ଚଟାଳିଆ ନଖର ଥାଏ । ଋକ୍ଷ ଘାସ ଓ ଚେର ଖାଇ ଜୀବନ ଧାରଣ କରୁଥିବାରୁ ଏମାନଙ୍କର ପେଷଣ ଦନ୍ତର ଉପର ଚଟାଳିଆ ।

ଭାରତରେ ଭୋଲ କେବଳ ଉଚ୍ଚ ସ୍ଥାନରେ ଯଥା ହିମାଳୟ, କାଶ୍ମୀର, ଲଦାଖ ଓ ତିବ୍ବତ ଅଞ୍ଚଳରେ ଦେଖାଯାନ୍ତି । ରୟେଲ ଭୋଲ [ Royle's Vole Alticola Roylei ( gray ) 3000 ମିଟାର (10,000 ଫୁଟ) ଉଚ୍ଚତାରେ କୁମାଓନ୍ ଓ କୁଲୁ ଅଞ୍ଚଳରେ; ସିକିମ୍ ଭୋଲ (Sikkim vole, Pitymys sikimensis ( Hodgson ) ସିକିମରେ 2100-3700 ମିଟାର (7000-12000 ଫୁଟ) ଉଚ୍ଚତାରେ ଓ ମୁରୀ ଭୋଲ (Murrea vole, Hyperacrius Wynnei ( Blanford ) ମୁରୀ ଅଞ୍ଚଳରେ ଓ ବେଲୁଚିସ୍ଥାନର ପଶ୍ଚିମାଞ୍ଚଳରେ, କ୍ୱେଟା ଭୋଲ ( Quetta vole, Ellobius fuscocapillus (Blyth)] ବାସ କରନ୍ତି ।

## ବାଉଁଶ ମୂଷା

( Bamboo rat )

ବାଉଁଶ ମୂଷାଙ୍କୁ ରାଇଜୋମାଇଡି (Rhizomyidre ) ନାମକ ଏକ ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ କରାଯାଏ । ଏମାନେ ଭୂମି ତଳେ ବିଳରେ ବାସ କରନ୍ତି ।



ଚିତ୍ର ନଂ 82 ବାଉଁଶ ମୂଷା

ଏମାନଙ୍କର କର୍ତ୍ତନ ଦନ୍ତ ବଡ ଓ ବାହାରକୁ ବାହାରିଥାଏ । ଏମାନେ ଅନେକ ପରିମାଣରେ ଦେଖିବାକୁ ବଡ ଆକାରର ବିଳ ଚୁଚୁନ୍ଦ୍ରା ( mole ) ପରି ।

ଆଖି ଖୁବ ଛୋଟ; ଅବୟବ ଛୋଟ ମାତ୍ର ସେଥିରେ ବଡ଼ ନଖର ଥାଏ । ଲାଞ୍ଜ ଛୋଟ । ଦେହର ଆକାର ନଳାକାର । ବେକ ସୁସ୍ପଷ୍ଟ ନୁହେଁ । ଏଣୁ ମୁଣ୍ଡ ଗଣ୍ଡିଠାରୁ ସ୍ୱତନ୍ତ୍ର ଭାବେ ଜଣାପଡ଼େ ନାହିଁ । ବାଉଁଶ ମୂଷା ସେମାନଙ୍କର ତୀକ୍ଷ୍ଣ ଦନ୍ତ ଓ ନଖର ସାହାଯ୍ୟରେ ଭୂମି ଖନନ କରି ଗହ୍ୱର ତିଆରି କରନ୍ତି । ନଦୀ ବନ୍ଧ, ଗଛ ମୂଳ ବା ଖୋଲା ଘାସପଡ଼ିଆରେ ଗର୍ତ୍ତତିଆର ହୋଇଥାଏ । ସୁଡଙ୍ଗ କଲାବେଳେ ସେମାନେ ମାଟିକୁ ପଦାକୁ କାଢି ପକାନ୍ତି । ସୁଡଙ୍ଗ ଦ୍ୱାର ମୁହଁରେ କଡା ହୋଇଥିବା ମାଟି ଦ୍ୱାରା ସେମାନଙ୍କର ଉପସ୍ଥିତି ଜଣାପଡେ । ସୁଡଙ୍ଗପଥ ଭୂଲମ୍ବ ଭାବେ 60 ସେଣ୍ଟିମିଟର ଗଭୀର ଯାଏ ଯାଇ ଏକ ପ୍ରଶସ୍ତ 'ନିଦ୍ରାକକ୍ଷ'ରେ ପଡ଼ିଥାଏ । ଏହି କେନ୍ଦ୍ର ଗହ୍ୱରରୁ ସୁଡ଼ଙ୍ଗ ଆଉ କିଛି ବାଟ ବ୍ୟାପୀଥାଏ । ପଦାକୁ ଏହାର ଦ୍ୱାର ନଥାଏ ବୋଲି ମନେ ହେଲେ ହେଁ ଆତ୍ମରକ୍ଷା ପାଇଁ ପଳାଇଲା ବେଳେ ବାଉଁଶ ମୂଷା ସେ ବାଟେ ମାଟି ଆଡ଼େଇ ପଦାକୁ ବାହାରି ଗ୍ଳଲିଯାଏ । ବିଳ ମଧ୍ୟରେ ଥିଲାବେଳେ ବାଉଁଶ ମୂଷା ପ୍ରବେଶପଥର ଦ୍ୱାର ମୁହଁକୁ ମାଟି ଆଡେଇ ବନ୍ଦ କରି ଦେଇଥାଏ । ସନ୍ଧ୍ୟା ଗମରେ ଏମାନେ ବିଳର ଆଶ୍ରୟ ତ୍ୟାଗ କରି କଅଁଳ ଘାସ, ପତ୍ର ଓ ମୂଳ ଖୋଳି ଖାଇବାକୁ ବାହାରି ଆସନ୍ତି । ଏମାନଙ୍କର ଦୃଷ୍ଟି ଶକ୍ତି କ୍ଷୀଣ ହୋଇ ଥିବାରୁ ଗତି ମନ୍ଥର । ଏଣୁ ଧରିବା ସହଜ ହେଲେ ମଧ୍ୟ ଧରିବାକୁ ଚେଷ୍ଟା କଲେ ବାଉଁଶ ମୂଷା ନୃଶଂସ ଭାବେ କାମୁଡନ୍ତି ଓ ଜୋରରେ ସଁ ସଁ ଶବ୍ଦ କରନ୍ତି । ଏମାନେ ହିମାଳୟର ପାର୍ବତ୍ୟ ଅଞ୍ଚଳରେ ବାସ କରନ୍ତି ଓ ବାଉଁଶ ବୁଦାରେ ବେଶୀ ମିଳନ୍ତି । ଏଣୁ ଏମାନଙ୍କର ନାମ ବାଉଁଶ ମୂଷା ହୋଇଅଛି । ପାହାଡ଼ିଆ ଅଞ୍ଚଳର ଲୋକେ ଏମାନଙ୍କର ମାଂସ ଖାନ୍ତି । ଏମାନଙ୍କର ଯୌନ ଜୀବନସମ୍ବନ୍ଧରେ କିଛି ଜଣାନାହିଁ । ଭାରତରେ ଦୁଇଟି ଜାତିର ବାଉଁଶ ମୂଷା ଦେଖାଯାନ୍ତି ।

୧ । ଲୋହିତ ପିଙ୍ଗଳ ବାଉଁଶ ମୂଷା ( Bay Bamboo Rat ), Cannomys badius ( Hodgson )-ଏହା ହିମାଳୟର ପାଦଦେଶ ନେପାଳଠାରୁ ସିକିମ୍, ଭୁଟାନ ଓ ଆସାମ ଦେଇ ବର୍ମା ଓ ଶ୍ୟାମ ପର୍ଯ୍ୟନ୍ତ ବିସ୍ତୃତ ପାର୍ବତ୍ୟ ଅଞ୍ଚଳରେ ବାସ କରେ ।

୨ । ଧଳା ପେଟ ବାଉଁଶ ମୂଷା ( Hoary bamboo rat ). Rhizomys pruinosus Blyth- ଖାସିଆ ପାହାଡ଼ ଓ ଆସାମର

ପାର୍ବତ୍ୟ ଅଞ୍ଚଳରେ ଦେଖାଯାଏ । ପୂର୍ବରେ ଦକ୍ଷିଣ ଚୀନ ଓ ଶ୍ୟାମ ପର୍ଯ୍ୟନ୍ତ ଏମାନଙ୍କର ବିସ୍ତୃତି ।

## ଝିଙ୍କ

କୃନ୍ତକ ପ୍ରାଣୀ ବର୍ଗରେ ଝିଙ୍କ ଏକ ସ୍ୱତନ୍ତ୍ର ବଂଶ ଗଠନ କରେ ଏହି ବଂଶର ନାମ ହିଷ୍ଟ୍ରିସିଡି ( Hystricidae ) । ଝିଙ୍କକୁ ଅନ୍ୟ ସବୁପ୍ରକାର କୃନ୍ତନକାରୀ ପ୍ରାଣୀମାନଙ୍କଠାରୁ ଗୋଟିଏ ଲକ୍ଷଣ ଦ୍ୱାରା ପୃଥକ୍ କରି ହୁଏ । ତାହା ହେଲା ସେମାନଙ୍କର ଲୋମର ପରିବର୍ତ୍ତନ । ଏମାନଙ୍କର ଲୋମ ପରିବର୍ତ୍ତିତ ହୋଇ କଣ୍ଟକରେ ପରିଣତ ହୋଇଅଛି । ଭାରତରେ ଦେଖାଯାଉଥିବା ଝିଙ୍କ ମାନଙ୍କର ବେକ ଓ କାନ୍ଧରେ ଯେଉଁ "ଝିଙ୍କକାଠି" ଦେଖାଯାଏ ତା'ର ଲମ୍ବ 15ରୁ30 ସେଣ୍ଟିମିଟାର ( 6-12 ଇଞ୍ଚ ) । ପିଠି ଉପରର 'କାଠି' ଆହୁରି ଘନଭାବେ ସଜ୍ଜିତ । ପ୍ରତି କାଠିରେ ଘନ ବାଦାମୀ ବା କଳା ଓ ଧଳା ଡେ ରା ଡୋରା ଚିହ୍ନ ଥାଏ । ଲାଞ୍ଜ ଅଂଶରେ ଥିବା କାଠି ଧଳା ଓ ସବୁଠାରୁ ବଡ । ମହୀଶୂର,, କୋଏମ୍ବେଟୋର ଓ କେରଳରେ ଦକ୍ଷିଣଘାଟ ପର୍ବତମାଳା ଅଞ୍ଚଳରେ ଗୋଟିଏ କିସମ୍‌ର "ଲାଲ ଝିଙ୍କ" ( Red porcupine ଦେଖାଯାନ୍ତି । ଏମାନଙ୍କ କାଠିରେ ଧଳା ରଙ୍ଗର ଡୋରିଆ ପଟି ଚିହ୍ନ ପରିବର୍ତ୍ତେ କଳଙ୍କିଆ ନାଲ ବା ଗୋଲାପି ରଙ୍ଗର ଚିହ୍ନଥାଏ । ଏହା ଅନ୍ୟତ୍ର ଦେଖା ଦେଉଥିବା ଝିଙ୍କଠାରୁ ଭିନ୍ନ ଓ ଆକାରରେ ଅଳ୍ପ ଛୋଟ । ସ୍ଥାନୀୟ ଲୋକେ ଏହାର ଗାତ ଭିତରୁ ଏକ ପ୍ରକାର ଗନ୍ଧ ବାହାରେ ବୋଲି କହନ୍ତି ଓ ତା'ର ମାଂସ ଖାନ୍ତି । ବନ୍ଦୀ ଅବସ୍ଥାରେ ରଖିଲେ ବା ରୋଗୀଣା ହୋଇଗଲେ ଲାଲ ଝିଙ୍କର ଲାଲ ଆଭା ମସିଆ ହୋଇଯାଏ ।

ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ, ଶ୍ରୀଲଙ୍କା ଏବଂ ପଶ୍ଚିମରେ ବେଲୁଚିସ୍ଥାନ ଓ ପାରସ୍ୟ ଦେଇ ସିରିଆ, ଏସିଆ ମାଇନର ଓ ପାଲେଷଟାଇନ୍ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଝିଙ୍କ ବାସ କରନ୍ତି । ଆମ ଓଡିଶା ଓ ଭାରତୀୟ ଉପଦ୍ୱୀପର ଅଧିକ ଅଞ୍ଚଳରେ ଯେଉଁ ଝିଙ୍କ ଦେଖାଯାଏ, ତାକୁ ଇଂରାଜିରେ "ଭାରତୀୟ ଝିଙ୍କ" ( Indian porcupine ) ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ ( Hystrix indica kerr ) । ଝିଙ୍କର ଦେହ ଓ ମୁଣ୍ଡର

ଲମ୍ବ 70-90 ସେଣ୍ଟିମିଟାର ( 28-35 ଇଞ୍ଚ ): ଲାଞ୍ଜ 8ରୁ10 ସେଣ୍ଟିମିଟାର (3-4 ଇଞ୍ଚ ); ଝିଙ୍କ କାଠିର ଲମ୍ବ 18-20 ସେଣ୍ଟିମିଟାର ( 7-8 ଇଞ୍ଚ ); ଓଜନ 11-18 କିଲୋଗ୍ରାମ ( 25ରୁ 40 ପାଉଣ୍ଡ ) ।

କେନ୍ଦ୍ର ଓ ପୂର୍ବ ହିମାଳୟ, ଆସାମ ଏବଂ ବାଙ୍ଗଲା ଦେଶ ( ନିମ୍ନବଙ୍ଗ )ରେ ଜାତିଏ ଝିଙ୍କ ଦେଖାଯାନ୍ତି । ଏହାକୁ 'ହଜସନ ଝିଙ୍କ' Hogson's porcupine ) କହନ୍ତି । ଏହାର ବୈଜ୍ଞାନିକ ନାମ Hystrix hodgsoni (gray) । ଏମାନେ 1500 ମିଟାର ( 5000 ଫୁଟ ) ଉଚ୍ଚତା ଯାଏ ଦେଖାଯାନ୍ତି । ଏମାନଙ୍କର ମୁଣ୍ଡ ଉପରେ ଥିବା କାଠି ଖୁବ୍ ଛୋଟ ( ପ୍ରାୟ 15 ସେଣ୍ଟିମିଟାର ବା 6 ଇଞ୍ଚରୁ ସାନ ) ବା ଆଦୌ କାଠି ନ ଥାଏ ।

ବାଙ୍ଗଲା ଦେଶ ( ନିମ୍ନ ବଙ୍ଗ ), ଆସାମ ଓ ଦକ୍ଷିଣକୁ ମାଲୟ ଦେଶ ସମୂହରେ ଆଉ ଜାତିଏ ଝିଙ୍କ ବାସ କରନ୍ତି । ତାକୁ "ଚୂଳ ଲାଞ୍ଜି ଝିଙ୍କ" Brushtailed porcupine) କହନ୍ତି । ଏହାର ବୈଜ୍ଞାନିକ ନାମ *Atherurus macrourus ( Linnaeus )* । ଏହାର ଲାଞ୍ଜ ଲମ୍ବା ଓ ଶେଷ ଭଗରେ ମୋଟା ହୋଇ ଗୋଛାଏ 'କାଠି' ଥାଏ । ଏହି ଝିଙ୍କ ଖୁବ୍ ବେଶୀ ମିଳନ୍ତି ନାହିଁ ।

"ଭରତୀୟ ଝିଙ୍କ" ସାଧାରଣତଃ ପାହାଡ଼ର ଢ଼ାଲୁ ଅଞ୍ଚଳରେ ବେଶୀ ଦେଖାଯାଏ । ଅବଶ୍ୟ ଏହା ଆର୍ଦ୍ର ଓ ବୃଷ୍ଟିହୀନ ଶୁଷ୍କ ଅଞ୍ଚଳ, ଖୋଲା ପ୍ରାନ୍ତର ଓ ଜଙ୍ଗଲ, ଏପରି, ବିଭିନ୍ନ ପରିବେଶରେ ମଧ୍ୟ ବାସ କରେ । କୁମାଓନ୍ ଓ ପଶ୍ଚିମ ହିମାଳୟର ପାର୍ବତ୍ୟ ଅଞ୍ଚଳରେ 2400 ମିଟାର (8000 ଫୁଟ ) ଉଚ୍ଚତା ଯାଏ ଏମାନେ ଦେଖାଯାନ୍ତି । ଦିନବେଳେ ଏହା ପଥର ଗୁହା, ବା ନିଜେ ଖୋଳିଥିବା ଗାତରେ ବିଶ୍ରାମ ନେଇଥାଏ । ଅନ୍ୟ ପ୍ରାଣୀ ଖୋଳିଥିବା ଗାତରେ ମଧ୍ୟ ଝିଙ୍କ ବାସ କରେ । ଗାତ ସାନ ହୋଇଥିଲେ ତାକୁ ଖୋଳି ଓସାରିଆ କରିଥାଏ । ଅବଶ୍ୟ ବିଶ୍ରାମ ପାଇଁ ତା'ର ବିଲ ନ ହେଲେ ଚଳେ । ଫସଲ ହୋଇଥିବା ସମୟରେ ସେମାନେ କ୍ଷେତ ନିକଟସ୍ଥ ଘନ ବୁଦା ମୂଳେ ଆଶ୍ରୟ ନେଇଥାନ୍ତି । ତରଇ ଅଞ୍ଚଳରେ ଉଚ୍ଚ ଘାସ ମୂଳେ ସେମାନେ ବିଶ୍ରାମ ନିଅନ୍ତି ଓ ଯାତାୟତ କରିବା ପାଇଁ ଘାସ ଭିତରେ ସୁଡ଼ଙ୍ଗ ପଥ କରିଥାନ୍ତି ।

ଝିଙ୍କ, ନିଜର କାଠି ଗତିକର ଉତ୍ତମ ଗଠନ ପାଇଁ ତା'ର ଖାଦ୍ୟରେ ବହୁ ପରିମାଣରେ କାଲସିୟମ୍ ଓ ଚୂନ ଆବଶ୍ୟକ କରେ । ଏଥିପାଇଁ ଏମାନେ ଜନ୍ତୁମାନଙ୍କର ପଡିଥିବା ହାଡ଼ ଓ ହରିଣର ଖସି ପଡିଥିବା ଶିଙ୍ଗକୁ କୋରି କୋରି ଖାନ୍ତି । ଏଣୁ ଏମାନଙ୍କ ଗାତ ମୁହରେ ଖୋଳିଥିବା ବହୁତ ମାଟି ଓ କୋରା ହୋଇଥିବା ହାଡ ଦେଖିବାକୁ ମିଳେ । ଗାତ ଭିତରକୁ ମୁଖ୍ୟ ପ୍ରବେଶ ପଥ ଭିନ୍ନ ତା ନିକଟରେ ଦୁଇ ବା ତିନୋଟି ଦ୍ୱାରଥାଏ । ପ୍ରାଣରକ୍ଷା ପାଇଁ ସେ ଏଇବାଟ ଦେଇ ବାହାରକୁ ପଳାଇ ଯାଇପାରେ । ମାଟି ଭିତରେ ବହୁତ ଗହୀରକୁ ଗାତ ଖୋଳାଯାଇଥାଏ । ମଧ୍ୟ ପ୍ରଦେଶରେ ଏକ ଝିଙ୍କ ଗାତ ଖୋଳା ଯାଇ ଦେଖାଯାଇଥିଲା–ସୁଡଙ୍ଗ ପଥର ଦୈର୍ଘ୍ୟ 18 ମିଟାର ( 60 ଫୁଟ ); ବିଶ୍ରାମ ଗୃହ 120 ସେଣ୍ଟିମିଟାର × 120 ସେଣ୍ଟିମିଟାର ( 4 ଫୁଟ ଲମ୍ବା, 4 ଫୁଟ ଚଉଡା ), ଉଚ୍ଚତା 45 ସେଣ୍ଟିମିଟାର (18 ଇଞ୍ଚ ) ଏହା ଭୂମିଠାରୁ 150 ସେଣ୍ଟିମିଟର ବା 5 ଫୁଟ ଗହୀରରେ ରହିଥିଲା ।



( ଚିତ୍ର ନଂ 83 ଝିଙ୍କ )

ଝିଙ୍କ ରାତିରେ ବାହାରନ୍ତି । ସେମାନଙ୍କର ଘ୍ରାଣଶକ୍ତି ପ୍ରବଳ । ଜନ୍ତା ବସାଇଲେ ଏମାନେ ତାକୁ ଏଡ଼ି ବୁଲଚଲ କରନ୍ତି । ସବୁ ପ୍ରକାର ଫଳମୂଳ, ଶସ୍ୟ, ସାକ୍‌ସବଜି ଏମାନଙ୍କର ପ୍ରଧାନ ଖାଦ୍ୟ । ପାଚେରୀ କାନ୍ଥ ଓ ବାଡ଼ ତଳେ ଏମାନେ ସୁଡଙ୍ଗ ପଥ ନିର୍ମାଣ କରି ଫସଲର ବିସ୍ତର କ୍ଷତି କରନ୍ତି ।

ଉତ୍ତେଜିତ ବା ବିରକ୍ତ ହେଲେ ଝିଙ୍କର ଦେହ ଟାଙ୍କୁରି ଉଠେ ଏବଂ 'କାଠି' କଣ୍ଟା ପରି ସିଧା ବାହାରି ପଡେ । ଏତେବେଳେ ସେମାନେ ଏକ ପ୍ରକାର ବିରକ୍ତି ସୂଚକ କୁହାଟ ମାରନ୍ତି ଓ ଫୁକାର ଶବ୍ଦ କରନ୍ତି । ଲାଞ୍ଜରେ ଥିବା ଫମ୍ପା କାଠି ପରସ୍ପର ସହିତ ଘଷି ହେବାରେ ଏକ ପ୍ରକାର ଶବ୍ଦ ଜାତ ହୁଏ । ଏମାନଙ୍କର ଆକ୍ରମଣ କରିବା ରୀତି ଅଦ୍ଭୁତ । ପଛେଇ ପଛେଇ ତୀର ବେଗରେ ଆସି ଶତ୍ରୁ ଦେହରେ ଏହା ବାଡେଇ ହୁଏ । ଫଳରେ ଲାଞ୍ଜରେ ଥିବା କାଠି ଆକ୍ରାନ୍ତ ପ୍ରାଣୀ ଦେହରେ ଗଳିଯାଏ । ଶତ୍ରୁ ପ୍ରାଣୀ ଯନ୍ତ୍ରଣାରେ ଛଟପଟ ହୁଏ ଓ ସମୟ ସମୟରେ ତା'ର ମୃତ୍ୟୁ ଘଟେ । ଝିଙ୍କ ଦ୍ୱାରା ଆକ୍ରାନ୍ତ ହୋଇ କଲରା ପତ୍ରିଆ ବାଘ ମରିଯିବାର ଜଣାଅଛି । ଥରେ ମହାବଳ ବାଘଟିଏ ଗୋଟିଏ ଝିଙ୍କକୁ ଆକ୍ରମଣ କଲା । ଫଳ ହେଲା ଓଲଟା । ଝିଙ୍କର କାଠି ତା'ର ଫୁସ ଫୁସ ଓ ଯକୃତରେ ଗଳି ଯିବାରୁ, ସେ ମାତ୍ର କେତେକ ପାଦ ପଛେଇ ଆସି ମରି ପଡିଥିଲା । ଝିଙ୍କ କାଠି ସିଧା ଓ ଶକ୍ତ ହୋଇ ଥିବାରୁ ଲାଞ୍ଜରେ ଥିବା କାଠି ଶତ୍ରୁ ଦେହରେ ସହଜରେ ଗଳିଯାଏ । ଶତ୍ରୁ ଯଦି ବଡ଼ ପ୍ରାଣୀଟିଏ ହୋଇଥାଏ, ତେବେ ବଡ କାଠଗୁଡ଼ିକ ଝିଙ୍କ ଦେହରୁ ସହଜରେ ଓପାଡ଼ି ହୋଇ ଯାଇ ଶତ୍ରୁ ଦେହରେ ଲାଖିଯାଏ । ଅନେକ ସ୍ଥାନରେ ଲୋକେ ବିଶ୍ୱାସ କରନ୍ତି ଝିଙ୍କ ତା' ଦେହର କାଠିକୁ ନିକ୍ଷେପ କରି ଶତ୍ରୁକୁ ଆକ୍ରମଣ କରେ । ଏହା ସତ୍ୟ ନୁହେଁ । ଶତ୍ରୁକୁ ଆକ୍ରମଣ କରିବା ଫଳରେ ଝିଙ୍କ ଦେହର ଯେଉଁ ସ୍ଥାନରୁ କାଠି ଉପୁଡି ଯାଇଥାଏ ବା ଭାଙ୍ଗି ଯାଇଥାଏ, ସେ ସ୍ଥାନରେ ପୁଣି ନୂଆ କାଠି ଉଠେ । ଗୋଟିଏ କାଠି ମୂଳ ତଳେ ଆଉ ଗୋଟିଏ ଗଜୁରିବାରୁ ପୁରୁଣା କାଠି ଖସି ପଡ଼େ । ଝିଙ୍କ ସ୍ୱଭାବତଃ ଦାମ୍ଭିକ । ବଣ ଭିତରେ ପାଣି ଜାଗା ଥାଏ । ସେଠାକୁ ବିଭିନ୍ନ ସମୟରେ ବନ୍ୟ ପ୍ରାଣୀ ପାଣି ପିଇବାକୁ ଆସନ୍ତି । ଏପରି ସ୍ଥାନରେ ଗୋଟିଏ ଝିଙ୍କ ଗୋଟିଏ କଲରା ପତ୍ରିଆ ବାଘକୁ ଆକ୍ରମଣ କରିବାର ଲିପିବଦ୍ଧ ଅଛି ।

ଝିଙ୍କ ମାଈ ଅଣ୍ଡିରା ଯୋଡ଼ି ଯୋଡ଼ି ହୋଇ ଗାତ ଭିତରେ ରହନ୍ତି । ମାର୍ଚ୍ଚ ମାସ ବେଳକୁ ସେମାନେ ମଧ୍ୟପ୍ରଦେଶରେ ଛୁଆ କରିବାର ଦେଖାଯାଇଛି । ଅନ୍ୟତ୍ର କେଉଁ ମାସରେ ଛୁଆ କରନ୍ତି ତାହା ଜଣା ନାହିଁ । ଥରକେ

ଦୁଇଟିରୁ ଚାରିଟି ଯାଏ ଛୁଆହୁଏ । ଜନ୍ମବେଳେ ଛୁଆର ଆଖି ଫିଟିଥାଏ ଓ ଦେହରେ ଛୋଟ ଛୋଟ କଣ୍ଟକିଆ କାଠିଥାଏ ।

ବିଭିନ୍ନ ଭାଷାରେ ଝିଙ୍କର ନାମ ଓଡ଼ିଆ-ଝିଙ୍କ, ଶଲ୍ଲକୀ, ସଜାରୁ; ହିନ୍ଦି ସଯାଲ, ଶାହୀ; ମାରବାଡ଼ି—ସିଭଲ, ଶାଲେନ୍ଦ୍ର, ସାଲୁ; କାନାଡ଼ି-ଯେଡ୍ (yed) ମୁଲ୍ଲୁ ପାର୍ଣ୍ଣି: ମାଲୟାଲୀ ଓ ତାମିଲ—ମୁଲ୍ଲାମ ପୁନ୍ନୀ; ବର୍ମିଜ-ହ୍ରିଭ ।



# ପଞ୍ଚଦଶ ଅଧ୍ୟାୟ

# ଶଶକ-ବଂଶ

ଲଗୋମର୍ଫା (Lagomorpha) ନାମକ ପ୍ରାଣୀବର୍ଗ ଦୁଇଟି ବଂଶର ପ୍ରାଣୀମାନଙ୍କଦ୍ୱାର ଗଠିତ । ଯଥା ଲେପୋରିଡ଼ି (Leporidae) ଓ ଓକ୍‌ହୋଟୋନିଡ଼ି (Ochotonidae) । ଶଶକ (hares and rabbits) ଲେପୋରିଡ଼ି ଶ୍ରେଣୀର ଓ ମୂଷିକ—ଶଶକ ( mouse-hare ) ଓକ୍‌ହୋଟୋ-ନିଡ଼ି ଶ୍ରେଣୀଭୁକ୍ତ । ଏହି ଦୁଇ ଶ୍ରେଣୀ ପାଣୀ ମାନଙ୍କୁ ପୂର୍ବେ କୃନ୍ତକପ୍ରାଣୀବର୍ଗ (ରଡେନ୍‌ସିଆ) ଅନ୍ତର୍ଭୁକ୍ତ କରଯାଉଥିଲ । ମାତ୍ର ଏମାନେ କେତେକ ବିଶେଷ ଲକ୍ଷଣରେ ରଡ଼େନ୍‌ସିଆ (Rodentia) ବର୍ଗର ପ୍ରାଣୀମାନଙ୍କ ଠାରୁ ଭିନ୍ନ । କୃନ୍ତକ ପ୍ରାଣୀମାନଙ୍କର ଉପର ହନୁରେ କେବଳ ଦୁଇଟି କର୍ତ୍ତନ ଦନ୍ତ (incisor) ଥିଲବେଳେ ଲଗୋମର୍ଫା ବର୍ଗଭୁକ୍ତ ପାଣୀମାନଙ୍କର ଉପର ହନୁରେ ଅଗ୍ରଭଗରେ ଦୁଇଟି ବଡ଼ ଓ ତା ପଛକୁ ଦୁଇଟି ଛୋଟ ଛୋଟ କର୍ତ୍ତନ ଦନ୍ତ ଅର୍ଥାତ୍ ଗୁରିଟି କର୍ତ୍ତନ ଦନ୍ତ ଥାଏ । ଜନ୍ମ ସମୟରେ ଊର୍ଦ୍ଧ୍ୱ ହନୁରେ ଛଅଟି କର୍ତ୍ତନ ଦନ୍ତ ଥାଏ, ପରେ ସେଥିରୁ ଦୁଇଟି ଖସି ପଡ଼େ । ଏମାନଙ୍କର କରୋଟି (skull) କୃନ୍ତକ ପ୍ରାଣୀଙ୍କ କରୋଟି ଠାରୁ କେତେକ ଦୃଷ୍ଟିରୁ ସ୍ୱତନ୍ତ୍ର । ରଡ଼େନ୍‌ସିଆ ବର୍ଗର ପ୍ରାଣୀମାନଙ୍କର ବୃଷଣ (testes) ଉଦର ମଧ୍ୟରେ ରହିଥାଏ; କେବଳ ପ୍ରଜନନ ଋତୁରେ ତାହା ସ୍ଫୀତ ହୋଇ କୋଷ ମଧ୍ୟକୁ ଖସି ଆସେ । ଲଗୋମର୍ଫା ବର୍ଗର ପ୍ରାଣୀମାନଙ୍କର ବୃଷଣ ସର୍ବଦା ଉଦର ବାହାରକୁ ଝୁଲି ରହିଥାଏ ।

ମୂଷିକ-ଶଶକ କ୍ଷୁଦ୍ର ଓ ଲଞ୍ଜହୀନ । ସେମାନଙ୍କର କାନ କ୍ଷୁଦ୍ର ମାତ୍ର ଓସାରିଆ ଓ ଗୋଲ । ଗୋଡ଼ ଛୋଟ । ଆଗ ଗୋଡ଼ ପଛ ଗୋଡ଼ ତୁଳନାରେ ଅଳ୍ପ ଛୋଟ । ଏମାନେ ହିମାଳୟର ପାର୍ବତ୍ୟ ଅଞ୍ଚଳ, କେନ୍ଦ୍ର ଏସିଆର ପାର୍ବତ୍ୟ ଓ ବିସ୍ତୀର୍ଣ୍ଣ ପତିତ ପ୍ରାନ୍ତର ଏବଂ ପଶ୍ଚିମ ଉତ୍ତର ଆମେରିକାର ପାର୍ବତ୍ୟ ଭୂମିରେ ଦେଖାଯାନ୍ତି ।

ଶଶକ ( hares and rabbits ) ମାନଙ୍କର କାନ ଓ ପଛ ଗୋଡ଼ ଲମ୍ବା । ଭାରତୀୟ ଶଶକ ମାନଙ୍କର (hares) ଜନ୍ମ ସମୟରେ ଦେହ ଲୋମାବୃତ ଥାଏ ଓ ଆଖି ଫିଟିଥାଏ । ଲେପୋରିଡ଼ି ବଂଶର ପ୍ରାଣୀମାନେ ସମଗ୍ର ପୃଥିବୀରେ ଦେଖାଯାନ୍ତି । ଅଷ୍ଟ୍ରେଲିଆ ଓ ସାମୁଦ୍ରିକ ଦ୍ୱୀପପୁଞ୍ଜ (Oceanic islands ) ରେ ପୂର୍ବେ ସେମାନେ ନ ଥିଲେ, ମନୁଷ୍ୟ ଦ୍ୱାରା ସେଠାକୁ ନୀତ ହୋଇଛନ୍ତି ।

ଭାରତରେ ନାନାଜାତିର ଶଶକ ଦେଖାଯାନ୍ତି । ସେମାନଙ୍କର ସାଧାରଣ ନାମ, ବୈଜ୍ଞାନିକ ନାମ ଓ ବିସ୍ତୃତି ବିଷୟରେ ସଂକ୍ଷିପ୍ତ ସୂଚନା ଦିଆଗଲା—

1 । ଭାରତୀୟ ଶଶା ( Indian hare ), Lepus nigricollis cuvier । ସମଗ୍ର ଭାରତ ।

2 । କେପ୍ ଶଶା ( Cape hare ), Lepus capensis tibetanus waterhouse । କାଶ୍ମୀର ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ (ପାକିସ୍ଥାନ) ।

3 । ଆରବ୍ୟ ଶଶା ( Arabian hare), Lepus arabicus craspedotis Blanford । ବେଲୁଚିସ୍ଥାନ ।

4 । ଲୋମଶ ଶଶା ( Woolly hare), Lepus oiostolus Hodgson । ସିକିମ ଲଦାଖ ଓ ନେପାଳର ଉଚ୍ଚ ଭୂମି ।

5 । ଅସାମ ଶଶା ( Assam hare or Hispid hare ) caprolagus hispidus (Pearson) । ଉତ୍ତର ପ୍ରଦେଶ ଠାରୁ ଅସାମ ପର୍ଯ୍ୟନ୍ତ ହିମାଳୟ ପର୍ବତମାଳାର ପାଦଭୂମି ।

## ଭାରତୀୟ ଶଶା ( Indian hare )

ସାଧାରଣ ଭାରତୀୟ ଶଶକ ବା ଠେକୁଆ ଜଙ୍ଗଲ ଅପେକ୍ଷା ମଝିରେ ମଝିରେ ବୁଦାଳିଆ ଜଙ୍ଗଲ ଥିବା ସମତଳ ଭୂଷଭୂମିରେ ଅଧିକ ସଂଖ୍ୟାରେ ଦେଖାଯାନ୍ତି । ଘାସ ଏମାନଙ୍କର ପ୍ରଧାନ ଖାଦ୍ୟ । ରହିବା ଓ ଖାଇବାର

ସୁବିଧା ଥିବା କେତେକ ଅଞ୍ଚଳରେ ଠେକୁଆ ବଂଶ ଅଧିକ ପରିମାଣରେ ବୃଦ୍ଧି ପାଇବାର ଦେଖାଯାଏ । ସେମାନେ ରାତ୍ରିଚର ମାତ୍ର ଦିନବେଳେ ମଧ୍ୟ ବାହାରନ୍ତି । ଠେକୁଆ ଦିନବେଳେ ଘାସ ପଡ଼ିଆରେ ଏକ ନିଭୃତ ସ୍ଥାନ ଦେଖି ପାଦରେ ଖମ୍ଭୁଡ଼ି ଟିକିଏ ଗାତ କରି ସେଠାରେ ଶୋଇରହେ । ଅନାବାଦୀ ଜମିରେ ଠେକୁଆ ଶୋଇ ରହିଥିବାର ମଧ୍ୟ ଦେଖାଯାଏ । ଯେତେବେଳଯାଏ ଚୁପ୍ ହୋଇ ରହିଥାଏ, ସେତେବେଳ ଯାଏ ଏହା ପ୍ରାୟ ନିରାପଦ; କାରଣ ତା'ର ଅବସ୍ଥିତି ସହଜରେ ଜଣାପଡେ ନାହିଁ । ହେଲେହେଁ ଏମାନଙ୍କର ଶତ୍ରୁ ଅନେକ । ଯଥା—କୋକିଶିଆଳି ( fox ), ନେଉଳ ଓ ବଣ ବିରାଡ଼ି । ଏପରିକି ଗାଁର ବୁଲା କୁକୁର ଏମାନଙ୍କୁ ଗୋଡ଼ାଇ ମାରି ପକାନ୍ତି । ଡରକିଲେ ଠେକୁଆ ଡିଆଁ ମାରି ଦୌଡ଼େ ଓ ମଧ୍ୟେ ମଧ୍ୟେ ଅଟକି ପଛ ଦୁଇଗୋଡ଼ରେ ବସି ଘରିଆଡ଼କୁ ନିରୀକ୍ଷା କରେ । ଦୌଡ଼ି ପଳାଇଲା ବେଳେ ଏମାନେ ସାଧାରଣତଃ କୋକିଶିଆଳି ବା ଅନ୍ୟ କୌଣସି ପ୍ରାଣୀର ଗାତଭିତରେ ପଶିଯାଇ ଆଶ୍ରୟ ନିଅନ୍ତି ।

ସାଧାରଣ ଭାରତୀୟ ଠେକୁଆ ଆଠ କିସମର । ସେମାନଙ୍କ ସମ୍ବନ୍ଧରେ ଆମମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମାବଦ୍ଧ । ସେମାନଙ୍କ ସମ୍ବନ୍ଧରେ କେତେକ ବିବରଣୀ ତଳେ ଦିଆଗଲା ।

1 । ବାଦାମୀ ଲାଞ୍ଜ ଶଶ। (Rufous tailed hare ), Lepus nigricollis ruficaudatus Geoffroy । ମୁଣ୍ଡ ଓ ଦେହର ଲମ୍ବ 40-50 ସେଣ୍ଟିମିଟାର ( 17-19 ଇଞ୍ଚ; ) ଓଜନ 1.8-2.3 କିଲୋଗ୍ରାମ ( 4-5 ପାଉଣ୍ଡ ) । ପିଠିର ବର୍ଣ୍ଣ ଲାଲ—ବାଦାମୀ । ପିଠି ଓ ମୁହଁ ଅଂଶରେ କଳା ଲୋମ ମିଶିକରି ଥାଏ । ଛାତି ଓ ଅବୟବ ଲାଲବାଦାମୀ; ଚିବୁକ, ତଣ୍ଟି ଅଂଶର ଉପରିଭାଗ ଓ ପେଟ ପାଖ ଧଳା; ଲାଞ୍ଜର ଉପର ପାଖ ଲାଲ-ବାଦାମୀ । ହିମାଳୟଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏମାନଙ୍କର ବିସ୍ତୃତି । କୁମାଓନ୍ ଅଞ୍ଚଳରେ 2400 ମିଟାର ( 8000 ଫୁଟ ) ଉଚ୍ଚତା ଯାଏ ଏମାନେ ଦେଖାଯାନ୍ତି । ଥରକେ ଏହା ଗୋଟିଏ ବା ଦୁଇଟି ଛୁଆ କରେ । ଏମାନଙ୍କର ପ୍ରଜନନ ଋତୁ ସମ୍ବନ୍ଧରେ କିଛି ଜଣା ନାହିଁ ।

2 । କଳାଗ୍ରୀବା ଠେକୁଆ ( Black naped hare ), Lepus nigricollis nigricollis F. Cuvie । ଏହା ବାଦାମୀ ଲଞ୍ଜ ଶଶାଠାରୁ ବଡ ହୁଏ । ଓଜନ 2.2-3.6 କିଲୋଗ୍ରାମ ( 5-8 ପାଉଣ୍ଡ ) । ଏହାର ଗ୍ରୀବା ଅଂଶରେ କାନଠାରୁ କାନ୍ଧଯାଏ ଘନବାଦାମୀ ବା କଳା ରଙ୍ଗର ଛାପ ଚିହ୍ନ ଥାଏ । ଲଞ୍ଜର ଉପରିଭାଗ କଳା । ଦକ୍ଷିଣ ଭାରତରୁ ପୂର୍ବରେ ଗୋଦାବରୀ, ପଶ୍ଚିମ ଓ ଉତ୍ତରରେ ଖାନ୍ଦେଶ, ବେରାର ଓ ମଧ୍ୟ ପ୍ରଦେଶର ଆଖପାଖ ଅଞ୍ଚଳ ଯାଏ ଏମାନଙ୍କର ବିସ୍ତୃତି । ଏମାନେ ନୀଳଗିରି ପର୍ବତମାଳା ଓ ଦକ୍ଷିଣ ଭାରତର ଅନ୍ୟାନ୍ୟ ପାର୍ବତ୍ୟ ଅଞ୍ଚଳରେ ସାଧାରଣ ଠେକୁଆ । ଅକ୍ଟୋବର ଠାରୁ ଫେବୃଆରୀ ମାସ ଏମାନଙ୍କର ପ୍ରଜନନ ଋତୁ । ଜନ୍ମବେଳେ ଛୁଆଙ୍କର ଆଖି ଫିଟିଥାଏ । ଜନ୍ମ ହେବାର ବାରଘଣ୍ଟା ଭିତରେ ଏମାନେ ଦୌଡ଼ି ବୁଲିବାର ଦେଖାଯାନ୍ତି ।

3 । ମରୁଭୂମି ଠେକୁଆ ( Desert hare), Lepus nigricollis dayanus Blanford । ଦେହର ବର୍ଣ୍ଣ ହଳଦିଆ ବାଲିଆ ଧୂସର । ବାଦାମୀ ଲଞ୍ଜ ଶଶା ତୁଳନାରେ ବର୍ଣ୍ଣ ଫିକା । ଗ୍ରୀବାରେ କଳା ଚିହ୍ନ ନଥାଏ । ଲଞ୍ଜର ଉପର ଭାଗ କଳାସିଆ ବାଦାମୀ । ଦକ୍ଷିଣ-ପଶ୍ଚିମ ପଞ୍ଜାବ, ସିନ୍ଧ, କଚ୍, ରାଜପୁତାନା ଓ କାଥିଆବାଡର ମରୁଭୂମି ଅଞ୍ଚଳ ଏହି ଠେକୁଆର ଚରଭୂଇଁ ।

4-5 । ମଧ୍ୟ ପ୍ରଦେଶରେ Lepus nigricollis simcoxi Wroughton ଓ L. n. mahadeva wroughton & Ryley ନାମକ ଦୁଇ କିସମର ଠେକୁଆ ବାସ କରନ୍ତି ।

6-7 । କଚ୍ଛରେ L.n. Cutchensis Kloss, ଶ୍ରୀଲଙ୍କାରେ L. n. Singhala wroughton ଓ ରାଜପୁତାନାରେ L.n. rajput କିସମ ଠେକୁଆ ବାସ କରନ୍ତି ।

ବିଭିନ୍ନ ଭାଷାରେ ଠେକୁଆର ନାମ:—ହିନ୍ଦି—ଖାରଗୋଷ; ମାରାଠି—ଶଶା, କାନାଡ଼ି—ମୋଲ, ତେଲୁଗୁ—ଚୌଗ ପିଲ୍ଲୀ; ମାଲୟାଲମ୍—ମୋଇଲୁ; ଓଡ଼ିଆ-ଖଶକ; ଶଶା, ଠେକୁଆ ।

## ହିମାଳୟ ମୂଷିକ ଶଶକ (Himalayan mouse-hare)
୨ ୯

ଏହାର ମୁଣ୍ଡ ଓ ଦେହର ଲମ୍ବ 15-20 ସେଣ୍ଟିମିଟାର (6-8ଇଞ୍ଚ) ଦେହ ଗଠନ ଅନେକ ପରିମାଣରେ ବିଲାତି ମୂଷା ( Guineapig )


ହିମାଳୟର ମୂଷିକ ଶଶକ


ବାଦାମୀ ଲଞ୍ଜ ଶଶକ


କଳାଗ୍ରୀବ ଶଶକ

(ଚିତ୍ର ନଂ 84, ବାଦାମୀ ଲଞ୍ଜ ଶଶକ, କଳାଗ୍ରୀବା ଶଶକ ଓ ହିମାଳୟର ମୂଷିକ ଶଶକ)

ପରି । ଥୋମଣି କ୍ଷୁଦ୍ର, ମୁଣ୍ଡ ଛୋଟ ଓ ଗୋଲକାର, କାନ ଗୋଲ ଓ ଲାଞ୍ଜ ନାହିଁ । ଦେହର ଲୋମ ସୂକ୍ଷ୍ମ ସିଧା ଓ ଚିକ୍କଣ । ହିମାଳୟ ଅଞ୍ଚଳରେ ଅନେକ ଜାତିର ମୂଷା ଠେକୁଆ ( mouse-hare ) ଦେଖାଯାନ୍ତି । ସେମାନଙ୍କ ମଧ୍ୟରେ Ochotona roylei (Ogilby ) ସବୁଠାରୁ ସାଧାରଣ । ଏମାନଙ୍କୁ ଭୁଟିଆ ଭଷାରେ ଗାମଚି ପିଚି ଓ ଲେପ୍‌ଚ୍ଚ ଭାଷାରେ କୁମଚେନ୍ କହନ୍ତି । କୁମାଓନ୍ ଅଞ୍ଚଳରେ ଦେଖାଯାଉଥିବା ମୂଷା ଠେକୁଆର ବର୍ଣ୍ଣ ଲାଲ-ବାଦାମୀ । ଋତୁ ଅନୁସାରେ ଏମାନଙ୍କର ରଙ୍ଗ ବଦଳେ ।

ଚୀନ ଓ ଉତ୍ତର ଏସିଆ ମୂଷିକ-ଶଶକର ଆଦିଭୂମି । ସେଠାରୁ ସେମାନେ ପୂର୍ବ ୟୁରୋପ ଓ ଉତ୍ତର ଆମେରିକାକୁ ବିସ୍ତୃତି ଲାଭ କରିଅଛନ୍ତି । ଉପରୋକ୍ତ ଜାତି ମୂଷା-ଠେକୁଆ ହିମାଳୟରେ କାଶ୍ମୀରଠାରୁ ମଉପିନ୍ ଅଞ୍ଚଳ ଯାଏ 3400-4300, ମିଟାର (11,000-14,000 ଫୁଟ ) ଉଚ୍ଚତାରେ ବାସକରେ । ପୂର୍ବହିମାଳୟ ଅଞ୍ଚଳରେ ଏହା 2400 ମିଟାର ( 8000 ଫୁଟ ) ଉଚ୍ଚତାରେ ମଧ୍ୟ ଦେଖାଯାଏ ।

ହିମାଳୟର ମୂଷା-ଠେକୁଆ ସାଧାରଣତଃ ପାଦପ-ରେଖା (treeline) ର ଉପରକୁ ମୁକ୍ତ ପଥୁରିଆ ଅଞ୍ଚଳରେ ବାସ କରନ୍ତି । ହିମାଳୟ ପର୍ବତ ମାଳାର ପୂର୍ବାଞ୍ଚଳରେ ଖୋଲା ଅଞ୍ଚଳ ଓ ପାଇନ ଜଙ୍ଗଲ-ପୂର୍ଣ୍ଣ ଢାଲୁ ଅଞ୍ଚଳରେ ମଧ୍ୟ ଏମାନେ ଦେଖାଯାନ୍ତି । ଖୋଲାଜାଗାରେ ଗାତ ନ ଖୋଳି ପଥର ଗଦା ତଳେ ରହନ୍ତି । ପାଇନ ଜଙ୍ଗଲରେ ଗଛମୂଳେ ଗାତଖୋଳି ତା' ଭିତରେ ବାସ କରନ୍ତି । ଉଚ୍ଚ ହିମାଳୟ ଅଞ୍ଚଳରେ ଜନ ବସତି ବିହୀନ ପଥୁରିଆ ସ୍ଥାନ ଦେଇ ଅଭିଯାତ୍ରୀ ଦଳ ଦୀର୍ଘପଥ ଅତିକ୍ରମ କଲାବେଳେ ସେମାନଙ୍କ ମନରେ ମୂଷା-ଠେକୁଆ କୌତୂହଳ ଜାଗ୍ରତ କରେ । ଆଗନ୍ତୁକକୁ ଦେଖି ଏମାନେ ଭୟାତୁର ଭାବେ ପଳାଇଯାଇ ପଥର ତଳେ ଆଶ୍ରୟ ନିଅନ୍ତି । ପୁଣି କିଛି ସମୟପରେ ପଥରତଳୁ ସେମାନେ ଉଙ୍କି ମାରୁଥିବାର ଦେଖାଯାଏ । ରକ୍ଷ ଘାସ ଏମାନଙ୍କର ମୁଖ୍ୟ ଖାଦ୍ୟ । ସିକିମର ଥାଙ୍ଗୁଠାରେ 3 00 ମିଟାର ( 12,000 ଫୁଟ ) ଉଚ୍ଚତାରେ ଗ୍ରୀଷ୍ମ କାଳରେ ଏମାନେ ସାଧାରଣ; ମାତ୍ର ଶୀତଋତୁରେ ଆଦୌ ଦେଖାଯାନ୍ତି ନାହିଁ ।

●

# ଷଷ୍ଠଦଶ ଅଧ୍ୟାୟ

# ହାତୀ

ହାତୀ ପ୍ରୋବୋସିଡ଼ିଆ (Proboscidea) ବର୍ଗ ଅନ୍ତର୍ଗତ । ଗ୍ରୀକ୍ Proboskis ଶବ୍ଦର ଅର୍ଥ ଶୁଣ୍ଢ । ଏହାର ଉପର ଓଠ ଓ ନାସିକା ପ୍ରଲମ୍ବିତ ହୋଇ ଶୁଣ୍ଢ ଗଠନ କରିଥାଏ । ଏଥିପାଇଁ ଏହାର ନାମ ଏପରି ହୋଇଅଛି । ସମଗ୍ର ପୃଥିବୀରେ କେବଳ ଦୁଇଟି ଜାତିର ହାତୀ ଦେଖାଯାନ୍ତି । ସେଥିରୁ ଗୋଟିଏ ଭାରତୀୟ, ଅପରଟି ଆଫ୍ରିକୀୟ । ଅତୀତରେ ବହୁ ଜାତିର ହାତୀ ଓ ହାତୀପରି ଅତିକାୟ ପ୍ରାଣୀ, ମାଷ୍ଟୋଡ଼ନ୍ (mastoden) ଧରାପୃଷ୍ଠରେ ବିଚରଣ କରୁଥିଲେ । ଏବେ ସେମାନଙ୍କର କେବଳ ଦୁଇ ଜାତି ବଂଶଧର ଦୁଇ ବିଭିନ୍ନ ମହାଦେଶରେ ବାସ କରନ୍ତି । ବିଶେଷଜ୍ଞମାନଙ୍କ ମତରେ ଅତୀତ କାଳରେ ଭାରତରେ ଅନ୍ତତଃ ସାତଟି ବିଭିନ୍ନ ଜାତିର ହାତୀ ଓ ଆଠଟି ବିଭିନ୍ନ ଜାତିର ମାଷ୍ଟୋଡ଼ନ ଥିଲେ ।

ସ୍ଥଳବାସୀ ପ୍ରାଣୀମାନଙ୍କ ମଧ୍ୟରେ ହାତୀ ବୃହତ୍ତମ । ବିଶାଳ ଦେହ, ପ୍ରଲମ୍ବିତ ଶୁଣ୍ଢ ଓ ଅଦ୍ଭୁତ ଦନ୍ତ-ସଜ୍ଜା ଯୋଗୁ ଏହା ଅନ୍ୟ ପ୍ରାଣୀମାନଙ୍କଠାରୁ ସହଜରେ ବାରି ହୋଇଯାଏ । ଏହି ସବୁ ଲକ୍ଷଣ ଗୁଡ଼ିକ ଯେତେ ଚିତ୍ତାକର୍ଷକ ହୋଇ ଥାଉ ନା କାହିଁକି, ଗୋଟିଏ ସାଧାରଣ ଲକ୍ଷଣଯୁକ୍ତ ସ୍ତନ୍ୟପାୟୀ ପ୍ରାଣୀର କ୍ରମ ବିବର୍ତ୍ତନ ଫଳରେ ଆଧୁନିକ ହାତୀର ଉଦ୍ଭବ ଘଟିଅଛି । ହସ୍ତୀର ଅତି ପୁରାତନ ବଂଶଧର ଗୋଟିଏ ସାଧାରଣ ଲୋମଶ ପ୍ରାଣୀ ଥିଲା । ତାହା ଆକାରରେ ବିରାଟ ନଥିଲା, ପଞ୍ଚାଙ୍ଗୁଳ ପାଦରେ ଚାଲୁଥିଲା । ଏବଂ ତା'ର ହନୁରେ ସ୍ତନ୍ୟପାୟୀ ପ୍ରାଣୀମାନଙ୍କପରି କର୍ତ୍ତନ (incisor), ଶ୍ୱାଦନ୍ତ (canine) ଓ ପେଷଣ ଦନ୍ତ (mobar) ରହିଥିଲା । ସବୁଠାରୁ ପ୍ରାଚୀନ ହସ୍ତୀ ପରି ପ୍ରାଣୀର ବୈଜ୍ଞାନିକ ନାମ ମୈରିଥେରୀଅମ୍ ( moeritherium ) । ଏହା, ଆଦି ନୂତନ ଯୁଗର ପ୍ରାକ୍ କାଳରେ

(Upper Eocene ) ଅର୍ଥାତ୍ ଆଜିଠାରୁ ପ୍ରାୟ 58, ନିୟୁତରୁ 36 ନିୟୁତ ବର୍ଷ ତଳେ ବାସ କରୁଥିଲେ । ଏମାନଙ୍କର ଉଚ୍ଚତା ଥିଲା ମାତ୍ର 110 ସେଣ୍ଟିମିଟର

ଆଦିନୂତନ ଯୁଗ
୭୪
ମୋଇରି-ଥେରିଅମ୍

ସ୍ୱଳ୍ପନୂତନ ଯୁଗ
୧୦୬
ପେଲିଓ-ମାଷ୍ଟୋଡନ

ଅଳ୍ପନୂତନ ଯୁଗ
୨୦୮
ଟ୍ରାଇଲୋଫୋଡନ୍

ନୂତନତର ଯୁଗ
୨୩୧
ଷ୍ଟିଗୋଡନ

ନୂତନତମ ଯୁଗ
୨୨୮
ମାଷ୍ଟୋଡନ

ଆଧୁନିକ ଯୁଗ
୨୭୪
ଏଲିଫାସ

୪୧୧
ଏଲିଫାସ ଇମ୍ପେରେଟର

୩୦୪
ଲୋକ୍ସୋଡଣ୍ଟା

( ଚିତ୍ର ନଂ 85, ହସ୍ତୀର ବଂଶ ବୃତ୍ତାନ୍ତ—ଦିଆଯାଇଥିବା ସଂଖ୍ୟା ସବୁଠାରେ ସେଣ୍ଟିମିଟରରେ ଉଚ୍ଚତା ସୂଚାଏ )

( 3½ ଫୁଟ ) । ଗତ ପ୍ରାୟ ଛଅ କୋଟି ବର୍ଷ ମଧ୍ୟରେ ହସ୍ତୀର ଗଠନ ଓ ଅଭ୍ୟାସରେ କି ପରିବର୍ତ୍ତନ ଘଟିଅଛି ତାହା ଆଧୁନିକ ହସ୍ତୀର କଙ୍କାଳ ସହିତ ଅତୀତ କାଳରେ ହସ୍ତୀମାନଙ୍କ ଜୀବାଶ୍ମକୁ ତୁଳନା କଲେ ଜଣାପଡ଼େ ।

ଜଳବାୟୁର ପରିବର୍ତ୍ତନ, ଖାଦ୍ୟର ପ୍ରାଚୁର୍ଯ୍ୟ ବା ଅଭାବ, ନିରାପତ୍ତା, ଇତ୍ୟାଦି ନାନା କାରଣର ପ୍ରଭାବରେ ଅତୀତରେ ହସ୍ତୀମାନଙ୍କର ବଂଶଧର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗମନାଗମନ କରି ନୂତନ ପରିବେଶର ସମ୍ମୁଖୀନ ହେଲେ । କାଳକ୍ରମେ ସେମାନଙ୍କର ଆକାର, ଶରୀର କ୍ରିୟା, ସ୍ୱଭାବ ଓ ଆଚରଣରେ ପରିବର୍ତ୍ତନ ଘଟିଲା ଓ ନୂତନ ନୂତନ ଜାତି ହସ୍ତୀମାନଙ୍କର ଉଦ୍ଭବ ହେଲା ।

ଦୈହିକ ଗଠନରେ ପରିବର୍ତ୍ତନ ଫଳରେ ସେମାନଙ୍କର ଆକାର ବୃଦ୍ଧି ପାଇବାକୁ ଲାଗିଲା । ବିରାଟ ଶରୀର ବହନ କରିବାପାଇଁ ଅବୟବ ଖୁମ୍ବ ପରି ହେଲା; ତନ୍ମଧ୍ୟରେ ଥିବା ଅସ୍ଥିଖଣ୍ଡମାନ ସଳଖ ହେଲା ଓ ସେମାନଙ୍କର ସନ୍ଧି ( articulation ) କୋଣର ପରିବର୍ତ୍ତନ ଘଟିଲା । ପଦର ଗଠନ ପ୍ରଣାଳୀ (posture) ବଦଳିଲା । ପ୍ରାଚୀନ ପ୍ରାଣୀମାନେ ପାଦଚର ( Plantigrade ) ଥିଲେ; ଅର୍ଥାତ୍ ପୁରା ତଳିପା ଲଗାଇ ତଳେ ଚାଲୁଥିଲେ । ପରେ ଦୈହିକ ଓଜନ ବଢ଼ିବା ଫଳରେ ଗୋଇଠି (heel) ବା ପାଦମୂଳ ଓ ଗୁଲ୍ଫ ( ankle ) ଅସ୍ଥି ଭୂମିରେ ନ ଲାଗି ଉପରକୁ ଅବସ୍ଥାପିତ ହେଲା ଏବଂ ଶରୀରଭାର ବହନ କରିବାପାଇଁ ପାଦ ତଳେ ଏକ ପ୍ରକାର ମୋଟା ଗଦି ଗଠିତ ହେଲା । ସମଗୋଲକାର ଦୀର୍ଘ ପଦରେ ପଦାଙ୍ଗୁଳି ନିହିତ ହେଲା ଓ ତାହାର ଅବସ୍ଥିତି ବହିର୍ଭାଗରେ ଚେପଟା ନଖ ଦ୍ୱାରା ସୂଚିତ ହେଲା । ପଦାଙ୍ଗୁଳି ତୁଳନାରେ ନଖର ସଂଖ୍ୟା ମଧ୍ୟ କମ୍ ହେଲା । ଏହିପରି ଭାବେ ପାଦ କ୍ରମେ ଖୁମ୍ବ ଆକାର ଧାରଣ କଲା ।

ବେକ ଛୋଟ ଓ ମସ୍ତକ ଭୂମିଠାରୁ ଉଚ୍ଚରେ ରହିବାରୁ ଜଳ ଓ ଖାଦ୍ୟ ସଂଗ୍ରହ ପାଇଁ ଉପରୋଷ୍ଠ ଓ ନାସିକା ବଢ଼ିଯାଇ ଏକ ଶୁଣ୍ଢରେ ପରିଣତ ହେଲା । ଏହା ହାତର କାର୍ଯ୍ୟ ମଧ୍ୟ କରୁଥିବାରୁ ହାତୀର ଅନ୍ୟ ନାମ କରୀ । ଶୁଣ୍ଢର ଗଠନ ଫଳରେ କରୋଟି ( skull)ର ଆକାରରେ ପରିବର୍ତ୍ତନ ଘଟିଲା । ହସ୍ତୀର କରୋଟି ପରୀକ୍ଷା କଲେ ସେଥିରେ "ନାସାଗ୍ର" ("snout") ଥିବାର ଦେଖାଯାଏ ନାହିଁ । ଏହାର ମସ୍ତକର ଅସ୍ଥିଳ ଭାଗ ପ୍ରାୟ ସିଧା । ଅତୀତ କାଳର ହସ୍ତୀ ମାନଙ୍କର ଜୀବାଶ୍ମ ପରୀକ୍ଷା ଦ୍ୱାରା ଦେଖାଯାଏ ଯେ ସେମାନଙ୍କର କରୋଟିରେ ପ୍ରଲମ୍ବିତ ନାସିକା ଅସ୍ଥି ଥିଲା । ଏହା ଅତି ପ୍ରାଚୀନ ମାଷ୍ଟୋଡ଼ନ୍ ( Trilophodon angustidens ) ମାନଙ୍କରେ ଉତ୍ତମ

ଖବରେ ବର୍ଦ୍ଧିତ ଓ ପରବର୍ତ୍ତୀ କାଳର '·ଆମେରିକୀୟ ମାଷ୍ଟୋଡନ" (Mastodon americanus ) ଠାରେ ଅଳ୍ପ ବର୍ଦ୍ଧିତ ଥିବାର ଦେଖାଯାଏ ।





ଜନ୍ମ କାଳରେ


୧ ବର୍ଷ


୬ ବର୍ଷ


୯ ବର୍ଷ


୨୦ ବର୍ଷ


୨୮ ବର୍ଷ


୬୦ ବର୍ଷ


୬୫ ବର୍ଷ

ଚିତ୍ର ନଂ ୫୬ ହସ୍ତୀ ପାତିର ପେଷଣ ଦନ୍ତର କ୍ରିୟାଶୀଳତା କ୍ଷୟ ଓ ନୂତନ ଦନ୍ତର ବିକାଶ ଜନ୍ମ କାଳରେ ପ୍ରଥମ ଓ ଦ୍ୱିତୀୟ ପେଷଣଦନ୍ତ କ୍ରିୟାଶୀଳ ହୁଏ , 1 ବର୍ଷରେ ତୃତୀୟ ପେଷଣ ଦନ୍ତ ଗଜୁରିବାକୁ ଆରମ୍ଭକରେ, ଛଅ ବର୍ଷ ବେଳକୁ ପ୍ରଥମ ଓ ଦ୍ୱିତୀୟ ପେଷଣ ଦନ୍ତ ଖସି ପଡ଼ିଥାଏ ଓ ତୃତୀୟ ବ୍ୟବହୃତ ହୁଏ, ନଅ ବର୍ଷ ବେଳକୁ ତୃତୀୟ ପେଷଣ ଦନ୍ତ ଖସିପଡେ ଓ ଚତୁର୍ଥ ଦନ୍ତ କାର୍ଯ୍ୟକାରୀ ହୁଏ, କୋଡିଏ ବର୍ଷରେ ପଞ୍ଚମ ଦନ୍ତ ୪ର୍ଥ ଦନ୍ତର ସ୍ଥାନ ପୂରଣ କରିବାକୁ ଆରମ୍ଭ କରେ, ଅଠେଇଶ ବର୍ଷରେ ଷଷ୍ଠ ଦନ୍ତ ଉଠିବାକୁ ଆରମ୍ଭ କରେ ଷାଠିଏ ବର୍ଷରେ ପଞ୍ଚମ ଦନ୍ତ ଖସିପଡେ, ପଞ୍ଚଷଠି ବର୍ଷ ବେଳକୁ ଷଷ୍ଠ ଦନ୍ତ ଘୋରି ହୋଇ ଆସେ, ଆଉ ନୂଆ ପେଷଣ ଦନ୍ତ ଉଠେ ନାହିଁ ।

“ଟ୍ରାଇଲୋଫୋଡନ୍” ନାମକ ମାଷ୍ଟୋଡନ୍‌ର ନିମ୍ନୋଷ୍ଠ ଖୁବ୍ ପ୍ରଲମ୍ବିତ ଥିଲା ଓ ସେଥିରେ ଆନୁଭୂମିକ ଭାବେ ଦୁଇଟି ଦୀର୍ଘ ଦନ୍ତ ( tusk ) ଥିଲା । ତା’ ସାଙ୍ଗକୁ ଊର୍ଦ୍ଧ୍ୱ ଓଷ୍ଠରୁ ଦୁଇଟି ଦନ୍ତ ତଳ ଆଡ଼କୁ ବକ୍ରଭାବେ ରହିଥିଲା । ଏହି ହସ୍ତୀର “ଶୁଣ୍ଢ” ଉପର ଦନ୍ତ ଦୁଇଟି ମଝିରେ ଆନୁଭୂମିକ ଭାବେ ଏବଂ ନିମ୍ନ ହନୁ ଉପରେ ଏକ ପ୍ରଲମ୍ବିତ ଉର୍ଦ୍ଧ୍ୱୋଷ୍ଠ ରୂପେ ଅବସ୍ଥାପିତ ଥିଲା । ବିଶେଷଜ୍ଞ ମାନଙ୍କର ବିଶ୍ୱାସ ଯେ ଉପରୋକ୍ତ ଊର୍ଦ୍ଧ୍ୱ ଓଷ୍ଠଠାରୁ କ୍ରମେ ଶୁଣ୍ଢର ଉଦ୍ଭବ ହୋଇଥିବ । ପ୍ରଥମେ ନିମ୍ନ ହନୁର ଦୀର୍ଘାୟନ ଯୋଗୁ ଊର୍ଦ୍ଧ୍ୱ ଓଷ୍ଠର ଦୀର୍ଘାୟନ ହୋଇ ଶୁଣ୍ଢ ଉତ୍ପତ୍ତି ହେଲା । ତା’ପରେ ନିମ୍ନ ହନୁର ସଂକୋଚନ ଓ ମୁଖର ଅସ୍ଥିଗୁଡ଼ିକ ସିଧା ହେବା ଫଳରେ ପ୍ରଲମ୍ବିତ ଊର୍ଦ୍ଧ୍ୱଓଷ୍ଠ ଆଉ ନିମ୍ନ ହନୁଉପରେ ଭର ଦେଇ ରହିପାରିଲା ନାହିଁ ଓ କ୍ରମେ କ୍ରମେ ପ୍ରଲମ୍ବିତ ହୋଇ ଝୁଲିବାକୁ ଲାଗିଲା ।

ଦନ୍ତ - ହସ୍ତୀଠାରେ ଅନ୍ୟ ଯେଉଁ ଦୈହିକ ପରିବର୍ତ୍ତନ ଘଟିଲା, ତନ୍ମଧ୍ୟରେ ଦନ୍ତର ଆକାର ଜଟିଳତା ଓ ବୃଦ୍ଧି ତଥା ପରବର୍ତ୍ତୀ କାଳରେ ଦନ୍ତର ସଂଖ୍ୟା ହ୍ରାସ ଏବଂ ଏକ ସ୍ୱତନ୍ତ୍ର ପ୍ରକାର କ୍ରମିକ ବୃଦ୍ଧି ପ୍ରଧାନ । ହସ୍ତୀର ଶ୍ୱାଦନ୍ତ ( canine ) ନାହିଁ । କେବଳ ଊର୍ଦ୍ଧ୍ୱ ହନୁର ପ୍ରତି ପାଖରେ ଦ୍ୱିତୀୟ କର୍ତ୍ତନ ଦନ୍ତ (incisor ) ରହିଥାଏ; ଅନ୍ୟ କର୍ତ୍ତନ ଦନ୍ତ ଉଭେଇ ଯାଇଛି । ଏହି କର୍ତ୍ତନ ଦନ୍ତ ଦୁଇଟି ବୃଦ୍ଧି ପାଇ ଦୀର୍ଘ “ଗଜଦନ୍ତ”ରେ (tusk) ପରିଣତ ହୋଇଅଛି । ହାତୀର ଜୀବନକାଳ ମଧ୍ୟରେ ପ୍ରତି ଅର୍ଦ୍ଧ ହନୁରେ ଛଅଟି କରି ପେଷଣ ଦନ୍ତ ଉଠିଥାଏ । ଅର୍ଥାତ୍ ଦକ୍ଷିଣ ଊର୍ଦ୍ଧ୍ୱ ଓ ନିମ୍ନ ହନୁରେ ଛଅଟି କରି ବାରଟି ବାମ ଊର୍ଦ୍ଧ୍ୱ ଓ ନିମ୍ନ ହନୁରେ ଛଅଟି କରି ବାରଟି ପେଷଣ ଦନ୍ତ ଉଠେ । ମାତ୍ର ତା’ ପାଟିରେ ଏତେ ଗୁଡ଼ିଏ ଦନ୍ତ ଏକ ସାଙ୍ଗରେ ରହିବାକୁ ସ୍ଥାନର ଅଭାବ । ଏଣୁ ଏଠାରେ ଦନ୍ତର ବିକାଶ ଏକ ଅଭିନବ ଉପାୟରେ ଘଟିଥାଏ । ପ୍ରତି ପାଖ ହନୁରେ କୌଣସି ସମୟରେ କେବଳ ଗୋଟିଏ ପେଷଣ ଦାନ୍ତ ମାଢ଼ି ଉପରକୁ ଥାଏ ଓ ଅନ୍ୟଟି ଅଳ୍ପ ଦେଖାଯାଉ ଥାଏ । ଅର୍ଥାତ୍ କୌଣସି ସମୟରେ ହାତୀର ପାଟିକୁ ପରୀକ୍ଷା କଲେ ଦେଖାଯିବ ସେଥିରେ ଚାରିଟି ମାତ୍ର ପୂର୍ଣ୍ଣ ବର୍ଦ୍ଧିତ ପେଷଣ ଦନ୍ତ ଓ ତା’ପଛକୁ ଆଉ ଚାରିଟି ପେଷଣ ଦନ୍ତ ଅଳ୍ପ ଅଳ୍ପ ଦେଖାଯାଉଥିବା ଅବସ୍ଥାରେ ରହିଅଛି । ପଛ ଦନ୍ତ ସବୁ ଆସ୍ତେ ଆସ୍ତେ ବୃଦ୍ଧି

ପାଏ ଓ ସାମାନାରେ ଥିବା ଦାନ୍ତ ବ୍ୟବହୃତ ହୋଇ ଘୋରି ହୋଇଗଲା ପରେ ତାର ସ୍ଥାନ ଦଖଲ କରେ । ହାତୀର ପ୍ରଥମ ପେଷଣ ଦୁଧ ଦାନ୍ତ (first milk molar ) ତାକୁ ଦୁଇବର୍ଷ ହୋଇଥିଲା ବେଳେ ଝଡ଼ି ପଡ଼େ; ଦ୍ୱିତୀୟ ଦନ୍ତ ଛଅ ବର୍ଷରେ; ତୃତୀୟ ଦନ୍ତ ନବମ ବର୍ଷରେ ; ଚତୁର୍ଥ ଦନ୍ତ ଷାଠିଏ ବର୍ଷରେ ଖସି ପଡିଥାଏ । ଷଷ୍ଠ ପେଷଣ ଦନ୍ତ ବାକୀ ଜୀବନକାଳତକ ବ୍ୟବହୃତ ହୋଇଥାଏ । ପ୍ରତ୍ୟେକ ପରବର୍ତ୍ତୀ ପେଷଣ ଦନ୍ତ ପୂର୍ବ ପେଷଣ ଦନ୍ତ ଅପେକ୍ଷା ଆକାରରେ ବଡ ହୁଏ । ଏହା କେତେଗୁଡ଼ିଏ କ୍ରମିକ ଫଳକ ଦ୍ୱାରା ଗଠିତ । ପ୍ରତ୍ୟେକ ଫଳକ ଚେପଟା ହୋଇ ଯାଇଥିବା ଦନ୍ତାସ୍ଥି ( dentine) ଦ୍ୱାରା ନିର୍ମିତ ଓ ସେଥିରେ ଏନାମେଲର ଆସ୍ତରଣ ରହିଥାଏ । ଦାନ୍ତର ବ୍ୟବହାର ଫଳରେ ଯହୁଁ ଯହୁଁ ଦନ୍ତାସ୍ଥିର କ୍ଷୟ ହୁଏ , ତହୁଁ ତହୁଁ ପେଷଣ ଦନ୍ତର ଶିଖରରେ ଶକ୍ତ ଏନାମେଲ ଅନୁପ୍ରସ୍ଥ ହିଡ ପରି ପ୍ରତିଭାତ ହୁଏ । ଭାରତୀୟ ହସ୍ତୀର ଶେଷ ବା ଷଷ୍ଠ ପେଷଣ ଦନ୍ତର ଶିଖରରେ ଏପରି ସତେଇଶଟି ହିଡ଼ ରହିଥାଏ । ଆଫ୍ରିକୀୟ ହାତୀର ଏହି ପେଷଣ ଦାନ୍ତରେ କେବେ ଏଗାରଟିରୁ ଅଧିକ ହିଡ଼ (ridge) ଦେଖାଯାଏ ନାହିଁ ।

ପ୍ରବୋସିଡ଼ିଆ ( Proboscidea ) ବର୍ଗ ମାତ୍ର ଗୋଟିଏ ବଂଶ ( family ) ଦ୍ୱାରା ଗଠିତ । ଏଲିଫାନ୍‌ଟିଡ଼ି ( Eliphantidae ) ବଂଶରେ ଦୁଇଟି ଜୀବିତ ପ୍ରଜାତିର ହାତୀ ଅନ୍ତର୍ଭୁକ୍ତ । ଏହି ଦୁଇ ପ୍ରଜାତି ହେଉଛି ଏସିଆ ମହାଦେଶର ହାତୀ ଏଲିଫାସ ( Elephas ) ଓ ଆଫ୍ରିକୀୟ ହାତୀ ଲକ୍‌ସୋଡ଼ଣ୍ଟା ( Loxodonta ) ।

## ଭାରତୀୟ ହସ୍ତୀ

ତଳୁ କାନ୍ଧଯାଏ ମାପିଲେ ଭାରତୀୟ ହାତୀ 3.20 ମିଟାର (10ଫୁଟ 6 ଇଞ୍ଚ) ରୁ ଅଧିକ ଉଚ୍ଚ ହୁଅନ୍ତି ନାହିଁ । ସାଧାରଣତଃ ଅଣ୍ଡିରା ହାତୀ 2.4-2.75 ମିଟାର (8-9) ଫୁଟ ) ଓ ମାଈ ହାତୀ 1.8-2.4 ମିଟାର ( 6-8 ଫୁଟ ) ଉଚ୍ଚ ହୁଅନ୍ତି । ହାତୀ ଓ ହାତୁଣୀର ସର୍ବାଧିକ ଉଚ୍ଚତା ଯଥାକ୍ରମେ 3.35 ମିଟାର (11 ଫୁଟ ) ଓ 2.75 ମିଟାର ( 9 ଫୁଟ ) ହେବାର ଦେଖାଯାଇଅଛି । 1953 ସାଲରେ ତାଳଚେର ରାଜ୍ୟର ତତ୍କାଳୀନ

ରଜା ଢେଙ୍କାନାଳର ଜଙ୍ଗଲରେ ଗୋଟିଏ ଅର୍ଣ୍ଣିଗ ହାତୀ ଶିକାର କରିଥିଲେ । ତା'ର ଉଚ୍ଚତା ଥିଲା 3.35 ମିଟାର । ପ୍ରତ୍ୟେକ ଦାନ୍ତର ଓଜନ ଥିଲା 41.73 କିଲୋଗ୍ରାମ ଓ ବକ୍ରତାର ବାହାର ପାଖରେ (Outside the curve ) ଲମ୍ବ 2.59 ମିଟାର ( 8 ଫୁଟ 6 ଇଞ୍ଚ ) । ଶ୍ୟାମ ଦେଶର ବେଙ୍କକଠାରେ ରାଜକୀୟ ଯାଦୁଘର ( Royal museum ) ରେ ଏକ ଯୋଡ଼ା ହାତୀ ଦାନ୍ତ ଅଛି । ପ୍ରତ୍ୟେକର ଲମ୍ବ 3 01 ମିଟାର ( 9 ଫୁଟ $10\frac{1}{2}$ ଇଞ୍ଚ ) ଇଂଲଣ୍ଡର ରାଣୀଙ୍କ ଘରେ ଯୋଡ଼ିଏ ଦାନ୍ତ ଅଛି । ସେଗୁଡ଼ିକର ଲମ୍ବ 2.67 ମିଟାର ( 8 ଫୁଟ 9 ଇଞ୍ଚ ) ଓ 2.60 ମିଟାର ( 8 ଫୁଟ $6\frac{1}{2}$ ଇଞ୍ଚ ) । ଏ ଦୁଇଟିର ଓଜନ ଯଥାକ୍ରମେ 72.57 କିଲୋଗ୍ରାମ ( 160 ପାଉଣ୍ଡ ) ଓ 73.03 କିଲୋଗ୍ରାମ (161 ପାଉଣ୍ଡ ) । ସେ ଯାହାହେଉ ଯୋଡ଼ିଏ ହାତୀ ଦାନ୍ତର ଓଜନ ସାଧାରଣତଃ 45.5 କିଲୋଗ୍ରାମ ( 100 ପାଉଣ୍ଡ ) ରୁ ଅଧିକ ହୁଏ ନାହିଁ ।

ଭାରତୀୟ ହାତୀମାନଙ୍କର ଉଚ୍ଚତା ମାପିବା ଲାଗି ଏକ ସହଜ ଉପାୟ ଅଛି । ତାହା ହେଉଛି ଅଗ ପାଦର ଗୋଲେଇକୁ ମାପି ଦୁଇଗୁଣା କଲେ ଦେଖାଯିବ ଯେ ଏହା ପାଦଠାରୁ କାନ୍ଧ ପର୍ଯ୍ୟନ୍ତ ଉଚ୍ଚତା ସହିତ ସମାନ । କାଦୁଅରେ ପଡ଼ିଥିବା ହାତୀର ଖୋଜ ଦେଖି ଏହିପରି ଭାବେ ତା'ର ଉଚ୍ଚତା ଜଣାଯାଇ ପାରେ ।

ଭାରତୀୟ ହାତୀ ଆଫ୍ରିକାର ହାତୀଠାରୁ ଛୋଟ ହୁଅନ୍ତି । ଆମ ହାତୀର କାନ ବଡ ଓ କୁଲାପରି ହେଲେ ମଧ୍ୟ ଆଫ୍ରିକୀୟ ହାତୀର କାନ ଆହୁରି ବଡ ଓ ପିଠି ଖାଲୁଆ । କିନ୍ତୁ ହାତୀର ପଛ ଗୋଡର ନଖ ଦେଖି ହିଁ ସହଜରେ କହିହେବ, ତାହା ଆଫ୍ରିକାର ହାତୀ ନାଁ ଭାରତୀୟ ହାତୀ । କାରଣ ଭାରତୀୟ ହାତୀର ପଛଗୋଡରେ ଚାରିଟି କରି ନଖ, ମାତ୍ର ଆଫ୍ରିକୀୟ ହାତୀର ପଛଗୋଡରେ ନଖ ତିନୋଟି । ଆଫ୍ରିକୀୟ ହାତୀର କାନ ବଡ ମାତ୍ର, ଭାରତୀୟ ହାତୀର ମୁଣ୍ଡ ବଡ଼ । ଭାରତୀୟ ହାତୀ ତୁଳନାରେ ଆଫ୍ରିକୀୟ ହାତୀର ଶୁଣ୍ଢ ଛୋଟ, ମାତ୍ର ଦାନ୍ତ ଅପେକ୍ଷାକୃତ ବଡ଼ ଓ ଉପର ଆଡ଼କୁ ବଙ୍କା । ଆଫ୍ରିକୀୟ ହାତୀର ଶୁଣ୍ଢ ଅଗରେ 'ଓଠ' ଦୁଇଟିକିଆ, ମାତ୍ର ଭାରତୀୟ ହାତୀର ଶୁଣ୍ଢ ଅଗ୍ରଭାଗରେ ଗୋଟିଏ 'ଓଠ' ଥାଏ । ଉଭୟ ଅର୍ଣ୍ଣିଗ ଓ ମାଈ

ଆଫ୍ରିକୀୟ ହାତୀଙ୍କର ଦାନ୍ତ ବାହାରି ରହିଥାଏ; ମାତ୍ର ଭାରତୀୟ ଅଣ୍ଡିରା ହାତୀଙ୍କର ଦାନ୍ତ ସାଧାରଣତଃ ବଡ ଓ ପଦାକୁ ବାହାରି ରହିଥାଏ,



ଭାରତୀୟ ହସ୍ତୀ



ଆଫ୍ରିକୀୟ ହସ୍ତୀ

( ଚିତ୍ର ନଂ ୪୭ ଭାରତୀୟ ହସ୍ତୀ ଓ ଆଫ୍ରିକୀୟ ହସ୍ତୀ )

ମାଈଙ୍କର ବାହାରି ରହି ନ ଥାଏ । ଏହି ଦନ୍ତ ଯୋଗୁ ଅଣ୍ଡିରା ହାତୀକୁ ଦନ୍ତୀ ବା ଦନ୍ତାବଳ କୁହାଯାଏ । କେତେକ ଭାରତୀୟ ବୟସ୍କା ହାତୁଣୀଙ୍କର ବେଳେ-

ବେଳେ ଛୋଟ ଛୋଟ ଦାନ୍ତ ବାହାରି ରହିଥାଏ । ଭାରତୀୟ ହାତୀ ସହଜରେ ପୋଷମାନେ ; ମାତ୍ର ଆଫ୍ରିକୀୟ ହାତୀ ସହଜରେ ପୋଷମାନେ ନାହିଁ । ଆହୁରି ମଧ୍ୟ, ଆଫ୍ରିକାର ହାତୀର ଗଠନ ଏପରି ଯେ ତାହା ଶକ୍ତ କାମ କରିବା ଉପଯୋଗୀ ନୁହେଁ ।

ଭାରତୀୟ ଅଣ୍ଡିରା ହାତୀର ଦାନ୍ତର ସଜ୍ଜାରେ ତାରତମ୍ୟ ପରିଲକ୍ଷିତ ହୁଏ । କାହାର ଦାନ୍ତ ଦୁଇଟି ଫରକ୍ କ ତ, କାହାର ଉପର ଆଡ଼କୁ ବଙ୍କା, କାହାର ସିଧା ତ କାହାର ତଳ ଆଡ଼କୁ ବଙ୍କା । କେତେକ ଅଣ୍ଡିରା ଭାରତୀୟ ହାତୀର ଦାନ୍ତ ମାଈର ଦାନ୍ତ ଠାରୁ ବଡ଼ ହୁଏ ନାହିଁ । ବଡ଼ ଦନ୍ତ ନଥିବା ଏପରି ଅଣ୍ଡିରା ହାତୀକୁ 'ମାଖନା' କହନ୍ତି । ମାଖନା ହାତୀ ସାଧାରଣତଃ ବୃହଦାକାର ହୋଇଥାନ୍ତି ଓ ସେମାନଙ୍କର ଶୁଣ୍ଢ ଅତି ଅଧିକ ବଡ ହୋଇଥାଏ । ଭାରତରେ ମାଖନା ହାତୀ ଦେଖାଯାନ୍ତି; ମାତ୍ର ଶ୍ରୀଲଙ୍କାରେ ଅଧିକ ସଂଖ୍ୟାରେ ଦେଖାଯାନ୍ତି ମାଖନା ହାତୀ ଦନ୍ତହୀନ ବୋଲି ଯେ ସେମାନଙ୍କର ଜୋର କମ୍, ଏପରି ଧାରଣା କରିବା ଠିକ୍ ନୁହେଁ । ଏମାନେ ବେଶ ବଳୁଆ ଓ ଅନେକ ସମୟରେ ଦଳର ଦଳପତି ହୋଇଥିବାର ଦେଖାଯାଏ । ମାଖନା ଏପରି ବଳୁଆ ଯେ ଦନ୍ତା ସହିତ ଲଢ଼ାଇ ବେଳେ ଦୃଢ଼ ଶୁଣ୍ଢ ସାହାଯ୍ୟରେ ଗୋଟାଏ ଦାନ୍ତକୁ ଧରି ଉପାଡ଼ି ଦିଏ । ଏଥିପାଇଁ ବେଳେବେଳେ ଗୋଟିଏ ଦାନ୍ତଥିବା ହାତୀ ଦେଖାଯାନ୍ତି । ଏମାନଙ୍କୁ "ଗଣେଶ" ହାତୀ କହନ୍ତି ।

ହାତୀଙ୍କର ଦୁଧଦାନ୍ତ ଛଅମାସ ମଧ୍ୟରେ ପଡ଼ିଯାଏ । ସ୍ଥାୟୀ ଛାମୁଦାନ୍ତ ଏହାପରେ ଉଠେ । ପୋଷା ହାତୀର ଦାନ୍ତକୁ ପ୍ରତି ଦଶ ବର୍ଷରେ ଥରେ କାଟି ଦିଆଯାଏ । କାରଣ କାଟିଦେଲେ ତାହା ଅଧିକ ବଢ଼େ ।

ବିସ୍ତୃତି ଓ ବାସ—ଭାରତୀୟ ହାତୀ ଭାରତ, ଶ୍ରୀଲଙ୍କା, ନେପାଳ, ବାଙ୍ଗଲାଦେଶ, ବର୍ମା, ଶ୍ୟାମ, କୋଚିନ-ଚୀନ, ମାଲୟ ଉପଦ୍ୱୀପ, ବୋର୍ନିଓ ଓ ସୁମାତ୍ରାର ଜଙ୍ଗଲଅଞ୍ଚଳରେ ବାସ କରନ୍ତି । ସିଂହଳର ହାତୀ ଭାରତୀୟ ହାତୀଠାରୁ ଭିନ୍ନ କିସମର ଅଣ୍ଡିରାଙ୍କର ଲମ୍ବା ଦାନ୍ତ ଥାଏ ; ମାଈଙ୍କର ଦାନ୍ତ ନ ଥାଏ । ଉତ୍ତର ପ୍ରଦେଶସ୍ଥ ହିମାଳୟର ନିମ୍ନଭୂମିର ଗଭୀର ଜଙ୍ଗଲରୁ ପୂର୍ବକୁ ଆସାମ ଓ ବାଙ୍ଗଲା ଦେଶ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ହାତୀ ବହୁ

ସଂଖ୍ୟାରେ ବାସ କରନ୍ତି । ନୀଳଗିରି ପର୍ବତମାଳା, ପଶ୍ଚିମଘାଟ ପର୍ବତମାଳା, ମହୀଶୂର, କୁର୍ଗ ଓ ଟ୍ରାଭାନ୍‌କୋରରେ ମଧ୍ୟ ହାତୀ ମିଳନ୍ତି । ମଧ୍ୟ ପ୍ରଦେଶ ଓ ଓଡ଼ିଶାରେ ହାତୀ ଅଳ୍ପ ସଂଖ୍ୟାରେ ଅଛନ୍ତି । ଓଡ଼ିଶାରେ ମୟୂରଭଞ୍ଜ,



କେନ୍ଦୁଝର, ଢେଙ୍କାନାଳ, ଗଞ୍ଜାମ, ଫୁଲବାଣି, ପୁରୀ ( ବାଲୁଗାଁ ନିକଟରେ ) ଓ ସମ୍ବଲପୁର ( ଦେଓଗଡ଼, ବାମଣ୍ଡା ) ଜିଲ୍ଲାର ଅରଣ୍ୟରେ ହସ୍ତୀ ବାସ କରନ୍ତି । ଉଚ୍ଚ ଘଞ୍ଚ ଓ ବାଉଁଶ ବୁଦାଥିବା ଜଙ୍ଗଲ ଓ ପାହାଡ଼ ଅଞ୍ଚଳ ହାତୀମାନଙ୍କର ପ୍ରିୟ ବିହାରସ୍ଥଳୀ । ସେମାନେ ଉଷ୍ଣ ଆର୍ଦ୍ର ଜଙ୍ଗଲ ତଥା

ଉଚ୍ଚ ଶୀତଳ ଅରଣ୍ୟରେ ଦେଖାଯାନ୍ତି । ବର୍ମାରେ 3050 ମିଟାର (10,000 ଫୁଟ ) ଉଚ୍ଚ ଭୂମିରେ ଅବସ୍ଥିତ ବାଉଁଶ ଜଙ୍ଗଲରେ ବର୍ଷର ସବୁ ସମୟରେ ହାତୀ ଦେଖାଯାନ୍ତି । ସିକିମ୍‌ରେ 3660 ମିଟାର (12,000



( ଚିତ୍ର ନଂ ୪୭, ଭାରତୀୟ ହାତୀ )

ଫୁଟ ) ଉଚ୍ଚତାରେ ବରଫ ଉପରେ ହାତୀର ଖୋଜ ପଡ଼ିଥିବାର ଦେଖାଯାଇଅଛି । ଖରଦିନେ ହାତୀ ସାଧାରଣତଃ ଗଭୀର ଜଙ୍ଗଲକୁ ଚାଲିଯାନ୍ତି । ମାତ୍ର ବର୍ଷା ଋତୁରେ ଖୋଲା ଅଞ୍ଚଳକୁ ଆସନ୍ତି ଓ ଅନେକ ସମୟରେ ଚାଷ ଜମିରେ ପଶି ଫସଲ ଉଜାଡନ୍ତି ।

ହାତୀର ଆଖି ଛୋଟ । ତା'ର ମୁଣ୍ଡର ସମ୍ମୁଖ ଅଂଶ ସ୍ଫୀତ ସେଥିପାଇଁ ହାତୀ ସିଧାରେ ଆଗକୁ ଦେଖିପାରେ ନାହିଁ । ଏଣୁ ଦନ୍ତା ଆଗେଇ ଆସିଲା ବେଳେ ମୁଣ୍ଡ ଗୋଟିଏ କଡକୁ ସାମାନ୍ୟ ବଙ୍କାଇ ରଖେ । ହାତୀଙ୍କର ଶ୍ରବଣ ଓ ଘ୍ରାଣେନ୍ଦ୍ରିୟ ଖୁବ୍ ବର୍ଦ୍ଧିତ । ଚର୍ମର ରଙ୍ଗ ଶିଲଟ ପରି । ମୁଣ୍ଡ ଓ କାନରେ ମାଂସ ରଙ୍ଗର ଚିହ୍ନ ଓ କଳା ଛିଟାଥାଏ । ଆଲବିନୋ ବା ଶ୍ୱେତ ହସ୍ତୀ ଖୁବ୍ କ୍ୱଚିତ୍ ଦେଖାଯାନ୍ତି । ବେଳେବେଳେ ହାତୀର ଚର୍ମର ବର୍ଣ୍ଣ ଫିକା ଲାଲ ବା ହାଲୁକା ଚକୋଲେଟ୍ ରଙ୍ଗର ହୋଇଥାଏ ।

ଭାରତରେ ଦୁଇଟି ରେସ ( race )ର ହାତୀ ଦେଖାଯାନ୍ତି । ସେମାନଙ୍କର ବୈଜ୍ଞାନିକ ନାମ—

Elephas maximus dukhumensis Deraniyagala
Elephas maximus bengalensis de Blainville ଡ୍ୟୁଖୁମେନ୍ସିସ ରେସ ଭାରତର ଉପଦ୍ୱୀପ ଅଞ୍ଚଳରେ ଏବଂ ବେଙ୍ଗାଲେନ୍ସିସ୍ ରେସ ଉତ୍ତର ଭାରତ ଓ ନେପାଳର ଜଙ୍ଗଲରେ ରହନ୍ତି । ଶ୍ରୀଲଙ୍କା ବାସୀ ହାତୀର ବୈଜ୍ଞାନିକ ନାମ Elephas maximus Ceylamicus de Blainville ।

ଦେହର ବିଭିନ୍ନ ଅଙ୍ଗର ଆକାର , ସ୍ଥୂଳତା, ବର୍ଣ୍ଣ, ସ୍ୱର, ଆଚରଣ, ବାସ, ଦୈହିକ ଶକ୍ତି, ଗନ୍ଧ, ଖାଦ୍ୟ ଓ କେତେକ ନିର୍ଦ୍ଦିଷ୍ଟ ରୋଗଦ୍ୱାରା ଆକ୍ରାନ୍ତ ହେବା ନହେବା ଅନୁସାରେ ଭାରତର ଉପରୋକ୍ତ ଦୁଇଟି ରେସର ହାତୀଙ୍କୁ ବିଭିନ୍ନ କିସମ ପର୍ଯ୍ୟାୟଭୁକ୍ତ କରାଯାଏ । ଉଦାହରଣରେ, ଦେହର ଗଠନ ଓ ବିଭିନ୍ନ କାର୍ଯ୍ୟରେ ବ୍ୟବହାର ଭେଦରେ ହାତୀ ତିନି ରକମର ଯଥା କୁମେରିଆ, ମିର୍‌ଗା ଓ ଦ୍ୱାସଲା । କୁମେରିଆ ହାତୀର ଦେହ ନିଦା, ଗଠନ ଉତ୍ତମ ଏବଂ ଦନ୍ତାର ଦାନ୍ତ ବାହାର ଓ ଉପର ଆଡ଼କୁ ବର୍ଦ୍ଧିତ । ମିରଗାହାତୀ କୁମେରିଆ ହାତୀଠାରୁ ନୀରସା, ଦେହ ସେତେ ନିଦା ଓ ଉତ୍ତମ ଗଠିତ ନୁହେଁ ଏବଂ ଏହାର ମିଜାଜ କେତେବେଳେ କଅଣ ହେବ ଜାଣି ହୁଏ ନାହିଁ । ସାଧାରଣତଃ ଏମାନଙ୍କର ଦାନ୍ତ ଓହଳି ପଡିଥିବା ପରି ମନେହୁଏ ଓ ଯେ କୌଣସି ଦିଗକୁ ବର୍ଦ୍ଧିତ । ଦ୍ୱାସଲା ହାତୀର ଦେହ ଗଠନ ମିର୍‌ଗା ହାତୀ ତୁଳନାରେ କେତେକ ପରିମାଣରେ ଉତ୍ତମ ଗଠିତ ; ମାତ୍ର ଏମାନଙ୍କର ଦାନ୍ତ ସାଧାରଣତଃ ଉପର ଆଡକୁ ବଢିଥାଏ ।

ଡାଖୁନେନ୍‌ସିସ ରେସର ଅଣ୍ଡିରା ହାତୀଙ୍କ ମଧ୍ୟରେ ଶତକଡା 82 ଙ୍କର ଉତ୍ତମ ବର୍ଦ୍ଧିତ ଦାନ୍ତଥାଏ । ଗୋଟିଏ ଜୋଡା ବଡ଼ ଦାନ୍ତର ହାରାହାରି ଓଜନ 57 କିଲୋଗ୍ରାମ ( 126 ପାଉଣ୍ଡ ) ଓ ଲମ୍ବ 1-98 ମିଟାର (6 ଫୁଟ 6 ଇଞ୍ଚ ) । ଏମାନଙ୍କର ସବୁଠାରୁ ବଡ ଦାନ୍ତ ଯୋଡାର ଓଜନ 77.56 କିଲୋଗ୍ରାମ ( 171 ପାଉଣ୍ଡ ) ବେଙ୍ଗାଲେନ୍‌ସିସ ରେସର ଅଣ୍ଡିରା ହାତୀଙ୍କ ମଧ୍ୟରୁ ଶତକଡା 51ଙ୍କର ଉତ୍ତମ ବର୍ଦ୍ଧିତ ଦାନ୍ତଥାଏ ଓ ସାଧାରଣତଃ ବଙ୍କା । ଏମାନଙ୍କର ଗୋଟିଏ ଯୋଡ଼ା ବଡ ଦାନ୍ତର ଓଜନ 65.77 କିଲୋଗ୍ରାମ (145 ପାଉଣ୍ଡ ) ଓ ସର୍ବ ବୃହତ ଲମ୍ବ 2.13 ମିଟାର ( 7 ଫୁଟ )

ହାତୀ ତୃଣଭୋଜୀ । ଏହା ବିଭିନ୍ନ ଜାତି ଗଛର ପତ୍ର ଓ ଘାସ ଖାଏ । ବନ୍ୟ ବାଉଁଶ ଗଛର ପତ୍ର ଓ କଦଳୀ ପତ୍ର ଏମାନଙ୍କର ପ୍ରିୟ ଖାଦ୍ୟ । ସେମାନେ କେତେକ ଗଛର ବକଳ। ମଧ୍ୟ ଖାନ୍ତି । ପୋଷା ହାତୀକୁ ସାଧାରଣତଃ ଓସ୍ତ ପତ୍ର ଦିଆଯାଏ । ତା’ ଛାଡି ବର, ପଣସ, କଅଁଳିଆ ବାଉଁଶ ପତ୍ର ଓ ବାଉଁଶ ଗଜା, ଏବଂ ଧାନ ଡ଼ାଲି ମକକା ପତ୍ର ଓ ଡାଙ୍ଗ, ସମସ୍ତ ପ୍ରକାର ଶସ୍ୟ, ଆଖୁ, କଦଳୀ ପତ୍ର ଓ କାଣ୍ଡ ନଡିଆ ଏବଂ ନାନା ପ୍ରକାର ଘାସ ଦିଆଯାଏ । ଗୋଟିଏ ପୂର୍ଣ୍ଣ ବୟସ ହାତୀ ସାଧାରଣତଃ ଦିନକୁ 270-320 କିଲୋଗ୍ରାମ ( 600-700 ପାଉଣ୍ଡ ) ଓଜନର ଘାସ ପତ୍ର ଖାଇଥାଏ ।

ହାତୀମାନେ ଜଳାଶୟ ନିକଟକୁ ପାଣି ପିଇବା ଲାଗି ଦିନକୁ ଦୁଇଥର ଯାନ୍ତି । ପାଣିରେପଶି କାଦୁଅ ମାଖି ହେବା ସେମାନଙ୍କର ପ୍ରଧାନ ଆମୋଦ । ସେମାନେ ଭଲ ପହଁରି ପାରନ୍ତି । ଏ ସମୟରେ ଦେହ ପାଣି ଭିତରେ ବୁଡି ରହିଥାଏ ।

ଏମାନେ ଖରା ସହି ପାରନ୍ତି ନାହିଁ । ଦିନର ଗରମ ସମୟଟକ ସେମାନେ ବିଶ୍ରାମ ନିଅନ୍ତି । ପ୍ରଦୋଷ, ଅପରବେଳା ଓ ରାତିରେ ଚରିବାକୁ ବାହାରନ୍ତି ମଧ୍ୟରାତ୍ରୀ ପରେ ଫେରିଯାଇ ବିଶ୍ରାମ କରନ୍ତି । ଠିଆ ହେବା ଅବସ୍ଥାରେ ନଚେତ୍ କଡ଼ପଟିଆ ଶୋଇ ହାତୀ ବିଶ୍ରାମ କରେ ।

ହାତୁଣୀମାନେ ଅଢେଇ ବର୍ଷରେ ଥରେ ଗର୍ଭଧାରଣ କରନ୍ତି । ଗର୍ଭଧାରଣ କାଳ 17ରୁ 24 ମାସ ଓ ସାଧାରଣତଃ 21 ମାସ ପରେ

ଶାବକ ପ୍ରସବ କରନ୍ତି । ଥରକେ ଗୋଟିଏ ଛୁଆ ଜନ୍ମ ହୁଏ: କେବେ କେବେ ଜାଆଁଳା ଛୁଆ ବା ତିନୋଟି ଛୁଆ ଜନ୍ମ ହେବାର ଦେଖାଯାଇଛି । ଜନ୍ମବେଳେ ହାତୀ ଛୁଆର ହାଗହାରୀ ଉଚ୍ଚତା 0.86 ମିଟାର ( 2 ଫୁଟ 10 ଇଞ୍ଚ ) ଓ ଓଜନ 90.72 କିଲୋଗ୍ରାମ ( 200 ପାଉଣ୍ଡ ) ହୋଇଥାଏ । ଅର୍ଣ୍ଣିଗ ବା ଦନ୍ତା ହାତୀ 25 ବର୍ଷ ବୟସରେ ବୟଃପ୍ରାପ୍ତ ହୁଏ ଓ ମାଈ ହାତୀକୁ 15




( ଚିତ୍ର ନଂ 90, ତ୍ରିଶ ବର୍ଷ ହେଲଯାଏ ହାତୀ ବଢୁଥାଏ )

ବର୍ଷ ହେଲ ବେଳକୁ ଛୁଆ ଜନ୍ମ କରିବାର ଦେଖାଯାଇଅଛି । ହାତୀମାନଙ୍କର ପୂର୍ଣ୍ଣ ଯୌବନ କାଳ 35 ରୁ 45 ବର୍ଷ । ଦନ୍ତାହାତୀର ଦନ୍ତ ହୀନ ( ମାଖନା ) ଛୁଆ ହୋଇପାରେ ଏବଂ ମାଖନାର ଶାବକ ଦନ୍ତା ହୋଇପାରେ । ହାତୀମାନଙ୍କର ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ଥିଲପରି ମନେ ହୁଏ ନାହିଁ । ଗ୍ରୀଷ୍ମକାଳରେ ବାରିପାତ ଆରମ୍ଭ ପର୍ଯ୍ୟନ୍ତ ସମୟ ମଧ୍ୟରେ ସାଧାରଣତଃ ସେମାନଙ୍କର ଯୌନ ମିଳନ ହୁଏ ବୋଲି ବିଶ୍ୱାସ କରଯାଏ । ମାଈ ହାତୀ ଛୁଆ କରିଥିବା ସମୟରେ ଅନ୍ୟ ଗୋଟିଏ ହାତୁଣୀ ତାକୁ ଶିଶୁ ହାତୀର ଲାଳନ ପାଳନରେ ସାହାଯ୍ୟ କରିଥାଏ ଓ ମାଆ ହାତୁଣୀ ପରି ଯତ୍ନ ନେଇଥାଏ ।

ପୋଷାହାତୀ ପ୍ରାୟ 80 ବର୍ଷ ପର୍ଯ୍ୟନ୍ତ ବଞ୍ଚିବାର ଦେଖାଯାଇଛି । ବଣରେ ସେମାନେ ହୁଏତ ଅଧିକ କାଳ ବଞ୍ଚନ୍ତି । କାନ ଓ ଦାନ୍ତ ପରୀକ୍ଷା କରି ସେମାନଙ୍କର ବୟସ ସମ୍ବନ୍ଧରେ ଏକ ମୋଟାମୋଟି ଧାରଣା କରଯାଇ ପାରେ । ଛଅ-ସାତ ବର୍ଷର ଛୁଆ ହାତୀର କାନ ଉପର ଅଂଶ ଭାଙ୍ଗି

ହୋଇନଥାଏ; ବୟସ ବଢ଼ିବା ସଙ୍ଗେ ସଙ୍ଗେ 13-20 ବର୍ଷ ମଧ୍ୟରେ କାନ ଉପର ଅଂଶ ଭାଙ୍ଗିଯାଏ ଓ ବୁଢ଼ା ହାତୀର କାନର ଧାର ଛିଣ୍ଡି ଯାଇଥାଏ ।

ଗୋଟିଏ ଭାରତୀୟ ହାତୀର ଓଜନ 6804 କିଲୋଗ୍ରାମ ( 15000 ପାଉଣ୍ଡ ) ହୋଇପାରେ । ମହୀଶୂରର ଦୁଇଟି ହାତୀର ଓଜନ ଯଥାକ୍ରମେ ଥିଲା 6909 ( 15232 ପାଉଣ୍ଡ ) ଓ 7468 ( 16,464 ପାଉଣ୍ଡ ) କିଲୋଗ୍ରାମ ।

ହାତୀ ସାଧାରଣତଃ ଘଣ୍ଟାକୁ 6.4 ( 4 ମାଇଲ ) କିଲୋମିଟର ବେଗରେ ଚାଲେ । ଅବଶ୍ୟ ଆବଶ୍ୟକ ହେଲେ ଏହା ଜୋରରେ ଚାଲିପାରେ ଓ ଘଣ୍ଟାକୁ 32.18 ( 20 ମାଇଲ ) କିଲୋମିଟର ବେଗରେ ଦୌଡ଼ିପାରେ ।

ହାତୀ ଦଳ ବାନ୍ଧି ରହନ୍ତି । ଗୋଟିଏ ଗୋଟିଏ ଦଳରେ 10ରୁ 100 ଯାଏ ବିଭିନ୍ନ ବୟସର ହାତୀ ଥାନ୍ତି । ଗୋଟିଏ ଦଳ ଗୋଟିଏ ପରିବାର ବୋଲି ବିଶ୍ୱାସ କରାଯାଏ । ପ୍ରତି ଦଳର ଦଳପତି ହେଲା ଗୋଟିଏ ବୁଢ଼ି ହାତୁଣୀ । ବିପଦର ଆଶଙ୍କା କଲେ ସେ ଏକ ପ୍ରକାର ଶବ୍ଦ କରେ । ତାହା ଶୁଣି ଦଳର ସବୁ ହାତୀ ଏକାଠି ହୋଇଯାନ୍ତି । ଅର୍ଣ୍ଣି ହାତୀ ଦଳଠାରୁ ଅଧିକ ଛଡ଼ାରେ ରହି ଚରିଲେ ବା ବୁଲିଲେ ମଧ୍ୟ ବେଶି ଦୂରରେ ନଥାଏ । ବେଳେବେଳେ ଦନ୍ତାହାତୀ ଦଳଠାରୁ ଅଲଗା ହୋଇ ବୁଲେ । ଏହାର କାରଣ ଦୁଇଟି । ଏକରେ ତାକୁ ଏକୁଟିଆ ରହିବାକୁ ଭଲଲାଗେ । ଦୁଇରେ ତା'ଠାରୁ ଅଧିକ ବଳୁଆ ଯୁବକ ହାତୀ ତାକୁ ଦଳରୁ ତଡ଼ି ଦିଅନ୍ତି । ଏପରି ଦଳ ପରିତ୍ୟକ୍ତ ଦନ୍ତା ହାତୀ ଜଙ୍ଗଲ କଡ଼ରେ ଚରେ ଓ ପାଖରେ ଥିବା କ୍ଷେତରେ ପ୍ରବେଶ କରି ଫସଲ ନଷ୍ଟ କରେ । ବେଳେବେଳେ ଏହା ମନୁଷ୍ୟକୁ ଆକ୍ରମଣ କରେ । ଏଭଳି ହାତୀକୁ "ବଜାତ" ("Rogue") ବୋଲି ଘୋଷଣା କରାଯାଏ ଏବଂ ଯେଉଁ ଶିକାରୀ ତାକୁ ଗୁଳି କରି ମାରେ ସେ ପୁରସ୍କୃତ ହୁଏ । ଖାଦ୍ୟର ଅଭାବ ଘଟିଲେ ଗୋଟିଏ ବଡ଼ ହାତୀ ଦଳ ଛୋଟ ଛୋଟ ଦଳରେ ବିଭକ୍ତ ହୋଇ ବିଭିନ୍ନ ଦିଗରେ ଖାଦ୍ୟ ଅନ୍ୱେଷଣରେ ଯାନ୍ତି । ଯେତେବେଳେ ଅଧିକ ଖାଦ୍ୟ ମିଳେ ସେତେବେଳେ ଏହି ବିକ୍ଷିପ୍ତ ଛୋଟ ଛୋଟ ଦଳ ପୁଣି ଏକାଠି ହୋଇଯାନ୍ତି । ବେଳେବେଳେ ଦୁଇଟି ବା

ଅଧିକ ସଂଖ୍ୟକ ( 3 ବା 4 ) ଦନ୍ତାହାତୀ ଏକତ୍ର ଦେଖାଯାନ୍ତି । ଏମାନଙ୍କୁ ଆସାମରେ "ମାଲଗୁରିଆ" କହନ୍ତି । ଏହାର ଅର୍ଥ "ମଲ୍ଲ ଯୋଦ୍ଧା ସାଥୀ" ।

ବୟଃପ୍ରାପ୍ତ ଅଣ୍ଡିରା ହାତୀ, ମଝିରେ ମଝିରେ, ବିଶେଷ କରି ଶୀତ କାଳରେ 'ମସ୍ତ' ହୁଅନ୍ତି । ସେମାନଙ୍କର ସ୍ଫୀତ ହୋଇଥିବା ଲଲାଟର ପାର୍ଶ୍ୱ ଦେଶରୁ ଗୋଟିଏ ପ୍ରାକୃତିକ ରନ୍ଧ୍ର ଦେଇ ଏକ ପ୍ରକାର ଦୁର୍ଗନ୍ଧ ତୈଳ ପରି ରସ ବା 'ମଦକୁବାରି' ନିର୍ଗତ ହୁଏ । ସେ ସମୟରେ ହାତୀ ବାରମ୍ବାର ମୂତ୍ର ତ୍ୟାଗ କରେ । ଲଲାଟ-ପାର୍ଶ୍ୱରୁ ରସ ନିର୍ଗମନ ଓ ବାରମ୍ବାର ମୂତ୍ର ତ୍ୟାଗ-ଏ ଦୁଇଟି 'ମସ୍ତର' ଲକ୍ଷଣ । ଏ ସମୟରେ ସେ ଆଳସ୍ୟ ପରାୟଣ ଓ ଟିକେ ବିରକ୍ତିର ଲକ୍ଷଣ ପ୍ରକାଶ କରେ । ମାଈ ହାତୀ ମଧ୍ୟ 'ମସ୍ତ' ହୁଅନ୍ତି; ମାତ୍ର ଅଣ୍ଡିରା ହାତୀ ବେଶି ମସ୍ତ ହୋଇଥାନ୍ତି । ମସ୍ତକାଳ କେତେକ ସପ୍ତାହରୁ 4 - 5 ମାସ ଯାଏ ରହେ । ସୁସ୍ଥ ହାତୀ ମଧ୍ୟେ ମଧ୍ୟେ ମସ୍ତ ହୁଅନ୍ତି: ମାତ୍ର ବୁଢ଼ା ହାତୀ ମସ୍ତ ହେବାର ଦେଖାଯାଏ ନାହିଁ । ଏହା ଅତୃପ୍ତ ଯୌନ ବାସନା ବା କାମ ମଦ ଯୋଗୁ ହୋଇଥାଏ କି ନାହିଁ, ସେ ବିଷୟରେ ସଠିକ କିଛି ଜଣା ନାହିଁ । କାରଣ, ଏ ସମୟରେ ବେଳେବେଳେ ଅଣ୍ଡିରା ମସ୍ତ ହାତୀ ହାତୁଣୀ ଖେଦେ; ପୁଣି କେବେ କେବେ ହାତୁଣୀଟିଏର ସଙ୍ଗ ପାଇଲା ପରେ ମଧ୍ୟ ସେ ଶାନ୍ତ ହୁଏ ନାହିଁ ଓ ତା'ର ମସ୍ତ' ଭାବ ଛାଡେ ନାହିଁ । ପୋଷା ଅଣ୍ଡିରା ହାତୀ ନିୟମିତ ଭାବେ ବର୍ଷକୁ ଥରେ ମସ୍ତ ହୁଏ । ମସ୍ତଭାବ ପ୍ରାୟ ତିନି ସପ୍ତାହ ଯାଏ ରହେ । ଏ ସମୟରେ ଏମାନେ ଏପରି ବଦ୍‌ମେଜାଜୀ ହୁଅନ୍ତି ଯେ ବେଳେବେଳେ ନିଜ ମାହୁନ୍ତକୁ ବି ମାରି ପକାନ୍ତି । ହାତୁଣୀ ତୁଳନାରେ ହାତୀ ଅଧିକ ମସ୍ତ ହେଉଥିବାରୁ ଚିଡିଆଖାନା ଓ ସର୍କସରେ ଆମେ ବେଶୀ ମାଈ ହାତୀ ଦେଖିବାକୁ ପାଇଥାଉ ।

ହାତୀ ଉଚ୍ଚ ଘାସବୁଦାରୁ ଏଠୁ ଟିକେ ସେଠୁଟିକେ ଖାଉଥିବ ଓ କାନକୁ ଜୋରରେ ହଲାଉଥିବ—ଏହା ତା'ର ସନ୍ତୋଷର ଲକ୍ଷଣ । ହାତୀ ସାଧାରଣତଃ ନିଜ ଭିତରେ ଲଢ଼ାଇ କରନ୍ତି ନାହିଁ । ନିହାତି ଯେତେବେଳେ ଯୁଝିବାକୁ ହେବ ଯୁଝନ୍ତି । ଗୋଟିଏ ଅଞ୍ଚଳରେ ଦନ୍ତା ଚରୁଥିଲା ବେଳେ ବା ଗୋଟିଏ ଦଳର ଦନ୍ତା ନିକଟରେ ଆଉ ଏକ ପ୍ରତିଦ୍ୱନ୍ଦୀ ଦନ୍ତା ପହଞ୍ଚିଥିଲେ ଲଢ଼ାଇ ହୁଏ । ଏଥିରେ ବଡ଼ ସାନଭ ତଫାତ୍ ନାହିଁ । ଅବଶ୍ୟ ସାଧାରଣତଃ

ବୃହଦାକାର ହାତୀଟି ଜିଣେ । ଦୁଇଟିଯାକ ହାତୀ ଯଦି ଏକ ଆକାରର ହୋଇଥାନ୍ତି ତେବେ ଦିନସାରା ଯୁଦ୍ଧ ଲାଗିପାରେ ବା କେତେଦିନ ପର୍ଯ୍ୟନ୍ତ ଲାଗିପାରେ । ଲଢ଼େଇ ବେଳେ ମଝିରେ ମଝିରେ ଦୀର୍ଘ ସମୟ ଧରି ଖାଇବା, ପିଇବା, ଗାଧୋଇବା ବା କାଦୁଅରେ ଚକଟି ହେବା ଲାଗି ଯୁଦ୍ଧ ବିରତି ହୁଏ । ଗ୍ରିପାଓ୍ୱାଟନ୍ ଓଜନର ପ୍ରାଣୀଟିଏ କେତେ ସମୟବା ବିନା ଖାଦ୍ୟ ଓ ପାନୀୟରେ ଲଢି ପାରିବ ? ସେଥିପାଇଁ ସେମାନେ ମଧ୍ୟେ ମଧ୍ୟେ ଲଢ଼ାଇ ବନ୍ଦ କରି ସେଇ ଏକ ସ୍ଥାନରେ ଛଡାରେ ଛଡ଼ାରେ ଚରି ଶକ୍ତି ସଞ୍ଚୟ କରନ୍ତି ; ପୁଣି ଲଢ଼ନ୍ତି, ପୁଣି ଲଢେଇ ବନ୍ଦ କରି ଖାଇବା ପିଇବା କାମ ସାରିବାକୁ ଯାନ୍ତି ।

ଭାରତରେ କେତେ ସଂଖ୍ୟାରେ ହାତୀ ଅଛନ୍ତି ଏବଂ କେଉଁଠି କେତେ ଅଛନ୍ତି, ସେ ସମ୍ବନ୍ଧରେ ବିଶେଷ ଅନୁସନ୍ଧାନ ହୋଇନାହିଁ । ମାଧ୍ୟପ୍ରଦେଶ, ଆସାମ ଓ ଅନ୍ୟତ୍ର ଜଙ୍ଗଲର ଆୟତନ କ୍ରମଶଃ କମିଯିବାରୁ ହାତୀଙ୍କ ସଂଖ୍ୟା-ହ୍ରାସ ଘଟିଅଛି । 1963 ସାଲରେ ସ୍ୱର୍ଗତ ପ୍ରକୃତି ତତ୍ତ୍ୱବିତ୍ ଇ.ପି.ଗି (Gee) ସମଗ୍ର ଭାରତରେ ଆନୁମାନିକ ସାତ ହଜାର ହାତୀ ଅଛନ୍ତି ବୋଲି ହିସାବ କରିଥିଲେ । ସେଥିରୁ ଦକ୍ଷିଣ ଭାରତରେ 3000 ଓ ଅନ୍ୟତ୍ର 4000 । ପୂର୍ବେ ଭାରତରେ ବାର୍ଷିକ ପ୍ରାୟ 600-700 ହାତୀ ଧରା ହେଉଥିଲେ । ଶ୍ରୀଲଙ୍କା, ବର୍ମା ଓ ଶ୍ୟାମରୁ ଭାରତକୁ ହାତୀ ଆମଦାନୀ କରାଯାଉଥିଲା । ଭାରତରେ ପ୍ରଧାନ ହାତୀ ବିକ୍ରୟ କେନ୍ଦ୍ର ହେଲା ଉତ୍ତର ଭାରତରେ ବିହାରର ସୋନପୁର ମେଳା ଓ ଦକ୍ଷିଣ ଭାରତରେ କାଲିକଟ୍ ।

ହାତୀମାନେ ଜଙ୍ଗଲରେ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ମରନ୍ତି ଏବଂ ସେଥିପାଇଁ ସେମାନଙ୍କର ନିର୍ଦ୍ଦିଷ୍ଟ 'ଶ୍ମଶାନ" ଅଛି ବୋଲି କେହି କେହି ବିଶ୍ୱାସ କରନ୍ତି । ଏହା ଠିକ ନୁହେଁ । ହାତୀ ନିଭୃତ ସ୍ଥାନରେ ଓ ଜଳ ନିକଟ ସ୍ଥାନ ଦେଖି ଶେଷ ବିଶ୍ରାମ ନିଏ ।

ହାତୀର ସେବକ ତା' ପାଇଁ ଉଦ୍ଦିଷ୍ଟ ଥିବା ଶସ୍ୟ ଖ୍ରେଇଲେ ହାତୀ ସହି ପାରେ ନାହିଁ । ଆସାମରେ କାଜିରଙ୍ଗା ଅଭୟାରଣ୍ୟରେ "ଆକବର" ନାମକ ଏକ ପୋଷା ହାତୀ ଥିଲା । ଏହା ଅତ୍ୟନ୍ତ ଧୀର, ସାହସୀ ଓ ଚତୁର ବୋଲି ଖ୍ୟାତି ଲାଭ କରିଥିଲା । ଆକବର ତା' ଜୀବନ କାଳ ଭିତରେ ତିନୋଟି

ଲୋକଙ୍କୁ ମାରିଥିଲା ଏବଂ ସେହି ଲୋକ ଗୁଡ଼ିକର ଶୌର୍ଯ୍ୟ ବୃତ୍ତି ତା'ର କାରଣ ବୋଲି ଜଣାଅଛି । ହାତୀମାନେ ଅତି ବୁଦ୍ଧିମାନ ବୋଲି ବହୁ ଦୃଷ୍ଟାନ୍ତ ରହିଛି ।

ହାତୀଧରା—ନାନା ଉପାୟରେ ହାତୀଙ୍କୁ ଜଙ୍ଗଲରୁ ଧରିଆଣି ପୋଷା ମନା ଯାଇଥାଏ । ସେଗୁଡ଼ିକ ମଧ୍ୟରୁ ପ୍ରଧାନ ହେଲା ଖାତ, ଖେଦା, ମେଳା, ଶୀକାର ଏବଂ ଲବଣ ଚଟା (Salt ick) ଓ ପାଣିପିଆ ସ୍ଥାନ ଘେରିପଟେ କାଠ ଖୁଣ୍ଟ ପୋତି ଦୁର୍ଗରଚନା ଦ୍ୱାରା ।

ଖାତରେ ଧରିବା ଅଳ୍ପ ବ୍ୟୟ ସାପେକ୍ଷ ହୋଇ ଥିବାରୁ ଏ ଉପାୟରେ ଅନେକ ସ୍ଥାନରେ ହାତୀ ଧରଯାଏ । ଯେଉଁ ରାସ୍ତାରେ ହାତୀ ନିୟମିତ ଯାତାୟତ କରନ୍ତି, ସେ ରାସ୍ତାରେ ଛକ ଜାଗା ବାଛି ଖାତ ଖୋଳାଯାଏ । ଛକରେ ଆସି ମିଶିଥିବା ରାସ୍ତାରେ ସାଧାରଣତଃ ତ୍ରିକୋଣ ପରି ଖାତଗୁଡ଼ିକ ରହିଥାଏ । ପ୍ରତିଖାତ 3.6 ରୁ 4.5( 12-15 ଫୁଟ ) ମିଟାର ଗହୀର. ଉପର ଅଂଶରେ 3.6 ମିଟାର (12 ଫୁଟ ) ଚତୁଷ୍କୋଣ ଓ ଖାତର ଗହୀର ଅଂଶରେ 2.7 ( 9 ଫୁଟ ) ଚତୁଷ୍କୋଣ କରଯାଏ । ଖାତକୁ ତଳୁ 1.8 ମିଟାର ( 6 ଫୁଟ ) ଯାଏ ଲତା ଗୁଳ୍ମ ଓ ଘାସ ବିଛାଇ ଦିଅନ୍ତି । ତା'ଉପରେ ପାତଳ ଓ ଲମ୍ବା ବାଉଁଶ ବତା ଦିଆଯାଏ । ତା' ଉପରେ ଛିଞ୍ଚା ହୁଏ ଅଳ୍ପ ମାଟି । ସର୍ବୋପରି ଆଖ ପାଖରେ ମିଳୁଥିବା ଘାସ ଓ ବାଉଁଶ ପତ୍ର ପକାଇ ଦିଆଯାଏ । ଏ ସବୁର ଉଦ୍ଦେଶ୍ୟ, ହାତୀ ମନେ କରିବେ ଖାତ ନାହିଁ, ଭୂଇଁ ମାତ୍ର । ଖାତର କତ ଗଡ଼ାଣିଆ ହୋଇଥିବାରୁ ହାତୀ ଖାତରେ ପଡ଼ିଗଲା ବେଳେ ଗୋଡ ଭାଙ୍ଗିବାର ବା ଜଖମ ହେବାର ଭୟ ନ ଥାଏ । ହାତୀଟିଏ ଖାତରେ ପଡିଗଲେ ଉଠିବାକୁ ବ୍ୟସ୍ତ ହୋଇ ଏପରି ରଡ଼ି କରେ ଯେ ଦେଢ କିଲୋମିଟାର ( ମାଇଲିଏ ) ଯାଏ ଶୁଣାଯାଏ । ଲୋକେ ଆସି ଆସ୍ତେ ଆସ୍ତେ କାଠ ଗଡ଼ ଖାତ ଭିତରକୁ ପକାନ୍ତି । ଫଳରେ ଖାତର ଗଭୀରତା କମିଯାଏ ଓ ହାତୀ ହାମୁଡେଇ ପଦାକୁ ଉଠି ଆସିବାକୁ ସକ୍ଷମ ହୁଏ । ମାତ୍ର ତା' ପୂର୍ବରୁ ତାଲିମ ପ୍ରାପ୍ତ ମାହୁନ୍ତମାନେ ଖାତରେ ପଡିଥିବା ହାତୀର ବେକ ଓ ପଛ ଗୋଡ଼କୁ ମୋଟ ଦଉଡ଼ାରେ ବାନ୍ଧି ପକାଇଥାନ୍ତି । ତାଲିମ କରା ହାତୀ ସାହାଣରେ ( ଏଭଳି ହାତୀକୁ ମହୀଶୂରରେ 'କୁମକି' କହନ୍ତି ) ଧୃତ ହାତୀକୁ ନିକଟସ୍ଥ ଘେର ( ମହୀଶୂରରେ 'କ୍ରାଲ' କହନ୍ତି ) ଭିତରକୁ ନେଇଯାନ୍ତି ।

6.1 × 6.1 ମିଟାର ( 20×20 ଫୁଟ ) ସ୍ଥାନ ଚାରିପଟେ ଶକ୍ତ କାଠ ଖୁମ୍ବ ପୋତାଯାଇ ଏକ ଖୁଆଡ କରଯାଇଥାଏ । ଏଇ ହେଲା ଘେର । ଏଠାରେ ଧୃତ ହାତୀକୁ ଭଣ୍ଡି ଖାଇବା ପିଇବାକୁ ଦିଆଯାଏ । ଚାରି-ପାଞ୍ଚ ବର୍ଷ ବୟସର ପିଲା ହାତୀ ପ୍ରାୟ ଦଶ ଦିନରେ ପୋଷ ମାନି ମାହୁନ୍ତ ହାତରୁ ଖାଦ୍ୟ ଖାଏ ଏବଂ ଗୋଟିଏ ବା ଦୁଇଟା ପୋଷା ହାତୀ ଜଗୁଆଳୀରେ ଘେର ବାହାରେ ଚଲବୁଲ କରିବାକୁ ନିଆଯାଏ ।

ସାଧାରଣତଃ ହାତୀଦଳକୁ ଧରିବା ପାଇଁ ଖେଦା କରଯାଏ । ଗୋଟିଏ ଦଳ ହାତୀକୁ ଠେଲଗଇ, ବାଜା ବଜାଇ, ହଲା କରି, ମଶାଲ ଦେଖାଇ, ଫାଙ୍କା ଆଓ୍ୱାଜ କରି, ହାତୀ ଦଳକୁ ଡରାଇ ଗୋଟିଏ ବଡ ଘେର ବା ଖେଦା ଭିତରକୁ ଟଡି ନିଆଯାଏ । ଖେଦା 18 ମିଟାରରୁ 55 ମିଟାର ( 60-180 ଫୁଟ ) ବ୍ୟାସର ଏକ ଗୋଲକାର ଘେର । 3.6 ମିଟାର (12 ଫୁଟ) ଉଚ୍ଚ କାଠ ଖମ୍ବଦ୍ୱାର ଘେର ବୁଲିଥାଏ । ସମୟ ସମୟରେ ଖେଦା ଭିତରେ ପାଖର 1.8 ମିଟାର ( 6 ଫୁଟ ) ଓସାର ଓ 1.2 ମିଟାର ( 4 ଫୁଟ ) ଗହୀର ଏକ ଖାତ ଘେର କଡେ କଡେ ଖୋଳା ଯାଇଥାଏ । ଘେରର ପ୍ରବେଶ ଦ୍ୱାର 3.6 ମିଟାର ( 12 ଫୁଟ ) ଓସାର ଓ ଖୋଲା ରହିଥାଏ । ହାତୀ ଦଳକୁ ଘଉଡାଇ ଆଣି ଏହି ଦ୍ୱାରବାଟେ ପୁରାଇ ଦିଆଯାଏ । ତା’ ପଛେ ପଛେ ଦୁର୍ଗ ତୋରଣରେ ଲଗିଥିବା ଝାଲିଦାର ଟଣା କବାଟ ପରି କବାଟକୁ ପକାଇ ଦିଆଯାଏ । ଏହି ପ୍ରବେଶ ପଥର ମୁହଁ କାହାଳୀ ପରି ହୋଇଥାଏ । ବଣୁଆ ହାତୀକୁ ବାଟ କଢାଇ ଖେଦାର ପ୍ରବେଶ ଫାଟକ ନିକଟକୁ ଆଣିବାକୁ ତାଲିମ ପ୍ରାପ୍ତ ହାତୀକୁ ମଧ୍ୟ ବ୍ୟବହାର କରଯାଏ । ଥରେ ହାତୀ ଦଳ ଖେଦା ଭିତରେ ପଶିଗଲେ ବନ୍ଦୀ । ଏଥର ପ୍ରତ୍ୟେକକୁ ତାଲିମ ପ୍ରାପ୍ତ ହାତୀ ସାହାଯ୍ୟରେ ବାନ୍ଧି ଗୋଟି ଗୋଟି କରି ଘେର ବା ଖୁଆଡ଼ ଭିତରକୁ ନିଆଯାଏ ।

‘ମେଳା’ ଶୀକାରରେ ଲୋକେ ‘କୁମ୍‌କି’ ବା ତାଲିମ କର ହାତୀ ଚଢି ବଣୁଆ ହାତୀଙ୍କ ପିଛା କରନ୍ତି । ଏଭଳି ଲୋକଙ୍କୁ ମହୀଶୂରରେ ‘ଫର୍ଣ୍ଡି’ ବୋଲି କୁହାଯାଏ । ଛୁଆ ହାତୀ ଦଳ ସହିତ ସମାନ ବେଗରେ ଦୌଡି ନ ପାରି ପଛରେ ପଡିଯାଏ । ଫର୍ଣ୍ଡିମାନଙ୍କ ପାଖରେ ଫାଶ ମହଜୁଦ ଥାଏ । ସେମାନେ ଫାଶରେ ଛୁଆ ହାତୀକୁ ଧରନ୍ତି ।

ଏକାକୀ ରହୁଥିବା ଅଣ୍ଡିରା ହାତୀକୁ ମଧ୍ୟ କୌଶଳ କରି ଧରଯାଏ । ଶିକାରୀ ମାହୁନ୍ତ ତାଲିମ ପ୍ରାପ୍ତ ହାତୀରେ ଚଢି ଦନ୍ତାର ପିଛା କରେ । ସେତେବେଳେ ସେ କଳା କମ୍ବଳ ଘୋଡ଼ି ହୋଇଥାଏ । ଏମାନେ ଲୁଚି ଲୁଚି ଦନ୍ତା ପଛରେ ଯାଆନ୍ତି । ହାତୀ ଶୋଇ ପଡ଼ିଲେ ପୋଷା ହାତୀ ପିଠିରୁ ମାହୁନ୍ତ ଓହ୍ଲାଇ ବଣ୍ୟ ହାତୀର ପଛ ଦୁଇଗୋଡକୁ କୌଶଳରେ ବାନ୍ଧି ପକାଏ । ଅବଶ୍ୟ ଏହା ଏକ ଅତ୍ୟନ୍ତ ଦୁଃସାହସିକ କାର୍ଯ୍ୟ । ସମୟ ସମୟରେ ଏକାକୀ ବୁଲୁଥିବା ଦନ୍ତା ପିଛା କରି ବହୁଦୂର ଘଉଡ଼ାଇ ଘଉଡ଼ାଇ ନେଇ ହାଲିଆ ହୋଇଗଲେ ତାକୁ ଧରଯାଏ ।

ଜଙ୍ଗଲ ମାନଙ୍କରେ ସ୍ଥାନେ ସ୍ଥାନେ 'ଲୁଣଚଟା' ( Salt lick ) ଥାଏ । ଅର୍ଥାତ୍ କୌଣସି କୌଣସି ସ୍ଥାନରେ ପଥର ବା ମାଟିରେ ଲୁଣ ଅଂଶ ଅଧିକ । ସେଠାକୁ ବଣର ବିଭିନ୍ନ ପ୍ରାଣୀ ଲୁଣ ଘଷି ଖାଇବାକୁ ଆସନ୍ତି । ଏପରି ସ୍ଥାନକୁ ହାତୀ ମଧ୍ୟ ଆସେ । 'ଲୁଣଚଟା' ଓ ପାଣି ପିଇବାକୁ ଆସିବା ସ୍ଥାନରେ କାଠ ଖମ୍ବମାନ ପୋତା ଯାଇ ଗଡ ପରି କରଯାଏ । ପାଖରେ ଲୋକେ ଜଗୁଆଳୀ ହୋଇ ନଜର ରଖିଥାନ୍ତି । ହାତୀ କାଠର ଦୁର୍ଗ ମଧ୍ୟରେ ପଶିଗଲା କ୍ଷଣି କବାଟ ପକାଇ ଦିଆଯାଏ । ବନ୍ଦୀ ହାତୀକୁ ଖେଦାରେ ଧୃତ ହାତୀଙ୍କୁ ବାନ୍ଧିଲା ପ୍ରଣାଳୀରେ ବାନ୍ଧି ବଶ କରଯାଏ ।

ଶ୍ରୀଲଙ୍କାରେ ବଣୁଆ ହାତୀ ଚାଲି ଯାଉଥିବା ବେଳେ ହାତୀ ଧରାଳି ଛପି ଛପି ଫାଶ ଦ୍ୱାର ତା' ପଛ ଗୋଡ଼କୁ ବାନ୍ଧି ପକାନ୍ତି । ଏହା ଅତ୍ୟନ୍ତ ବିପଜ୍ଜନକ । ଏଭଳି କାମରେ ଅତ୍ୟନ୍ତ ଦୁଃସାହସ ଓ ଚତୁରତା ଆବଶ୍ୟକ ହୁଏ । କାରଣ ଟିକିଏ ଭୁଲ ହେଲେ ସେହି ଲୋକମାନଙ୍କର ପ୍ରାଣ ନାଶର ଆଶଙ୍କା ଥାଏ ।

ହାତୀ ପାଳନ–ହାତୀଙ୍କ ଯତ୍ନ ନେବା ଅତି କଠିନ କାମ । ସେମାନଙ୍କୁ ଗାଧୋଇବା, ପୋଛିବା ଓ ଖୁଆଇବା ଆଦି ନାନା କାର୍ଯ୍ୟ ତହିଁର ଅନ୍ତର୍ଭୁକ୍ତ । ଆସାମରେ କାମରେ ଲଗାଯାଉଥିବା ହାତୀକୁ ଦୈନିକ ୨ କିଲୋଗ୍ରାମ ( 20 ପାଉଣ୍ଡ ) ଓ କାମ କରୁନଥିବା ହାତୀକୁ

4.5 କିଲୋଗ୍ରାମ ( 10 ପାଉଣ୍ଡ ) ଗ୍ୱଉଳ ଅଥବା ଗ୍ୱଉଳ ବା ଅଟା ରୁଟି ଆକାରରେ ୯-13 6 କିଲୋଗ୍ରାମ ( 20-30 ପାଉଣ୍ଡ ) ଖାଦ୍ୟ ଦିଆଯାଏ । ମାନ୍ଦ୍ରାଜର କାରଗୁଡ଼ି ଜଙ୍ଗଲରେ ହାତୀଙ୍କର ଦୈନିକ ଖାଦ୍ୟ ପରିମାଣ ( କିଲୋଗ୍ରାମରେ ) ତାଲିକା ତଳେ ଦିଆଗଲା—

| | ଶସ୍ୟ | ଶୁଖିଲା ଘାସ ବା କୁଟା | ସବୁଜ ଘାସ, ଡାଳ, ପତ୍ର | ଲୁଣ (ଗ୍ରାମ) | ତେଲ (ମିଲିଲିଟାର |
|---|---|---|---|---|---|
| ବଡହାତୀ | 6.8 | 90 | 217 | 56 | 28 |
| ମଧ୍ୟଭଳି ହାତୀ | 6.8 | 79 | 181 | 56 | 28 |
| ସାନହାତୀ | 6 8 | 68 | 146 | 56 | 28 |

ହାତୀ ଥରକେ 59-82 ଲିଟାର ( 13-18 ଗ୍ୟାଲନ୍ ) ଓ ଦିନରେ 227 ଲିଟାର ( 50 ଗ୍ୟାଲନ୍ ) ପାଣି ପିଏ ।

ହାତୀଙ୍କୁ ଦିନକେ ଏକାଦିକ୍ରମେ ତିନିଘଣ୍ଟାରୁ ଅଧିକ ସମୟ କାମରେ ନିୟୋଗ କରଯାଏ ନାହିଁ । ଗୋଟିଏ ସୁସ୍ଥ ସବଳ ହାତୀ ସକାଳେ ଓ ଉପରବେଳା ଅପେକ୍ଷାକୃତ ଶୀତଳ ସମୟରେ 6-7 ଘଣ୍ଟା କାମ କରେ । ଶକ୍ତ ବୋଝ ବହନ କରିବାକୁ ଥିଲେ ତାକୁ ଦିନକୁ 16 କିଲୋମିଟାର ( 10 ମାଇଲ) ରୁ ଅଧିକ ପଥ ଗ୍ୱଲିବାକୁ ଦିଆଯାଏ ନାହିଁ ।

ହାତୀଙ୍କୁ ସାଧାରଣତଃ ଲମ୍ବା ଲୁହା ଝଞ୍ଜିରଦ୍ୱାରା ଗୋଟିଏ ଗୋଡ ବାନ୍ଧି କୌଣସି ବଡ଼ ଗଛକୁ ଖୁଣ୍ଟ ରୂପେ ବ୍ୟବହାର କରଯାଏ । ସେମାନଙ୍କୁ ହାତୀ ବସନ୍ତ, ଜ୍ୱର, ବାତ ( Rheumatism ), ଝାଡ଼ା, ଆନ୍ଥ୍ରାକ୍ସ ଆଦି ନାନା ରୋଗ ହୋଇଥାଏ ।

ଉପଯୋଗ — ଯେଉଁ ଅଞ୍ଚଳରେ ଯାତାୟାତ ପାଇଁ ରସ୍ତାର ସୁବିଧା ନାହିଁ (ଯଥା :— ପାହାଡ଼, ଜଙ୍ଗଲ ଓ ଉପତ୍ୟକା) ସେହି ଅଞ୍ଚଳରେ ହାତୀଙ୍କୁ ବୋଝ ବୋହିବାରେ, ଲୋକଙ୍କୁ ନିଆ ଆଣ କରିବାରେ ଏବଂ ବଡ ବଡ଼ କାଠଗଡ଼ ବୋହିବାରେ ନିୟୋଗ କରଯାଏ । ଗୋଟିଏ ବୟଃପ୍ରାପ୍ତ ହାତୀ

ଥରକେ 453-544 କିଲୋଗ୍ରାମ (1000-1200 ପାଉଣ୍ଡ) ଓଜନର ବୋଝ ବୋହିପାରେ ଏବଂ 10-18 ଘନ ମିଟାର (35-60 ଘନ ଫୁଟ) କାଠ ଘୋସାରି ନେଇପାରେ । ବାଘ ଶୀକାରରେ ମଧ୍ୟ ହାତୀଙ୍କୁ ବ୍ୟବହାର କରଯାଇ ଥାଏ । ମହୀଶୂରରେ ତାଲିମ୍ ହୋଇ ନଥିବା ଦନ୍ତା ହାତୀର ଦାମ ( 1950 ସାଲ ) ପ୍ରାୟ 8000 ଟଙ୍କା ଓ ତାଲିମ୍ ହୋଇ ନଥିବା ମାଈ ହାତୀର ଦାମ 5000 ଟଙ୍କା ଥିଲା । ତାଲିମପ୍ରାପ୍ତ ହାତୀ ଓ ହାତୁଣୀର ଦାମ ଅଧିକ । 1949-50 ସାଲରେ ବିହାରର ସୋନପୁର ମେଳାକୁ ଆଠ ଶହ ହାତୀ ବିକ୍ରୀ ପାଇଁ ଆସିଥିଲେ । ସେଥିରୁ 225ଟି ହାତୀ ପ୍ରତ୍ୟେକ 3000-25000 ଟଙ୍କା ମୂଲ୍ୟରେ ବିକ୍ରୀ ହୋଇଥିଲେ । 1950-51 ସାଲରେ ସେହି ମେଳାକୁ 750ଟି ହାତୀ ବିକ୍ରୀ ପାଇଁ ଆସିଥିଲେ । ସେଥିରୁ 115 ଟି ହାତୀ ପ୍ରତ୍ୟେକ 3000-13000 ଟଙ୍କା ମୂଲ୍ୟରେ ବିକ୍ରୀ ହୋଇଥିଲେ । ହାତୀ ଚାଳିଶ ବର୍ଷରୁ ବେଶୀ ବୟସର ହୋଇଗଲେ ତାର ଦାମ କମିଯାଏ । ହାତୀକୁ ଚାଷ କାର୍ଯ୍ୟରେ ନିଯୋଗ ଲାଗି ଚେଷ୍ଟା ହୋଇ ଅଛି ; ମାତ୍ର ଫଳପ୍ରଦ ହୋଇ ନାହିଁ ।

ବର୍ମାରେ ଲୋକେ ହାତୀର ମାଂସ ଖାଆନ୍ତି । ହାତୀ ଗୋଡର ଚମଡ଼ାରେ ବସିବା କୁସନ ତିଆର କରଯାଏ । ହାତୀ ଦାନ୍ତରେ ଗହଣା ଓ ଅନ୍ୟାନ୍ୟ ଅନେକ ସୁନ୍ଦର ସୁନ୍ଦର ଦ୍ରବ୍ୟ ପ୍ରସ୍ତୁତ ହୁଏ । ଦିଲ୍ଲୀ, ମୁର୍ଶିଦାବାଦ ମହୀଶୂର ଓ ତ୍ରାଭଙ୍କୋରର ହାତୀ ଦାନ୍ତକାମ ପୃଥିବୀ ପ୍ରସିଦ୍ଧ ।

1951-52 ସାଲରେ ଭାରତକୁ 1, 76869 କିଲୋଗ୍ରାମ ( 3,89,924 ପାଉଣ୍ଡ ) ଓଜନର ହାତୀଦାନ୍ତ ବିଦେଶରୁ ଆମଦାନୀ କରଯାଇ ଥିଲା । ଏହାର ମୂଲ୍ୟ 49, 40, 960 ଟଙ୍କା । ଉକ୍ତ ବର୍ଷ ବିଦେଶରୁ ଯେଉଁ ହାତୀଦାନ୍ତ ତିଆରି ପଦାର୍ଥ ଆମଦାନୀ କରଯାଇଥିଲା ତା'ର ମୂଲ୍ୟ ଟ 50 ଙ୍କା । ସେହି ବର୍ଷ ଭାରତରୁ ବିଦେଶକୁ ଯେଉଁ ହାତୀଦାନ୍ତ ଓ ହାତୀଦାନ୍ତ ତିଆରୀ ସାମଗ୍ରୀ ରପ୍ତାନୀ କରଯାଇଥିଲା ତା'ର ବିବରଣୀ ଏହିପରି—

ହାତୀଦାନ୍ତ ଓଜନ 801 କିଲୋଗ୍ରାମ ( 1767 ପାଉଣ୍ଡ ) ମୂଲ୍ୟ ଟ31,400ଙ୍କା
ହାତୀ ଦାନ୍ତ ଜିନିଷ ଦାମ୍ ଟ1,18,977ଙ୍କା

ଆମଦାନୀ କରଯାଇ ପୁଣି ରପ୍ତାନୀ କରଯାଇଥିବା ହାତୀଦାନ୍ତର ଓଜନ 254 କିଲୋଗ୍ରାମ ( 560 ପାଉଣ୍ଡ ) ମୂଲ୍ୟ ଟ 4,140ଙ୍କା

ଅତୀତ କାଳରେ ହାତୀ ଯୁଦ୍ଧରେ ଓ ରାଜକୀୟ ଅନୁଷ୍ଠାନ ମାନଙ୍କରେ ବାହକ ରୂପେ ବ୍ୟବହୃତ ହେଉଥିଲେ । ପ୍ରାଚୀନ ଓଡ଼ିଶାରେ ରାଜା ସନ୍ତାନହୀନ ହୋଇ ମରିଗଲେ, ହାତୀ ସୁନାକଳସ ଧରି ଯାହା ମୁଣ୍ଡରେ ପାଣି ଢାଳୁଥିଲା ସେ ରାଜପଦରେ ଅଭିଷିକ୍ତ ହେଉଥିଲା । ଅର୍ଥାତ ହାତୀ ରାଜା ନିର୍ବାଚନ କରୁଥିଲା ।



# ସପ୍ତଦଶ ଅଧ୍ୟାୟ

# ବିଷମ-କ୍ଷୁରିକ ପ୍ରାଣୀ

( ଗଧ, ଗଣ୍ଡାର ଆଦି )

ଭାରତର ଖୁରଥିବା (Ungulate or hoofed) ପ୍ରାଣୀମାନେ ଦୁଇଟି ବର୍ଗ ଭୁକ୍ତ: ଯଥା-ସମକ୍ଷୁରିକ (Artiodactyla) ଓ ବିଷମ କ୍ଷୁରିକ ( Perissodactyla )। ଏହି ଦୁଇବର୍ଗର ପ୍ରାଣୀମାନଙ୍କ ମଧ୍ୟରେ ପ୍ରଧାନ ପ୍ରଭେଦ ଖୁରର ଅବସ୍ଥିତିରେ । ସମକ୍ଷୁରିକ ପ୍ରାଣୀର ପଦରେ ଗୋଟିଏ ରେଖା ଟାଣିଲେ ସେହି ରେଖା ବା ଅକ୍ଷ (axis) ତୃତୀୟ ଓ ଚତୁର୍ଥ ପଦାଙ୍ଗୁଳି ମଧ୍ୟରେ ଅବସ୍ଥାନ କରେ । ଏ ଦୁଇଟି ପଦାଙ୍ଗୁଳି ବଡ ଓ ସମ ଆକାର । ଏ ଦୁଇ ପଦାଙ୍ଗୁଳିକୁ ଘେରିଥିବା ଖୁର ଦୁଇ ଫାଙ୍କବିଶିଷ୍ଟ ଗୋଟିଏ ଖୁର ପରି ଜଣାପଡ଼େ । ଏମାନଙ୍କର ତୃତୀୟ ଓ ଚତୁର୍ଥ ପଦାଙ୍ଗୁଳିର ବୃଦ୍ଧି ସଙ୍ଗେ ସଙ୍ଗେ ଦ୍ଵିତୀୟ ଓ ପଞ୍ଚମ ପଦାଙ୍ଗୁଳି କ୍ଷୁଦ୍ର ଓ ପ୍ରଥମ ପଦାଙ୍ଗୁଳି ସମ୍ପୂର୍ଣ୍ଣ ଉଭେଇ ଯାଇଛି । ଏଭଳି ଦ୍ଵିକ୍ଷୁର-ବିଶିଷ୍ଟ ପ୍ରାଣୀ ହେଲେ, ଗାଈ, ମେଷ, ଛାଗଳ, ହରିଣ ଓ ଶୂକର ।

ଅପର ପକ୍ଷରେ ବିଷମ କ୍ଷୁରିକ ପ୍ରାଣୀ ଯଥା ଘୋଡ଼ା, ଗଣ୍ଡାର ( Rhinocerus ) ଓ ଟେପିର ( Tapir ) ମାନଙ୍କର ଖୁର ଅନ୍ୟ ଛାଞ୍ଚରେ ଗଢ଼ା । ଏହି ପ୍ରାଣୀମାନଙ୍କର ପଦାଙ୍ଗୁଳି ସଂଖ୍ୟାରେ ବିଭିନ୍ନତା ପରିଲକ୍ଷିତ ହୁଏ । ଅଗ୍ରପଦରେ ଟେପିରର ପଦାଙ୍ଗୁଳି ସଂଖ୍ୟା ଚାରି ଓ ଗଣ୍ଡାରର ତିନି । ଏହି ଉଭୟ ପ୍ରାଣୀଙ୍କର ପଛପଦରେ ତିନୋଟି କରି ଅଙ୍ଗୁଳି । ଘୋଟକର ପଦରେ କେବଳ ଗୋଟିଏ ପଦାଙ୍ଗୁଳି କାର୍ଯ୍ୟକାରୀ । ମାତ୍ର ଏହି ସମସ୍ତ ପ୍ରାଣୀମାନଙ୍କର ପଦରେ ମଧ୍ୟମ ବା ତୃତୀୟ ଅଙ୍ଗୁଳି ସବୁଠାରୁ ବଡ଼ ଓ ସବୁବେଳେ ପ୍ରତିସମତା ପ୍ରଦର୍ଶନ କରେ । ଏଥିପାଇଁ ଏ ଜାତୀୟ ପ୍ରାଣୀମାନଙ୍କୁ

ବିଷମ-କ୍ଷୁରିକ ବୋଲଯାଏ । କେବଳ ଟେପିର ଭିନ୍ନ ଏହି ବର୍ଗର ଅନ୍ୟ ସବୁ ପ୍ରାଣୀଙ୍କର ଖୁର ସଂଖ୍ୟା ବିଷମ, ଅର୍ଥାତ୍ ଗୋଟିଏ ବା ତିନୋଟି ।

ବିଷମ-କ୍ଷୁରିକ ପ୍ରାଣୀମାନଙ୍କଠାରେ ଆଉ ଏକ ବିଶେଷ ଲକ୍ଷଣ ଦେଖାଯାଏ । ତାହା ହେଲା, ସେମାନଙ୍କର ଚର୍ବଣ ( premolar ) ଓ ପେଷଣ ( molar ) ଦନ୍ତ ପର ପର ସଜ୍ଜିତ ହୋଇ ରହିଥାଏ । ପେଷଣ ଦାନ୍ତ ଓ ଚର୍ବଣ ଦାନ୍ତ ମଧ୍ୟରେ ପାର୍ଥକ୍ୟ ନାହିଁ ; ଅର୍ଥାତ ସେଗୁଡ଼ିକର ଆକାର ଓ ପ୍ରକାରରେ ପ୍ରଭେଦ ପରିଲକ୍ଷିତ ହୁଏ ନାହିଁ ।

ବିଷମ-କ୍ଷୁରିକ ପ୍ରାଣୀମାନେ ଏବେ ପୃଥିବୀରେ ବେଶୀ ସଂଖ୍ୟାରେ ଦେଖାଯାନ୍ତି ନାହିଁ । ଅତୀତ କାଳରେ, ତୃତୀୟକ କଳ୍ପ (tertiary period) ରେ, ଆଜିଠାରୁ ଛଅକୋଟି ତିରିଶ ଲକ୍ଷ ବର୍ଷ ପୂର୍ବଠାରୁ ଦଶଲକ୍ଷ ବର୍ଷ ମଧ୍ୟରେ ବହୁ ସଂଖ୍ୟାରେ ବିଭିନ୍ନ ଶ୍ରେଣୀର ବିଷମ-କ୍ଷୁରିକ ପ୍ରାଣୀମାନଙ୍କର ଉଦ୍ଭବ ଓ ବିଲୟ ହୋଇଥିଲେ ମଧ୍ୟ ଆଧୁନିକ କାଳରେ ସେମାନଙ୍କର ପରବର୍ତ୍ତୀ ବଂଶଧର ରୂପେ କେବଳ ଘୋଟକ, ଗଣ୍ଡାର ଓ ଟେପିର ମାତ୍ର ରହିଛନ୍ତି । କେବଳ କେନ୍ଦ୍ର ଓ ଦକ୍ଷିଣ ଆମେରିକାରେ ଟେପିର ବାସ କରନ୍ତି । ଘୋଟକ-ବଂଶ ପ୍ରାଣୀ ଓ ଗଣ୍ଡାର କେବଳ ପୁରାତନ ଗୋଲାର୍ଦ୍ଧ ( old world ) ରେ ରହିଛନ୍ତି ।

## ଘୋଟକ ବଂଶ

ଘୋଟକ, ଗର୍ଦ୍ଦଭ, ଜେବ୍ରା ( Zebra ) ଆଦି ପ୍ରାଣୀଙ୍କୁ ଇକ୍ୱିଇଡ଼ି ( Equidae ) ବଂଶଭୁକ୍ତ କରଯାଏ । ଏ ସମସ୍ତ ପ୍ରାଣୀମାନଙ୍କର ପ୍ରତ୍ୟେକ ପଦରେ ଗୋଟିଏ କରି ଅଙ୍ଗୁଳି ଓ ତାହା ଗୋଟିଏ ବଡ଼ ନିଦା କ୍ଷୁର ମଧ୍ୟରେ ସୁରକ୍ଷିତ ହୋଇ ରହିଥାଏ । କ୍ଷୁର ଉପରକୁ କେବଳ ଗୋଟିଏ ଲମ୍ବା ଅସ୍ଥି ଥାଏ, ତାକୁ 'କମାଣ ଅସ୍ଥି' ( "Canon bone" ) ବୋଲଯାଏ । ଏଗୁଡ଼ିକ ଦ୍ୱିତୀୟ ଓ ଚତୁର୍ଥ ଅଙ୍ଗୁଳି-ଅସ୍ଥିର ଅବଶେଷ ମାତ୍ର ; ଏମାନଙ୍କର କଳଦାନ୍ତ ବଡ଼, ଚତୁଷ୍କୋଣୀ ଓ ଜଟିଳ । ଏଥିରେ ଥିବା ଏନାମେଲର ଭାଞ୍ଜ ଘୋଟକ ଦାନ୍ତରେ, ଗଣ୍ଡାର ବା ଟେପିର ଦାନ୍ତ ତୁଳନାରେ ଅଧିକ ।

ଘୋଟକ ବଂଶ ପ୍ରାଣୀଙ୍କର ଅବୟବର ବିଭିନ୍ନ ଅଂଶ ସମ୍ବନ୍ଧରେ ଆମର ଧାରଣା ସ୍ପଷ୍ଟ ହେବା ଆବଶ୍ୟକ । ଅଶ୍ୱଅବୟବର ଉପର ଅଂଶ ଅର୍ଥାତ୍ କହୁଣୀ ବା ଆଣ୍ଠୁ ପର୍ଯ୍ୟନ୍ତ ଅଂଶ ତା' ଶରୀରର ରୂପରେଖ ମଧ୍ୟରେ

ଲୁକ୍କାୟିତ ହୋଇ ରହିଥାଏ; ପଦାକୁ ଜଣାପଡେ ନାହିଁ । ଉପରୁ କହୁଣୀ ଓ ଆଣ୍ଠୁପାଏ ଥିବା ଅସ୍ଥିର ସନ୍ଧି ସ୍ଥାନ ହାତରେ ସ୍ପର୍ଶ କଲେ ଯାଇ ଜଣାପଡେ । ଘୋଟକର ଅବୟବର ଯେଉଁ ଅଂଶ ବାହାରକୁ ପରିସ୍ଫୁଟ ତାକୁ ଆମର ଅଗ୍ରବାହୁ ବା ପ୍ରକୋଷ୍ଠ ( forearm ) ଓ ଅନୁଜଙ୍ଘା ବା ଟିବିଆ ( Shin bone=tibia ) ( ସାଧାରଣ ଭାଷାରେ ଜଙ୍ଘା ) ସହିତ ତୁଳନୀୟ । ଏଣୁ ଅଶ୍ୱର ସାମନା ଗୋଡର ଯେଉଁ ଅଂଶକୁ ସାଧାରଣ କଥାରେ 'ଆଣ୍ଠୁ' କୁହାଯାଏ ତାହା ପ୍ରକୃତରେ ତା'ର କଟଟି ବା ମଣିବନ୍ଧ ବା ହସ୍ତମୂଳ ( wrist ) ଓ ପଛ ଗୋଡର ଅନୁରୂପ ଅଂଶ ( hock ) ଗୁଲ୍‌ଫ, ଗୋଇଠି ବା ପାଦମୂଳ ( ankle ) । ତଳଆଡକୁ ପରବର୍ତ୍ତୀ ଅସ୍ଥି, ଯାହାକୁ ପୂର୍ବେ, 'କମାଣ ଅସ୍ଥି' ( Cannon bone ) ବୋଲି ଉଲ୍ଲେଖ କରଯାଇଅଛି, ତାହା ଆଗ ଗୋଡର କରଭ ( metacarpus ) ଓ ପଛଗୋଡରେ ଅନୁଗୁଳ୍‌ଫ ( metatarsus ) ସହିତ ତୁଳନୀୟ । ଘୋଡାର ଗୁଳ୍‌ଫ ( pasterm joint ) ପଦ ( foot ) ଓ ପଦାଙ୍ଗୁଳି ( toe ) ମଧ୍ୟରେ ଅବସ୍ଥିତ । ଏହାର ଠିକ ଉପରକୁ ପଶ୍ଚାତ୍‌ଭାଗରେ ରୋମଗୁଚ୍ଛ ( Fetlock ) ଥାଏ । ବନ୍ଧା ହେଲବେଳେ ଗୁଳ୍‌ଫ ସ୍ଥାନରେ ଘୋଡାର ଗୋଡ଼କୁ ବନ୍ଧାଯାଏ । ଅଶ୍ୱ ଗୁଳ୍‌ଫ ( pastern ) ପ୍ରଥମ ଦୁଇଟି ଅଙ୍ଗୁଳି ପର୍ବ ( phalamges ) ଦ୍ୱାର ଗଠିତ ଓ ଶେଷ ଅଙ୍ଗୁଳି ପର୍ବ ଖୁର ମଧ୍ୟରେ ରହିଥାଏ । ଅଶ୍ୱଖୁର ଦୁଇଟି ଅଂଶରେ ବିଭକ୍ତ ଯଥା—ପ୍ରାଚୀର ( wall ) ଓ ତଳିପା ( Sole ) ପଛ ପଟରେ ତଳିପା ଦୁଇଭାଗରେ ବିଭକ୍ତ ଓ ତନ୍ମଧ୍ୟରେ ଏକ ନରମ ଶିଙ୍ଗ ନିର୍ମିତ ଅଂଶଥାଏ । ତାକୁ ଶିଙ୍ଗଟା ( frog ) କହନ୍ତି । ଘୋଡା ଖୁରରେ ବସାଯାଉଥିବା ନାଲ 'ପ୍ରାଚୀର'ର ନିମ୍ନ ଧାରରେ ଲଗାଯାଇଯାଏ ।

ଘୋଡାର ଦାନ୍ତ ଅନ୍ୟ କ୍ଷୁରୀ ( hoofed ) ପ୍ରାଣୀମାନଙ୍କ ତୁଳନାରେ ସଂଖ୍ୟା ଓ ଗଠନରେ ଭିନ୍ନ । ନିମ୍ନରେ ତହିଁର ବିବରଣୀ ଦିଆଗଲା :—

[କ=କର୍ତ୍ତନଦନ୍ତ, ଶ୍ୱ=ଶ୍ୱଦନ୍ତ; ଚ=ଚର୍ବଣଦନ୍ତ; ପେ=ପେଷଣ ଦନ୍ତ]

| | | | | | |
|---|---|---|---|---|---|
| ଟେପିର, ଅଶ୍ୱ | କ $\frac{3}{3}$ | ଶ୍ୱ $\frac{1}{1}$ | ଚ $\frac{3}{3}$ | ପେ $\frac{3}{3}$ | ମୋଟ 40 ଟି ଦାନ୍ତ |
| ଗଣ୍ଡାର (ଏସିଆର) | କ $\frac{2}{2}$ | ଶ୍ୱ $\frac{0}{0}$ | ଚ $\frac{4}{4}$ | ପେ $\frac{3}{3}$ | ମୋଟ 36 ଟି ଦାନ୍ତ |
| ଗଣ୍ଡାର (ଆଫ୍ରିକୀୟ) | କ $\frac{0}{0}$ | ଶ୍ୱ $\frac{0}{0}$ | ଚ $\frac{4}{4}$ | ପେ $\frac{3}{3}$ | ମୋଟ 28 ଟି ଦାନ୍ତ |

( ଉପରେ ଦିଆଯାଇଥିବା ଦନ୍ତସୂତ୍ର ସହିତ ପ୍ରାଣୀବିଜ୍ଞାନର ଛାତ୍ର ପରିଚିତ । ଉପର ଓ ତଳ ପାଟିରେ ପ୍ରତି ପାଖରେ କେତୋଟି କି ପ୍ରକାର ଦନ୍ତ ଅଛି ତାହା ଦନ୍ତ ସୂତ୍ରରେ ସୂଚିତ ହୋଇଅଛି ) ।

ଏବେ ଅଶ୍ୱ ଦନ୍ତର ବିଶେଷତ୍ୱ ଆଲୋଚନା କରିବା । ଅଶ୍ୱର ଉପର ଓ ତଳ ପାଟିରେ ପ୍ରତି ପାଖରେ ତିନୋଟି କରି, ଅର୍ଥାତ୍ ଉପର ପାଟିରେ ଛ' ଓ ତଳପାଟିରେ ଛଅଟି ଲେଖାଏଁ କର୍ତ୍ତନ ଦନ୍ତ ( incisor ) ଅବସ୍ଥିତ । ପ୍ରତି ପାଖରେ ତିନୋଟି ଦନ୍ତର ନାମ—( ମୂଳ ଆଡ଼ୁ ଅର୍ଥାତ୍ ପ୍ରତି ପାଟିର ସାମନା ମଧ୍ୟଭାଗରୁ )-କେନ୍ଦ୍ରିକ ( middles ), ମଧ୍ୟମା ( intermediates ) ଓ କୋଣିକା ( Corners ) । କର୍ତ୍ତନ ଦନ୍ତ ଓ ଚର୍ବଣ ଦନ୍ତ ( Premolars ) ମଧ୍ୟରେ ଏକ ଦନ୍ତହୀନ ସ୍ଥାନ ଅବସ୍ଥିତ । ଏହାକୁ ଦନ୍ତାବକାଶ ( diastema ) ବୋଲଯାଏ । ବୃଷଣ ଘୋଟକ (stallion) ମାନଙ୍କର ଶ୍ୱଦନ୍ତ, ସାମନ୍ୟ ବର୍ଦ୍ଧିତ ( rudimentary canies ) ଏବଂ କର୍ତ୍ତନ ଦନ୍ତ ପଛକୁ ରହିଥାଏ । ପ୍ରତି ଅର୍ଦ୍ଧ ଉପର ଓ ତଳ ପାଟିରେ ତିନୋଟି ଚର୍ବଣ ଓ ତିନୋଟି ପେଷଣ ଦନ୍ତ ରହିଥାଏ । ଏଣୁ ପୁଂ-ଅଶ୍ୱ ( Stallion ) ମାନଙ୍କର ପାଟିରେ ମୋଟ 40ଟି ଦାନ୍ତ ଥାଏ ଓ ଅଶ୍ୱୀ ବା ଘୋଟକୀ ( mare ) ମାନଙ୍କର 36ଟି କରି ଦାନ୍ତଥାଏ । କର୍ତ୍ତନ ଦନ୍ତ ଓ ପେଷଣ ଦନ୍ତ ସାରା ଜୀବନକାଳ ଧରି ବଢୁଥାଏ ।

ପଦ ଓ ଦନ୍ତର ବିଶେଷତ୍ୱ ଯୋଗୁଁ ଘୋଡ଼ା, ଗଧ ଓ ଜେବ୍ରା ଏକ ସ୍ୱତନ୍ତ୍ର 'ଇକ୍ୟୁଇଡ଼ି' ବଂଶଭୁକ୍ତ ହୋଇଅଛନ୍ତି । ଆହୁରି କେତେକ ଲକ୍ଷଣଦ୍ୱାରା ମଧ୍ୟ ସେମାନଙ୍କୁ ସହଜରେ ଚିହ୍ନଟ କରିହୁଏ । ସେଗୁଡ଼ିକ ହେଲା:—ସେମାନଙ୍କର ଦେହର ସମସ୍ତ ଅଙ୍ଗ ଆନୁପାତିକ ଭାବେ ଗଠିତ । ସେମାନଙ୍କର ପଦ ପରିଷ୍କାର, ଦେହର ପାଶ୍ଚାତ୍‌ଭାଗ ବଳିଷ୍ଠ, ଗ୍ରୀବା ଦୀର୍ଘ ମାତ୍ର ସୌଷ୍ଠବ ପୂର୍ଣ୍ଣ ଓ ଅତି ଲମ୍ବା ନୁହେଁ, ମସ୍ତକ କେତେକ ପରିମାଣରେ ତ୍ରିକୋଣାକାର ଏବଂ ଥୋମଣି ସ୍ତୁକୋମଳ ଆଖି ମସ୍ତକର ଉଚ୍ଚ ଭାଗରେ ଅବସ୍ଥିତ । କାନ ଛୋଟ ହେଉ ଅବା ବଡ଼ ହେଉ ସଦାବେଳେ ଠିଆ ରହିଥାଏ ଓ ସତର୍କ । କାନ ସିଧା ଠିଆ ରହିଥିଲେ ସେ ଶାନ୍ତ ଭାବରେ, ଆଗ ଆଡକୁ ପ୍ରସାରିତ ରହିଥିଲେ ଭୀତ ଭାବର ଓ ପଛଆଡକୁ ଶୋଇ ରହିଥିଲେ କ୍ରୋଧ ଭାବର ସୂଚନା ଦିଏ ।

ଘୋଟକ ବଂଶର ପ୍ରାଣୀମାନଙ୍କର ବର୍ଣ୍ଣ ଏକ ବିଧ ହୋଇଥାଏ । ନଚେତ୍ ଡୋରା ପଡ଼ିଥାଏ । ବଣ୍ୟ ଘୋଡ଼ା ଓ ଗଧ ମାନଙ୍କର ବର୍ଣ୍ଣ ସାଧାରଣତଃ ବୃକ୍ଷ ଶୂନ୍ୟ ବିଶାଳ ସମତଳଭୂମି ଓ ମରୁଭୂମି ସହିତ ଖାପ ଖାଇଲା ଭଳି ହୋଇଥାଏ । ଗଧର ଗୋଡରେ ସମୟ ସମୟରେ ଡ଼ୋରା ରେଖାଥାଏ । ଏହାର କାନ୍ଧରେ ସମାନ୍ତରାଳଭାବେ ଏକ ରେଖା ପଡ଼ିଥାଏ । ଜେବ୍ରାର ଦେହରେ ପଡ଼ିଥିବା ଗାର ସବୁ ରକ୍ଷାବର୍ଣ୍ଣ ନୁହେଁ । କାରଣ ସେମାନେ ଦଳବଦ୍ଧ ହୋଇ ଖୋଲା ପ୍ରାନ୍ତରରେ ବାସ କରନ୍ତି ଓ ସହଜରେ ଧରା ହୋଇଯାନ୍ତି ।

ଅଶ୍ୱ ବଂଶର ପ୍ରାଣୀମାନଙ୍କର ଜୀବନ ଧାରଣ ରୀତି ପ୍ରାୟ ଏକା ପ୍ରକାରର । ସେମାନେ ଦଳଦଳ ହୋଇ ବାସ କରନ୍ତି । ବୁଢ଼ା ଅଣ୍ଡିରା ସେମାନଙ୍କର ଦଳପତିର କାର୍ଯ୍ୟ କରେ । ବିପଦର ଆଶଙ୍କା ହେଲେ ସେ ଅନ୍ୟମାନଙ୍କୁ ସତର୍କ କରିଦିଏ । ଘାସ ଚରି ଚରି ଏକ ସ୍ଥାନରୁ ନୂତନ ଚାରଣ ଭୂମିକୁ ଯିବା ସେମାନଙ୍କର ରୀତି । ଋତୁକାଳ ( rutting season ) ରେ ଅଣ୍ଡିରାମାନଙ୍କ ମଧ୍ୟରେ ଲଢ଼େଇ ହୁଏ । ଏଥିରେ ଦାନ୍ତ ଓ ଖୁରା ବ୍ୟବହୃତ ହୋଇଥାଏ । ଅଶ୍ୱୀ ପ୍ରତିବର୍ଷ ଛୁଆ କରେ ନାହିଁ ଓ ଥରକେ ଗୋଟିଏରୁ ଅଧିକ ଶାବକ ହୁଏ ନାହିଁ । ଗର୍ଭାଧାରଣ ( gestation ) କାଳ ଏଗାର ମାସରୁ ତେରମାସ । ଦୁଇ ଜଙ୍ଘ ମଧ୍ୟରେ ଅଶ୍ୱୀର ଦୁଇଟି ଚୁଚୂକ ଥାଏ । ମନୁଷ୍ୟ କ୍ଷୀର ପରି ଏମାନଙ୍କର କ୍ଷୀରରେ ଲାକଟୋଜ୍ ( lactose ) ର ପରିମାଣ ଅଧିକ । ଅଶ୍ୱବଂଶର ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ସଂକରଣ ( Cross breeding ) ହୋଇଥାଏ । ସଂକରାୟଣରୁ ଜାତ ପ୍ରାଣୀମାନଙ୍କୁ ଖଚର ( Mule ) କୁହାଯାଏ । ପ୍ରକୃତ ପକ୍ଷେ ଖଚର ( Mule ) କହିଲେ ଘୋଟକୀ ଓ ପୁଂ ଗର୍ଦ୍ଦଭର ମୈଥୁନରୁ ଜାତ ପ୍ରାଣୀକୁ ବୁଝାଏ । ପୁଂ ଅଶ୍ୱ ଓ ସ୍ତ୍ରୀ ଗର୍ଦ୍ଦଭୀର ରମଣରୁ ଜାତ ପ୍ରାଣୀକୁ ଅଶ୍ୱତର( hinny ) ବୋଲଯାଇ ପାରେ ।

ଅଶ୍ୱ ବଂଶର ସମସ୍ତ ପ୍ରାଣୀ ଏକ ପ୍ରଜାତି–ଇକ୍‌ୱାସ (Equus ) ଭୁକ୍ତ । ବନ୍ୟ ଘୋଟକର ବୈଜ୍ଞାନିକ ନାମ Equus caballus । ଏମାନେ ଆଜି ଅବଲୁପ୍ତ । କିଛିକାଳ ପୂର୍ବ ପର୍ଯ୍ୟନ୍ତ ଏକ ରେସ୍‌ର ବଣ୍ୟ ଘୋଟକ ମଙ୍ଗୋଲିଆରେ

ଦେଖାଯାଉଥିଲେ । ଏହାର ବୈଜ୍ଞାନିକ ନାମ Equus caballus przewalskii ଏହା ମଙ୍ଗୋଲୀୟ ବନ୍ୟ ଘୋଟକ (Mongolian wild horse ଢେଓ୍ୟାଲସ୍କି ଅଶ୍ୱ (Przewalski's horse) ନାମରେ ମଧ୍ୟ ପରିଚିତ । ଏମାନଙ୍କ ବଂଶ ଲୋପ ପାଇଅଛି । ଆଫ୍ରିକାରେ ଜାତିଏ ବଣ୍ୟ ଗର୍ଦ୍ଦଭ ( African wild ass ) ଦେଖାଯାନ୍ତି । ସେମାନଙ୍କର ବୈଜ୍ଞାନିକ ନାମ Equus asinus । ଜେବ୍ରା ( Hippotigris Equus ) କେବଳ ଆଫ୍ରିକାରେ ଦେଖିବାକୁ ମିଳେ । ଭାରତରେ ଗୋଟିଏ ଜାତି ବନ୍ୟ ଗର୍ଦ୍ଦଭ ( Asiatic wild ass ) ବାସ କରେ । ଏହାର ବୈଜ୍ଞାନିକ ନାମ Equus hemionus ।

ଅଶ୍ୱବଂଶର ବିଭିନ୍ନ ଜାତି ପ୍ରାଣୀମାନଙ୍କର କାନ୍ଧଠାରେ ଉଚ୍ଚତା ଓ ବର୍ଣ୍ଣବାହୀ ସୂତ୍ର ( Chromosome ) ର ସଂଖ୍ୟା ତଳେ ଦିଆଗଲା :—

ମଙ୍ଗୋଲୀୟ ବନ୍ୟ ଘୋଟକ – Przewalski's horse—1.32 ମିଟାର (4 ଫୁଟ 4 ଇଞ୍ଚ)–66 ବର୍ଣ୍ଣବାହୀ ସୂତ୍ର ।

ଏସିଆର ବନ୍ୟ ଗର୍ଦ୍ଦଭ – Asiatic wild ass—1.29 ମିଟାର (4 ଫୁଟ 3 ଇଞ୍ଚ) – 56 ବର୍ଣ୍ଣବାହୀ ସୂତ୍ର ।

ଆଫ୍ରିକୀୟ ବନ୍ୟ ଗର୍ଦ୍ଦଭ – African wild ass—1.22 ମିଟାର (4 ଫୁଟ) – 62 ବର୍ଣ୍ଣବାହୀ ସୂତ୍ର ।

ଗ୍ରେଭି ଜେବ୍ରା – Grevy's zebra—Equus greyvi—1.52 ମିଟାର (5 ଫୁଟ) – 46 ବର୍ଣ୍ଣବାହୀ ସୂତ୍ର ।

ବାରଚେଲ ଜେବ୍ରା – Berchell's zebra—Equus berchelli—1.17 ମିଟାର (4 ଫୁଟ 2 ଇଞ୍ଚ)–44 ବର୍ଣ୍ଣବାହୀ ସୂତ୍ର ।

ପାର୍ବତୀୟ ଜେବ୍ରା – Mountain zebra—Equus zebra—1.22 ମିଟାର (4 ଫୁଟ)–32 ବର୍ଣ୍ଣବାହୀ ସୂତ୍ର ।

ପ୍ରାଗୈତିହାସିକ କାଳର ଅଶ୍ୱ ବଂଶୀୟ ପ୍ରାଣୀମାନଙ୍କର ଜୀବାଶ୍ମ ଅଷ୍ଟ୍ରେଲିଆ ଓ ମାଲୟ ଉପଦ୍ୱୀପ ଭିନ୍ନ ଅନ୍ୟ ସବୁ ଦେଶରେ ଯଥା – ଉତ୍ତର ଓ ଦକ୍ଷିଣ ଆମେରିକା, ଆଫ୍ରିକା ଓ ୟୁରେସିଆରେ ମିଳିଅଛି । ସର୍ବ ପ୍ରାଚୀନ




[ ଚିତ୍ର ନଂ 91, ଅଶ୍ୱ ବଂଶର ପ୍ରାଣୀମାନଙ୍କର ବିସ୍ତୃତି– 1 - ମଙ୍ଗୋଲୀୟ ବନ୍ୟ ଘୋଟକ; 2 ଏସିଆର ବନ୍ୟ ଗର୍ଦ୍ଦଭ; 3 ଆଫ୍ରିକୀୟ ବନ୍ୟ ଗର୍ଦ୍ଦଭ; 4 ଗ୍ରେଭି ଜେବ୍ରା; 5 ବାରଚେଲ ଜେବ୍ରା; 6 ପାର୍ବତୀୟ ଜେବ୍ରା; 7 ଊଆଗା (Ouagga), କାନ୍ଧ ଠାରେ ଉଚ୍ଚତା 1.37 ମିଟର (4 ଫୁଟ 6 ଇଞ୍ଚ), 1884 ସାଲରେ ଲୋପ ପାଇଅଛି । ]

ଅଶ୍ୱ ସଦୃଶ ପ୍ରାଣୀ ଇଓହିପ୍ପାସ (Eohippus) ପାଞ୍ଚ କୋଟି ବର୍ଷ ପୂର୍ବେ ଉତ୍ତର ଆମେରିକାରେ ଉଦ୍ଭବ ହୋଇଥିଲେ । ଆଧୁନିକ ଅଶ୍ୱ ଇକ୍‌କାସ (Equus)ର ଆବିର୍ଭାବ ଘଟିଥିଲା କୋଡ଼ିଏ ଲକ୍ଷ ବର୍ଷ ପୂର୍ବେ । ଅତୀତ କାଳରେ ଆଧୁନିକ ଅଶ୍ୱ ବଂଶର ଆଦିମ ବଂଶଧର ବେରିଙ୍ଗ ପ୍ରଣାଳୀ ବାଟେ ଏସିଆରେ ପ୍ରବେଶ କଲେ । ସେତେବେଳେ ୟୁରେସିଆ ଓ ଆମେରିକା ମଧ୍ୟରେ ବେରିଙ୍ଗ ପ୍ରଣାଳୀ ଠାରେ ସ୍ଥଳ ସଂଯୋଗ ରହିଥିଲା ।

ଏମାନେ ପ୍ରଥମେ କେନ୍ଦ୍ର ଏସିଆରେ ବାସ କରି କାଳକ୍ରମେ ପୂର୍ବରୁ ଦକ୍ଷିଣକୁ ଅଭିଗମନ କଲେ । ଏବେ ବନ୍ୟ ଅବସ୍ଥାରେ ଆମେରିକାରେ ଅଶ୍ୱ ଦେଖିବାକୁ ମିଳନ୍ତି ନାହିଁ । ଅଶ୍ୱ ବଂଶର ଯେଉଁ ଜାତି ପ୍ରାଣୀର ବର୍ଣ୍ଣବାହୀ ସୂତ୍ର (chromosome) ସଂଖ୍ୟା ସବୁଠାରୁ ଅଧିକ ସେମାନେ ସେତେ ପ୍ରାଚୀନ ବୋଲି ଧରାଯାଏ । ତଦନୁସାରେ ଆଧୁନିକ କାଳରେ ମଙ୍ଗୋଲୀୟ ବନ୍ୟ ଘୋଟକ ସର୍ବ ପ୍ରାଚୀନ ଅଶ୍ୱ । ଗୃହପାଳିତ ଘୋଟକ (Equus cabalus)ର ବର୍ଣ୍ଣବାହୀ ସୂତ୍ର ସଂଖ୍ୟା ମଧ୍ୟ 66 ।

ଖ୍ରୀଷ୍ଟପୂର୍ବ 3000ରୁ 2000 ବର୍ଷ ମଧ୍ୟରେ ମନୁଷ୍ୟ ପ୍ରଥମେ ବନ୍ୟ ଅଶ୍ୱ ଓ ଗର୍ଦ୍ଦଭକୁ ପୋଷ ମନାଇ ନିଜ କାର୍ଯ୍ୟରେ ବ୍ୟବହାର କରିବାକୁ ଆରମ୍ଭ କରିଥିଲ ବୋଲି ବିଶେଷଜ୍ଞମାନଙ୍କର ଧାରଣା । ଏହି ସମୟ ମଧ୍ୟରେ ତିନିଜାତି ଅଶ୍ୱ ଓ ଗର୍ଦ୍ଦଭକୁ ପୋଷ ମନାଯାଇଥିଲ । ଉତ୍ତର ଆଫ୍ରିକାରେ ନୀଳ ନଦୀ (Nile valley) ଉପତ୍ୟକାବାସୀ ଆଫ୍ରିକୀୟ ବନ୍ୟ ଗର୍ଦ୍ଦଭ (Equus asinus)କୁ ଓ ଏସିଆର ବନ୍ୟ ଗର୍ଦ୍ଦଭକୁ (Equus hemionus) ସୁମେରୀୟମାନେ ପୋଷ ମନାଇଥିଲେ । ସମସ୍ତ ପ୍ରକାର ଗୃହପାଳିତ ଅଶ୍ୱଙ୍କର ଆଦିମ ବଂଶଧର ହେଲ ମଙ୍ଗୋଲୀୟ ବନ୍ୟ ଘୋଟକ Equus caballus przewalski । ପଞ୍ଚଦଶ ଶତାବ୍ଦୀରେ ଚୀନରେ ଅଶ୍ୱାରୋହୀର ପଦାଧାର ବା ରେକାବ (stirrup) ଉଦ୍ଭାବିତ ହେବା ପରଠାରୁ ଯୁଦ୍ଧ ଓ ଅନ୍ୟାନ୍ୟ କାର୍ଯ୍ୟରେ ଅଶ୍ୱର ଅଧିକ ବ୍ୟବହାର ସମ୍ଭବ ହୋଇଥିଲ । ଆର୍ଯ୍ୟମାନେ ୟୁରୋପରେ ସର୍ବପ୍ରଥମେ ଆରବୀୟ ଅଶ୍ୱର (Arab horse) ପ୍ରଚଳନ କରିଥିଲେ । ଶୁଦ୍ଧ ରକ୍ତ (pure blood) ଆରବୀୟ ଅଶ୍ୱ ଏବେ ମଧ୍ୟ ତୁର୍କୀ, ପାରସ୍ୟ ଓ କକେଶସରେ ଦେଖାଯାନ୍ତି । ଇଂରେଜମାନେ ଅଶ୍ୱମାନଙ୍କୁ ବହୁ ପ୍ରକାର ସଙ୍କରଣ ଦ୍ୱାରା ଘୋଡ଼ା ଦୌଡ଼ରେ ବ୍ୟବହୃତ ହେବାପାଇଁ ସୁଗଠିତ ବଳିଷ୍ଠ ଘୋଡ଼ା ଉତ୍ପାଦନ କରି ପାରିଅଛନ୍ତି । ଏହା ଫଳରେ ଅଷ୍ଟାଦଶ ଶତାବ୍ଦୀର 1.34 ମିଟର (57 ଇଞ୍ଚ) ଉଚ୍ଚର ଘୋଡ଼ା ଏବେ 1.6 ମିଟର ଉଚ୍ଚ ହେଲଣି । ଅବୟବ ଅଧିକ ଲମ୍ବ ହୋଇଅଛି ଏବଂ ପ୍ରଗଣ୍ଡାସ୍ଥି (humerus) ଓ ଉର୍ବସ୍ଥି (femur) ଅଧିକ ସିଧା ହୋଇଛି । ଶରୀର ପାତଳ, ଛାତି ଉତ୍ତମ ବର୍ଦ୍ଧିତ ଓ ଉଦର କ୍ଷୁଦ୍ର ହୋଇଅଛି । ଏବର ଦ୍ରୁତଗାମୀ

ଘୋଡ଼ା ଦୌଡ଼ର ଘୋଡ଼ାର ବେଗ ସେକେଣ୍ଡରେ 15.74 ମିଟାର (52 ଫୁଟ) । ଅବଶ୍ୟ ଏହି ବେଗରେ ସେ ବେଶୀ ସମୟ ଧରି ଦୌଡ଼ିପାରେ ନାହିଁ । ଆଧୁନିକ ଘୋଡ଼ା ଦୌଡ଼ର ଘୋଡ଼ା ଠାରେ ଆରବ ଘୋଡ଼ାର ଲାଳିତ୍ୟ ଦେଖାଯାଏ ନାହିଁ । ପଞ୍ଚଦଶ ଶତାବ୍ଦୀରେ ୟୁରୋପୀୟମାନେ ୟୁରୋପରୁ ଆମେରିକାକୁ ଅଶ୍ୱ ନେଇ ପ୍ରଚଳନ କରିଥିଲେ ।

## ଭାରତୀୟ ବନ୍ୟ ଗର୍ଦ୍ଦଭ

### INDIAN WILD ASS

ଭାରତ ଭିନ୍ନ ପୃଥିବୀର ଅନ୍ୟତ୍ର ପ୍ରକୃତ ବନ୍ୟ ଅବସ୍ଥାରେ ଗର୍ଦ୍ଦଭ ଆଉ ନାହାନ୍ତି କହିଲେ ଚଳେ । ଏସିଆର ବନ୍ୟ ଗର୍ଦ୍ଦଭର ବୈଜ୍ଞାନିକ ନାମ Equus hemionus pallas । ଭାରତୀୟ ବନ୍ୟ ଗର୍ଦ୍ଦଭ ଏହି ଗର୍ଦ୍ଦଭ ଜାତିର ଏକ କିଶମ ମାତ୍ର ଓ ତାର ବୈଜ୍ଞାନିକ ନାମ Equus hemionus-khur lesson । ତିବ୍ବତରେ 'କିଆଙ୍ଗ' ନାମରେ ଆଉ ଗୋଟିଏ କିଶମର ବନ୍ୟ ଗର୍ଦ୍ଦଭ ଦେଖା ଯାଉଥିଲେ । ତାର ବୈଜ୍ଞାନିକ ନାମ Equus hemionus kiang moorcraft । କେହି କେହି ବୈଜ୍ଞାନିକ ଏହା ଏକ ସ୍ୱତନ୍ତ୍ର ଜାତିର ଗର୍ଦ୍ଦଭ ବୋଲି ବିବେଚନା କରନ୍ତି । କିଆଙ୍ଗ ଲଦାଖ ଓ ତିବ୍ବତର ଉଚ୍ଚ ଖୋଲା ମାଳଭୂମି ଅଞ୍ଚଳରେ ପୂର୍ବେ ଏମାନେ ଦେଖା ଯାଉଥିଲେ । ଏବେ ସେମାନଙ୍କ ସମ୍ବନ୍ଧରେ ବିଶେଷ ବିବରଣୀ ମିଳେ ନାହିଁ । ମିଶର ଓ ଉତ୍ତର ଆଫ୍ରିକାର ବନ୍ୟ ଆଫ୍ରିକୀୟ ଘୋଟକ ପ୍ରକୃତ 'ବନ୍ୟ' ନୁହଁନ୍ତି । ଏବେ ସେଠାରେ ଯେଉଁ ଘୋଟକ ଦେଖାଯାନ୍ତି ସେମାନଙ୍କର ପୂର୍ବ ପୁରୁଷ ମନୁଷ୍ୟର ଗୃହପାଳିତ ଥିଲେ, ପରେ ବନ୍ୟ ହୋଇଗଲେ ।

ପୂର୍ବକାଳରେ ଭାରତୀୟ ବନ୍ୟ ଗର୍ଦ୍ଦଭ ଉତ୍ତର ପଶ୍ଚିମ ଭାରତ, ପଶ୍ଚିମ ପାକିସ୍ଥାନ ଓ ଦକ୍ଷିଣ-ପୂର୍ବ ଇରାନରେ ବହୁ ସଂଖ୍ୟାରେ ଦେଖାଯାଉ ଥିଲେ । ଏବେ ସେମାନେ ଇରାନରୁ ଲୁପ୍ତ, ପାକିସ୍ଥାନରେ ଦୁଷ୍ପ୍ରାପ୍ୟ ଓ ଭାରତର କଚ୍ଛର ରନ୍ ( Runn of Cutch ) ଅଞ୍ଚଳରେ ସୀମାବଦ୍ଧ । କଚ୍ଛର ରନ୍ ଉତ୍ତର ପଶ୍ଚିମ ଗୁଜୁରାଟର ଏକ ବନ୍ଧ୍ୟା ସମତଳ ମରୁଭୂମି ଅଞ୍ଚଳ । ଏହି ସ୍ଥାନର କ୍ଷେତ୍ରଫଳ ପ୍ରାୟ 2600 କିଲୋମିଟାର ହେବ । ଏଠାରେ ତାପମାତ୍ରା ଉଚ୍ଚ

ଓ ଗ୍ରୀଷ୍ମକାଳରେ ପ୍ରବଳ ଗରମ । ସ୍ଥାନେ ସ୍ଥାନେ ବିକ୍ଷିପ୍ତଭାବେ ହ୍ରଦ ବା 'ବେଟ୍' ସବୁ ରହିଅଛି । ଏସବୁ ସ୍ଥାନରେ ପ୍ରାୟ ସବୁବେଳେ ପାଣିଥାଏ ଓ ରକ୍ଷ ଘାସ ଜନ୍ମେ । ଦିଗନ୍ତ ବିସ୍ତାରୀ ବାଲୁକା ପ୍ରାନ୍ତରରେ ଏଗୁଡ଼ିକ ମରୁଦ୍ୟାନ । ବନ୍ୟ ଗର୍ଦ୍ଦର ଦଳଦଳ ହୋଇ ଏଠାରେ ଘାସ ଚରନ୍ତି । ମୌସୁମୀ ବର୍ଷା ସମୟରେ ଏ ସବୁ ଅଞ୍ଚଳରେ ବିସ୍ତର ଘାସ ହୁଏ । ସେତେବେଳେ ସେମାନେ 'ବେଟ'ର ଉଚ୍ଚ ଓ ଅପେକ୍ଷାକୃତ ଅଳ୍ପ ପ୍ଲାବିତ ସ୍ଥାନମାନଙ୍କରେ ଚରନ୍ତି । ଗ୍ରୀଷ୍ମକାଳରେ ଯେଉଁ 'ବେଟ୍' ଶୁଖିଯାଏ ଓ ଘାସ ମିଳେ ନାହିଁ ସେଠାରୁ ଗର୍ଦ୍ଦଭ ଦଳ ଘାସଥିବା ବେଟ୍ ଅଞ୍ଚଳକୁ ଚାଲିଯାନ୍ତି । ଗ୍ରୀଷ୍ମକାଳରେ ଅର୍ଥାତ୍ ମାର୍ଚ୍ଚ ପରଠାରୁ ଗର୍ଦ୍ଦଭ ଦଳ ସବୁଜ ବେଟ୍ ଜାଗା ଦେଖି ବହୁ ସଂଖ୍ୟାରେ ଦଳ ଦଳ ହୋଇ ବାସ କରନ୍ତି । ଏତେବେଳେ ଅଣ୍ଡିର ଗଧ ଏକାକୀ ବା ଦୁଇ-ତିନି ସଂଖ୍ୟାରେ ଅଲଗା ଅଲଗା ଚରନ୍ତି । ସେମାନେ ଗୋଧୂଳି ଠାରୁ ସୂର୍ଯ୍ୟୋଦୟ ଯାଏ ଘାସ ଚରନ୍ତି ଏବଂ ଦିନବେଳା ଧୂ ଧୂ ଖରରେ 10 ରୁ 30



( ଚିତ୍ର ନଂ 92, ଭାରତୀୟ ବନ୍ୟ [illegible] )

ସଂଖ୍ୟାରେ ଦଳ ଦଳ ହୋଇ ବା 2-3 ଟି ବା ଗୋଟି ଗୋଟି ହୋଇ ମରୁ-ବାଲିରେ ଏଣେତେଣେ ବୁଲୁଥାନ୍ତି । ବେଳେ ବେଳେ ସେମାନେ ବିକ୍ଷିପ୍ତ

କୃଷ୍ଣସାର ମୃଗ ଦଳ ସହିତ ବୁଲୁଥିବାର ମଧ୍ୟ ଦେଖାଯାଏ । ଏହି ଗର୍ଦ୍ଦଭ-ମାନେ କ୍ଷିପ୍ର ବେଗରେ ଦୌଡ଼ି ପାରନ୍ତି ଓ ବହୁ ସମୟ ଧରି ଘଣ୍ଟାକେ ପ୍ରାୟ 48-51 କିଲୋମିଟାର (30-32 ମାଇଲ) ବେଗରେ ଦୌଡ଼ନ୍ତି ।

ଭାରତୀୟ ବନ୍ୟ ଗର୍ଦ୍ଦଭ ହୃଷ୍ଟପୁଷ୍ଟ ଓ ତାର ସାଧାରଣ ବର୍ଣ୍ଣ ଲାଲ ଧୂସରରୁ ଫିକା ହଳଦିଆ-ବାଦାମୀ ବା ଧୂସର ବାଦାମୀ । ଏମାନଙ୍କର ଗ୍ରୀବା ଦେଶର କେଶର ଘନବାଦାମୀ ଓ ଠିଆ ଠିଆ । ବେକ ଠାରୁ ଲାଞ୍ଜ ମୂଳଯାଏ ପିଠିରେ ଏକ କୃଷ୍ଣ ବାଦାମୀ ରେଖା ବିସ୍ତୃତ । ଏହା ଦେଖି କେଶର ଲାଞ୍ଜ ମୂଳଯାଏ ବିସ୍ତୃତ ବୋଲି ମନେ ହୁଏ । ପେଟ ପାଖର ବର୍ଣ୍ଣ ଧଳା । ଏମାନଙ୍କର ସାଧାରଣ ବର୍ଣ୍ଣ ବାଲିର ବର୍ଣ୍ଣ ସହିତ ଖାପ ଖାଏ । କାନ ଗୃହପାଳିତ ଗଧ ଓ ଖେଚର ତୁଳନାରେ ଛୋଟ । ଲାଞ୍ଜ ବିଶେଷ ଲୋମଶ ନୁହେଁ ଓ ଗୋଇଠି ପର୍ଯ୍ୟନ୍ତ ଓହଳି ଥାଏ । ଲାଞ୍ଜର ଅଗ୍ରଭାଗରେ ଗୋଛାଏ ଲୋମ ଥାଏ ।

ଗୃହପାଳିତ ଗର୍ଦ୍ଦଭ ସହିତ ବନ୍ୟ ଗର୍ଦ୍ଦଭ ମିଶନ୍ତି ନାହିଁ କି ରମଣ କରନ୍ତି ନାହିଁ । ଗୃହପାଳିତ ଗର୍ଦ୍ଦଭମାନଙ୍କର କୌଣସି ନିର୍ଦ୍ଦିଷ୍ଟ ରମଣକାଳ ନାହିଁ ; ବର୍ଷର ଯେକୌଣସି ସମୟରେ ସେମାନେ ଶାବକ ଉତ୍ପୁରନ୍ତି । ମାତ୍ର ଭାରତୀୟ ବନ୍ୟ ଗର୍ଦ୍ଦଭମାନଙ୍କର ପ୍ରଜନନ କାଳ ଅଗଷ୍ଟରୁ ଅକ୍ଟୋବର । ମାଈ ଗର୍ଦ୍ଦଭ ପାଇଁ ପୁରୁଷ ଗର୍ଦ୍ଦଭମାନଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ହୁଏ । ଏ ଲଢ଼େଇ ବେଳେ ଦାନ୍ତ ଓ ଖୁର ବ୍ୟବହୃତ ହୁଏ । ଗର୍ଭଧାରଣ କାଳ ଏଗାର ମାସ । ଥରକେ ଗୋଟିଏ ଶାବକ ଜନ୍ମ ହୁଏ ଓ ଜୁଲାଇରୁ ସେପ୍ଟେମ୍ବର ମାସ ମଧ୍ୟରେ ଛୁଆ ଜନ୍ମ ହୁଅନ୍ତି । ଶାବକ ତିନିମାସର ହେଲାଯାଏ ମାଈ ଓ ଅଣ୍ଡିରା ଗର୍ଦ୍ଦଭମାନେ ଅଲଗା ଭାବେ ଦଳ ବାନ୍ଧି ବାସ କରନ୍ତି । ବହୁ କାଳ ପୂର୍ବେ ଉତ୍ତର-ପଶ୍ଚିମ ଆଫଗାନିସ୍ଥାନର ମରୁ ଅଞ୍ଚଳରେ ଏପରି ଏକ ଦଳରେ ପ୍ରାୟ ଏକ ହଜାରରୁ ଅଧିକ ଗର୍ଦ୍ଦଭ ଥିଲେ ବୋଲି ହିସାବ କରାଯାଇଥିଲା । ସାଧାରଣତଃ ଗୋଟିଏ ଗର୍ଦ୍ଦଭ ଦଳରେ 13ଟି ଯାଏ ଗର୍ଦ୍ଦଭ ଥାନ୍ତି ଓ ପ୍ରତି 5ଟି ବୟଃପ୍ରାପ୍ତ ଗଧ ପିଛା ଗୋଟିଏ ଶାବକ ଥାଏ । 20-30ଟି ଗଧ ଥିବା ଦଳରେ 6ରୁ 8ଟି ଯାଏ ଶାବକ ଥାନ୍ତି ।

ବନ୍ୟ ଗର୍ଦ୍ଦଭଙ୍କୁ ଛୁଆ ବେଳେ ପୋଷ ମନାଇଲେ ପୋଷ ମାନନ୍ତି; ବଡ଼ ହେଲେ ପୋଷ ମାନନ୍ତି ନାହିଁ । କଚ୍ଛର ରନ୍ ଅଞ୍ଚଳରେ ଥିବା ଗ୍ରାମ-ମାନଙ୍କରେ ଲୋକେ ସମ୍ପୂର୍ଣ୍ଣରୂପେ ନିରାମିଷାଶୀ । ଏଣୁ ସେମାନେ ବନ୍ୟ ଗର୍ଦ୍ଦଭମାନଙ୍କୁ ମାରନ୍ତି ନାହିଁ । ସେମାନଙ୍କର ପ୍ରଧାନ ମାରଣ ହେଲା ରୋଗ । "ସୁରା" ଓ "ଦକ୍ଷିଣ ଆଫ୍ରିକା ଘୋଡ଼ା ରୋଗ"ରେ ସେମାନେ ବହୁ ସଂଖ୍ୟାରେ ମରି ଯାଉଛନ୍ତି । ବହୁ ବର୍ଷ ପୂର୍ବେ ସେମାନେ ହଜାର ହଜାର ସଂଖ୍ୟାରେ ବାସ କରୁଥିଲେ । 1961-62 ସାଲରେ ସେମାନଙ୍କର ସଂଖ୍ୟା ଗଣନା କରାଯାଇ ଦେଖାଗଲା ସେମାନଙ୍କର ସଂଖ୍ୟା ପ୍ରାୟ 850 । ଗତ ଦଶବର୍ଷ ମଧ୍ୟରେ ସେହି ସଂଖ୍ୟା 362କୁ କମି ଯାଇଛି ବୋଲି ଆଶଙ୍କା କରାଯାଏ ।

## ଟେପିର୍ ବଂଶ

ଟେପିର (Tapiridae) ବଂଶ ମାନଙ୍କର ସାମନା ଗୋଡ଼ରେ ଚାରିଟି କରି ଅଙ୍ଗୁଳି ଓ ପଛ ଗୋଡ଼ରେ ତିନୋଟି କରି ଅଙ୍ଗୁଳି । ଶୁଣ୍ଢ କ୍ଷୁଦ୍ର ଓ ଚଳନଶୀଳ । ଏମାନେ ସାଧାରଣତଃ ଏକ ମିଟାର (3 ଫୁଟ 6 ଇଞ୍ଚ)ରୁ ଅଧିକ ଉଚ୍ଚ ହୁଅନ୍ତି ନାହିଁ । ଟେପିର ଅନେକ ପରିମାଣରେ ବଡ଼ ଘୁଷୁରି ପରି ଦେଖାଯାଏ । ଏମାନେ ପ୍ରକୃତିରେ ଧୀର, ଶାନ୍ତି ପ୍ରିୟ ଓ ମନୁଷ୍ୟ ଦେଖିଲେ ବୁଦା ଭିତରକୁ ପଳାଇଯାନ୍ତି । ମଧ୍ୟ ଆମେରିକା, ଦକ୍ଷିଣ ଆମେରିକା, ମାଳୟ ଉପଦ୍ୱୀପ, ଜାଭା ଓ ବୋର୍ଣ୍ଣିଓରେ ଟେପିର ଦେଖାଯାନ୍ତି । ଭାରତରେ ଏମାନେ ଦେଖାଯାନ୍ତି ନାହିଁ ।

## ଗଣ୍ଡାର୍ ବଂଶ

ଗଣ୍ଡାରମାନଙ୍କୁ ରା(ହ)ଇନୋସେରୋଟିଡ଼ି (Rhinocerotidae) ବଂଶଭୁକ୍ତ କରାଯାଏ । ଏମାନେ କେବଳ ପ୍ରାଚୀନ ଗୋଲାର୍ଦ୍ଧ (Old world) ରେ ଦେଖାଯାନ୍ତି । ଏମାନଙ୍କର ଦେହ ବିଶାଳ, ଗୋଡ଼ କ୍ଷୁଦ୍ର ଓ ବଳିଷ୍ଠ, ଏବଂ ଯୁଦ୍ଧବର୍ମ ପରି ଚର୍ମ ଅତ୍ୟନ୍ତ ମୋଟା । ଏମାନଙ୍କର ସବୁଠାରୁ ବଡ଼ ବିଶେଷତ୍ୱ ହେଲା ମସ୍ତକର ମଧ୍ୟ ରେଖାରେ ଗୋଟିଏ ବା ଦୁଇଟି ଶୃଙ୍ଗଥାଏ । ଏହି ଶୃଙ୍ଗ ଏକତ୍ରିତ କେଶଗୁଚ୍ଛ ମାତ୍ର ଓ ଚର୍ମରୁ ନିର୍ଗତ ଶୃଙ୍ଗବତ୍ ତନ୍ତୁମୟ

ପଦାର୍ଥରେ ଗଠିତ ହୋଇଥାଏ । ତା' ଭିତରେ ହାଡ଼ ନଥାଏ । ଯେଉଁ ଗଣ୍ଡାରର ଶୃଙ୍ଗ ଦୁଇଟି, ସେ କ୍ଷେତ୍ରରେ ସେ ଦୁଇଟି ଆଗ ପଛ ହୋଇ ଗୋଟିଏ ରେଖାରେ ରହିଥାଏ । ଶୃଙ୍ଗର କରେଟି ଅସ୍ଥି ( skull ) ସହିତ କୌଣସି ସଂପର୍କ ନାହିଁ । କେବଳ ନାସାସ୍ଥିର ଏକ ଅଂଶ ସ୍ଫୀତ ହୋଇ ଶୃଙ୍ଗକୁ ଧାରଣ କରିଥାଏ । ଶିଙ୍ଗ ସାରାଜୀବନ ବଢୁଥାଏ ଏବଂ କାଟିଦେଲେ ବା ଝଡ଼ି ପଡ଼ିଲେ ପୁଣି ଉଠେ । ଗଣ୍ଡାରର ପାଦରେ ତିନୋଟି କରି ଆଙ୍ଗୁଳି ଓ ତିନୋଟି କରି ଖୁରା । ତନ୍ମଧ୍ୟରେ ମଝିଟି ସବୁଠାରୁ ଉତ୍ତମ ବର୍ଦ୍ଧିତ । ଏମାନଙ୍କର ଶ୍ୱାଦନ୍ତ ନାହିଁ । ଆଫ୍ରିକାରେ ଦେଖାଯାଉଥିବା ଦୁଇଜାତି ଗଣ୍ଡାରଙ୍କର ନିର୍ଦ୍ଦିଷ୍ଟ ବୟସ କାଳରେ କର୍ତ୍ତନ ଦାନ୍ତ ଖସି ପଡ଼େ । ଗଣ୍ଡାରଙ୍କର ପେଷଣ ଦନ୍ତ ( molar ) କୂଟ ଦନ୍ତ ( lophodont ) ଅଟେ ଅର୍ଥାତ୍ ଦନ୍ତର ସୂକ୍ଷ୍ମ ଅଗ୍ରଭାଗ ହିଡ଼ପରି ରହିଥାଏ । ଏପରି ଦାନ୍ତ ଘୋଡ଼ା କଳରେ ମଧ୍ୟ ଦେଖିବାକୁ ମିଳେ ।

ଗଣ୍ଡାରମାନଙ୍କର ଘ୍ରାଣ ଶକ୍ତି ଅତ୍ୟନ୍ତ ପ୍ରବଳ । ପ୍ରାଣୀମାନଙ୍କ ମଧ୍ୟରେ ହାତୀର ଘ୍ରାଣଶକ୍ତି ସବୁଠାରୁ ଅଧିକ ପ୍ରବଳ । ତା'ପଛକୁ ଗଣ୍ଡାରର, ପବନ ଯେଉଁଆଡୁ ବହୁଥାଏ, ସେଇ ଆଡ଼କୁ ନାକରଖି ଗଣ୍ଡାର ଚାଲେ । ଏହାର ଦୃଷ୍ଟିଶକ୍ତି ଅତ୍ୟନ୍ତ କ୍ଷୀଣ ।

ଗଣ୍ଡାରମାନଙ୍କର ପୁରାତତ୍ତ୍ୱ ପ୍ରାଚୀନ ଓ ସେମାନଙ୍କର ଜୀବାଶ୍ମରୁ ଜଣାପଡେ ଯେ ସାତଟି ପ୍ରଧାନ ଦିଗରେ ସେମାନଙ୍କର ବିବର୍ତ୍ତନ ଘଟିଥିଲା । ସେମାନେ ବିସ୍ତୀର୍ଣ୍ଣ ଅଞ୍ଚଳରେ ବାସ କରୁଥିଲେ । ମହେଞ୍ଜୋଦାରୋ ଠାରେ ଏକ ଖୋଦିତ ମୋହର (seal) ମିଳିଥିଲା । ନାମ ମୁଦ୍ରାଟି ଦିଲ୍ଲୀରେ ଜାତୀୟ ଯାଦୁଘରରେ ସଂରକ୍ଷିତ ହୋଇଅଛି । ଏଥିରେ ଗୋଟିଏ ଗଣ୍ଡାରର ଚିତ୍ର ଅଙ୍କିତ । ମହେଞ୍ଜୋଦାରୋ ଠାରେ ଯେଉଁ ସଭ୍ୟତା ଗଢି ଉଠିଥିଲା ତାହା ଆଜିକି ପାଞ୍ଚ ହଜାର ବର୍ଷ ଆଗର । ଏହି ଖୋଦନ କପୋଳକଳ୍ପିତ ନୁହେଁ । ସେ କାଳରେ ସିନ୍ଧୁ ନଦୀର ସବୁଜ ଉପତ୍ୟକାରେ ଏକ ଶୃଙ୍ଗୀ ଗଣ୍ଡାର ଶହ ଶହ ସଂଖ୍ୟାରେ ଚରି ବୁଲୁଥିଲେ । ଏବେ ସେହି ବିରାଟ ଏକ-ଶୃଙ୍ଗୀ ଗଣ୍ଡାର ( Great Indian one horned rhinoceros ) ଆସାମର ବ୍ରହ୍ମପୁତ୍ର ନଦୀ ଉପତ୍ୟକାର 42 କିଲୋମିଟାର ଦୀର୍ଘ କଜିରଙ୍ଗା ଅଭୟାରଣ୍ୟ ( Kaziranga wild life sanctuary ) ରେ ଅତି ଅଳ୍ପ ସଂଖ୍ୟାରେ ସଂରକ୍ଷିତ ପ୍ରାଣୀ ରୂପେ ବଞ୍ଚି ରହିଛି ।

ଏବେ ସମଗ୍ର ପୃଥିବୀରେ ମାତ୍ର ପାଞ୍ଚ ଜାତି ଗଣ୍ଡାର ଦେଖାଯାନ୍ତି । ଆଫ୍ରିକାରେ ଦୁଇଜାତି ଗଣ୍ଡାର ଅଛନ୍ତି । ଗୋଟିଏ ହେଲା କଳା ଗଣ୍ଡାର ବା ବକ୍ର-ଓଷ୍ଠ ଗଣ୍ଡାର ( Black or hooklipped rhinoceros ) ( Diceros bicornis ) । ଏହା ଲମ୍ବରେ ( ଲାଞ୍ଜକୁ ନ ମିଶାଇ ) ପ୍ରାୟ 3.3 ମିଟାର (11 ଫୁଟ ), ତଳୁ କାନ୍ଧଠାରେ ଉଚ୍ଚତା 1.6 ମିଟାର (5 ଫୁଟ 8 ଇଞ୍ଚ) ଓଜନ ଦୁଇ ମେଟ୍ରିକ୍ ଟନ୍‌ରୁ ଅଧିକ । ଅନ୍ୟ ଆଫ୍ରିକୀୟ ଗଣ୍ଡାର ( Diceeros simus ) କୁ ଧଳା ବା ଚଉକୋଣୀ-ଓଷ୍ଠ ଗଣ୍ଡାର ( White or squarelipped rhinoceros ) ବୋଲଯାଏ । କଳା ଗଣ୍ଡାରର ବର୍ଣ୍ଣ ଧୂସର ଓ ଧଳା ଗଣ୍ଡାରର ବର୍ଣ୍ଣ ମଧ୍ୟ ଧୂସର । କାଦୁଅ ମାଖି ହୋଇଥିବା ଚଉକୋଣୀ-ଓଷ୍ଠ ଗଣ୍ଡାର କାଦୁଅ ଶୁଖିଗଲେ ଧଳାସିଆ ଦେଖାଯାଏ । ସେଥିପାଇଁ ଏହାର ଏପରି ନାମ ହୋଇଅଛି । ଏହାର ମଧ୍ୟ ଶିଙ୍ଗ ଦୁଇଟି । ଏ ଦୁଇଜାତି ଗଣ୍ଡାର ମଧ୍ୟରେ ପ୍ରଧାନ ପ୍ରଭେଦ ହେଲା, ବକ୍ର ଓଷ୍ଠ ଗଣ୍ଡାରର ଚଳନଶୀଳ ଉପରୋଷ୍ଠର ଆକାର ଶୁଆ-ଥଣ୍ଟ ପରି, ଚଉକୋଣୀ ଓଷ୍ଠ ଗଣ୍ଡାରର ଉପରୋଷ୍ଠ ଚାରିକୋଣିଆ ଓ ନାକ ଚଟାଳିଆ । ଧଳା ଗଣ୍ଡାରର ଦୈର୍ଘ୍ୟ (ଲାଞ୍ଜକୁ ଛାଡ଼ି ) 4.87 ମିଟାର ( 16 ଫୁଟ ), କାନ୍ଧଠାରେ ତଳୁ ଉଚ୍ଚତା 198 ସେଣ୍ଟିମିଟାର ( 6 ଫୁଟ 6 ଇଞ୍ଚ ) ଓ ଓଜନ ଚାରି ମେଟ୍ରିକ୍ ଟନ୍ । ବସ୍ତୁତଃ, ହାତୀ ଓ ଜିରାଫ ପଛକୁ ଚଉକୋଣୀ ଓଷ୍ଠ ଗଣ୍ଡାର ପୃଥିବୀର ତୃତୀୟ ବୃହତମ ସ୍ଥଳବାସୀ ସ୍ତନ୍ୟପାୟୀ ପ୍ରାଣୀ । ଗଣ୍ଡାର ମାନଙ୍କର ବଂଶ ଲୋପ ପାଇବାରେ ଲାଗିଛି । 1969 ସାଲ ବେଳକୁ ବକ୍ରଓଷ୍ଠ ଗଣ୍ଡାରଙ୍କ ସଂଖ୍ୟା ପ୍ରାୟ 13,000 ଓ ଚଉକୋଣୀ ଓଷ୍ଠ ଗଣ୍ଡାରର ସଂଖ୍ୟା 3,000 ରେ ଆସି ପହଞ୍ଚିଛି । ଏସିଆରେ ଯେଉଁ ତିନୋଟି ଗଣ୍ଡାର ଦେଖାଯାନ୍ତି ସେମାନଙ୍କ ସଂଖ୍ୟା ଆହୁରି ଦ୍ରୁତ ବେଗରେ ହ୍ରାସ ପାଇବାରେ ଲାଗିଛି ।

ଏସିଆର ଦୁଇଶୃଙ୍ଗୀ ଗଣ୍ଡାର ( Asiatic twohorned rhinoceros ) ଉଚ୍ଚତା, 135 ସେଣ୍ଟିମିଟାର ( Didermocerus sumatrensis ) ଅତୀତ କାଳରେ ବିସ୍ତୀର୍ଣ୍ଣ ଅଞ୍ଚଳରେ ବାସ କରୁଥିଲେ । ନୂତନ ତର ( Pliocene ) ଯୁଗରେ ( 130 ଲକ୍ଷରୁ 10 ଲକ୍ଷ ବର୍ଷ ପୂର୍ବକାଳ ପର୍ଯ୍ୟନ୍ତ ସମୟ ) ଇଂଲଣ୍ଡର ପୂର୍ବ ଉପକୂଳଠାରୁ ଦକ୍ଷିଣ ଓ ପୂର୍ବକୁ

ଦକ୍ଷିଣ ଫ୍ରାନସ୍ ଓ ଉତ୍ତର ଇଟାଲୀ ଦେଇ ଭାରତବର୍ଷ ପର୍ଯ୍ୟନ୍ତ ବିସ୍ତୃତ ଜଙ୍ଗଲରେ ଏମାନେ ବିଚରଣ କରୁଥିଲେ । ସିଓ୍ୱାଲିକ୍ ପର୍ବତମାଳା ଅଞ୍ଚଳରେ ଏହି ପ୍ରାଣୀର ନୂତନତର ଯୁଗ କାଳର ଜୀବାଶ୍ମ ମିଳିଅଛି । ଊନବିଂଶ ଶତାବ୍ଦୀର ଶେଷକାଳ ପର୍ଯ୍ୟନ୍ତ ଏ ଜାତି ଗଣ୍ଡାର ଆସାମଠାରୁ ଟିପେରା ଓ ଚିଟାଗଙ୍ଗ ଦେଇ ଆରାକାନ୍ ଓ ବର୍ମା ; ଏବଂ ସେଠାରୁ ଇଣ୍ଡୋଚୀନ୍, ଶ୍ୟାମ, ମାଲୟ, ସୁମାତ୍ରା ଓ ବୋର୍ଣ୍ଣିଓରେ ( ଜାଭାରେ ନୁହେଁ ) ଅରଣ୍ୟ-ମୟ ପାହାଡ଼ିଆ



[ ଚିତ୍ର ନଂ ୨୩, ଏସିଆର ଗଣ୍ଡାମାନଙ୍କର ଅତୀତ ବିସ୍ତୃତି ]

ଅଞ୍ଚଳରେ ବାସ କରୁଥିଲେ । ବର୍ତ୍ତମାନ ଏମାନେ ଭାରତରୁ ଅବଲୁପ୍ତ ଓ ଅନ୍ୟତ୍ର ପ୍ରାୟ ନାହାନ୍ତି ।

ସୁମାତ୍ରାରେ ଦୁଇଶିଙ୍ଗ ବାଲା ଏକ ଜାତି ଗଣ୍ଡାର ବାସ କରନ୍ତି । ଏମାନଙ୍କୁ "ସୁମାତ୍ରା ଗଣ୍ଡାର" ( Sumatran Rhinoceros ) ( Dicerorhinus sumatrensis ) ବୋଲଯାଏ । କାନ୍ଧଠାରେ ତଳୁ ଏହାର ଉଚ୍ଚତା 137 ସେଣ୍ଟିମିଟାର ( 4 ଫୁଟ 6 ଇଞ୍ଚ ) । ଏହା ଥାଇଲଣ୍ଡ, ବୋର୍ଣିଓ ଓ ମାଲୟ ଉପଦ୍ୱୀପରେ ଅତି ଅଳ୍ପ ସଂଖ୍ୟାରେ ଦେଖିବାକୁ ମିଳେ ।

"ଜାଭା ଗଣ୍ଡାର" (Javan Rhinoceros ବା Smaller one horned rhinoceros) (Rhinoceros sondaicus) ର ଗୋଟିଏ ଶିଙ୍ଗ ଓ ତାହା ଖୁବ୍ ବଡ ହୁଏ ନାହିଁ । କାନ୍ଧଠାରେ ବୟସ୍ପ ଅଣ୍ଡିଗ ଗଣ୍ଡାରର ଉଚ୍ଚତା 180 ସେଣ୍ଟିମିଟାର (5 ଫୁଟ 10 ଇଞ୍ଚ) । ବଙ୍ଗଳା ଓ ଆସାମ, ବ୍ରହ୍ମପୁତ୍ର ଉପତ୍ୟକାର ଦକ୍ଷିଣାଞ୍ଚଳ, ସେଠାରୁ ବର୍ମା ଓ ମାଲୟ ଉପଦ୍ୱୀପ ଦେଇ ସୁମାତ୍ରା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଏକଦା ଏହି ଗଣ୍ଡାରର ବିହାରସ୍ଥଳୀ ଥିଲା । ପ୍ରାକୃତିକ ଅବସ୍ଥାରେ ଏମାନେ ଆଉ ଦେଖାଯାନ୍ତି ନାହିଁ । କେବଳ ଜାଭାର ଏକ ଅଭୟାରଣ୍ୟରେ (Udjung kulon sanctuary) ଏହା ସୁରକ୍ଷିତ ହୋଇ ରହିଅଛି । 1960 ସାଲରେ କରାଯାଇଥିବା ସଂଖ୍ୟା ଗଣନାରୁ ଜଣାପଡ଼େ ସେତେବେଳେ ସେଠାରେ 1. ଟି ରୁ 24ଟି ଯାଏ ଗଣ୍ଡାର ଥିଲେ ।

ଅବାଧ ଭାବେ ଗଣ୍ଡାର ଶିକାର କରାଯିବା ଫଳରେ ପୃଥିବୀରେ ଆଜି ଗଣ୍ଡାର ବଂଶ ପ୍ରାୟ ଲୋପ ହେବାକୁ ବସିଲଣି ।

## ଭାରତୀୟ ଗଣ୍ଡାର

ଭାରତୀୟ ଗଣ୍ଡାର (Great Indian one horned rhinoceros) ର କାନ୍ଧଠାରେ (ତଳୁ) ସାଧାରଣତଃ ଉଚ୍ଚତା 170 ସେଣ୍ଟିମିଟାର (5 ଫୁଟ 8 ଇଞ୍ଚ) । ଗୋଟିଏ ଗୋଟିଏ ଅଣ୍ଡିଗ 180 ସେଣ୍ଟିମିଟାର (6 ଫୁଟ) ଯାଏ ଉଚ୍ଚ ହୋଇଥାନ୍ତି । କାନ୍ଧ ଆଗକୁ ଓ ବେକ ପଛକୁ (behind the withers) ଗୋଲେଇ 335 ସେଣ୍ଟିମିଟାର (11 ଫୁଟ) । ଏହା ଆଫ୍ରିକାର "ଧଳା ଗଣ୍ଡାର" ଠାରୁ ସାନ, ମାତ୍ର "କଳା ଗଣ୍ଡାର" ଠାରୁ

ବଡ଼ । ଏମାନଙ୍କର ଗୋଟିଏ କରି ଶିଙ୍ଗ । ଶିଙ୍ଗର ସାଧାରଣ ଉଚ୍ଚତା ୩୪-41 ସେଣ୍ଟିମିଟାର (15-16 ଇଞ୍ଚ); ବେଳେ ବେଳେ 61 ସେଣ୍ଟିମିଟାର (24 ଇଞ୍ଚ) ପର୍ଯ୍ୟନ୍ତ ହୋଇପାରେ । ମାଈମାନଙ୍କର ଶିଙ୍ଗ ପୁରୁଷ ଗଣ୍ଡାର ଶିଙ୍ଗ ପରି । ଏଣୁ ପ୍ରଥମ ଦର୍ଶନରେ ମାଈ ଅଣ୍ଡିରା ଚିହ୍ନିବା କଷ୍ଟକର । ଭାରତୀୟ ଗଣ୍ଡାରର ସର୍ବ ବୃହତ୍ ଶିଙ୍ଗର ଦୈର୍ଘ୍ୟ 60.9 ସେଣ୍ଟିମିଟାର ଓ ଏହା ଲଣ୍ଡନସ୍ଥିତ ବ୍ରିଟିଶ୍ ମ୍ୟୁଜିୟମ୍‌ରେ ରହିଅଛି ।



[ ଚିତ୍ର ନଂ 94, ଭାରତୀୟ ଗଣ୍ଡାର ]

ଭାରତୀୟ ଗଣ୍ଡାରର ବିଶେଷତ୍ୱ ଏହି ଯେ ଏହି ଓଜନଦାର ପ୍ରାଣୀଟିର ସ୍ଥୂଳ ଚର୍ମରେ କାନ୍ଧ ଆଗକୁ ଓ କାନ୍ଧ ପଛକୁ ଏବଂ ଉରୁ ଆଗକୁ ଭାଙ୍ଗ ପଡ଼ିଥାଏ । ପଞ୍ଜର ଅଂଶରୁ ଜଙ୍ଘ ପର୍ଯ୍ୟନ୍ତ, କାନ୍ଧ ଓ ପଶ୍ଚାତ୍ ଭାଗରେ ଚର୍ମ ଉପରେ ଗୋଲକାର କୁଟକ ବା ତୁର୍ଗିକା (tubercle) ଥାଏ । ଗଣ୍ଡାରର ମୋଟାମୋଟି ଗଠନ କଦାକାର, ମୁଣ୍ଡ ଲମ୍ବା ଓ ନୌକାକାର ! ଏଣୁ ଏହା ପ୍ରାଗୈତିହାସିକ କାଳର ଏକ ବିଭତ୍ସ ପ୍ରାଣୀ ପରି ମନେ ହୁଏ । ନାସା ବିବର ଅନୁପ୍ରସ୍ଥ ଭାବେ ଶାୟିତ । ଦେହର ବର୍ଣ୍ଣ ଧୂସର-ବାଦାମୀ । ଅବଶ୍ୟ ଏମାନେ ମାଟି କାଦୁଅ ଭିତରେ ଚକଟି ହେଉଥିବାରୁ ରଙ୍ଗ ଜଣା ପଡେ ନାହିଁ । ଗଣ୍ଡାର ଓଜନରେ 3 ଟନ୍ ଯାଏ ହୋଇଥାଏ ।

ଅତୀତ କାଳରେ ଭାରତୀୟ ବଡ଼ ଏକ ଶିଙ୍ଗ ଗଣ୍ଡାର ଗଙ୍ଗାନଦୀର ଉପତ୍ୟକା ଅଞ୍ଚଳରେ ବହୁ ସଂଖ୍ୟାରେ ବାସ କରୁଥିଲେ । ଏବେ ସେମାନେ ପଶ୍ଚିମବଙ୍ଗ, ଆସାମ ଓ ନେପାଳରେ ଅତି ଅଳ୍ପ ସଂଖ୍ୟାରେ ଦେଖାଯାନ୍ତି । ନେପାଳରେ ଗଣ୍ଡକ ନଦୀର ପୂର୍ବକୁ ଚିତାଓ୍ୱାନ୍ ଅଞ୍ଚଳରେ ଗଣ୍ଡାର ବାସ କରନ୍ତି । ଆସାମର କଜିରଙ୍ଗା ଅଭୟାରଣ୍ୟରେ ଗଣ୍ଡାର ସଂରକ୍ଷିତ ପ୍ରାଣୀ-ରୂପେ ବଞ୍ଚି ରହି ଅଛନ୍ତି । ଏମାନଙ୍କର ସଂଖ୍ୟା ପ୍ରାୟ 300 ହେବ (1969 ହିସାବ) ।

ଗଣ୍ଡାର ଜଳାଭୂମି ଓ ତୃଣଭୂମିରେ ବାସ କରିବାକୁ ଭଲ ପାଇଲେ ହେଁ ଜଙ୍ଗଲମୟ ଗଭୀର ଓ ସଂକୀର୍ଣ୍ଣ ଗିରିପଥପୂର୍ଣ୍ଣ ପାର୍ବତ୍ୟ ଅଞ୍ଚଳ ଏବଂ ନିମ୍ନ ପାର୍ବତ୍ୟ ଅରଣ୍ୟରେ ଦେଖାଯାନ୍ତି । ସାଧାରଣତଃ ଗଣ୍ଡାର ଏକାକୀ ରହେ । ଜଙ୍ଗଲର ସେଇ ଏକ ଅଞ୍ଚଳରେ ଏକାଧିକ ଗଣ୍ଡାର ବାସ କରିପାରନ୍ତି ; ମାତ୍ର ଅଲଗା ଅଲଗା ରହନ୍ତି । ଏହାର ପ୍ରଧାନ ଖାଦ୍ୟ ଘାସ । ନେପାଳରେ ବର୍ଷା ଋତୁରେ ଗଣ୍ଡାର ଚାଷ ହୋଇଥିବା କ୍ଷେତରେ ଆସି ଚରନ୍ତି । ନେପାଳର ତରାଇ ଅଞ୍ଚଳରେ ବହୁ ନଦୀ, ଝରଣା ପ୍ରବାହିତ । ସେ ଅଞ୍ଚଳରେ ଗଣ୍ଡାର ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ମଳତ୍ୟାଗ କରନ୍ତି । ଏଣୁ ସେମାନଙ୍କର ମଳ ଗଦା ଗଦା ହୋଇ ଭିନ୍ନ ଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । ମଳତ୍ୟାଗ ସ୍ଥାନକୁ ଆସିଲାବେଳେ ଗଣ୍ଡାର ପଛେଇ ପଛେଇ ଆସେ ଓ ଶିଙ୍ଗ ଲୋଲୁପୀ କ୍ରୂର ଶିକାରୀର ସହଜ ଶିକାର ହୋଇଥାଏ ।

ବର୍ଷର ସବୁ ସମୟରେ ଗଣ୍ଡାରମାନଙ୍କର ଯୌନ ମିଳନ ଘଟିପାରେ । ଉଭୟ ଅଣ୍ଡିରା ଓ ମାଈ "ଗରମ" ହୁଅନ୍ତି । ବର୍ଷସାରା ପ୍ରତି 46-48 ଦିନରେ ମାଈ "ଗରମ" ହୁଏ । ସେ ସମୟରେ ପୁରୁଷ ଗଣ୍ଡାର ଗରମ' ଥିଲେ ଯୌନ ମିଳନ ଘଟେ । $16\frac{1}{2}$ ରୁ 19 ମାସ ପରେ ସନ୍ତାନ ଜାତ ହୁଏ । ନେପାଳରେ ବିଶ୍ୱାସ ଏମାନଙ୍କର ଗର୍ଭଧାରଣ କାଳ ଏକବର୍ଷ ମାତ୍ର । ସ୍ୱର୍ଗତ ଇ. ପି. ଗି (E. P. Gee) ନାମକ ପ୍ରକୃତିତତ୍ତ୍ୱବିତ୍ ଆସାମର ଜଙ୍ଗଲରେ ସାତଥର ଗଣ୍ଡାରମାନଙ୍କର ଯୌନ ମିଳନ ଦେଖିଥିବାର ଲେଖି ଅଛନ୍ତି । ଏ ସମସ୍ତ ଫେବ୍ରୁୟାରୀ ଶେଷ ଓ ଏପ୍ରିଲ ଶେଷ ଭିତରେ ସେ ଲକ୍ଷ କରିଥିଲେ ।

ଆହୁରି ମଧ୍ୟ ଥରକର ଏପ୍ରିଲ 22 ତାରିଖରେ ସେ ସଦ୍ୟଜାତ ମୃତ ମାଈ ଗଣ୍ଡାର ଶାବକ ଦେଖିଥିବାର ଲେଖି ଅଛନ୍ତି । ଗୋଟିଏ ଗର୍ଭବତୀ ଗଣ୍ଡାରର

(ଚିତ୍ର ନଂ 95, ଅତୀତରେ ଭାରତୀୟ ଗଣ୍ଡାରର ବିସ୍ତୃତି । ଏବେ ମୁଖ୍ୟତଃ ସେମାନେ ତିନୋଟି ଅଞ୍ଚଳରେ ସୀମାବଦ୍ଧ । ଯଥା :— 1) କଜିରଙ୍ଗା; 2) ଜଲଦାପଡ଼ା; 3) ଚିଟାଓ୍ୱାନ୍ (ନେପାଳ) ।

ଗର୍ଭାଶୟରୁ ସଂଗୃହ ହୋଇଥିବା ପୂର୍ଣ୍ଣ ବର୍ଦ୍ଧିତ ଗଣ୍ଡାର ଛୁଆର ଉଚ୍ଚତା ଥିଲା 124 ସେଣ୍ଟିମିଟାର (4 ଫୁଟ 1 ଇଞ୍ଚ) ଓ ଓଜନ 54 କିଲୋଗ୍ରାମ (120 ପାଉଣ୍ଡ) ।

ଆକ୍ରମଣ କଲାବେଳେ ଆଫ୍ରିକାର ଗଣ୍ଡାର ଶିଙ୍ଗ ବ୍ୟବହାର କରନ୍ତି । ଭାରତୀୟ ଗଣ୍ଡାର ସାଧାରଣତଃ ତାହା କରେ ନାହିଁ । ସେ ତଳ ଓ ଉପର

ପାଟିରେ ଥିବା ବଡ଼ କର୍ତ୍ତନ-ଦନ୍ତ (incisor) ସାହାଯ୍ୟରେ କାମୁଡ଼ି ଧରି ଉପର ଆଡ଼କୁ ମୁଣ୍ଡକୁ ଝୁଙ୍କାଇଦିଏ । ଏଣୁ ତଳପାଟିର କର୍ତ୍ତନ ଦନ୍ତ ଦ୍ୱାରା ଶତ୍ରୁର ଅଙ୍ଗ ଫୁଟିଯାଏ । ଗୋଟିଏ ଦାନ୍ତର ଫୁଟା ବା ଭିଣା ଚିହ୍ନ ଦେଖି ଲୋକେ ଧାରଣା କରନ୍ତି ଗଣ୍ଡାର ଶିଙ୍ଗ ବ୍ୟବହାର କରିଥିବ ପରା । ଆଫ୍ରିକାର ଗଣ୍ଡାର ସେମାନଙ୍କର ଶିଙ୍ଗ ଗଛରେ ଘଷି ଗୋଳିଆ କରନ୍ତି । ମାତ୍ର ଭାରତୀୟ ଗଣ୍ଡାର ସେପରି କରେ ନାହିଁ । ପରଜୀବୀ ମକ୍ଷିକାମାନଙ୍କ ଦାଉରୁ ରକ୍ଷା ପାଇବା ପାଇଁ ଗଣ୍ଡାର ସବୁବେଳେ କାଦୁଅରେ ଚକଟି ହେଉଥାଏ ।

ଗଣ୍ଡାର ସମ୍ବନ୍ଧରେ ବହୁ କାହାଣୀ, କିମ୍ବଦନ୍ତୀ ଓ ବିଶ୍ୱାସ ରହିଛି । ଗୋଟିଏ ହେଲା, ଥରେ ଭଗବାନ ଶ୍ରୀକୃଷ୍ଣ ଭାବିଲେ ଯୁଦ୍ଧରେ ହାତୀ ବଦଳରେ ଗଣ୍ଡାର ବ୍ୟବହାର କଲେ କିପରି ହୁଅନ୍ତା । କାରଣ ହାତୀ ଉଚ୍ଚ ହୋଇ ଥିବାରୁ ମାହୁନ୍ତମାନେ ଶତ୍ରୁପକ୍ଷର ଧନୁଷମାନଙ୍କର ସହଜ ଶିକାର ହୁଅନ୍ତି । ଏଣୁ ଗଣ୍ଡାରକୁ ଯୁଦ୍ଧ ସାଞ୍ଜୁ ପିନ୍ଧାଇ ତାଙ୍କ ସମ୍ମୁଖକୁ ଅଣାଗଲା । ମାତ୍ର ସେ ଯେତେବେଳେ ଦେଖିଲେ ଏହା ଅତ୍ୟନ୍ତ ନିର୍ବୋଧ ଓ ଆଦେଶ ଗ୍ରହଣ କରିବାକୁ ଅକ୍ଷମ ସେତେବେଳେ ତାକୁ ଜଙ୍ଗଲକୁ ଘଉଡ଼ାଇ ଦିଆଗଲା । ସେଇଦିନୁ ତା' ଦେହରେ ସାଞ୍ଜୁ ରହିଯାଇଛି !

ମଧ୍ୟ ଯୁଗରେ ୟୁରୋପରେ ଗଣ୍ଡାରମାନଙ୍କର ଶିଙ୍ଗର ଔଷଧଗୁଣ ଅଛି ବୋଲି ଲୋକେ ବିଶ୍ୱାସ କରୁଥିଲେ । ଭାରତ, ନେପାଳ, ବର୍ମା, ଶ୍ୟାମ, ଚୀନ ପ୍ରଭୃତି ଦେଶରେ ଏବେ ମଧ୍ୟ ଗଣ୍ଡାର ଶିଙ୍ଗର ଔଷଧ ଗୁଣ ଅଛି ବୋଲି ବଦ୍ଧମୂଳ ଧାରଣା ଥିବାରୁ, ଗଣ୍ଡାରମାନଙ୍କର ଅବଲୋପ ଦ୍ରୁତ ବେଗରେ ଆଗେଇ ଚାଲିଛି । 30-40 ବର୍ଷ ପୂର୍ବେ ଗଣ୍ଡାର ଶିଙ୍ଗର ମୂଲ୍ୟ ସେହି ଓଜନର ସ୍ୱର୍ଣ୍ଣ ସହିତ ସମାନ ଥିଲା ; ଏବେ ଆହୁରି ମୂଲ୍ୟବାନ ହୋଇଛି । ଗଣ୍ଡାରର ଚମଡ଼ା ସାନ ସାନ ଖଣ୍ଡରେ କଟା ହୋଇ ଶୁଖା ହୋଇ ଏବଂ ମାଂସ ଖଣ୍ଡ ଶୁଖା ହୋଇ ବିକ୍ରୀ ହୁଏ । ଏପରିକି ତା'ର ମୂତ୍ର ଭୂତ ଛଡ଼ାଇବାରେ ସାହାଯ୍ୟ କରେ ବୋଲି ବିଶ୍ୱାସ ରହିଛି । ପୂର୍ବ ଏସିଆରେ ଆଗ କାଳରେ ଲୋକେ ବିଶ୍ୱାସ କରୁଥିଲେ ଯେ ଗଣ୍ଡାର ଶିଙ୍ଗରେ ତିଆରି ପାନ ପାତ୍ରରେ ପାନୀୟ ପରଷିଲେ, ସେଥିରେ ବିଷଥିଲେ ପାତ୍ର ଦୁଇଫାଳ ହୋଇଯିବ ।

ଏଥିପାଇଁ ରାଜପ୍ରାସାଦମାନଙ୍କରେ ଗଣ୍ଡାର ଶିଙ୍ଗର ପାନପାତ୍ର ବ୍ୟବହୃତ ହେଉଥିଲା । ଆହୁରି ବିଶ୍ୱାସ ଥିଲା, ଗର୍ଭବେଦନା ପାଉଥିବା ନାରୀର ଶଯ୍ୟା ତଳେ ଗଣ୍ଡାର ଶିଙ୍ଗ ରଖିଦେଲେ ସୁଖ-ପ୍ରସବ ହୁଏ । ଏ ସବୁଥିରେ କୌଣସି ସତ୍ୟତା ଥିଲା ପରି ଜଣାପଡ଼େ ନାହିଁ ।

ଭାରତୀୟ ଗଣ୍ଡାରର ବୈଜ୍ଞାନିକ ନାମ – Rhinoceros unicornis Linnaeus । ହିନ୍ଦି–ଗୈଣ୍ଡା, ଗର୍ଗାଦାନ ; ମାରଠି–ଗେଣ୍ଡା ।



## ଅଷ୍ଟାଦଶ ଅଧ୍ୟାୟ

# ଗୋ-ଛାଗଳାଦି ପ୍ରାଣୀ

ଗାଈ, ମେଷ ଛାଗ, ଏଣ୍ଟିଲୋପ, ହରିଣ ଓ ଶୂକର—ଏ ସମସ୍ତ ଖୁରଯୁକ୍ତ ପ୍ରାଣୀ ଏବଂ ସମକ୍ଷୁରିକ ( Artiodactyla ) ବର୍ଗଭୁକ୍ତ । ଜିରାଫ, ଓଟ, ଜଳହସ୍ତୀ ( Hippopotamus ) ଆଦି ପ୍ରାଣୀ ମଧ୍ୟ ଏହି ବର୍ଗର । ସମକ୍ଷୁରିକ ବର୍ଗ ଏକାଧିକ ବଂଶରେ ବିଭକ୍ତ । ତନ୍ମଧ୍ୟରେ ବୋଭିଡି ( Bovidae ) ବଂଶ ବୃହତ୍ତମ । ଗୋ, ମେଷ, ଛାଗଳ, ଏଣ୍ଟିଲୋପ ଓ ମୃଗ ଏହି ବଂଶର ।

ଗୟଳ, ସାଇଙ୍ଗ୍ Banteng or Tsaine ), ଚମରୀଗାଈ ( yak ) ଓ ବନ୍ୟ ମହିଷ, ବୋଭିନି ( Bovinae ) ବା ବନ୍ୟଗାଭୀ ( Wild oxen ) ଉପବଂଶ ଭୁକ୍ତ । ଏହି ଉପବଂଶର ପ୍ରାଣୀମାନଙ୍କର ପ୍ରଧାନ ଲକ୍ଷଣ ଗୁଡ଼ିକ ହେଲ—ଏମାନଙ୍କର ଦେହସ୍ଥୂଳ, ଭରି, ବେକ ଅଳ୍ପ ଲମ୍ବା ଓ ବେକ ତଳେ ଗଳ କମ୍ବଳ ଥାଏ । ଥୋମଣୀ ଓସାରିଆ, ଲୋମହୀନ ଏବଂ ସବୁବେଳେ ଓଦାରହେ । ଏମାନଙ୍କର ଲୋତକ ଗ୍ରନ୍ଥି ( Tear glands ) ଓ ଆନ୍ତଃଅଙ୍ଗୁଳୀୟ (inter-digital) ଗ୍ରନ୍ଥି ନାହିଁ । ଶିଙ୍ଗ ଚମ୍ପା ଏବଂ ଚିକ୍କଣ ମୂଳ ଅଂଶରେ ଖାବଡା ଖାବଡ଼ା ହୋଇପାରେ । ଲାଞ୍ଜ ଲମ୍ବା, ସରୁ, ଓ ଅଗରେ ଗୋଛାଏ କେଶଥାଏ । ଗୋଟିଏ ପହ୍ଲା ବା ଦୁଗ୍‌ଧଧାର ( udder ) ଓ ଚାରିଟି ସ୍ତନବୃନ୍ତ ( teat ) ଥାଏ । ପହ୍ଲା ପଛ ଦୁଇଗୋଡ଼ର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । ଏମାନଙ୍କର ହମ୍ବା ଅନୁଚ୍ଚ । ବନ୍ୟ ଗାଭୀମାନଙ୍କର ସାଧାରଣ ଆକୃତି ଗୃହପାଳିତ ଗାଈ ମଇଁଷିଙ୍କ ପରି; ମାତ୍ର ସେମାନଙ୍କର ଗଠନ ଅଧିକ ବଳିଷ୍ଠ ଓ ସ୍ଥୂଳ । ମେଷ, ଛାଗଳ ଓ ଛାଗଳ ଏଣ୍ଟିଲୋପ ( goat-antelope ) କାପ୍ରିନି ( Caprinae ) ଉପବଂଶର ।

ଏମାନଙ୍କର ମଧ୍ୟ ସାଧାରଣ ଆକୃତି ସେହି ସେହି ଗୃହପାଳିତ ପ୍ରାଣୀଙ୍କପରି । ବନ୍ୟ ଗୋ ମହିଷ ଏବଂ ମେଷ ଛାଗଳ ଗୃହପାଳିତ ପ୍ରାଣୀଙ୍କ ତୁଳନାରେ ଆକାର ଓ ଓଜନରେ ବଡ଼ ହେଲେ ମଧ୍ୟ ସେମାନେ ଅଧିକ କ୍ଷିପ୍ର । ଗୟଳ ଓ ଚମରୀ ଗାଈ ପାହାଡ଼ ପର୍ବତ ଚଢ଼ନ୍ତି ଏବଂ ବନ୍ୟ ମେଷ ଓ ଛାଗଳ ଉଚ୍ଚ ପାହାଡ଼ ଉପରେ ଏ ପଥରରୁ ସେ ପଥରକୁ ଚଢି ଗତି କରି ପାରନ୍ତି ।

ମାଂସାଶୀ ପ୍ରାଣୀମାନଙ୍କର ନଖ ସେମାନଙ୍କୁ ଖାଦ୍ୟ-ପ୍ରାଣୀକୁ ଆକ୍ରମଣ କରିବାପାଇଁ ଏବଂ ମର୍କଟ ଓ ଲାଙ୍ଗୁଡ଼ହୀନ ବାନର (ape) ମାନଙ୍କର ହସ୍ତ ଓ ପଦ ବୃକ୍ଷଶାଖା ଧରିବା ଲାଗି ଉପଯୋଗୀ । ମାତ୍ର ସବୁ ଖୁରଥିବା ପ୍ରାଣୀ ମାନଙ୍କର ଖୁର କେବଳ ଗୋଟିଏ କାର୍ଯ୍ୟଲାଗି ଉପଯୋଗୀ । ତାହା ହେଉଛି ଦେହକୁ ବହନ କରି ଗତି କରିବା । ପଦରେ ଶିଙ୍ଗନିର୍ମିତ ଖୁର, ଅବୟବର ସ୍ୱତନ୍ତ୍ର ଗଠନ ଏବଂ ଗତିର ନିଜସ୍ୱ ରୀତି ଯୋଗୁ ସେମାନେ କ୍ଷିପ୍ର ବେଗରେ ବନ୍ଧୁର ଭୂମିରେ ଗତି କରି ପାରନ୍ତି । ସବୁ ଖୁରଥିବା ପ୍ରାଣୀ ପଦାଙ୍ଗୁଳିର ଟିପଉପରେ ଭରଦେଇ ଚାଲନ୍ତି । ଏହା ଫଳରେ ପଦର ପୂର୍ଣ ଲମ୍ବ କାର୍ଯ୍ୟକାରୀ ହୁଏ, ପଦକ୍ଷେପ ଦୀର୍ଘହୁଏ ଏବଂ ବେଗ ତ୍ୱରାନ୍ୱିତ ହୁଏ । ଯେତେ ବାଧା କମ୍ ହେବ, ଗତି ସେତେ ତ୍ୱରିତ ହେବ । ଖୁରଯୁକ୍ତ ପ୍ରାଣୀମାନଙ୍କର ପଦାଙ୍ଗୁଳି ସଂଖ୍ୟା କମ୍, ତା' ସାଙ୍ଗକୁ ଅଙ୍ଗୁଳିର ଟିପ ଭୂମି ସ୍ପର୍ଶ କରୁଥିବାରୁ ଭୂମି ସହିତ ସଂଘର୍ଷ କମ ହୁଏ । ଫଳରେ ପ୍ରତିରୋଧ ଅପେକ୍ଷାକୃତ କମ୍ ହୁଏ । କୌଣସି ଖୁରଯୁକ୍ତ ପ୍ରାଣୀର କାର୍ଯ୍ୟକାରୀ ଅଙ୍ଗୁଳିର ସଂଖ୍ୟା 4 ରୁ ଅଧିକ ନୁହେଁ; କାହାରି କାହାରି ତିନୋଟି, ଅଧିକାଂଶଙ୍କର ଦୁଇଟି ଏବଂ ଘୋଟକର ମାତ୍ର ଗୋଟିଏ ।

ଆମ୍ଭେମାନେ ପୂର୍ବେ ଦେଖିଅଛୁଁ ଗଣ୍ଡାର, ଘୋଡ଼ା ଓ ଟେପିର୍ ମାନଙ୍କର ପଦରେ ତୃତୀୟ ବା ମଧ୍ୟାଙ୍ଗୁଳିର ବର୍ଦ୍ଧନ ଏବଂ ପ୍ରସାରଣ ଘଟିଅଛି । କିନ୍ତୁ ଅଧିକାଂଶ ସଖୁର ପ୍ରାଣୀ ଯଥା—ଗୋମହିଷାଦି ପ୍ରାଣୀ, ମେଣ୍ଢା, ଛେଳି, ଏଣ୍ଟିଲୋପ, ହରିଣ, ଓଟ, ଶୂକର ଓ ଜଳହସ୍ତୀ ( Hippopotamus ) ମାନଙ୍କର ତୃତୀୟ ଓ ଚତୁର୍ଥ ପଦାଙ୍ଗୁଳିର ବର୍ଦ୍ଧନ ଓ ପ୍ରସାରଣ ଘଟିଅଛି । ଅନ୍ୟ ଅଙ୍ଗୁଳି ଗୁଡ଼ିକ ଛୋଟ ହୋଇ ଯାଇଛି ବା ଲୋପ ପାଇଅଛି । ଏହି ସମସ୍ତ ପ୍ରାଣୀମାନଙ୍କର ପ୍ରଥମ ବା ସବୁଠାରୁ ଭିତର ପାଖର ଅଙ୍ଗୁଳିନାହିଁ ।

ଦ୍ୱିତୀୟ ଓ ପଞ୍ଚମ ବା ସବୁଠାରୁ ବାହାର ଆଡକୁ ଥିବା ଅଙ୍ଗୁଳି ନାହିଁ ବା ଖୁବ୍ ଛୋଟ ଗାଈ, ଏଣ୍ଟିଲୋପ, ହରିଣ ଓ ଘୁଷୁରି ଆଦି ପ୍ରାଣୀଙ୍କର ଦ୍ୱିତୀୟ ଓ ପଞ୍ଚମାଙ୍ଗୁଳି "ନଗନ୍ୟ ପଦାଙ୍ଗୁଳି" ("petty toes") ରୂପେ ବିଦ୍ୟମାନ। ତୃତୀୟ ଓ ଚତୁର୍ଥ ପଦାଙ୍ଗୁଳି ଉତ୍ତମ ରୂପେ ବର୍ଦ୍ଧିତ, ସମଲମ୍ବ ଓ ସମଆକାର, ସମ୍ପୂର୍ଣ୍ଣ ରୂପେ ପ୍ରତିସମ ( Symmetrical ) ଏବଂ କେନ୍ଦ୍ରରେଖା (centre-line ) ସେ ଦୁଇ ଅଙ୍ଗୁଳି ମଧ୍ୟରେ ଅବସ୍ଥିତ । ସେଥିପାଇଁ ଏହି ପ୍ରାଣୀମାନଙ୍କୁ "ଦ୍ୱିବିଭାଜିତ ସଖୁର ପ୍ରାଣୀ" ( Cloven-hoofed animals ) ବୋଲଯାଏ । ଯା ସାଙ୍ଗକୁ ଏମାନଙ୍କର ଆଉ ଏକ ବିଶେଷତ୍ୱ ଅଛି । ମଝି ଦୁଇକାର୍ଯ୍ୟକାରୀ ଅଙ୍ଗୁଳି ସହିତ ଦୁଇପାଖର ଦୁଇଟି ଅଙ୍ଗୁଳିର ହାଡ଼ ମିଶିଯିବା ଫଳରେ ଗୋଟିଏ ଅସ୍ଥି ଗଠିତ ହୋଇଥାଏ । ତାକୁ "କମାଣ ଅସ୍ଥି" ( 'Cannon bone') କହନ୍ତି । ପଦର ଅସ୍ଥିରେ ଏପରି ପରିବର୍ତ୍ତନ ଓ ବିବର୍ଦ୍ଧନ ଯୋଗୁ ମଣିବନ୍ଧ ( wrist ) ଓ ଗୁଳ୍ଫ ( ankle )ର ଅସ୍ଥି ଗୁଡ଼ିକର ବୃଦ୍ଧି ଓ ଗ୍ରନ୍ଥନ ( articulation ) ତଦନୁରୂପ ହୋଇଥାଏ । ଦ୍ରୁତ ପଦକ୍ଷେପ ନିମିତ୍ତ ଏ ସବୁ ସହାୟକ । କାରଣ, ଏହା ଫଳରେ ପଦର ଅସ୍ଥି ବଳିଷ୍ଠ ହୁଏ ଓ ଦ୍ରୁତଗତିବେଳେ ଦେହର ଗୁରୁଭାରକୁ ସମ୍ଭାଳି ନେଇ ପାରେ । ଖୁର ଦ୍ୱିଫାଳିଆ ( Cloven hooves ) ହୋଇଥିବାରୁ ପାଦ ତଳ୍ପର ଭୂମକୁ ଅଧିକ ଦୃଢଭାବେ କାବୁଡ଼ି ଧରିପାରେ, ନରମ କାଦୁଆ ମାଟିରେ ଖୁର ପ୍ରସାରିତ ହୋଇ ତଳକୁ ଦବିଯାଏ, ପୁଣ ପାଦ ଉଠାଇନେଲେ ଖୁରର ଦୁଇଫାଳ ମିଶିଯାଏ । ଖୁରର ଏଭଳି ବ୍ୟବସ୍ଥା ଜଳାଭୂମିରେ ଗତିଲାଗି ସହାୟକ । ପ୍ରାଣୀର ବାସ ଓ ଅଭ୍ୟାସ ଅନୁସାରେ ଖୁରର ଆୟତନ ଓ ସନ୍ନିବେଶରେ ପ୍ରଭେଦ ଦେଖିବାକୁ ମିଳେ । ବନ୍ୟ ମହିଷ ଜଳାଭୂମିରେ ବାସକରେ : ଏଣୁ ତା'ର ଖୁର ବଡ଼, ଓସାରିଆ, ଓ ତେରଛା । ଗୟଳ ପାହାଡ଼ ପର୍ବତରେ ବାସକରେ । ଶକ୍ତ ପଥୁରିଆ ଭୂମିରେ ଚାଲିପାରିବା ଲାଗି ତା'ର ଖୁରଛୋଟ ଓ ଘନ ସନ୍ନିବିଷ୍ଟ । ମୋଟାମୋଟି କହିବାକୁ ଗଲେ ଗୋ-ଛାଗଜାତି ପ୍ରାଣୀ-ମାନଙ୍କର ଅବୟବ ସଦମ୍ଭଗ୍ରଳି ଓ ଦ୍ରୁତଗତି ଲାଗି ଉଦ୍ଦିଷ୍ଟ । ଏମାନଙ୍କ ଉପରେ ଚଢ଼ାଉ କରିବା ପାଇଁ ମାଂସାଶୀ ପ୍ରାଣୀମାନଙ୍କର ଅଭାବ ନ ଥାଏ । ପ୍ରାଣୀଟି ବଡ଼ ହୋଇଥିଲେ, ହିଂସ୍ର ଜନ୍ତୁଠାରୁ ଆତ୍ମରକ୍ଷା କରିବା ପାଇଁ, ତା'ର ଏକମାତ୍ର

ସମ୍ପନ୍ନ ଦ୍ରୁତଗତି । ସେଥିପାଇଁ ବନ୍ଧୁର ବା କର୍ଦ୍ଦମାକ୍ତ ଭୂମିରେ ଦୀର୍ଘପଥ ଗତିଲଗି ସେମାନଙ୍କର ଖୁର ଗଢା । ଖାଦ୍ୟ ଅନ୍ୱେଷଣରେ ଋତୁ ଅନୁସାରେ ଅଧିକାଂଶ ବନ୍ୟ ଗୋ-ଛାଗଜାତି ପ୍ରାଣୀଙ୍କୁ ବହୁପଥ ଭ୍ରମଣ କରିବାକୁ ପଡ଼ିଥାଏ ।

ଦନ୍ତ—ଗାଈ, ମେଣ୍ଢା, ଛେଳି ଆଦି ପ୍ରାଣୀଙ୍କର ପ୍ରଧାନ ଖାଦ୍ୟ ଘାସ ଓ ପତ୍ର । ଖାଦ୍ୟକୁ ପାକ ଯୋଗ୍ୟ କରିବା ଲଗି ତାକୁ ଦୀର୍ଘ ସମୟ ଧରି ପେଷଣ କରିବା ଆବଶ୍ୟକ ହୁଏ । ସେଥିପାଇଁ ସେମାନଙ୍କର ପେଷଣ ଦନ୍ତ




[ଚିତ୍ର ନଂ ୨୬, କେତୋଟି ସ୍ତନ୍ୟପାୟୀ ପ୍ରାଣୀର କରେଟି ।]

ତଦନୁସାରେ ଗଠିତ । ଦନ୍ତଶିଖର ଓସାରିଆ ଓ ସେଥିରେ ଶକ୍ତ ଏନାମେଲର ଭଙ୍ଗ ଓ ହିଡ଼ମାନ ରହିଥାଏ । ଭଙ୍ଗ ଓ ହିଡର ଦୁଇ କଡରେ ଅପେକ୍ଷାକୃତ କୋମଳ ଦାନ୍ତାସ୍ଥି ( dentine ) ସ୍ତରଥାଏ । ଶକ୍ତ ଏନାମେଲ ଅତି ଧୀର ମନ୍ଥର ଗତିରେ ଏବଂ କୋମଳ ଦନ୍ତାସ୍ଥି ସ୍ତର ଶୀଘ୍ର ଶୀଘ୍ର କ୍ଷୟ ହେଉଥିବାରୁ

ଦନ୍ତର ପେଷଣ ଉପଯୋଗୀତା ଅପ୍ରତିହତ ରହେ । ପେଷଣ ଦନ୍ତର ଏଭଳି ବ୍ୟବସ୍ଥା ପୂର୍ବେ ଆମ୍ଭେମାନେ କୃନ୍ତକ ପ୍ରାଣୀ (ରଡ଼େଣ୍ଟ)ମାନଙ୍କଠାରେ ଦେଖିଅଛୁଁ ।

ଗୋମେଷାଦି ପ୍ରାଣୀମାନଙ୍କର ଛାମୁଦାନ୍ତ ମଧ୍ୟ ସେମାନଙ୍କର ଖାଦ୍ୟାନୁଯାୟୀ ଉପଯୁକ୍ତ । ଏହି ବଂଶ (ବୋଭିଡ଼ି)ର ସବୁ ପ୍ରାଣୀମାନଙ୍କର ଉପର ପାଟିରେ କର୍ତ୍ତନ ଦନ୍ତ (incisor teeth) ନ ଥାଏ । ସେ ସ୍ଥାନରେ ଏକ କୋମଳ ଗଦି ଥାଏ । ଆହୁରି ମଧ୍ୟ, ଉପର ପାଟିରେ ଶ୍ୱାଦନ୍ତ (canine teeth) ଅତି କ୍ଷୁଦ୍ର ବା ନ ଥାଏ । ଅପର ପକ୍ଷରେ ତଳପାଟିରେ କର୍ତ୍ତନ ଓ ଶ୍ୱାଦନ୍ତ ବିଦ୍ୟମାନ । ଶ୍ୱାଦନ୍ତ କର୍ତ୍ତନ ଦନ୍ତର ଅତି ପାଖରେ ଅବସ୍ଥିତ ଏବଂ ଉଭୟଙ୍କ ଆକାର ଏକାପରି । ଉଭୟପ୍ରକାର ଦନ୍ତ ଅର୍ଥାତ୍




ରୋମନ୍ଥକ ପ୍ରାଣୀର ପାକସ୍ଥଳୀ

—— ପ୍ରଥମ ପରିପାକ

---- ଦ୍ୱିତୀୟ ପରିପାକ

[ଚିତ୍ର ନଂ 97, ରୋମନ୍ଥକ ପ୍ରାଣୀର ପାକସ୍ଥଳୀ—1) ମୁଖ ଦେଇ ଖାଦ୍ୟ ନିଗଳ (oesophagus) ମଧ୍ୟରେ ପ୍ରବେଶ କରେ ; 2) ଉଦରାର୍ଦ୍ଧିକ (rumen=paunch=ପାକସ୍ଥଳୀର ପ୍ରଥମ କୋଠରୀ)ରେ ଖାଦ୍ୟରେ ଥିବା ସେଲ୍ୟୁଲୋଜ୍‌କୁ ବ୍ୟାକ୍‌ଟିରିଆ ହଜମ କରି ଦିଅନ୍ତି ; ତା'ପରେ ଖାଦ୍ୟ ଦ୍ୱିତୀୟ ପରିପାକ ପାଇଁ ପାଟିକୁ ଫେରିଆସେ ; 3) ପାଗୁଳି କରାଯାଇଥିବା ଖାଦ୍ୟ ନିଗଳ ଦେଇ ମଧୁଚକ୍ର (reticulum=honeycomb=ଦ୍ୱିତୀୟ କୋଠରୀ)କୁ ଆସେ ; 4) ତୃତୀୟ କୋଠରୀରେ ଖାଦ୍ୟ ଛାଣି ହୋଇଯାଏ ଓ ଜଳୀୟାଂଶ ଅଲଗା ହୋଇଯାଏ , 5) ପ୍ରକୃତ ପାକସ୍ଥଳୀ (abomasum=true stomach)ରେ ପ୍ରୋଟିନ୍ ଖାଦ୍ୟ ଏନ୍‌ଜାଇମ୍‌ର କ୍ରିୟା ଦ୍ୱାରା ହଜମ ହୁଏ ; 6) ଏହା ପରେ କ୍ଷୁଦ୍ରାନ୍ତ୍ରରେ ଖାଦ୍ୟ ପରିପାକ ହୁଏ ।]

କର୍ତ୍ତନ ଦନ୍ତ ଓ ଶ୍ୱାଦନ୍ତ ତୃଣକୁ କାଟିବାରେ ଗୋମେଷାଦି ପ୍ରାଣୀଙ୍କୁ ସହାୟ ହୁଅନ୍ତି । ଜିଭ ଘାସପତ୍ରକୁ ପାଟି ଭିତରକୁ ଟାଣି ଆଣେ ।

ଗୋମେଷାଦି ପ୍ରାଣୀ ବେଶ୍ ସ୍ଥୂଳ । ତୃଣଭୋଜୀ ହୋଇଥିବାରୁ ଶରୀର ଧାରଣ ଲାଗି ସେମାନଙ୍କର ବହୁତ ପରିମାଣ ଖାଦ୍ୟ ଆବଶ୍ୟକ ହୁଏ । ଏମାନଙ୍କର ଖାଦ୍ୟ ତନ୍ତୁବହୁଳ । ପୁଣି ସେମାନଙ୍କୁ ଆକ୍ରମଣ କରିବାଲାଗି ହିଂସ୍ର ପ୍ରାଣୀମାନଙ୍କର ଅଭାବ ନ ଥାଏ । ଏଣୁ ଖାଦ୍ୟ ଯେତେ କର୍କଶ ହୋଇଥାଉ ପଛକେ ସୀମିତ ସମୟ ଭିତରେ ସେମାନଙ୍କୁ ତାହା ଖାଇବାକୁ ପଡ଼ିବ । ପ୍ରକୃତି ସେଥିପାଇଁ ଏମାନଙ୍କ ଠାରେ ଏକ ବ୍ୟବସ୍ଥା ଖଞ୍ଜିଛି । ଅପେକ୍ଷାକୃତ ଅଳ୍ପ ସମୟ ମଧ୍ୟରେ ସେମାନେ ନିଜର କିଛି କ୍ଷତି ନ କରି ବହୁ ପରିମାଣ ଖାଦ୍ୟ ଉଦରସାତ୍ କରିପାରନ୍ତି । ନିଭୃତ ସ୍ଥାନରେ ନିରାପଦରେ ବିଶ୍ରାମ କରୁଥିବା ସମୟରେ ଗିଳିଥିବା ଖାଦ୍ୟକୁ ପାଟିକୁ ଆଣି ଭଲଭାବେ ରୋମନ୍ଥନ କରି ଖାଆନ୍ତି । ଏଥିପାଇଁ ଏମାନଙ୍କୁ 'ରୋମନ୍ଥକ ପ୍ରାଣୀ' (ruminant) ବୋଲାଯାଏ । ସେମାନଙ୍କର ପାକସ୍ଥଳୀ ତଦନୁସାରେ ଗଠିତ ।

<u>ପାକସ୍ଥଳୀ</u> – ରୋମନ୍ଥକ ପ୍ରାଣୀମାନଙ୍କର ପାକସ୍ଥଳୀରେ ଚାରୋଟି ସ୍ୱତନ୍ତ୍ର କୋଠରୀ ଥାଏ । ପ୍ରଥମ କୋଠରୀ ସର୍ବାପେକ୍ଷା ବଡ ଓ ତାକୁ ପ୍ରଥମ ଉଦର (pouch) ବୋଲାଯାଏ । ଏହି ପ୍ରାଣୀମାନେ ଯେଉଁ ଖାଦ୍ୟକୁ ବେଗେ ବେଗେ ଗିଳି ପକାଇଥାନ୍ତି, ତାହା ଯାଇ ପ୍ରଥମ ଉଦରରେ ଜମା ହୋଇ ରହିଥାଏ ଓ ସେଠାରେ ଟିକିଏ ନରମ ହୁଏ । ବିଶ୍ରାମ କରୁଥିବା ସମୟରେ ତାହା ଗୋଳା ଗୋଳା ହୋଇ ପାଟିକୁ ଫେରିଆସେ । ଗାଈ ବିଶ୍ରାମ କରୁଥିବା ସମୟରେ ତା' ପାଟିରେ ପାକୁଳି ଚାଲିଥାଏ । ଗୋଟିଏ ଗୋଳାକୁ ରୋମନ୍ଥନ କରି ଗିଳିଲା ପରେ ଆଉ ଟେକାଏ ଖାଦ୍ୟ ପାଟିକୁ ଆସେ । ଏହିପରି ଚାଲିଥାଏ । ଖାଦ୍ୟ ଭଲଭାବେ ପେଷି ହୋଇ ପାକସ୍ଥଳୀର ଦ୍ୱିତୀୟ କୋଠରୀକୁ ଯାଏ । ଏହି କୋଠରୀକୁ "ଜାଲକ-କୋଠରୀ" (reticulum) ବା ମଧୁଚକ୍ର ('honeycomb') କହନ୍ତି । ଏପରି କାରଣ ଏହି ଯେ ଦ୍ୱିତୀୟ କୋଠରୀର ଭିତ୍ତି ମହୁଫେଣା ପରି ବହୁ କୋଷଯୁକ୍ତ । ଏଠାରେ ଖାଦ୍ୟ ଅଳ୍ପ ପରିବର୍ତ୍ତିତ ହୋଇ ଗ୍ରାସନଳୀ (gullet) ବାଟେ ଉପର ଆଡ଼କୁ ଉଠି ପୁଣି ତଳକୁ ଖସି ତୃତୀୟ କୋଠରୀରେ ପହଞ୍ଚେ । ତାପରେ ଖାଦ୍ୟ

ଚତୁର୍ଥ କୋଠରୀକୁ ଯାଏ । ଖାଦ୍ୟର ପ୍ରକୃତ ପାକକ୍ରିୟା ଶେଷ ବା ଚତୁର୍ଥ କୋଠରୀରେ ହୋଇଥାଏ । ଏଣ୍ଟିଲୋପ ଓ ମୃଗମାନଙ୍କର ପାକସ୍ଥଳୀ ମଧ୍ୟ ଏହିପରି ଜଟିଳ । ଗୋରୁ, ମହିଷ, ମେଣ୍ଢା ଓ ଛେଳିପରି ସେମାନେ ମଧ୍ୟ ରୋମନ୍ଥକ ପ୍ରାଣୀ । ଓଟ ଓ ଖୁରଣ୍ଡି (chevrotain) ମଧ୍ୟ ଖାଦ୍ୟକୁ ରୋମନ୍ଥନ କରନ୍ତି ; ମାତ୍ର ସେମାନଙ୍କର ରୋମନ୍ଥନ ଭିନ୍ନ ପ୍ରକାରର । ସ୍ମରଣ ରଖିବାକୁ ହେବ ଯେ ପ୍ରକୃତ ରୋମନ୍ଥକ ପ୍ରାଣୀମାନଙ୍କର ଉପର ପାଟିରେ କର୍ତ୍ତନ ଦନ୍ତ ନ ଥାଏ , ପାକସ୍ଥଳୀ ଚାରି କୋଠରୀ ବିଶିଷ୍ଟ ଏବଂ ମୁଣ୍ଡରେ ଶିଙ୍ଗ ଥାଏ । ଖୁରଯୁକ୍ତ ପ୍ରାଣୀ ହୋଇଥିଲେ ବି ମୁଣ୍ଡରେ ଯଦି ପ୍ରକୃତ ଶିଙ୍ଗ ନାହିଁ (ଗଣ୍ଡାର ମୁଣ୍ଡର ଶିଙ୍ଗ ପ୍ରକୃତ ଶିଙ୍ଗ ନୁହେଁ,) ତେବେ ସେ ପ୍ରାଣୀ ରୋମନ୍ଥକ ନୁହେଁ ।




[ଚିତ୍ର ନଂ 98, ଗୋମେଷାଦି (ବାମ ଚିତ୍ର) ଓ ହରିଣ ଶିଙ୍ଗ (ଡାହାଣ ଚିତ୍ର) ମଧ୍ୟରେ ଗଠନମୂଳକ ପାର୍ଥକ୍ୟ ।]

<u>ଶିଙ୍ଗ</u> – ବୋଭିନି (Bovinae) ଉପବଂଶର ପ୍ରାଣୀମାନଙ୍କର ଶିଙ୍ଗ ଦୁଇଟି ଅଂଶରେ ଗଠିତ । ଗୋଟିଏ ହେଲା, କରୋଟି (skull)ରୁ ବାହାରିଥିବା ଅସ୍ଥିମଜ୍ଜ ଓ ଦ୍ଵିତୀୟଟି ହେଉଛି ତା ଉପରେ ରହିଥିବା ଖୋଳ ବା ପ୍ରକୃତ ଶିଙ୍ଗ ।

ଶିଙ୍ଗର ଏହି ଖୋଳ ଫମ୍ପା ଓ ଅସ୍ଥିମଜ୍ଜଠାରୁ ପୁରାପୂରି ଖସାଇ ଦିଆଯାଇ ପାରେ । ସେଥିପାଇଁ ଏହି ପ୍ରାଣୀମାନଙ୍କୁ ଫମ୍ପା ଶିଙ୍ଗ ରୋମନ୍ଥକ ପ୍ରାଣୀ (hollow-horned ruminants) ବୋଲଯାଏ । ହରିଣମାନଙ୍କୁ ସାର୍ଭିନି (Cervinae) ଉପବଂଶ ଭୁକ୍ତ କରଯାଏ । ଏମାନଙ୍କର ଶିଙ୍ଗ ନିଦା ଓ ଏମାନେ ମଧ୍ୟ ରୋମନ୍ଥକ ପ୍ରାଣୀ । ଏଣୁ ରୋମନ୍ଥକ ପ୍ରାଣୀ ଦୁଇ ପ୍ରକାର, ଗୋଟିଏ ଫମ୍ପା ଶିଙ୍ଗ (Bovinae) ଓ ଅପରଟି ନିଦାଶିଙ୍ଗ (Cervinae) । ହରିଣମାନଙ୍କର ଶିଙ୍ଗ ସାମୟିକଭାବେ ଝଡ଼ିପଡ଼େ; ମାତ୍ର ଗୋ-ମହିଷାଦି ପ୍ରାଣୀ-ମାନଙ୍କର (Bovinae) ଶିଙ୍ଗ ଜୀବନସାରା ବଢ଼ୁଥାଏ । ବୋଭିଡ଼ି ବଂଶ ପ୍ରାଣୀଙ୍କର ଶିଙ୍ଗ ବୃଦ୍ଧି ପାଉଥିବା ସମୟରେ ନୂଆ ସ୍ତରର ଗଠନ ସଙ୍ଗେ ସଙ୍ଗେ ପୁରୁଣାସ୍ତର ଛାଲ ଉଠିଯିବାପରି ଉଠିଯାଏ । ଗୋ-ମହିଷାଦି ପ୍ରାଣୀ ମାନଙ୍କର ଅଣ୍ଡିରା ଓ ମାଈ ଉଭୟଙ୍କର ଶିଙ୍ଗଥାଏ । ଲିଙ୍ଗ ଭେଦରେ ଶିଙ୍ଗର ଆକାର ଓ ପ୍ରକାରରେ ପ୍ରଭେଦ ନ ଥାଏ । ସାଧାରଣତଃ କରେଟିର ଶୀର୍ଷ ଅଂଶରୁ ତାହା ବାହାରି ଊର୍ଦ୍ଧ୍ୱାଧିକ ବାହାର ଆଡ଼କୁ ମେଲିଥାଏ; ତା'ପରେ ଉପର ଆଡ଼କୁ ବଙ୍କାଇଥାଏ ଏବଂ ବେଳେବେଳେ ଅଗ୍ରଭାଗ ଭିତର ଆଡ଼କୁ ବଙ୍କେଇ ହୋଇ ରହିଥାଏ । ଅପର ପକ୍ଷରେ ମେଣ୍ଢା ଓ ଛେଳି ମାନଙ୍କର ଶିଙ୍ଗ ଘୁରଣିଆ ଭାବେ ଆବର୍ତ୍ତିତ ହୋଇଥାଏ ନଚେତ୍ ସେଥିରେ ସୁସ୍ପଷ୍ଟ ଗଣ୍ଠି ବା କୁଞ୍ଚିତ ହିଡ ଥାଏ । ଉଭୟ ଅଣ୍ଡିରା ଓ ମାଈ ମେଣ୍ଢାଛେଳିଙ୍କର ଶିଙ୍ଗଥାଏ; ମାତ୍ର ସାଧାରଣତଃ ଅଣ୍ଡିରାମାନଙ୍କର ଶିଙ୍ଗ ଲମ୍ବ ଓ ଆକାରରେ ବଡ଼ ।

ଅତୀତ-ଉତ୍ତର ଏସିଆ ଗୋଜାତିର ଆଦି ଭୂମିବୋଲି ବିଶେଷଜ୍ଞ ମାନଙ୍କର ବିଶ୍ୱାସ । ଏଠାରୁ ସେମାନେ ୟୁରୋପ ଓ ବେ(ହ)ରିଙ୍ଗ ପ୍ରଣାଳୀ ( Behring Straits ) ଦେଇ ଉତ୍ତର ଆମେରିକାକୁ ବିସ୍ତୃତି ଲାଭ କରିଥିଲେ । ପରବର୍ତ୍ତୀ କାଳରେ ସେମାନେ ଗ୍ରୀଷ୍ମମଣ୍ଡଳୀୟ ଦେଶକୁ ବ୍ୟାପ୍ତ ହେଲେ । ଏବ କାଳରେ ବନ୍ୟ ଅବସ୍ଥାରେ ସେମାନେ କେବଳ ଗ୍ରୀଷ୍ମମଣ୍ଡଳୀୟ ଦେଶମାନଙ୍କର ଦେଖାଯାନ୍ତି । ଭାରତର ଗ୍ରୀଷ୍ମାଞ୍ଚଳରେ ଯେଉଁ ଗୋ ଜାତୀୟ ପ୍ରାଣୀ ବାସ କରନ୍ତି ସେମାନେ ହେଲେ ଗୟଳ ( Gaur ), ସାଇଙ୍ଗ ( tsaine ) ଓ ମହିଷ, କେବଳ ଚମରୀଗାଈ ( yak ) ସମଶୀତୋଷ୍ଣ

( temperate ) ଅଞ୍ଚଳରେ ବାସକରେ । ମେଷ ଓ ଛାଗଜମାନଙ୍କର ଆଦି ଭୂମି ମଧ୍ୟ ଏସିଆ । ଏବେ ମଧ୍ୟ ଅଧିକାଂଶ ବନ୍ୟ ମେଷ ଓ ଛାଗଳ ସେହି ଅଞ୍ଚଳରେ ବାସ କରନ୍ତି । ଭାରତରେ ବନ୍ୟ ମେଷ ଓ ବନ୍ୟ ଛାଗଳ କେବଳ ସମଶୀତୋଷ୍ଣ ଜଙ୍ଗଲ ବା ହିମାଳୟର ଆଲ୍‌ପାଇନ୍‌ସ୍ତର ( alpine level ) ଅଞ୍ଚଳରେ ଦେଖାଯାନ୍ତି । ଏକଜାତି ବନ୍ୟ ମେଷ ସିନ୍ଧ, ବେଲୁଚିସ୍ଥାନ ଓ ପଞ୍ଜାବର ଅନୁର୍ବର, ସୂର୍ଯ୍ୟ-ଦଗ୍ଧ ଅଞ୍ଚଳରେ ବାସକରେ । ଏମାନେ ଉରିଆଲ ( Urial ) ନାମରେ ଖ୍ୟାତ । କେବଳ ଗୋଟିଏ ଜାତି ବନ୍ୟ ଛାଗଳ ଭାରତୀୟ ଉପଦ୍ୱୀପ ଅଞ୍ଚଳରେ ଦେଖାଯାଏ । ଏହାର ନାମ ନୀଳଗିରି ଟେହର (Nilgiri tahr) । ଏହା ନୀଳଗିରି ପର୍ବତ ଓ ଅନ୍ୟ ନିକଟବର୍ତ୍ତୀ ପର୍ବତମାଳାର ଉଚ୍ଚ ଅଂଶରେ ବାସ କରେ । ଛାଗଳ ବାସସ୍ଥଳୀର ଏହା ସର୍ବନିମ୍ନ ଦ୍ରାଘିମା ।

<u>ପରିବେଶ ଓ ପ୍ରକୃତି</u>—ଋତୁ ଅନୁସାରେ ଓ ସ୍ଥାନ ଭେଦରେ ରୋମନ୍ଥକ ପ୍ରାଣୀମାନଙ୍କର ଚରିବାକୁ ଘାସ ଓ ଖାଇବାକୁ ପତ୍ରର ପ୍ରାଚୁର୍ଯ୍ୟ ବା ସ୍ୱଳ୍ପତା ଘଟିଥାଏ । ତଦନୁସାରେ ବନ୍ୟ ଗୋ-ମହିଷାଦି ପ୍ରାଣୀମାନଙ୍କର ପ୍ରକୃତି ଓ ଅଭ୍ୟାସରେ ପ୍ରଭେଦ ଦେଖିବାକୁ ମିଳେ । ଶୀତ ଋତୁରେ ପାହାଡ ଉପରେ ଓ ପର୍ବତର ଗଡ଼ାଣିଆ ଭୂମିରେ ବାଉଁଶ ଓ ଲତାପତ୍ରର ଅଭାବ ନ ଥାଏ । ତେଣୁ ଗୟଳ ଏ ସମୟରେ ଏହି ସ୍ଥାନମାନଙ୍କରେ ଦେଖାଯାଏ । ମାତ୍ର ଯହୁଁ ଯହୁଁ ଅଧିକ ଗ୍ରୀଷ୍ମୋତ୍ତାପ ବଢେ ତହୁଁ ତହୁଁ ଘାସ-ପତ୍ର ଓ ଜଳର ଅଭାବ ଘଟେ । ସେତେବେଳେ ସେମାନେ ନିମ୍ନାଞ୍ଚଳକୁ ଓହ୍ଲାଇ ଆସନ୍ତି ଓ ସାଧାରଣତଃ ନଦୀ ଓ ଝରଣା କୂଳିଆ ସ୍ଥାନରେ ବାସ କରନ୍ତି । କାରଣ ଏଇ ସବୁ ସ୍ଥାନରେ ଘାସ ପଡିଆ ଓ ସବୁଜ ପତ୍ର ମିଳେ । ବର୍ଷାଋତୁରେ ଖାଦ୍ୟ ଓ ଜଳର ପ୍ରାଚୁର୍ଯ୍ୟ ହେତୁ ସେମାନେ କୌଣସି ଅଞ୍ଚଳର ବିଭିନ୍ନ ସ୍ଥାନରେ ଚରିବୁଲନ୍ତି । ପୁଣି ବର୍ଷର ଅନ୍ୟ ସମୟରେ ସେମାନେ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବାସ କରିବାର ଦେଖାଯାଏ । ମହୀଶୂରର ବାଉଁଶ ଜଙ୍ଗଲ ମାନଙ୍କରେ ଗୟଳର ଗ୍ଭଲିଚଳନ ଟିକିଏ ଭିନ୍ନ । ଜାନୁଯାରୀଠାରୁ ମେଁ ମାସରେ ନଦୀବିଧୌତ ତୀର ସବୁଜ ଉପତ୍ୟକାରେ ସେମାନେ ଚରିବୁଲନ୍ତି । ମେଁ ମାସରେ ବର୍ଷା ହେବାକୁ ଆରମ୍ଭ କରେ ଓ ପାହାଡର ଉପରି ଭାଗରେ ଘାସ

ପତ୍ର କରନ୍ତି । ସେତେବେଳେ ସେମାନେ ପାହାଡ଼ ଉପରିଭାଗରେ ଦେଖାଯାନ୍ତି । ସେପ୍‌ଟେମ୍ବର ମାସ ବେଳକୁ ପାହାଡ଼ର ପାଦଦେଶ ଜଙ୍ଗଲ ଅଞ୍ଚଳରେ ସେମାନଙ୍କ ଉପଯୋଗୀ ଘାସପତ୍ର ହୁଏ । ସେ ସମୟକୁ ସେମାନେ ପାହାଡର ଉଚ୍ଚଭୂମିରୁ ପଦଦେଶର ନିମ୍ନ ଜଙ୍ଗଲକୁ ଓହ୍ଲାଇ ଆସନ୍ତି । ଆସାମର ନଦୀକୂଳିଆ ସମତଳ ଭୂମିରେ ବାସ କରୁଥିବା ଅରଣା ମଇଁଷି ବର୍ଷର ସବୁ ସମୟରେ ଚରିବାକୁ ଘାସପତ୍ର ପାଉଥିବାରୁ ବିଶେଷ ଇତସ୍ତତଃ ବିଚରଣ କରନ୍ତି ନାହିଁ, ଓଡ଼ିଶା ଓ ମାଧ୍ୟପ୍ରଦେଶରେ ଗ୍ରୀଷ୍ମକାଳରେ ଜଙ୍ଗଲ ଶୁଖିଲ: ଅନେକତ୍ର ଧଳାଧାର ଶୁଖିଯାଏ । ସେମାନଙ୍କ ପାଇଁ ଦଳି ଚକଟି ହେବାକୁ ପଙ୍କୁଆ ଗଡ଼ିଆ ଓ ଖାଦ୍ୟର ଅଭାବ ଘଟିବାରୁ ସେ ସମୟରେ ସେମାନେ ବହୁତ ଦୂର ପର୍ଯ୍ୟନ୍ତ ବୁଲନ୍ତି । ଜଳ ଭୂମି ଜାଗା ଦେଖି ଦିନର ବେଶୀଭାଗ ପାଣିଭିତରେ ବେକଯାଏ ବୁଡ଼ି ଦଳି ଚକଟି ହୋଇ ରହନ୍ତି । ଚମରୀଗାଈ ତିବ୍ବତର ଚିର ଶୀତଳ ଓ ଶୁଷ୍କ ଅଞ୍ଚଳରେ ବାସ କରେ । ପ୍ରବଳ ଶୀତବେଳେ ଖାଦ୍ୟ ଅନ୍ୱେଷଣରେ ସେମାନେ 4720 ମିଟର ( 14,000 ଫୁଟ ) ନିମ୍ନଭୂମିଯାଏ ଓହ୍ଲାଇ ଆସିବାର ଦେଖାଯାଏ । ହିମାଳୟ ଅଞ୍ଚଳବାସୀ ମେଷ ଓ ଛାଗଳ ପ୍ରବଳ ଶୀତରେ ବାସ କରନ୍ତି । ଭାରତର ଉପଦ୍ୱୀପ ଅଞ୍ଚଳରେ ଶୀତଯେତେ ଅସହ୍ୟ ନୁହେଁ, ତା'ଠାରୁ ଅଧିକ ଅସହ୍ୟ ଗ୍ରୀଷ୍ମର ଆଧିକ୍ୟ । ପଞ୍ଜାବ ଓ ସିନ୍ଧର ପାହାଡ଼ିଆ ଅଞ୍ଚଳରେ ବାସ କରୁଥିବା ଉଇରିଆଲ ମେଷ ଗ୍ରୀଷ୍ମକାଳର ଅସହ୍ୟ ଗରମବେଳେ ଛାଇଜାଗା ଦେଖି ପଥରୁଆ ସ୍ଥାନରେ ନଚେତ୍ ଜଙ୍ଗଲରେ ପଶି ବିଶ୍ରାମ ନିଏ । ଉପରବେଳା ଥଣ୍ଡା ପଡ଼ିଲେ ଓ ସୂର୍ଯ୍ୟୋଦୟ ପୂର୍ବରୁ ଚରିବୁଲିବାକୁ ବାହାରେ । ଶୀତ ଋତୁରେ ଓ ମେଘୁଆ ପାଗରେ ଏମାନେ ଦିନର ସବୁସମୟରେ ଚରି ବୁଲୁଥାନ୍ତି ।

ପ୍ରକୃତି ସହିତ ସମ୍ବନ୍ଧ – ମନରେ ସ୍ୱତଃ ପ୍ରଶ୍ନ ଉଠେ, ତୃଣଭୋଜୀ ଗୋ-ମହିଷାଦି ପ୍ରାଣୀମାନଙ୍କ ଦ୍ୱାରା ପ୍ରକୃତିର କିଛି କାର୍ଯ୍ୟ ସାଧିତ ହୁଏ କି ? ଜଙ୍ଗଲ ଓ ପ୍ରାନ୍ତରରେ ଶୀଘ୍ର ଶୀଘ୍ର ବୃଦ୍ଧି ପାଉଥିବା ଘାସ, ଲତା ଓ ଗଛକୁ ଖାଇ ସେ ସବୁର ଅତି ବୃଦ୍ଧିରେ ବାଧା ଦେବା ଏମାନଙ୍କର ଧର୍ମ । ତା' ଛାଡ଼ି କଲରା ପତରିଆ, ହେଟା (wolf) ଓ ବଣିଆ କୁକୁର ଆଦି ମାଂସାଶୀ ପ୍ରାଣୀମାନେ ମେଷ ଓ ଛାଗଳ ଆହାର କରନ୍ତି ଏବଂ ଗୟଳ, ବନ୍ୟ ମହିଷ

ଆଦ ବଡ଼ ବଡ଼ ଉଦ୍ଭିଦ ଭୋଜୀ ପ୍ରାଣୀ, ବାଘ–ସିଂହଙ୍କର ଆହାର । ବାଉଁଶ ଓ ଅନ୍ୟାନ୍ୟ ଡାଳପତ୍ର ଗୟଳ ଓ ହାତୀମାନଙ୍କର ପ୍ରଧାନ ଖାଦ୍ୟ । ଏଣୁ ଏମାନେ ଅନେକ ସମୟରେ ଏକତ୍ର ଚରି ବୁଲୁଥିବାର ଦେଖାଯାଏ । ପରସ୍ପରର ଉପସ୍ଥିତି ସହ୍ୟ କରିବା ଫଳରେ ସେମାନେ ଅବଶ୍ୟ ଉପକୃତ ହେଉଥିବେ । କାରଣ ଉଭୟଙ୍କର ଶତ୍ରୁ ବାଘ । ତୃଣଭୋଜୀ ପ୍ରାଣୀମାନଙ୍କର ବଡ଼ ଶତ୍ରୁ ହେଉଛନ୍ତି ରକ୍ତଶୋଷୀ ଓ ପରଶୟୀ ମାଛି ତଥା ବିଭିନ୍ନ ରୋଗ । ଏମାନଙ୍କ ଦାଉରେ ସେମାନେ ବିଶେଷ ହଇରଣ ହୁଅନ୍ତି ଓ ସଂକ୍ରାମକ ରୋଗ ବ୍ୟାପ୍ତି ସମୟରେ ବହୁ ସଂଖ୍ୟାରେ ପ୍ରାଣ ହରନ୍ତି ।

ପ୍ରଜନନ ଋତୁରେ ଗୟଳ ମାଈମାନଙ୍କ ସହିତ ବାସ କରେ ଓ ସେ ସମୟରେ ଅନ୍ୟ ଅଣ୍ଡିରା ଗୟଳର ଉପସ୍ଥିତି ସହ୍ୟ କରେ ନାହିଁ । ଅନ୍ୟ ସମୟରେ ଆଞ୍ଚଳିକ ଆଧିପତ୍ୟ ଲାଗି ଗୋ-ମହିଷାଦି ପ୍ରାଣୀମାନଙ୍କ ମଧ୍ୟରେ ପ୍ରାୟ ବିବାଦ ହୁଏ ନାହିଁ । ଏଣୁ ଅନ୍ୟ ସମୟରେ ବିଭିନ୍ନ ଗୋ-ମହିଷାଦି ପ୍ରାଣୀ ଏକ ଅଞ୍ଚଳରେ ଓ ବେଳେ ବେଳେ ଏକତ୍ର ଚରିବାର ମଧ୍ୟ ଦେଖାଯିବା ଆଶ୍ଚର୍ଯ୍ୟର କଥା ନୁହେଁ । ଗୟଳ ଓ ସାଇନ୍ (tsaine) ଏକ ପାର୍ବତୀୟ ଅଞ୍ଚଳରେ ଦେଖାଯାଇ ପାରନ୍ତି । ପାର୍ବତୀୟ ଛାଗଳ ମାର୍ଖୋର (Markhor) ଓ କାଇଲ (I bex) ପାଖାପାଖି ହୋଇ ଚରନ୍ତି । ଭରଲ ବା ନୀଳ-ମେଷ (Bharal, Blue-sheep) ଓ କାଇଲ ଏବଂ ଭରଲ ଓ ଟେହେର ମେଷ ଏକାଠି ଚରିବାର ଦେଖାଯାଏ ।

ମନୁଷ୍ୟ ସହିତ ସମ୍ବନ୍ଧ – ଗୟଳର ପ୍ରକୃତି ଭୟାଳୁ । ସେ ମଣିଷକୁ ଭୟକରେ ଓ ଏଡ଼ାଇ ଚଳେ । ଜଖମ ହୋଇଥିବା ଗୟଳ ଓ ଏକାକୀ ଥିବା ଅଣ୍ଡିରା ଗୟଳ ବିନା କାରଣରେ ଝପଟି ଆସି ହିଂସ୍ରଭାବେ ଆକ୍ରମଣ କରେ । ମାତ୍ର ଗୟଳର ସାଧାରଣ ପ୍ରକୃତି ହେଲା ମନୁଷ୍ୟକୁ ଭୟ କରିବା ଓ ତାକୁ ଏଡ଼ାଇ ଚଳିବା । ସାଧାରଣତଃ ସେମାନେ ମନୁଷ୍ୟ ବସତି ଠାରୁ ଦୂରରେ ବାସ କରନ୍ତି ଓ କ୍ଷେତବାଡ଼ିରେ ପଶି ଫସଲ ଉଜାଡ଼ନ୍ତି ନାହିଁ । ଅନ୍ୟ-ପକ୍ଷରେ ବନ୍ୟ ମହିଷ ଦାମ୍ଭିକ ମନୁଷ୍ୟକୁ ଭୟ କରେ ନାହିଁ । ଭାରତରେ ବାସ କରୁଥିବା ଗୋ ମହିଷାଦି ପ୍ରାଣୀମାନଙ୍କ ମଧ୍ୟରେ ବଣ ମଇଁଷି ସବୁଠାରୁ ସାହସୀ ଓ ହିଂସ୍ର । ଏହି ପ୍ରାଣୀମାନଙ୍କର ପ୍ରଧାନ ଶତ୍ରୁ ମନୁଷ୍ୟ । ପୂର୍ବେ

ଭାରତର ଅନେକ ଅଞ୍ଚଳରେ ଗୟଳ ଓ ବଣ ମଇଁଷି ବହୁ ସଂଖ୍ୟାରେ ଦଳ ଦଳ ହୋଇ ବାସ କରୁଥିଲେ । ଏବେ ଗୟଳ ଅଳ୍ପ ସଂଖ୍ୟାରେ କେତେକ ଅଞ୍ଚଳର ନିବିଡ଼ ଜଙ୍ଗଲରେ ବାସ କରନ୍ତି । ବଣ ମଇଁଷିଙ୍କ ସଂଖ୍ୟା ବହୁତ କମି ଯାଇଛି । ଏକଦା ମେଦିନୀପୁର, ଓଡ଼ିଶାର ସମୁଦ୍ର ଉପକୂଳ ଅଞ୍ଚଳ ଓ ଓଡ଼ିଶା ସନ୍ନିକଟସ୍ଥ ମଧ୍ୟପ୍ରଦେଶରେ ପଲ ପଲ ହୋଇ ବୁଲୁଥିବା ବଣ ମଇଁଷି ଆଜି ଦେଖିବାକୁ ସ୍ୱପ୍ନ ।

<u>ଗୋ-ମେଷାଦି ପ୍ରାଣୀମାନଙ୍କର ଗୃହପାଳିତୀ କରଣ</u> – ଖ୍ରୀଷ୍ଟପୂର୍ବ ତିନିହଜାର ବର୍ଷ ପୂର୍ବେ ମହେଞ୍ଜୋଦାରୋ ଠାରେ ଯେଉଁ ସଭ୍ୟତା ଗଢ଼ି ଉଠିଥିଲା ସେହି ସମୟର ନାମ ମୁଦ୍ରା (seal) ରେ ଏବର ଭାରତୀୟ କୁଦଥିବା ଗାଈ ଓ କୁଦ ନଥିବା ୟୁରୋପୀୟ ଗାଈ ଉଭୟ ଖୋଦିତ ହୋଇଥିବାର ଦେଖିବାକୁ ମିଳେ । ବସ୍ତୁତଃ ଏ ଉଭୟ ପ୍ରକାରର ଗାଈ ସେତେବେଳେ ଏ ଦେଶରେ ପାଳିତ ହେଉଥିଲେ । ୟୁରୋପୀୟ ଗାଈଙ୍କ ପିଠିଉପର ସିଧା ; ମାତ୍ର ଭାରତୀୟ ଗାଈଙ୍କ ପିଠିରେ କୁଦଥାଏ । ଭାରତରେ ଏବେ ମଧ୍ୟ ଗାଈ ସବୁଠାରୁ ଅଧିକ ପ୍ରୟୋଜନୀୟ ପ୍ରାଣୀ । କୃଷିକାର୍ଯ୍ୟ ତଥା ବହନ କାର୍ଯ୍ୟରେ ତା ସହିତ କେହି ସରି ନୁହେଁ । ଗୋଟିଏ ସୁସ୍ଥସବଳ ବଳଦର ଓଜନ 680 କିଲୋଗ୍ରାମ (1500 ପାଉଣ୍ଡ) ହୋଇ ପାରେ । ହଳେ ବଳଦ ଦିନକରେ ପାଞ୍ଚଟନ ଓଜନର ସାମଗ୍ରୀ ଚବିଶ କିଲୋମିଟର ଦୂର ବହନ କରି ନେଇ ପାରନ୍ତି । ଅବଶ୍ୟ ଏମାନଙ୍କର ଗତି ମନ୍ଥର ଓ ଘଣ୍ଟାକୁ ହାରାହାରି ବେଗ 3.2 କିଲୋମିଟାର (ଦୁଇ ମାଇଲ) । ଘୋଡ଼ା ବେଗବାନ ; ମାତ୍ର ଏତେ ଓଜନ ବହନ କରି ପାରେ ନାହିଁ । ଭାରତୀୟ ସଭ୍ୟତାରେ ଗାଈର ଗୁରୁତ୍ୱ-ପୂର୍ଣ୍ଣ ଭୂମିକା କାହାରିକି ଅବିଦିତ ନୁହେ । ଆଦିମ ମନୁଷ୍ୟ ସର୍ବପ୍ରଥମେ 10,000ରୁ 7,000 ବର୍ଷ ପୂର୍ବକାଳ ମଧ୍ୟରେ ବୀଜ ବପନ କରି ଚାଷ କରିବା ଆରମ୍ଭ କରିଥିଲେ ମଧ୍ୟ, ଗାଈ ସର୍ବପ୍ରଥମ ଗୃହପାଳିତ ପ୍ରାଣୀ ନୁହେଁ ବୋଲି ବିଶେଷଜ୍ଞମାନଙ୍କର ଧାରଣା । କାରଣ ବନ୍ୟ ଗାଈ ଅର୍ଥାତ୍ ବୋଭିଡ଼ି (Bovidae) ବଂଶର ପ୍ରାଣୀମାନେ ଅତ୍ୟନ୍ତ ହିଂସ୍ର । ତେଣୁ ସେମାନେ ପ୍ରଥମ ଗୃହପାଳିତ ପଶୁ ହୋଇ ନ ଥିବା ସମ୍ଭବ । ସମ୍ଭବତଃ, ପ୍ରାୟ ଦଶ-ହଜାର ବର୍ଷ ପୂର୍ବେ, ପ୍ରସ୍ତର ଯୁଗର ମନୁଷ୍ୟ ଯେତେବେଳେ ଭ୍ରାମ୍ୟମାଣ

ଶିକାରୀ ଜୀବନ ଯାପନ କରୁଥିଲ ଏବଂ ହେଟା ଓ ଅନ୍ୟ ପ୍ରାଣୀ ଶୀକାର କରୁଥିଲ, ସେ ସମୟରେ ଅନାଥ ହେଟାଛୁଆ ପ୍ରଥମ ଗୃହପାଳିତ ପ୍ରାଣୀ ହୋଇଥିଲ । ୟୁରୋପରେ ଗୋମାଂସ ଖାଦ୍ୟରୂପେ ବ୍ୟବହୃତ ହେଲେ ମଧ୍ୟ, ଭାରତରେ ଗାଈ ଗୋମାତା ରୂପେ ପୂଜିତ । ବିଶେଷଜ୍ଞମାନଙ୍କର ବିଶ୍ୱାସ, ଗୃହପାଳିତ ଗାଈ ସର୍ବପ୍ରଥମେ ପୂଜା ପାଉଥିଲ । ତା'ର ଗୋଟିଏ କାରଣ ଏହି ଯେ, ଅତୀତ କାଳରେ ଚନ୍ଦ୍ର ଦେବତା ରୂପେ ପୂଜିତ ହେଉଥିଲେ ଓ ଗାଈର ଶିଙ୍ଗ ଅର୍ଦ୍ଧ ଚନ୍ଦ୍ରାକାର ।

ତୃତୀୟକ ଯୁଗ (Cainozoic era) 630 ଲକ୍ଷ ବର୍ଷ ପୂର୍ବେ ଆରମ୍ଭ ହୋଇ ଦଶଲକ୍ଷ ବର୍ଷ ପୂର୍ବେ ଶେଷ ହୋଇଥିଲ । ଏହି ଯୁଗର ଶେଷଭାଗରେ ୟୁରୋପ, ଏସିଆ ଓ ଉତ୍ତର ଆଫ୍ରିକାରେ ଅରକ୍ (auroch) ନାମକ ଏକ ଜାତି ବନ୍ୟ ଗାଈ ବାସ କରୁଥିଲେ । ଏହାର ବୈଜ୍ଞାନିକ ନାମ Bos primigenius । ୟୁରୋପୀୟ ଗୃହପାଳିତ ଗାଈର ନାମ Bos taurus ଓ ଭାରତର ଗୃହପାଳିତ କୁଦଯୁକ୍ତ ଗାଈର ବୈଜ୍ଞାନିକ ନାମ Bos indicus । ଭାରତରେ ଆଉ ଜାତିଏ ପ୍ରାଚୀନ ଗାଈ ବାସ କରୁଥିଲେ ତାଙ୍କର ନାମ Bos namadicus । ଏ ତିନିଜାତି ଗାଈର ମିଳନରୁ ଆଧୁନିକ ଗୃହପାଳିତ କୁଦହୀନ ୟୁରୋପୀୟ ଗାଈ ଓ କୁଦଯୁକ୍ତ ଭାରତୀୟ ଗାଈର ଉଦ୍ଭବ ହୋଇଥିବା ସମ୍ଭବ ବୋଲି କେତେକ ବିଶେଷଜ୍ଞମାନଙ୍କର ମତ । ସେମାନେ ହେଲେ B. primigenius, B. indicus ଓ B. namadicus । ଉକ୍ତ ତିନିଜାତି ଗାଈ ଆଉ ମିଳନ୍ତି ନାହିଁ । ୟୁରୋପରେ ଯେଉଁ ଗୃହପାଳିତ ଗାଈ ଦେଖାଯାଆନ୍ତି ସେମାନେ "ବସ ପ୍ରିମିଜେନିଆସ"ର ଆଧୁନିକ ବଂଶଧର ବୋଲି ବିଶ୍ୱାସ କରାଯାଏ । ଅନ୍ୟ କେତେକ ବିଶେଷଜ୍ଞଙ୍କର ଧାରଣା ଭାରତୀୟ ଗାଈ Bos indicus ବର୍ମାର ବନ୍ୟଗାଭୀ Bos banteng ର ଗୃହପାଳନ ଫଳରେ କ୍ରମେ ଜାତ ହୋଇଅଛି । ଏହା ବର୍ମା, ଶ୍ୟାମ, ମାଲୟ ଉପଦ୍ୱୀପ, ବୋର୍ଣ୍ଣିଓ ଓ ଜାଭାରେ ଦେଖିବାକୁ ମିଳେ । ଗୟଳ ଠାରୁ 'ବାନ୍‌ଟେଙ୍ଗ' କ୍ଷୁଦ୍ର । ଏମାନଙ୍କର କରୋଟି ସହିତ ଭାରତୀୟ ଗାଈ କରୋଟି (skull)ର କେତେକ ନିବିଡ଼ ସାମଞ୍ଜସ୍ୟ ଅଛି । 'ବାନ୍‌ଟେଙ୍ଗ' ବା 'ସାଇଙ୍ଗ୍'କୁ ବୋର୍ଣ୍ଣିଓ ଓ ଜାଭାରେ ଏମାନଙ୍କୁ ଗୃହପାଳିତ ପଶୁରୂପେ ଗ୍ରହଣ କରାଯାଇ ଅଛି;

ମାତ୍ର ଗୋ-ଜାତି ମଧ୍ୟରେ ସର୍ବବୃହତ୍ ଓ ବଳବାନ ଭାରତୀୟ ଗୟଳ (Bos gaurus) ହିଂସ୍ର ଓ ପୋଷ ମାନେ ନାହିଁ । ହେଲେ ହେଁ, ଆମ ଭୌଗୋଳିକ ଭାରତରେ ବାସ କରୁଥିବା ସମସ୍ତ ଜାତିର ବନ୍ୟ ଗୋ-ବଂଶ ପ୍ରାଣୀ ଯଥା— ଗୟଳ, ସାଇଙ୍ଗ, ଚମରୀଗାଈ (yak) ଓ ବନ୍ୟ ମହିଷ (wild buffalo)ଙ୍କ ଠାରୁ ସେହି ସେହି ଗୃହପାଳିତ ପ୍ରାଣୀ ଜାତ ହୋଇ ଅଛନ୍ତି । ଉଭୟ ଗୟଳ ଓ ସାଇଙ୍ଗ ଗୃହପାଳିତ ଗାଈ ସହିତ ଯୌନସଂଗମ କରିବାର ଜଣାଅଛି । ଗୟଳ ଓ ଗୃହପାଳିତ ଗାଈଙ୍କ ଔରସରୁ ଜାତ ଶଙ୍କରପ୍ରାଣୀଙ୍କୁ ସ୍ଥାନ ବିଶେଷରେ ମିଥାନ୍ (mithan), ମିଥୁନ୍ (mithun) ବା ମେଥନେ (methne) କହନ୍ତି । ଆସାମ, ନେଫାର ମିସମି ପାହାଡ ଅଞ୍ଚଳ ଓ ଉତ୍ତର ବର୍ମାରେ ମିଥୁନ ଅର୍ଦ୍ଧ ଗୃହପାଳିତ ଅବସ୍ଥାରେ ଦେଖାଯାନ୍ତି । ଏମାନେ ଗୟଳ ପରି ସ୍ଥୂଳ ; ମାତ୍ର ଆକାରରେ ସାନ, ଗୟଳର ଶିଙ୍ଗ ବଙ୍କା , କିନ୍ତୁ ମିଥୁନର ଶିଙ୍ଗ ଅନେକ ପରିମାଣରେ ସିଧା । ଗୟଳର ଗଳ କମ୍ବଳ ନ ଥାଏ, ମେଥନେର ଥାଏ । ଉତ୍ତର-ପୂର୍ବ ଭାରତର ପାର୍ବତ୍ୟ ଅଞ୍ଚଳର ଲୋକେ ଗୃହପାଳିତ ଗାଈଙ୍କର ଶକ୍ତି ବଢାଇବା ପାଇଁ ସେମାନଙ୍କ ଗାଈଙ୍କୁ ମଧ୍ୟେ ମଧ୍ୟେ ଅଣ୍ଡିଗ ଗୟଳ ସହିତ ଯୋଡି କରନ୍ତି । ଏ ଅଞ୍ଚଳର 'ଗୟଲ୍' (gayal) ଗୃହପାଳିତ ଗୟଳ (bison) ଅଟେ । ପୂର୍ବେ ଏମାନଙ୍କୁ ପ୍ରାଣୀ ବିଜ୍ଞାନୀମାନେ ଅନ୍ୟ ଏକ ଜାତି Bos frontalis ବୋଲି ନାମକରଣ କରିଥିଲେ । ଏବର ବୈଜ୍ଞାନିକ-ମାନେ ଏହା ଗୟଳ (Bos gaurus)ର ଗୃହପାଳିତ ସଂସ୍କରଣ ବୋଲି ମନେ କରନ୍ତି ।

ତିବ୍ବତୀୟ ମାଳଭୂମି ଓ କେନ୍ଦ୍ର ଏସିଆର ଶୁଷ୍କ ବାୟୁ ଓ ଅତୀବ ହିମ ଅଞ୍ଚଳରେ ବାସ କରୁଥିବା ଚମରୀଗାଈକୁ ସେ ଅଞ୍ଚଳର ଲୋକେ ଗୃହରେ ପାଳନ କରି ଭାରବାହୀ ପଶୁରୂପେ ବ୍ୟବହାର କରନ୍ତି । ଚମରୀ ଷଣ୍ଢ ଓ ଲଦାଖର ଗୃହପାଳିତ ଗାଈଙ୍କ ମିଳନରୁ ଯେଉଁ ଶଙ୍କର ଜାତହୁଏ ତାକୁ "ଗ୍ଲାଙ୍ଗ୍" (glanq—ମଣିପୁର, ଉତ୍ତର ବର୍ମା) ବା "ଜୋ" (Zho, zo— ଲଦାଖ, ଭୁଟାନ) କହନ୍ତି । ଏହି ଶଙ୍କରମାନେ ଚମରୀ ଠାରୁ ଛୋଟ ; ମାତ୍ର ଅଧିକ ତାପମାତ୍ରା ସହ୍ୟ କରିପାରନ୍ତି । ଏମାନେ ଭାରବାହୀ ପଶୁରୂପେ ଲଦାଖ ଓ କାଶ୍ମୀର ମଧ୍ୟରେ ବ୍ୟବହୃତ ହୁଅନ୍ତି । ଚମରୀଗାଈ ଅତି ଉଚ୍ଚ

ଓ ଉତ୍କଟ ଖାତ ପ୍ରଧାନ ଅଞ୍ଚଳରେ ବାସ କରୁଥିବାରୁ ନିମ୍ନଭୂମିର ଅଳ୍ପ ହିମ ସହ୍ୟ କରି ପାରେ ନାହିଁ । ଦୁଇ କିସମର ଢୋ ଦେଖାଯାନ୍ତି । ଗୁଡ଼ିକର ଶିଙ୍ଗ ଥାଏ, ଅନ୍ୟମାନଙ୍କର ଶିଙ୍ଗ ନ ଥାଏ । ଶିଙ୍ଗହୀନ "ଢୋ"ଙ୍କ ମିଳନରେ ଶିଙ୍ଗହୀନ ଢୋ ଜାତ ହୁଅନ୍ତି ଓ ଶିଙ୍ଗଥିବା ଢୋଙ୍କଠାରୁ ଶିଙ୍ଗବାଲା ଢୋ ଜାତ ହୁଅନ୍ତି ।

ଭାରତରେ ଗାଈ "ଗୋମାତା" ସମ୍ମାନ ପାଇଲେ ମଧ୍ୟ ଓ ଆମ ଦେଶରେ ସେମାନଙ୍କ ସଂଖ୍ୟା ଅତ୍ୟନ୍ତ ଅଧିକ ହୋଇଥିଲେ ମଧ୍ୟ, ୟୁରୋପୀୟ ଦେଶମାନଙ୍କରେ ନାନା ପରୀକ୍ଷା ଓ ଗବେଷଣା ଦ୍ୱାରା ବିଭିନ୍ନ କାର୍ଯ୍ୟଲାଗି ଉତ୍କୃଷ୍ଟ ଗାଈ ଉତ୍ପାଦନ କରାଯାଇ ପାରିଅଛି । ୟୁରୋପୀୟ ଦେଶମାନଙ୍କରେ ଲୋକେ ଗୋ ଦୁଗ୍ଧକୁ ପାନୀୟ ଓ ଖାଦ୍ୟରୂପେ ଏବଂ ତାର ମାଂସକୁ ପ୍ରୋଟିନ୍ ଖାଦ୍ୟରୂପେ ବ୍ୟବହାର କରନ୍ତି । ଏଥିପାଇଁ ଅଧିକ କ୍ଷୀର ଦେଇ ପାରୁଥିବା ଓ ସେଥିରେ ଯଥେଷ୍ଟ ଲହୁଣୀଥିବା; ଅଧିକ ମାଂସ ଓ ଚର୍ବିଥିବା ଏବଂ ଅଧିକ ମାଂସ ଓ ଅଧିକ କ୍ଷୀରଦେଇ ପାରୁଥିବା ଗାଈ ଉତ୍ପାଦନ କରାଯାଇ ପାରିଅଛି ।

ଗୋଦୁଗ୍ଧ ଏକ ଉତ୍କୃଷ୍ଟ ସୁଷମ ଖାଦ୍ୟ । ପ୍ରତି ଲିଟର କ୍ଷୀରରେ ପ୍ରାୟ ଚାଳିଶ ଗ୍ରାମ ପର୍ଯ୍ୟନ୍ତ ଶର୍କରା, ପ୍ରୋଟିନ୍ ଓ ଲହୁଣୀ ସମ ପରିମାଣରେ ବିଦ୍ୟମାନ । ଛାଗଳ କ୍ଷୀରରେ ଅଧିକ ଲହୁଣୀଥାଏ ଓ ଗଧ ଦୁଧରେ ଅଧିକ ଶର୍କରାଥାଏ । ଦୁଗ୍ଧବତୀଗାଈ ଛଅ ମାସ ପର୍ଯ୍ୟନ୍ତ କ୍ଷୀରଦାନ କରେ । ଅଧିକ ପରିମାଣରେ ଦୁଗ୍ଧ ଦେଇ ପାରୁଥିବା ଗାଈମାନଙ୍କ ମଧ୍ୟରେ ହଲାଣ୍ଡର ଗାଈ ଓ ଜାରସି ( Jersey ) ଗାଈ ଉତ୍କୃଷ୍ଟ । ଏମାନଙ୍କ ଦେହରେ ମାଂସ ପରିମାଣ ଅଳ୍ପ । ବେଲଜିୟମ୍ ଓ ହଲାଣ୍ଡର ଗାଈ ବର୍ଷକୁ 3976 ରୁ 4544 ଲିଟାର (7000-8000 ପାଉଣ୍ଡ ) କ୍ଷୀର ଦିଅନ୍ତି ଏଥିରେ ଲହୁଣୀ ପରିମାଣ ଊଣା ଓ ଏ ଗାଈର ମାଂସ ସେତେ ଭଲ ନୁହେଁ । ଉଭୟ କ୍ଷୀର ଓ ମାଂସ ଦୃଷ୍ଟିରୁ ନରମାଣ୍ଡି (Normandy) ଗାଈ ଉତ୍କୃଷ୍ଟ । ଏହା ବର୍ଷକୁ 3408 ଲିଟାର (6000 ପାଉଣ୍ଡ) କ୍ଷୀର ଦିଏ ଓ ସେଥିରୁ 136 କିଲୋଗ୍ରାମ (300 ପାଉଣ୍ଡ) ଯାଏ ଲହୁଣୀ ବାହାରେ । ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, କାନାଡା, ଅଷ୍ଟ୍ରେଲିଆ, ଦକ୍ଷିଣ ଆମେରିକା ଓ ଦକ୍ଷିଣ ଆଫ୍ରିକାରେ ହୋଲଷ୍ଟାଇନ୍ ଫ୍ରିଇସିଆନ୍ (Holstein-Friesian) ଜାତି (breed) ଗାଈ ଖୁବ୍ ଲୋକପ୍ରିୟ । ମାଂସଦୃଷ୍ଟିରୁ ବିଲାତି ଡୁରହାମ କିସମ ( Durham breed) ର ନାମ ଡାକ ଅଛି ।

ଗୃହପାଳିତ ଭାରତୀୟ ଗାଈର ବୈଜ୍ଞାନିକ ନାମ Bosindicus । ଦକ୍ଷିଣ ଆଫ୍ରିକାର ସ୍ଥାନୀୟ କୁଦଥିବା ଗାଈ (Afrikander ) ଭାରତୀୟ ଗାଈଠାରୁ ଉଦ୍ଭୂତ ।

ଗଞ୍ଜାମର ଏକ ଅଞ୍ଚଳରେ ଗୃହପାଳିତ ଗାଈ ମୁକୁଳିଯାଇ ବନ୍ୟ ଅବସ୍ଥାରେ ବାସ କରନ୍ତି । ଏମାନେ ଗୃହପାଳିତ ଗାଈପରି; ମାତ୍ର ମନୁଷ୍ୟ ଦେଖିଲେ ଦୌଡ଼ି ପଳାଇଯାନ୍ତି ।

ଭାରତୀୟ ଓ ୟୁରୋପୀୟ ଗୃହପାଳିତ ମଇଁଷିର ବୈଜ୍ଞାନିକ ନାମ Bubalus bubalis । ବଲକାନ, ଗ୍ରୀସ୍, ଇଟାଲୀ, ଏସିଆ ମାଇନର, ମିଶର ଓ ସୋଭିଏଟ ଋଷର ଦକ୍ଷିଣ ଅଞ୍ଚଳର ଗୃହପାଳିତ ମଇଁଷି କ୍ଷୁଦ୍ର ଓ ଶିଙ୍ଗ ଖୁବ୍ ଟେରଛା । ବନ୍ୟ ମଇଁଷିର ବୈଜ୍ଞାନିକ ନାମ ମଧ୍ୟ Bubalus bubalis । ଏହା ବନ୍ୟ ଅବସ୍ଥାରେ ଅତି ଅଳ୍ପ ସଂଖ୍ୟାରେ ଭାରତ, ଇଣ୍ଡୋଚୀନ୍ ଓ ବୋର୍ଣିଓରେ ମଧ୍ୟ ଦେଖାଯାନ୍ତି । ଶ୍ରୀଲଙ୍କା ଓ ଉତ୍ତର ଅଷ୍ଟ୍ରେଲିଆରେ ଗୃହପାଳିତ ମଇଁଷି ମୁକୁଳିଯାଇ ବନ୍ୟ ଅବସ୍ଥାରେ ( feral ) ଦଳ ବାନ୍ଧି ବାସ କରୁଥିବାର ଦେଖିବାକୁ ମିଳେ । ଆମ ଭାରତରେ ଲୋକେ 200-300 ଯାଏ ମଇଁଷି ଗୋଠରେ ରଖନ୍ତି ଓ ବର୍ଷକୁ ପ୍ରତ୍ୟେକ ଦୁଧିଆଳୀ ଠାରୁ ହାରାହାରି 3408 ଲିଟାର ଯାଏ କ୍ଷୀର ଉତ୍ପାଦନ କରନ୍ତି । ଗାଈ କ୍ଷୀର ତୁଳନାରେ ମଇଁଷି କ୍ଷୀରରେ ଦୁଇଗୁଣ ଲହୁଣୀଥାଏ । ଭାରତୀୟ ବନ୍ୟ ମହିଷ ଓ ଗୃହପାଳିତ ମଇଁଷି ମଧ୍ୟରେ ତଫାତ କେବଳ ସ୍ଥୂଳତା ଓ ହିଂସ୍ରତାରେ । ବନ୍ୟ ମହିଷ ଅଧିକ ସ୍ଥୂଳ ଓ ହିଂସ୍ର ।

ଫିଲିପାଇନ୍‌ସରେ "ଟାମାରଭ" (Tamarav-Anoa mindorensis ) ନାମକ ଏକ ଜାତି କ୍ଷୁଦ୍ର ବନ୍ୟ ମହିଷ ଓ ସେଲ୍‌ବିସ ଦ୍ୱୀପରେ ଆହୁରି ଏକ ଜାତି କ୍ଷୁଦ୍ରତର ବନ୍ୟମହିଷ Anoa, wild-dwarf buffalo-Anoa depressicornis ) ବାସ କରନ୍ତି ।

ଆଫ୍ରିକାର ମଇଁଷି ଭାରତୀୟ ଓ ଏସିଆର ଅନ୍ୟ ମଇଁଷି (ଟାମାରଭ, ଏନୋଆ) ଠାରୁ ଭିନ୍ନ । ତାର ବୈଜ୍ଞାନିକ ନାମ Syncerus caffer ।

ଗୋଛାଗଳାଦି ପ୍ରାଣୀମାନଙ୍କ ମଧ୍ୟରେ ମେଷ ଓ ଛାଗଳ ସର୍ବ ପ୍ରଥମେ ଗୃହପାଳିତ ହୋଇଥିବାର ବିଶ୍ୱାସ କରଯାଏ । ପାଲେଷ୍ଟାଇନ୍‌ର

ପର୍ବତମାଳାଠାରୁ ଉତ୍ତରକୁ ପୂର୍ବତୁର୍କୀ, ଆର୍ମେନିଆ, ଉତ୍ତର ଇରାକ, ଉତ୍ତର ପଶ୍ଚିମ ଇରାନ୍, ପୂର୍ବରେ ଆଫଗାନିସ୍ଥାନ ଓ ସୋଭିଏଟ୍ ରୁଷର କେନ୍ଦ୍ର ଏସିଆର ପାର୍ବତ୍ୟଭୂମି ଅଞ୍ଚଳରେ ଗହମ, ବାର୍ଲି, ଯବ ଯାତୀୟ ଶସ୍ୟ (rye, oat ), ମଟର ଛୁଇଁ ( pea ) ସେଓ (apple) ପିଚ୍ ( peach), ଆଖରୋଟ୍ ( walnut ), ଏପ୍ରିକଟ୍ (apricot) କୋଳି (plum), ଅଙ୍ଗୁର, ବାଦାମ (almond ) ଆଦି ସର୍ବ ପ୍ରଥମେ ଗୃଷ ହେବା ସଙ୍ଗେ ସଙ୍ଗେ ମେଷ ଓ ଛାଗଳ ସର୍ବପ୍ରଥମେ ଗୃହପାଳିତ ହୋଇଥିବାର ଅନୁମିତ ହୁଏ । ଗୃହପାଳିତ ମେଷର ବୈଜ୍ଞାନିକ ନାମ Ovis aries। ମେରିନୋ କିସମ (merino breed ) ମେଷର ଲୋମ ଉତ୍କୃଷ୍ଟ । ଏମାନଙ୍କର ଆଦିଭୂମି ସ୍ପେନ୍ । ଏହା ଶୁଷ୍କ ଜଳବାୟୁର କଷ୍ଟ ବେଶ୍ ସହିପାରେ । ଏହା ବର୍ତ୍ତମାନ ପୃଥିବୀର ବିଭିନ୍ନ ସ୍ଥାନରେ ପଶମପାଇଁ ପାଳିତ ହୁଏ । ଲଦାଖ, ଉତ୍ତର ତିବ୍ବତ, ପଞ୍ଜାବ, ସିନ୍ଧୁ ଓ ବେଲୁଚିସ୍ଥାନର ବନ୍ୟ ମେଷ ଉରିଆଲ ( Urial ) ଗୃହପାଳିତ ମେଷମାନଙ୍କ ସହିତ ସ୍ୱଚ୍ଛନ୍ଦରେ ରମଣ କରିଥାନ୍ତି । ବିଶେଷଜ୍ଞ-ମାନଙ୍କ ମତରେ, ପାରସ୍ୟର ବନ୍ୟଛାଗଳ ( Persian wild goat ବା pasang ) ( Capra hircus aegagrus Erxleben) ଠାରୁ ପ୍ରାୟ ସମସ୍ତ କିସମର ଗୃହପାଳିତ ଛାଗଳ (Capra hircus) ଉଦ୍ଭୂତ । ଛାଗ "ଗରୀବର ଗାଈ" ଆଖ୍ୟା ଲାଭ କରିଅଛି । ଗୋଟିଏ ବଡ଼ ଆଲପାଇନ୍ ବା ସୁଇସ୍ ଛାଗଳ ଓଜନରେ 68 ରୁ 81 କିଲୋଗ୍ରାମ (150-170 ପାଉଣ୍ଡ ) ହୁଏ ଓ ବର୍ଷକୁ 566 ରୁ 588 ଲିଟାର ( 1000-1040 ପାଉଣ୍ଡ ) କ୍ଷୀର ଦିଏ । ଗୃହପାଳିତ ଛାଗଳ ବନ୍ୟ ଛାଗଳ ତୁଳନାରେ ବେଶୀ ଛୁଆଦିଏ ଓ ଥରକେ ଦୁଇ ତିନୋଟି ଛୁଆକରେ । ତୁର୍କୀର ଏଙ୍ଗୋରାକିସମ ( Angora breed ) ର ଛେଳି ତା'ର ରେଶମପରି ଦୀର୍ଘଲୋମ ପାଇଁ ପ୍ରସିଦ୍ଧ । ସେଥିରେ ମୂଲ୍ୟବାନ୍ ପରିଧେୟ ବୁଣାଯାଇଥାଏ ।

## ପରିବାର ଜୀବନ ଓ ବାତ୍ସଲ୍ୟ-

ସମ୍ପର୍କ ସ୍ଥାପନ ( Means of communication )- ଆତ୍ମରକ୍ଷା ତଥା ପାରିବାରିକ ନିରାପତ୍ତା ପାଇଁ ବନ୍ୟ ପ୍ରାଣୀମାନଙ୍କ ମଧ୍ୟରେ ସମ୍ପର୍କ

ସ୍ଥାପନ ଏକ ଗୁରୁତ୍ୱ ପୂର୍ଣ୍ଣ ବିଷୟ । ଗୟଳ ଓ ଅନ୍ୟ ବନ୍ୟ ଗୋ-ବଂଶୀୟ ପ୍ରାଣୀମାନଙ୍କଠାରେ ଘ୍ରାଣ ଶକ୍ତି ଅତ୍ୟନ୍ତ ପ୍ରଖର । ଦେହର ତୀବ୍ର ଗଂଧଦ୍ୱାରା ଏକ ଆରେକର ଉପସ୍ଥିତି ଜାଣି ପାରୁଥିବା ଖୁବ୍ ସମ୍ଭବ । କେତେକଙ୍କର ମଧ୍ୟ ଗନ୍ଧ ଗ୍ରନ୍ଥି ଥାଏ ।

ଗନ୍ଧଗ୍ରନ୍ଥି–ମେଷମାନଙ୍କର କଗେଟିରେ ଆଖିତଳକୁ ଏକ କ୍ଷୁଦ୍ର ଗୁହା ଥାଏ । ଏଠାରେ ତାର ଆନନ ଗ୍ରନ୍ଥି (face gland) ଅବସ୍ଥିତ । ସେମାନଙ୍କର ଉରୁ ସନ୍ଧିରେ ଆଉ ଗୋଟିଏ କରି ଗ୍ରନ୍ଥି ଥାଏ । ତାକୁ ଜଙ୍ଘାନ୍ତର ଗ୍ରନ୍ଥି (inguinal gland) କହନ୍ତି । ଆହୁରି ମଧ୍ୟ ସେମାନଙ୍କର ଦୁଇ ପ୍ରଧାନ ଅଙ୍ଗୁଳି ମଧ୍ୟରେ ଏକ ଗ୍ରନ୍ଥି ଥାଏ । ମେଷଙ୍କ ଅଗ୍ରପାଦରେ ଏଭଳି ଗ୍ରନ୍ଥି ଥିଲାବେଳେ ଗାଈ ଓ ଛେଳିଙ୍କଠାରେ ଏହା ଦେଖିବାକୁ ମିଳେ ନାହିଁ । ଉରିଆଲ (Urial) ମାନଙ୍କର ପାଦଗ୍ରନ୍ଥି (foot gland) ରୁ ଏକ ପ୍ରକାର ସ୍ୱଚ୍ଛ ଅର୍ଦ୍ଧ-ତରଳ ରସ ବାହାରେ । ଏହାର ଗନ୍ଧ ପ୍ରୀତିକର, ଏସେଟିକ୍ ଅମ୍ଳ (acetic-acid ) ଥିବା କର୍ପୂର ଗନ୍ଧପରି । ମେଷ ଗତି କଲାବେଳେ ତା' ପାଦରୁ ରସବାହାରି ଭୂମିରେ ଲାଗିରହେ ଓ ତା' ଦଳର ଅନ୍ୟମାନେ ସେହି ଗନ୍ଧ ଶୁଙ୍ଘି ଶୁଙ୍ଘି ଯାଇ ଏକତ୍ରିତ ହୁଅନ୍ତି । ଏଣେ ତେଣେ ଖେଳେଇ ହୋଇ ଯାଇଥିବା ଏକ ଦଳ ମେଷ ଏହି ଗନ୍ଧ ଶୁଙ୍ଘି ଏକାଠି ହୋଇଥାନ୍ତି । ମେଷ ବିଶ୍ରାମ ନେଉଥିବା ବେଳେ ଜଙ୍ଘାନ୍ତର ଗ୍ରନ୍ଥିରୁ ରସ ବାହାରି ଭୂମିରେ ଗନ୍ଧ ରହିଯାଏ । ସାଧାରଣ ଛାଗଳ ( typical goats ) ମାନଙ୍କର ଆନନ ଗ୍ରନ୍ଥି ଓ ଜଙ୍ଘାନ୍ତର ଗ୍ରନ୍ଥି ନ ଥାଏ । ଏମାନଙ୍କର ପଛ ପାଦରେ ପାଦ-ଗ୍ରନ୍ଥି ନ ଥାଏ, ସାମନା ପାଦରେ ଥିଲେ ଥାଇପାରେ ।

ସ୍ୱର – ଗୋ-ବଂଶର ପ୍ରାଣୀମାନେ ପରସ୍ପର ସହିତ ବିଭିନ୍ନ ପ୍ରକାର ବୋବାଳି ଦ୍ୱାରା ଯୋଗାଯୋଗ ରକ୍ଷା କରିଥାନ୍ତି । ଗୟଳ ଅନ୍ତତଃ ପାଞ୍ଚ-ପ୍ରକାର ଶବ୍ଦ କରିଥାଏ । ସେଥିରୁ ଦୁଇଟି ଭୟର ସୂଚନା ଦିଏ । ଗୋଟିଏ ପ୍ରକାର ଭୟସୂଚକ ବୋବାଳି ପୂର୍ବରୁ ସେ ଓଠ ଦେଇ ପବନ ବାହାରକରି ସୀତ୍କାର ଶବ୍ଦ କରେ । ଅପର ଭୟସୂଚକ ଶବ୍ଦ ଉଚ୍ଚ କିନ୍ତୁ ତା' ପୂର୍ବରୁ କୌଣସି ସୀତ୍କାର ଶବ୍ଦ କରି ନ ଥାଏ । ଏହା କେତେକ ପରିମାଣରେ ପ୍ରଶ୍ନବାଚୀ ଡାକପରି । ଏପରି ଡାକରେ ଅନ୍ୟ ଗୟଳ ଜବାବ ଦେଇଥାଏ ।

ଉପର୍ୟୁକ୍ତ ଅଣ୍ଡିଗ ଗୟଳ କ୍ଷଣମରି ଗର୍ଜନ କରେ ଓ ମାଈ ଗୟଳ ନିମ୍ନସ୍ୱରରେ ହମ୍ବା ଶବ୍ଦରେ ଛୁଆକୁ ଡାକିଥାଏ । ଅଣ୍ଡିଗ ଗୟଳ ମାଈ ସହିତ ରମଣ ବେଳେ ଏକ ପ୍ରକାର ପିଁ ପାଁ ବା ଘୁଘୁରିଆ ଶବ୍ଦ କରେ । ଏହା ଅନେକ ପରିମାଣରେ ପକ୍ଷୀର ଶବ୍ଦପରି । ଏତେବଡ଼ ପ୍ରାଣୀ ଏଭଳି କ୍ଷୀଣ ଶବ୍ଦ କରିବା ଆଶ୍ଚର୍ଯ୍ୟର କଥା ! ବନ୍ୟ ମେଷ ଓ ଛାଗଳମାନଙ୍କର ଡାକ ଗୃହପାଳିତ ମେଷ ଓ ଛାଗଳଙ୍କ ପରି । ଭୟଭୀତ ହେଲେ ଉକ୍ତିଆଳ ଏକ ପ୍ରକାର କର୍କଶ ଘୁଘୁରିଆ ଶବ୍ଦ କରେ ଓ ଅଗ୍ରପାଦରେ ଭୂମିକୁ ବାଡ଼ାଏ । ଏହା ଶୁଣି ଦଳର ସମସ୍ତେ ପଳାଇଯାନ୍ତି ।

<u>ପରିବାର ଜୀବନ</u> – ଗୟଳ ଦଳ ଦଳ ହୋଇ ବାସ କରନ୍ତି । ପ୍ରତ୍ୟେକ ଦଳରେ ଆଠଟିରୁ ବାରଟି ଯାଏ ପ୍ରାଣୀ ଥାନ୍ତି । ଏମାନେ ସମସ୍ତେ ଗୋଟିଏ ପରିବାରର । ତୃଣଭୂମି ଅନ୍ୱେଷଣରେ ଓ ଅନ୍ୟ କାରଣରୁ ଏକାଧିକ ଛୋଟ ଛୋଟ ଦଳ ଏକତ୍ରିତ ହୋଇ ବଡ଼ ଦଳ ଗଠନ କରି ବୁଲିବାର ମଧ୍ୟ ଦେଖାଯାଏ । ପ୍ରଜନନ ଋତୁ ବ୍ୟତୀତ ଅନ୍ୟ ସମୟରେ ଅଣ୍ଡିଗ ଗୟଳ ଶାନ୍ତିପୂର୍ଣ୍ଣ ଭବେ ମାଈଙ୍କ ସହିତ ମିଶି ବୁଲୁଥାନ୍ତି । ଅଣ୍ଡିଗ ଗୟଳ ବୟଃପ୍ରାପ୍ତ ହେଲେ ଏକାକୀ ବା ଅନ୍ୟ ବୟଃପ୍ରାପ୍ତ ଅଣ୍ଡିଗଙ୍କ ସହିତ ମିଶି ଚରୁଥିବା ଦେଖାଯାଏ ମାତ୍ର ରମଣ ଋତୁରେ ସେମାନଙ୍କ ମଧ୍ୟରେ ପୂର୍ବର ସମସ୍ତ ସଖ୍ୟତା ଲୋପ ପାଇଯାଏ ଏବଂ ମାଈ ଗୟଳ ଉପରେ ଆଧିପତ୍ୟ ପାଇଁ ବୟଃପ୍ରାପ୍ତ ଅଣ୍ଡିଗମାନଙ୍କ ମଧ୍ୟରେ ଲଢ଼ାଇ ହୁଏ । ବିଜେତା ଅଣ୍ଡିଗ ଦଳର ସମସ୍ତ ମାଈଙ୍କ ଉପରେ ଆଧିପତ୍ୟ ବିସ୍ତାର କରେ ଓ ଅନ୍ୟ ସବୁ ବୟଃପ୍ରାପ୍ତ ଅଣ୍ଡିଗମାନଙ୍କୁ ଘଉଡ଼ାଇ ଦିଏ । କେବଳ ଅପ୍ରାପ୍ତବୟସ୍କ ଅଣ୍ଡିଗ ମାଈଙ୍କ ସହିତ ରହନ୍ତି । ବିଜେତା ଅଣ୍ଡିଗ ନିର୍ଦ୍ଦିଷ୍ଟ ଅଞ୍ଚଳରେ ତା'ର ମାଈ ପଲଙ୍କ ପାଇଁ ଚରଣଭୂମି ସ୍ଥାପନ କରେ ଏବଂ ଅନ୍ୟ କୌଣସି ଗୟଳ ପଲଙ୍କୁ ତା ଭିତରକୁ ପ୍ରବେଶ କରିବାକୁ ଦିଏ ନାହିଁ । ରମଣ ଋତୁ ଶେଷରେ ଅଣ୍ଡିଗ ଗୟଳ ମାଈମାନଙ୍କୁ ଛାଡ଼ି ଚାଲିଯାଏ ଓ ଏକାକୀ ଚରିବୁଲେ । ସେ ଏକାକୀ ବା ଅନ୍ୟ ଅଣ୍ଡିଗ ଗୟଳଙ୍କ ସହିତ ପରବର୍ତ୍ତୀ ରମଣ ଋତୁ ପର୍ଯ୍ୟନ୍ତ ଏକାଠି ଦଳବାନ୍ଧି ରହେ । ପୁଣି ରମଣ ଋତୁ ଆସିଲେ ସେମାନଙ୍କ ମଧ୍ୟରେ ଲଢ଼ାଇ ଆରମ୍ଭ ହୁଏ । ବୁଢ଼ା, ରମଣ ଲିପ୍ସା ଲୋପ ପାଇଥିବା ଅଣ୍ଡିଗ ଗୟଳମାନେ

ଆଉଁ ଦଳକୁ ନ ଆସି ଏକାକୀ ଜୀବନଯାପନ କରନ୍ତି । ଛୁଆ ଜନ୍ମ କରିବା ପୂର୍ବରୁ ମାଈ ଗୟଳ ଦଳରୁ ବାହାରିଯାଇ ନିଭୃତ ସ୍ଥାନ ଦେଖି ଶାବକ ପ୍ରସବ କରେ । ସଦ୍ୟଜାତ ଗୟଳ ଶାବକ ଘାସ ଉପରେ ଗୋଡ଼ ଜାକି ବେକକୁ ଆଗକୁ ପ୍ରସାରିତ କରି ରହିଥାଏ । ଏତେବେଳେ ତା'ର ଦେହର ଫିକାବର୍ଣ୍ଣ ଶୁଖିଲା ଘାସ ସହିତ ମିଶିଯିବାରୁ ସହଜରେ ବାରିହୁଏ ନାହିଁ । ମା' ଗୟଳ ଛୁଆ ପାଖରେ ଥାଏ ; ମାତ୍ର ଭୟଭୀତ ହେଲେ ଛୁଆକୁ ଛାଡ଼ି ଦେଇ ଆତ୍ମରକ୍ଷା ପାଇଁ ଦଳକୁ ପଳାଇଯାଏ ।

ଭାରତୀୟ ଅନ୍ୟ ବନ୍ୟ ଗୋ-ଜାତି ପ୍ରାଣୀମାନଙ୍କ ଠାରେ ମଧ୍ୟ ଅନୁରୂପ ପରିବାର ଜୀବନ ଦେଖିବାକୁ ମିଳେ । ରମଣ ଋତୁ ଭିନ୍ନ ଅନ୍ୟ ଋତୁରେ ବୟଃପ୍ରାପ୍ତ ଅଣ୍ଡିରମାନେ ମାଈଙ୍କ ଠାରୁ ପୃଥକ୍ ହୋଇ ରହନ୍ତି । ମାଈମାନେ ଶିଶୁପାଳନର ସମସ୍ତ ଭାର ନେଇଥାନ୍ତି ।

## ଗୟଳ
### ୨

ଗୟଳର ପ୍ରକାଣ୍ଡ ମୁଣ୍ଡ, ସ୍ଥୂଳ ଦେହ, ମଜବୁତ୍ ଗୋଡ଼- ଏ ସମସ୍ତ ତାର ବଳ ଓ ଶକ୍ତିର ପ୍ରତୀକ । କାନ୍ଧପାଖରୁ ମେରୁଦଣ୍ଡ ସିଧାରେ ଏକ ଉଚ୍ଚ ମାଂସଳ ହିଡ଼ ପିଠି ମଝିଯାଏ ଯାଇ ହଠାତ୍ ଶେଷ ହୋଇ ଯାଇଥାଏ । ଏହା ଗୟଳର ଏକ ବିଶେଷତ୍ୱ । ଗୟଳ ଗୋଟିଏ ବନ୍ୟ ଗାଈ ଏବଂ ବନ୍ୟ ଗାଈମାନଙ୍କ ମଧ୍ୟରେ ବୃହତ୍ତମ । କାନ୍ଧଠାରେ ଅଣ୍ଡିର ଗୟଳର ଉଚ୍ଚତା ପ୍ରାୟ ଦୁଇ ମିଟରରୁ ଟିକେ ଊଣା (6 ଫୁଟ 4 ଇଞ୍ଚ ବା 195 ସେଣ୍ଟିମିଟର) ହାରାହାରି ଉଚ୍ଚତା 175-180 ସେଣ୍ଟିମିଟର (5 ଫୁଟ 8 ଇଞ୍ଚରୁ 5 ଫୁଟ 10 ଇଞ୍ଚ) । ମାଈ ଗୟଳ ଅଣ୍ଡିର ଠାରୁ ପ୍ରାୟ 10 ସେଣ୍ଟିମିଟର (4 ଇଞ୍ଚ) କ୍ଷୁଦ୍ର ହୋଇଥାନ୍ତି । ଦକ୍ଷିଣ ଭାରତ ଓ ଆସାମର ପାର୍ବତ୍ୟ ଅଞ୍ଚଳର ଗୟଳ ସବୁଠାରୁ ବଡ଼ । ଗୟଳର ବିରାଟ ମୁଣ୍ଡରୁ ଦୁଇଟି ବଡ଼ ବଡ଼ ଶିଙ୍ଗ ଦୁଇକଡ଼କୁ ମେଲାଇ ହୋଇ ପୁଣି ଉପରଆଡ଼କୁ ବଙ୍କାଇ ହୋଇ ରହିଥାଏ । ଶିଙ୍ଗର ଲମ୍ବା ସାଧାରଣତଃ 85 ସେଣ୍ଟିମିଟର (33 ଇଞ୍ଚ) ; 100 ସେଣ୍ଟିମିଟର (40 ଇଞ୍ଚ) ଅସାଧାରଣ । ମାଈ ଗୟଳର ଶିଙ୍ଗ ଅଣ୍ଡିରର ଶିଙ୍ଗ ତୁଳନାରେ କ୍ଷୁଦ୍ର । ଗୋଟିଏ ବୁଢ଼ା ଷଣ୍ଢ ଗୟଳର ଓଜନ 900 କିଲୋଗ୍ରାମ (2000 ପାଉଣ୍ଡ) ପର୍ଯ୍ୟନ୍ତ ହୋଇପାରେ ।

ନବଜାତ ଗୟଳ ଶିଶୁର ବର୍ଣ୍ଣ ଫିକା ସ୍ୱର୍ଣ୍ଣାଭ ହଳଦିଆ । କ୍ରମେ ଏହା ବାଦାମୀ ଆସିଆ ହୋଇ ପରେ ବାଦାମୀ ଏବଂ ଶେଷରେ କଳ-ବାଦାମୀ ବା କଫି ରଙ୍ଗ ଧାରଣ କରେ । ମାଈ ଓ ଗଞ୍ଜା ବୟସର ଅଣ୍ଡିରଙ୍କର ବର୍ଣ୍ଣ ଏହିପରି । ପାଞ୍ଚବର୍ଷରୁ ଉର୍ଦ୍ଧ୍ୱ ଅଣ୍ଡିରା ଗୟଳ ଦେଖିବାକୁ ଦ୍ୱିପଣ୍ଡ କଳା ଓ ସେମାନଙ୍କର ଦେହ ପ୍ରାୟ ଲୋମହୀନ । ଗୟଳର ଲଲାଟ (forehead) ପାଉଁଶିଆ । ଗୋଡର ନିମ୍ନ ଅଂଶ ଧଳା ବା ହଳଦିଆ–ଆସିଆ, ମନେ ହେବ ଯେପରି ମୋଜା ପିନ୍ଧିଛି । ଜଙ୍ଘ ଓ ଆଗ ଗୋଡ଼ର ସନ୍ଧିରେ ଥିବା ଲୋମ କଳଙ୍କି ରଙ୍ଗର । ଚିବୁକ ତଳକୁ ଛୋଟ ଗଳ କମ୍ବଳଟିଏ ଝୁଲୁଥାଏ । ଆହୁରି ତଳକୁ ଆଗଗୋଡ ସାମନାରେ ଆଉ ଏକ ବଡ କମ୍ବଳ ରହିଥାଏ । ଅଳ୍ପ-ବୟସ ଅଣ୍ଡିରା ଗୟଳର ଶିଙ୍ଗ ଚିକ୍କଣ, କମଳାରଙ୍ଗ ପରି ହଳଦିଆ ଓ ଅଗ୍ରଭାଗ କଳା । ପାଞ୍ଚବର୍ଷରୁ ଅଧିକ ବୟସର ଅଣ୍ଡିରା ଗୟଳର ଶିଙ୍ଗ ଆବଡ଼ା ଖାବଡ଼ା ଅର୍ଥାତ୍ ଲହରୀପରି ଭଙ୍ଗ ବିଶିଷ୍ଟ ; ଅନେକ ପରିମାଣରେ ସବୁଜ ବର୍ଣ୍ଣର ଓ ଅଗ୍ରଭାଗରେ ସୂତା ବାହାରି ଯାଇଥିବା ପରି ହୋଇଥାଏ । ମାଈ ଗୟଳର ପୃଷ୍ଠ–ହିଡ଼ ଅଣ୍ଡିରା ପରି ଉଦ୍‌ଗତ ନୁହେଁ, ଗଳକମ୍ବଳ କ୍ଷୁଦ୍ର ଓ ଶିଙ୍ଗ ଭିତରଆଡ଼କୁ ଅଧିକ ବକ୍ର । ନବଜାତ ଗୟଳ ତିନିମାସର ନ ହେଉ-ଯାଏ ତା'ର ବର୍ଣ୍ଣ ହାଲୁକା–ବାଦାମୀ ଓ ଗୋଡ଼ର ଧଳା ବା ହଳଦିଆ ଆସିଆ "ମୋଜା" ନ ଥାଏ । ତିନିମାସ ପରେ ତା'ର ବର୍ଣ୍ଣ ଘନ-ବାଦାମୀ ହେବା ସଙ୍ଗେ ସଙ୍ଗେ ଗୋଡ଼ର ମୋଜା ସ୍ପଷ୍ଟ ଜଣାପଡ଼େ ।

ଗୟଳ ପାହାଡ଼ିଆ ଜଙ୍ଗଲ ଅଞ୍ଚଳର ପ୍ରାଣୀ । ଖରାଦିନେ ନାଳ ଓ ଝରଣା ଶୁଖିଯିବା ଫଳରେ ଯଥେଷ୍ଟ ଘାସପତ୍ରର ଅଭାବ ଘଟେ ଏବଂ ସେମାନେ ନିମ୍ନଭୂମିକୁ ଚରିବାପାଇଁ ଓ ପାଣିପାଇଁ ଓହ୍ଲାଇ ଆସନ୍ତି । ଦକ୍ଷିଣ ଭାରତର ଉପତ୍ୟକା ଅଞ୍ଚଳରେ ସେମାନେ 1830 ମିଟାର (6000 ଫୁଟ) ବା ଅଧିକ ଉଚ୍ଚତାଯାଏ ଦେଖାଯାନ୍ତି । ମହୀଶୂରର ପାର୍ବତୀୟ ଉପତ୍ୟକାରେ ବିଶେଷ କରି 1000 ମିଟାର ଉଚ୍ଚତାରେ ଅବସ୍ଥିତ ବାନ୍ଦିପୁର ଅଭୟାରଣ୍ୟରେ ଗୟଳ ବହୁସଂଖ୍ୟାରେ ଦେଖିବାକୁ ମିଳନ୍ତି । ହିମାଳୟର ଉଚ୍ଚଭୂମିରେ ବାସ ନ କରି ପର୍ବତମାଳାର ପାଦଦେଶର ଅରଣ୍ୟରେ ଗୟଳ ରହନ୍ତି । ସେମାନଙ୍କର ବାସ ଲାଗି ଜଙ୍ଗଲ ଅପରିହାର୍ଯ୍ୟ । ଭାରତ, ବର୍ମା, ଥାଇଲାଣ୍ଡ, ଇଣ୍ଡୋଚୀନ ଓ

ମାଲୟ ଉପଦ୍ୱୀପର ଘନ ଅରଣ୍ୟ ସେମାନଙ୍କର ବାସଭୂମି । ଓଡ଼ିଶାର ସବୁ ଜିଲ୍ଲାର ଜଙ୍ଗଲରେ ଅଳ୍ପ ଅଧିକ ସଂଖ୍ୟାରେ ଗୟଳ ଅଛନ୍ତି । ଅରଣ୍ୟର



[ ଚିତ୍ର ନଂ ୨୨, ଗୟଳ ]

ଯେଉଁ ଅଞ୍ଚଳରେ ଯାତାୟତ ପ୍ରାୟ ନାହିଁ, ସେହି ସ୍ଥାନରେ ଗୟଳ ରହିବାକୁ ଭଲ ପାନ୍ତି ।

ଗୟଳ ସକାଳ ପ୍ରାୟ ନଅଟା ଯାଏ ଚରେ । ପାଗ ମେଘୁଆ ହୋଇଥିଲେ ଟିକିଏ ଡେରିଯାଏ ଚରିପାରେ । ଦିନର ଗରମ ସମୟରେ ଜଙ୍ଗଲ ଭିତରକୁ ଯାଇ ବିଶ୍ରାମ ନିଏ । ଖରା ମଉଳି ଗଲେ ଉପରବେଳା ପୁଣି ଚରିବାକୁ ବାହାରେ । ଘାସ ସେମାନଙ୍କର ମୁଖ୍ୟ ଖାଦ୍ୟ । ସେମାନେ ପତ୍ର ଓ କେତେକ ଗଛର ଛାଲି ମଧ୍ୟ ଖାଆନ୍ତି । ରାତି ଗୟଳର ପ୍ରଧାନ ଚରିବା ସମୟ ।

ପାହାଡ଼ ବା ଜଙ୍ଗଲରେ କୌଣସି ସ୍ଥାନରେ ଲୁଣା ମାଟି ଥିଲେ ଅନ୍ୟ ବନ୍ୟଜନ୍ତୁଙ୍କ ପରି ଗୟଳ ମଧ୍ୟ ତାକୁ ଯାଇ ଗ୍ରଟେ । ଲୁଣାମାଟି ଖାଇବା ଦ୍ୱାରା ସେମାନଙ୍କ ପେଟର କୃମି ନାଶ ହୁଏ ବୋଲି ବିଶ୍ୱାସ କରଯାଏ ।

ଗୟଳ ସ୍ୱଭାବତଃ ଭୟାଳୁ ପ୍ରକୃତିର । ସେମାନଙ୍କର ବିରାଟ ବପୁ ଓ ତୀବ୍ର ଘ୍ରାଣ ଶକ୍ତି ହେଉଛି ସେମାନଙ୍କର ରକ୍ଷା କବଚ ।

ସେମାନଙ୍କର ଦୃଷ୍ଟି ଓ ଶ୍ରବଣ ଶକ୍ତି ତୀକ୍ଷ୍ଣ ନୁହେ । ଗୋ-ବଂଶର ପ୍ରାଣୀମାନଙ୍କର ତାହା ହିଁ ଲକ୍ଷଣ ।



[ ଚିତ୍ର ନଂ 100, ଗୟଳର ବିସ୍ତୃତି ]

ସାଧାରଣତଃ ଡ଼ିସେମ୍ବର–ଜାନୁୟାରୀ ମାସରେ ଗୟଳମାନଙ୍କର ଯୌନମିଳନ ହୁଏ । ଅଗଷ୍ଟ–ସେପ୍‌ଟେମ୍ବର ମାସରେ ଶାବକ ଜନ୍ମ ହୁଅନ୍ତି । ନଭେମ୍ବରରୁ ମାର୍ଚ୍ଚ ସେମାନଙ୍କର ଜନନ ଋତୁ । ରମଣ ଋତୁରେ ଅଣ୍ଡିରାମାନେ ଏକପ୍ରକାର ବୋବାଳି କରନ୍ତି । ଏହି ବୋବାଳି ଡ଼ିସେମ୍ବର ମାସରୁ ଜୁନ୍ ମାସରେ ବର୍ଷା ଆରମ୍ଭଯାଏ ଶୁଣିବାକୁ ମିଳିଥାଏ । ମାର୍ଚ୍ଚ–ଏପ୍ରିଲ ମାସରେ ଏ ଡାକ ସବୁଠାରୁ ବେଶୀ । ଗୟଳର ଗର୍ଭଧାରଣ କାଳ ନଅ ମାସ ।

ଗୟଳ-ଛୁଆ ଦୁଇବର୍ଷ ବୟସରେ ପ୍ରଥମ କରି ଫଳଯାଏ ଓ ତିନିବର୍ଷ ବୟସ ହେଲବେଳକୁ ଶାବକ ପ୍ରସବ କରେ । ବର୍ଷକୁ ଗୋଟିଏ କରି ଛୁଆ କରେ । ପ୍ରସବ ପୂର୍ବରୁ ମାଈ ଗୟଳ ଦଳରୁ ବାହାରିଯାଇ ନିକଟବର୍ତ୍ତୀ ଏକ ସ୍ଥାନରେ ଛୁଆ ଜନ୍ମ କରେ । ଦିନ କେତୋଟି ପରେ ମା' ଓ ଛୁଆ ପୁଣି ଆସି ଦଳରେ ଯୋଗ ଦିଅନ୍ତି । ଏ ସମୟତକ ଦଳର ଅନ୍ୟମାନେ ନିକଟରେ ଚରୁଥାନ୍ତି ; ଦୂରକୁ ଚାଲିଯାନ୍ତି ନାହିଁ । ଗୟଳ ଶାବକ ଜନ୍ମ ପରେ ନିଃସହାୟ ବୋଲି



[ଚିତ୍ର ନଂ 101, ଭାରତର ଉତ୍ତର-ପୂର୍ବ ଅଞ୍ଚଳ ଓ ଉତ୍ତର ବର୍ମାର ଅର୍ଦ୍ଧ-ବନ୍ୟ ଗୟଳ 'ମିଥୁନ୍' । ବନ୍ୟ ଗୟଳର ଶିଙ୍ଗ ଅର୍ଦ୍ଧ ଗୋଲକାର, ମାତ୍ର ମିଥୁନ୍‌ର ଶିଙ୍ଗ ପ୍ରାୟ ସିଧା ।]

ଧାରଣା କରିବା ଭୁଲ୍ ହେବ । ଜନ୍ମର ଦଶମିନିଟ ପରେ ଛୁଆ ଉଠି ଠିଆ ହୁଏ ଓ କୋଡ଼ିଏମିନିଟ ପରେ ମା' ସହିତ ଦୌଡ଼ିବାକୁ ଆରମ୍ଭ କରେ ।

ଗୟଳ ଦଳବାନ୍ଧି ରହନ୍ତି । ଦଳରେ ଦୁଇରୁ ଚାଳିଶଟି ଯାଏ ପ୍ରାଣୀ ଥାନ୍ତି । ସାଧାରଣତଃ 8ରୁ 11ଟିକୁ ନେଇ ଗୋଟିଏ ଦଳ ହୋଇଥାଏ । ଛୁଆ ଛୋଟ ହୋଇଥିଲେ ମା' ଗୟଳ ଛୁଆକୁ ନେଇ ଅଲଗା ଚରେ ।

ପ୍ରଜନନ ଋତୁରେ କଳା ଗୟଳ ଆସି ମାଈ ଗୟଳ ସହିତ ମିଶନ୍ତି । ଅନ୍ୟ ସମୟରେ ଅଣ୍ଡିଗ ଗୟଳ ଏକାକୀ ବା ଅନ୍ୟ ଅଣ୍ଡିଗଙ୍କ ସହିତ ମିଶି ଚରି ବୁଲୁଥାଏ । ପ୍ରଜନନ ଋତୁରେ କଳା ଅଣ୍ଡିଗ ଗୟଳ ଦଳରେ ଏକାଦିକ୍ରମେ ବେଶୀଦିନ ରହେ ନାହିଁ ।

ଗୋଟିଏ ଦଳ ଗୟଳ ଚରୁଥିଲା ବେଳେ ସେମାନଙ୍କର ଦଳପତି କିଏ ସେ କଥା ସହଜରେ ଜଣାପଡ଼େ ନାହିଁ । ମାତ୍ର ଗତି କରୁଥିଲା ବେଳେ ଦଳପତି କିଏ, ତାହା ବାରି ହୋଇଯାଏ । ବୟଃପ୍ରାପ୍ତ ମାଈ ବା କଳା ବା ବାଦାମୀ ଅଣ୍ଡିଗ ଦଳପତି ରୂପେ ଆଗେ ଆଗେ ଚାଲେ । କଳା ଅଣ୍ଡିଗ ସାଧାରଣତଃ ଦଳର ଶେଷରେ ରହିଥାଏ । ଦଳର ଦଳପତି ସାଧାରଣତଃ ଦଳ ଆଗରେ 20-35 ମିଟର ଦୂରରେ ରହିଥାଏ ଏବଂ ସେ ଅତ୍ୟନ୍ତ ସତର୍କ । ଦଳର ଅନ୍ୟମାନେ କୌଣସି ଆଡ଼କୁ ବିଶେଷ ନିଘା ନ ରଖି ଚରି ବୁଲୁଥାନ୍ତି । ଏଣୁ ଗୟଳ ଦଳର ଦଳପତିର ଦାୟିତ୍ୱ ସବୁଠାରୁ ବେଶୀ ।

ବିଭିନ୍ନ ଭାଷାରେ ଗୟଳର ନାମ – ହିନ୍ଦି–ଗୌର, ଗୌର ଗାଈ ; ମାରାଠୀ–ଗାଭିୟା, ଗାଓ୍ୟା ; କନ୍ନଡ଼–କାଡୁୟେଥୁ, କାଟିଇ ; ତାମିଲ–କାଟୁ ଏରୁମାଇ ; ମାଲୟାଲୀ–କାଟୁ ପୋଥ୍ ; ବର୍ମୀ–ପିଇଓଙ୍ଗ ; ଇଂରାଜୀ–The Gaur, Indian bison । ବୈଜ୍ଞାନିକ ନାମ– Bos gaurus H. Smith, ଇଂରାଜୀରେ bison ବୋଲାଉଥିବା ପ୍ରାଣୀ ବୋଭିଡ଼ି (Bovidae) ବଂଶର ହେଲେ ମଧ୍ୟ ଗୟଳ ଠାରୁ ଭିନ୍ନ ଓ ଭାରତରେ ଦେଖାଯାନ୍ତି ନାହିଁ । ଏହି ପ୍ରାଣୀମାନଙ୍କର ଦେହ ବିରାଟ, ଶିଙ୍ଗ କ୍ଷୁଦ୍ର, ମଜବୁତ୍ ଓ ବଡ଼ ମୁଣ୍ଡଟିର ଦୁଇପଟେ ଛଡ଼ାରେ ରହିଥାଏ ; ସାମାନ୍ୟ ଅଂଶ ଅଧିକ ଓଜନିଆ, ବେକ ପଛକୁ କୁଦ ଥାଏ ; ସ୍ଥୂଳ ଲମ୍ବା ଲୋମ ମୁଣ୍ଡ, ବେକ, କାନ୍ଧ ଓ ଛାତିକୁ ଆବୃତ କରି ଓହଳି ରହିଥାଏ । ଏଭଳି ପ୍ରାଣୀ ଆମେରିକା ଓ କାନାଡ଼ାରେ ଦେଖାଯାନ୍ତି ; ୟୁରୋପରେ ଆଉ ନାହାନ୍ତି । ଗୟଳ କାହିଁକି "ଭାରତୀୟ ବାଇସନ" ନାମ ପାଇଲା ସେ ବିଷୟରେ ଏକ କୌତୂହଳପ୍ରଦ କଥା ଅଛି । ବ୍ରିଟିଶ ରାଜତ୍ୱ ସମୟରେ ଜଣେ ଗୋରା ଶିକାରୀ ଗୋଟିଏ ଗୟଳ ଦେଖି ଗାଁ ଲୋକଙ୍କୁ ପଚାରିଲେ, ଏହା କି ଜନ୍ତୁ ? ଗ୍ରାମବାସୀ ମର୍ଜିଣି

ଭାବି କହିଲା "ଭଇଁଷା" । ଶିକାରୀ ଭାବିଲେ ସେ କହିଲା "ବାଇସନ" । ତାଙ୍କଠାରୁ ଗୟଳର ନାମ ହେଲା "ଭାରତୀୟ ବାଇସନ୍" । ଭାରତର ପୂର୍ବାଞ୍ଚଳରେ ଗୟଳକୁ "ମିଥୁନ୍" କୁହାଯାଏ ।

# ସାଇଂଗ୍

ସାଇଙ୍ଗ (Banteng, Tsaine) ବର୍ମାର ବନ୍ୟଗାଇ । ଏହା ବର୍ମା ବ୍ୟତୀତ ମାଲୟ ଉପଦ୍ୱୀପ, ବୋର୍ଣ୍ଣିଓ ଓ ଜାଭାରେ ବାସକରେ । ମଣିପୁର ପାହାଡ଼ରେ ଏ ଗାଇ ଅଛନ୍ତି ବୋଲି ଶୁଣିବାକୁ ମିଳେ । ହୁଏତ ଆଗେ ଥିଲେ ; ଏବେ ଥିବା ସନ୍ଦେହ । ସାଇଙ୍ଗ୍ ଗୟଳ ଠାରୁ ଛୋଟ । ହେଲେ ହେଁ ଏହାର ଦେହ ଗୟଳ ପରି ନିଦା । କାନ୍ଧଠାରେ ଉଚ୍ଚତା 170 ସେଣ୍ଟିମିଟାର (5 ଫୁଟ 6 ଇଞ୍ଚ) । ଅଣ୍ଡିରର ଶିଙ୍ଗ 60 ସେଣ୍ଟିମିଟାର (2 ଫୁଟ) ଯାଏ ଲମ୍ବା ହୁଏ । ମାଈର ଶିଙ୍ଗ ସେତେ ବଡ଼ ଓ ମୋଟା ହୁଏ ନାହିଁ ।

ଗୟଳ ତୁଳନାରେ ସାଇଙ୍ଗ୍‌ର ଗୋଡ଼ ଲମ୍ବା ଓ ପିଠି ଉପରେ ହିଡ଼ ସେତେ ସ୍ପଷ୍ଟ ନୁହେଁ । ଗୟଳର ଓସାରିଆ ନାକ ସାଇଙ୍ଗ ଠାରେ ଦେଖାଯାଏ ନାହିଁ । ଅଳ୍ପ ବୟସ୍କ ଅଣ୍ଡିର ଓ ମାଈଙ୍କର ବର୍ଣ୍ଣ ଉଜ୍ଜଳ ବାଦାମୀ, ମୁହଁ ଧଳା ଓ ଗୋଡ଼ରେ ଧଳା "ମୋଜା" ଥାଏ । ଅଧିକ ବୟସର ଅଣ୍ଡିର ସାଇଙ୍ଗଙ୍କର ବର୍ଣ୍ଣ ଧୂସର ବା ଘନ ଚକୋଲେଟ୍-ବାଦାମୀ ।

ଗୟଳ ପରି ଏମାନେ ଘନ ଜଙ୍ଗଲରେ ବାସ ନ କରି ବାଉଁଶ ଓ ଘାସଥିବା, ପତ୍ରଝଡ଼ା ଦେଉଥିବା ଜଙ୍ଗଲ ବା ମିଶ୍ରିତ ଚିର ସବୁଜ ସମତଳ ଜଙ୍ଗଲ ଅଞ୍ଚଳରେ ବାସ କରନ୍ତି । ବର୍ମାରେ ଅଧିକ ଜମିରେ ଫସଲ ହେବା ସଙ୍ଗେ ସଙ୍ଗେ ସେମାନେ ସ୍ଥାନଚ୍ୟୁତ ହୋଇ କ୍ରମେ ଯାଇ ଗଭୀର ଜଙ୍ଗଲରେ ବାସ କଲେଣି । ସେମାନଙ୍କର ଆଚରଣ ଓ ସ୍ୱଭାବ ଅନେକ ପରିମାଣରେ ଗୟଳ ପରି । ମାତ୍ର ସେମାନେ ଗୟଳ ପରି ଏତେ ଭୟାଳୁ ନୁହନ୍ତି । ବେଳେ ବେଳେ ଚାଷ ଜମିରେ ପଶି ଫସଲ ଉଜାଡନ୍ତି । ବେଶୀ ଖରା ସମୟରେ ସାଇଙ୍ଗ ବିଶ୍ରାମ ନିଏ ଏବଂ ସକାଳେ ଓ ଉପରବେଳା ଚରେ । ବଣରେ 'ଲୁଣ-ଚଟା' (salt-lick) ସ୍ଥାନଥିଲେ ସେଠାରେ ଆସି ଲୁଣ

ଘଟନ୍ତି । ଭିନ୍ନ ଭିନ୍ନ ଋତୁରେ ଚରିବା ଭୂମି ଅନ୍ୱେଷଣରେ ସାଇଙ୍ଗ ଦଳ ଏକ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଗତି କରିବାର ଦେଖାଯାଏ । ଏପ୍ରିଲ ମାସରେ ବଣରେ ନିଆଁ ଲଗି ତଳର ଶୁଖିଲ ପତ୍ର ଜଳିଯାଏ । ତା'ପରେ ନୂଆ ଘାସ କଅଁଳିଲେ ସେମାନେ ଆସି ଚରନ୍ତି । ମୌସୁମୀ ବର୍ଷା ପ୍ରାରମ୍ଭରେ କଅଁଳିଆ ପତ୍ର ଖାଇବାକୁ ବାଉଁଶ ଜଙ୍ଗଲରେ ପଶନ୍ତି ।

ସାଇଙ୍ଗର ପ୍ରଧାନ ଶତ୍ରୁ ବାଘ । ଗୟଳ ପରି ଏମାନେ ବାଘ ସହିତ ଯୁଝି ପାରନ୍ତି ନାହିଁ । ଏଣୁ ସାଇଙ୍ଗ ସଦାବେଳେ ସତର୍କ ରହିଥାଏ ଓ ଗୟଳ ଠାରୁ ଅଧିକ ଡରକା । ଏମାନଙ୍କର ଘ୍ରାଣ, ଶ୍ରବଣ ଓ ଦୃଷ୍ଟିଶକ୍ତି ଅତି



[ ଚିତ୍ର ନଂ 102, ସାଇଙ୍ଗ ]

ଉତ୍ତମ । ଗୃହପାଳିତ ଗାଈପରି ଏମାନେ ବୋବାଳି କରନ୍ତି ; ମାତ୍ର ଅଳ୍ପ ଥର ଶବ୍ଦ କରନ୍ତି । ଗୟଳ ତୁଳନାରେ ସାଇଙ୍ଗର ଚଳଚଳ ଅଧିକ ନୀରବ । ଭୟଭୀତ ହେଲେ ଏହା ଉଚ୍ଚସ୍ୱରରେ ନାସାଧ୍ୱନି କରି ଦ୍ରୁତବେଗରେ ପଳାୟନ କରେ ।

ଏମାନେ ଦଳବାନ୍ଧି ରହନ୍ତି । ଗର୍ଭଧାରଣ କାଳ ପ୍ରାୟ ନଅ ମାସ । ସମ୍ଭବତଃ ସେପ୍‌ଟେମ୍ବର–ଅକ୍ଟୋବର ଏମାନଙ୍କର ପ୍ରଧାନ ରମଣ କାଳ । ଥରକେ ଗୋଟିଏ ବା ଦୁଇଟି ଛୁଆ କରନ୍ତି ।

ବିଭିନ୍ନ ଭାଷାରେ ନାମ – ବର୍ମା–ସାଇଙ୍ଗ; ମାଲୟ–ସାପି ଭଟାନ; ଇଂରାଜୀ–Banteng, Tsaine। ବୈଜ୍ଞାନିକ ନାମ–Bos banteng wagner=(Bibos sondaicus)।

# ଚମରୀ ଗାଈ

ସବୁଠାରୁ ଉଚ୍ଚ ସ୍ଥାନରେ ବାସ କରୁଥିବା ଗୋ-ବଂଶର ପ୍ରାଣୀମାନଙ୍କ ମଧ୍ୟରେ ଚମରୀ ଗାଈ ଅନ୍ୟତମ । ଲଦାଖର ଉତ୍ତରାଞ୍ଚଳ, ତିବ୍ବତର ଉପତ୍ୟକା ଓ ତିବ୍ବତର କାନ୍‌ସୁ ଜିଲ୍ଲାର ଏକ ଅଞ୍ଚଳ ଚମରୀ ଗାଈର ବାସଭୂମି । ଭାରତର ଯେଉଁ ଅଞ୍ଚଳରେ ଏହି ଗାଈ ଦେଖାଯାନ୍ତି, ତାହାହେଲା ଲଦାଖର ଗ୍ଲେଞ୍ଚେନ୍‌ମୋ ଉପତ୍ୟକା । ଏହା ତିବ୍ବତୀୟମାନଙ୍କର ଗାଈ । ସେମାନେ ଏହାକୁ ଗାଈପରି ପାଳନ କରନ୍ତି ।

ଚମରୀଗାଈ ବେଶ୍ ହୃଷ୍ଟପୁଷ୍ଟ, ବଳବାନ ଓ କଷ୍ଟ ସହିଷ୍ଣୁ । ବୟଃପ୍ରାପ୍ତ ଚମରୀ ଷଣ୍ଢର କାନ୍ଧଠାରେ ଉଚ୍ଚତା ପ୍ରାୟ 170 ସେଣ୍ଟିମିଟାର (5 ଫୁଟ 6 ଇଞ୍ଚ) । ବେଳେ ବେଳେ 185 ସେଣ୍ଟିମିଟାର (6 ଫୁଟ) ଉଚ୍ଚର ଷଣ୍ଢ ମଧ୍ୟ ଦେଖାଯାଇ ଅଛନ୍ତି । ଗୋଟିଏ ବଡ଼ ଷଣ୍ଢର ଓଜନ ପ୍ରାୟ 545 କିଲୋଗ୍ରାମ (1200 ପାଉଣ୍ଡ) ହୁଏ । ଷଣ୍ଢମାନଙ୍କର ଶିଙ୍ଗ ଭଲଭାବେ ବର୍ଦ୍ଧିତ, ନଳାକାର ଓ ଆଗଆଡ଼କୁ ବାହାରିଥାଏ; ଅଗ୍ରଭାଗ ଉପରଆଡ଼କୁ ବଙ୍କା । ମୁଣ୍ଡ କେତେକ ପରିମାଣରେ ଆନତ । କାନ୍ଧସ୍ଥାନ ଉଚ୍ଚ । ପିଠି ସିଧା, ଗୋଡ଼ ଛୋଟ, ମାତ୍ର ବଳିଷ୍ଠ । ଦେହର ପାର୍ଶ୍ୱଭାଗ, ଛାତି, କାନ୍ଧ, ଜଙ୍ଘ ଓ ଲାଙ୍ଗୁଳ ନିମ୍ନ ଅର୍ଦ୍ଧାଂଶ ପଶମପରି ରକ୍ଷ ଲମ୍ବା ଲୋମ ଦ୍ୱାରା ଆଚ୍ଛାଦିତ । ଏହା ସାଙ୍ଗକୁ କ୍ଷୁଦ୍ର, ନରମ ଓ ଗହଳିଆ ଲୋମ ଦେହକୁ ଆବୃତ କରିଥିବାରୁ ଚମରୀ ଗାଈକୁ ଉଚ୍ଚ ମାଳଭୂମିରେ ଶୀତ କାଟେ ନାହିଁ । ଚମରୀ ଛୁଆ ଦୁଇ ତିନିମାସ ନ ହେଲାଯାଏ ତା ଦେହରେ ଲମ୍ବା ଲୋମ ଉଠେ ନାହିଁ ।

ବନ୍ୟ ଚମରୀ ଗାଈର ବର୍ଣ୍ଣ କଳାସିଆ ବାଦାମୀ । ଥୋମଣୀର ଅଗ୍ରାଂଶ ଧଳା । ଗୃହପାଳିତ ଚମରୀ ଷଣ୍ଢ ତୁଳନାରେ ବନ୍ୟ ଷଣ୍ଢର ଶିଙ୍ଗ ବହୁତ ବଡ଼ ହୋଇଥାଏ । ଗୃହପାଳିତ ଚମରୀର ଛାତି ଓ ଲାଙ୍ଗୁଳରେ

ଛାପି ଛାପିଆ ଧଳା ଚିହ୍ନ ଦେଖାଯାଏ । ବନ୍ୟ ଚମରୀ ଠାରେ ଏଭଳି ବର୍ଣ୍ଣ ଦେଖାଯାଏ ନାହିଁ । ଅନ୍ୟ ପକ୍ଷରେ ଗୃହପାଳିତ ଚମରୀ ବେଳେ ବେଳେ ସମ୍ପୂର୍ଣ୍ଣ କଳାରଙ୍ଗର ହୋଇଥାନ୍ତି ଓ ବନ୍ୟ ଚମରୀ ପରି ଖାଦ୍ୟ ଅନ୍ୱେଷଣରେ ଅତି ଉଚ୍ଚସ୍ଥାନକୁ ଯାଇପାରନ୍ତି ।

ଚମରୀ ଗାଈର ବିଶେଷତ୍ୱ ତା'ର ବାସସ୍ଥାନ । ସେଠାରେ ମେରୁ ପ୍ରଦେଶର ଶୀତ ସାଙ୍ଗକୁ ମରୁଭୂମିର ଶୁଷ୍କତା ବିଦ୍ୟମାନ । ସେମାନେ ପ୍ରବଳ ଥଣ୍ଡା ସହିତ ଅଭ୍ୟସ୍ତ । ଗ୍ରୀଷ୍ମାଞ୍ଚଳ ସେମାନଙ୍କ ପାଇଁ ଅସହ୍ୟ । ଗ୍ରୀଷ୍ମ-



[ ଚିତ୍ର ନଂ 103, ଚମରୀ ଗାଈ ]

କାଳରେ ଚମରୀ 4270 ରୁ 6100 ମିଟାର (14000 ରୁ 20000 ଫୁଟ) ଉଚ୍ଚତାରେ ଦେଖାଯାନ୍ତି । ଶୀତ ଋତୁରେ ମଧ୍ୟ ସେମାନେ ଯାହାଠୁ ବେଶୀ ନିମ୍ନଭୂମିକୁ ଆସନ୍ତି ନାହିଁ ।

ସେମାନେ ଛୋଟ ଛୋଟ ଦଳରେ ବାସ କରନ୍ତି । ଗ୍ରୀଷ୍ମକାଳରେ ପାହାଡ଼ିଆ ଅଞ୍ଚଳରେ ଉଠିଥିବା ଶକ୍ତ ଘାସବୁଦା ଓ ବୁଦାଳିଆ ଗଛ ସେମାନଙ୍କର ଖାଦ୍ୟ । ଶୀତ ଋତୁରେ ତାକୁ ତା'ବି ମିଳେ ନାହିଁ । ଶୀତ-କାଳର ଅନାହାର ଅବସ୍ଥା ସହିତ ସେମାନେ ଏପରି ଅଭ୍ୟସ୍ତ ଯେ ସେମାନଙ୍କୁ

ଶସ୍ୟ ଦେଲେ ମଧ୍ୟ ସେମାନେ ଖାଆନ୍ତି ନାହିଁ । ପାହାଡ଼ିଆ ଅଞ୍ଚଳରେ କୌଣସି ସ୍ଥାନରେ ମାଟି ଲୁଣିଆ ହୋଇଥିଲେ ସେମାନେ ତାକୁ ଯାଇ ଚାଟନ୍ତି । ଝରଣାର ଜଳ ଥଣ୍ଡା ହୋଇ ନିଦା ବରଫରେ ପରିଣତ ହେଲେ ମଧ୍ୟ ତୃଷା ମେଣ୍ଟାଇବା ପାଇଁ ଚମରୀ ବରଫକୁ ଚୋବାଇ ଖାଏ । କେତେକ ଉଚ୍ଚ ପାର୍ବତୀୟ ଅଞ୍ଚଳରେ ଗ୍ରୀଷ୍ମ ଋତୁରେ ମଧ୍ୟ ବରଫ ତରଳେ ନାହିଁ । ସେ ସ୍ଥାନମାନଙ୍କରେ ସେମାନେ ବରଫକୁ ଚୋବାଇ ଖାଆନ୍ତି । ଯେଉଁଠ ବରଫ ତରଳେ ସେଠି ଥଣ୍ଡାପାଣିକୁ ପିଅନ୍ତି । ଅନ୍ୟ ଜାତି ଗାଈମାନଙ୍କ ପରି ଚମରୀକୁ ପ୍ରବାହମାନ ଜଳରେ ଠିଆ ହୋଇ ରହିବାକୁ ବା ଦଳି ଚକଟି ହେବାକୁ ସୁଖ ଲାଗେ । ହିମାଳୟର ଉଚ୍ଚ ଅଞ୍ଚଳରେ ବରଫ ତରଳି ସୃଷ୍ଟି ହେଉଥିବା ଝରଣାର ଜଳ ବରଫ ପରି ଥଣ୍ଡା ହେଲେ ମଧ୍ୟ ଚମରୀମାନେ



[ଚିତ୍ର ନଂ 104, ଗୃହପାଳିତ ଅଣ୍ଡିରା ଚମରୀ ଗାଈ ଓ ଗୃହପାଳିତ ଗାଈର ଔରସରୁ ଜାତ ଗ୍ଲାଙ୍ଗ୍ (glang) ବା ଜୋ (zho)—ଏହା ତିବ୍ବତୀୟ ସୀମାରେ ଲଦାଖ ଠାରୁ ଭୁଟାନ ଯାଏ ବିସ୍ତୃତ ଅଞ୍ଚଳରେ ଦେଖିବାକୁ ମିଳେ ଓ ଭାରବାହୀ ପଶୁରୂପେ ବ୍ୟବହୃତ ହୁଏ ।]

ସେଥିରେ ପଶି ଆମୋଦ କରନ୍ତି । ଘାସ ବୁଦା ଅନ୍ବେଷଣରେ ଚମରୀ ଗାଈ ଦଳ ଦଳ ହୋଇ ସେହି ଅନୁର୍ବର ପ୍ରଦେଶମାନଙ୍କରେ ବୁଲୁଥାନ୍ତି । ତୁଷାର ଉପରେ ଗତି କଲାବେଳେ ସେମାନେ ବେଶ୍ ବେଗରେ ଚାଲିଲେ ମଧ୍ୟ

ଗୋଟିକ ପଛରେ ଗୋଟିଏ ଧାଡ଼ିବାନ୍ଧି ଅତି ସାବଧାନତାର ସହ ଗତି କରନ୍ତି । ଆଗ ଗୋଡ଼ ଯେଉଁଠି ପଡିଥାଏ, ପଛ ଗୋଡର ଖୁର ଠିକ୍ ସେଇଠି ପଡେ । ପାହାଡିଆ ବରଫ ଅଞ୍ଚଳରେ ଗତି କରିବାକୁ ହେଲେ ଯଥେଷ୍ଟ ସାବଧାନତା ଆବଶ୍ୟକ ଏବଂ ତାହା ସେମାନଙ୍କ ଠାରେ ଦେଖାଯାଏ । ଅନ୍ୟ ଜାତି ଗାଈଙ୍କ ପରି ଚମରୀର ଘ୍ରାଣ ଶକ୍ତି ଅତ୍ୟନ୍ତ ପ୍ରଖର । ସେ ତୁଳନାରେ ଦୃଷ୍ଟି ଓ ଶ୍ରୁତି ଶକ୍ତି ଅଳ୍ପ ପ୍ରଖର ।

ଶରତ ଋତୁର ଶେଷଆଡକୁ ସେମାନଙ୍କର ଯୌନମିଳନ ହୁଏ ଏବଂ ଏପ୍ରିଲ ମାସ ଆଡ଼କୁ ନୂଆ ଘାସ ଉଠିଲା ସମୟକୁ ଛୁଆ ଜନ୍ମ ହୁଅନ୍ତି ।

ଗୃହପାଳିତ ଚମରୀ ପୁଷ୍ଟିକର ଦୁଗ୍ଧ ଦିଏ ଓ ସେଥିରୁ ଚମତ୍କାର ଲହୁଣୀ ପ୍ରସ୍ତୁତ ହୁଏ । ତା'ଛଡା ସେମାନଙ୍କର ମାଂସ ବାଛୁରୀ ମାଂସ (veal) ଠାରୁ କଅଁଳ । ଚମରୀ ଚମଡାରେ ତିଆରି ତମ୍ବୁ ତୁଷାରବୃତ ଅଞ୍ଚଳରେ ଲୋକଙ୍କୁ ବାସ ଯୋଗାଏ । କାନ୍ଧ ପାଖରେ କୁଦ ଓ ଦେହ କଡ଼ରେ ଝୁଲୁଥିବା ଲମ୍ବା କୋମଳ ଲୋମରେ ଚମତ୍କାର ଶୈତ୍ୟ ନିବାରକ ବସ୍ତ୍ର ତିଆରି ହୁଏ । ମନ୍ଦିରମାନଙ୍କରେ ଯେଉଁ ଚାମର ବ୍ୟବହୃତ ହୁଏ ତାହା ଚମରୀର ଲୋମରେ ତିଆରି ହୋଇଥାଏ ।

ବିଭିନ୍ନ ଭାଷାରେ ଚମରୀର ନାମ – ତିବ୍ବତୀୟ–ଡୋଙ୍ଗ, ଡ୍ରୋଙ୍ଗ ଡୋଙ୍ଗ *(ବନ୍ୟ ଚମରୀ), ୟେକ୍ (ଗୃହପାଳିତ) ; ହିନ୍ଦି–ବାନଚୌର ;* ଇଂରାଜୀ–yak । ବୈଜ୍ଞାନିକ ନାମ Bos grunniens Linnaeus (=Poephagus grunniens) । "ଗ୍ରୁନିଏନ୍ସ" (grunniens) ଶବ୍ଦର ଅର୍ଥ ଶୂକର ପରି ଶବ୍ଦ କରିବା (grunting) । ଚମରୀର ଶବ୍ଦ ଅନେକ ପରିମାଣରେ ଶୂକରର ଶବ୍ଦପରି ହୋଇଥିବାରୁ ତା'ର ଏପରି ନାମ-କରଣ କରାଯାଇଛି । ଚମରୀର ବୋବାଳି ୟୁରୋପ ଓ ଆମେରିକାର "ବାଇସନ" (bison) ଙ୍କ ପରି ଏବଂ ତା'ର ସେମାନଙ୍କ ପରି 14 ଯୋଡା ପଞ୍ଜରହାଡ ଥାଏ । ଗାଈ ଓ ମଇଁଷିର ପଞ୍ଜରହାଡ଼ ସଂଖ୍ୟା 13 ଯୋଡା ।

# ଅରଣା ମଇଁଷି

ମଇଁଷିର ସାଧାରଣ ଚେହେରା ଅନେକ ପରିମାଣରେ ଗାଈ ପରି । ଗାଈ ଦେହରେ ତେର ଯୋଡ଼ା ପଞ୍ଜରହାଡ (rib ) ଥାଏ । ମଇଁଷି କଙ୍କାଳରେ ପଞ୍ଜର ହାଡ ସଂଖ୍ୟା ମଧ୍ୟ ସେତିକି । ମାତ୍ର ଗାଈର ଗଳ-କମ୍ବଳ ମଈଁଷିର ନାହିଁ । ମଇଁଷି ଓ ଗାଇଙ୍କ ଶିଙ୍ଗରେ ତଫାତ୍ ଅଛି । ମଇଁଷି ଶିଙ୍ଗ ଚେପ୍‌ଟା ତିନିକଣିଆ, ଦୁଇ ପାଖକୁ ଟିକିଏ ନଇଁ ବାହାର ଆଡ଼କୁ ବହୁତ ତେରଛା ହୋଇ ପୁଣି ଉପର ଆଡ଼କୁ ବଙ୍କା ହୋଇଥାଏ । ମଇଁଷି ଶିଙ୍ଗ ମୂଳ ଅଂଶରେ ହିଡ଼ ପରି ହୋଇଥାଏ । ଅଣ୍ଡିରା ମଇଁଷିର ମୁଣ୍ଡ ଷଣ୍ଢର ମୁଣ୍ଡପରି ତଳକୁ ଓହଳି ନ ଥାଏ । ମଇଁଷିର ଲୋମ ଅତ୍ୟନ୍ତ କ୍ଷୁଦ୍ର ଓ ସେଥିପାଇଁ ତାର ଚମଡ଼ା ଦେଖାଯାଏ । ଏହାର ବର୍ଣ୍ଣ କଳା, ବେଳେବେଳେ ଲାଲସିଆ ବା ଧୂସରିଆ; ତଳପାଖ ଫିକା ।

ଅରଣା ମଇଁଷି ଅନେକ ପରିମାଣରେ ଗୃହପାଳିତ ମଇଁଷି ପରି । ତଫାତ୍ ଏତିକି ବନ୍ୟ ମହିଷ ଗୃହପାଳିତ ମହିଷ ଅପେକ୍ଷା ନିଦା, ଭାରୀ ଓ ବଳବାନ୍ । ଅରଣାର ବର୍ଣ୍ଣ ଶିଲଟ ପରି କଳା । ପାଦରୁ ଆଣ୍ଠୁ ଉପରଯାଏ ଧଳା । ସଦ୍ୟଜାତ ଶାବକର ବର୍ଣ୍ଣ ହଳଦିଆ । ଅରଣା ମଇଁଷିର ଶିଙ୍ଗ ସାଧାରଣତଃ ଦୁଇପ୍ରକାରର ହୋଇଥାଏ । କେତେକଙ୍କର ଶିଙ୍ଗ ଉପର ଆଡ଼କୁ ବୃଦ୍ଧିପାଇ ଅର୍ଦ୍ଧବୃତ୍ତ ଗଠନ କରେ । ଦୁଇ ଶିଙ୍ଗର ଅଗ୍ରଭାଗ ଭିତରେ ଦୂରତା ଅଳ୍ପ । ଅନ୍ୟମାନଙ୍କର ଶିଙ୍ଗ ବାହାର ଆଡକୁ ବଢ଼ିଥାଏ । ଏହା ମସ୍ତକ ସହିତ ଅନେକ ପରିମାଣରେ ସମାନ୍ତରାଳ ଭାବେ ଗତି କରି ଉପର ଓ ଭିତର ଆଡ଼କୁ ସାମାନ୍ୟ ବକ୍ର । ସେଇ ଏକ ଦଳରେ ଦୁଇ ପ୍ରକାର ଶିଙ୍ଗବାଲା ମଇଁଷି ଦେଖାଯାଇଥାଏ । ମଇଁଷି ଶିଙ୍ଗ ଚଟାଳିଆ ଓ କର୍ତ୍ତନ କଲେ ତା'ର ଆକାର ତ୍ରିଭୁଜାକାର ବୋଲି ଜଣାପଡ଼େ । ଅଣ୍ଡିରା ଅରଣା ତୁଳନାରେ ମାଈ ମଇଁଷିର ଶିଙ୍ଗ ଅପେକ୍ଷାକୃତ କ୍ଷୁଦ୍ର; ମାତ୍ର ସେମାନଙ୍କର ଶିଙ୍ଗର ଆକାରରେ ବିଶେଷ ପ୍ରଭେଦ ଜଣାପଡ଼େ ନାହିଁ ।

ଅଣ୍ଡିରା ଅରଣା ମଇଁଷି ଉଚ୍ଚରେ 1.7 ମିଟାର (5 ଫୁଟ 6 ଇଞ୍ଚ)ରୁ 2.0 ମିଟାର ( 6 ଫୁଟ 6 ଇଞ୍ଚ ) ଯାଏ ହୋଇଥାଏ । ଓଜନରେ ୨୦୦ କେ.ଜି.

( 2000 ପାଉଣ୍ଡ ) ଯାଏଁ ହୁଏ । ଅରଣାର ମୁଣ୍ଡକୁ ଏପଟରୁ ସେପଟ ଲଲାଟ ଉପର ଦେଇ ମପାଯାଇ ଥାଏ । 275 ସେଣ୍ଟିମିଟାର ( 108 ଇଞ୍ଚ )



( ଚିତ୍ର ନଂ 105 ଅରଣା ମଇଁଷ )

ଲମ୍ବର ମୁଣ୍ଡ ବେଶ ବଡ ମୁଣ୍ଡ ବୋଲି ଧରାଯାଏ । ମାଈ ମଇଁଷିର ଶିଙ୍ଗ 197 6 ସେଣ୍ଟିମିଟାର ( $77\frac{3}{8}$ ଇଞ୍ଚ ) ଯାଏ ଲମ୍ବ ହେବାର ଦେଖାଯାଇଛି ।

ଅରଣା ମଇଁଷିର ବିସ୍ତୃତି ସୀମାବଦ୍ଧ । ଏହା ଭାରତ, ଇଣ୍ଡୋ ଚୀନ ଓ ବୋର୍ଣ୍ଣିଓରେ ଦେଖାଯାଏ । ଭାରତରେ ନେପାଳର ତରାଇ ଅଞ୍ଚଳରେ ଘାସ ଜଙ୍ଗଲ, ଗଙ୍ଗାନଦୀର ସମତଳ ଭୂମି ଓ ଆସାମର ବ୍ରହ୍ମପୁତ୍ର ନଦୀ ଉପତ୍ୟକା ଅଞ୍ଚଳରେ ଅରଣା ମଇଁଷି ବାସକରନ୍ତି । ମାଧ୍ୟପ୍ରଦେଶର ରାୟପୁର ଜିଲ୍ଲାରେ ପୂର୍ବର ବସ୍ତର ରାଜ୍ୟ ଏବଂ ଓଡିଶାର କଳାହାଣ୍ଡୀ ଓ କୋରାପୁଟ ଜିଲ୍ଲାର ଅରଣ୍ୟାଞ୍ଚଳରେ କେତୋଟି ଦଳ ବନ୍ୟ ମହିଷ ଅଛନ୍ତି ।

ନାଳ, ଝରଣା ବା ନଦୀ ସନ୍ନିକଟରେ ଥିବା ଜଳାକୀର୍ଣ୍ଣ ଭୂମିର ଉଚ୍ଚ ଘାସ ଜଙ୍ଗଲ ଅରଣା ମଇଁଷିର ଉପଯୁକ୍ତ ବିହାରସ୍ଥଳୀ । ଆସାମ ଓ ତରାଇରେ ଏପରି ଅଞ୍ଚଳରେ ସେମାନେ ବାସ କରନ୍ତି । ଘାସ ସେମାନଙ୍କୁ

ଖାଦ୍ୟ ଯୋଗାଏ ଓ ଜଳାଭୂମି ସେମାନଙ୍କୁ ପଙ୍କ କାଦୁଅରେ ଘାଣ୍ଟିଚକଟି ହେବାପାଇଁ ସୁବିଧା ଦିଏ । ସବୁଜାତିର ମଇଁଷି ( ସେମାନେ ବନ୍ୟ ହୁଅନ୍ତୁ ଅବା ଗୃହପାଳିତ ହୁଅନ୍ତୁ ) ପଙ୍କ କାଦୁଅରେ ଚକଟି ହେବାକୁ ସୁଖ ପାନ୍ତି । ଏହା ଫଳରେ ସେମାନେ କୀଟ ପତଙ୍ଗ ଓ ଟିଙ୍କଙ୍କ ଦୌରାତ୍ମ୍ୟରୁ ରକ୍ଷାପାନ୍ତି ।



ଚିତ୍ର ନଂ 106 ଅରଣା ମଇଁଷିର ଆଧୁନିକ ବିସ୍ତୃତି

ଦକ୍ଷିଣାଞ୍ଚଳରେ, ଓଡିଶା ଓ ମଧ୍ୟପ୍ରଦେଶର ଜଙ୍ଗଲରେ ଅରଣା ମଇଁଷି ଅପେକ୍ଷାକୃତ ଶୁଷ୍କ ଭୂମିରେ ବାସ କରିବାରେ ଅଭ୍ୟସ୍ତ ।

ବନ୍ୟ ମହିଷ ଛୋଟ ଛୋଟ ଦଳରେ ବାସ କରନ୍ତି । ଆବଶ୍ୟକ ହେଲେ ଏକାଠି ହୋଇ ବଡ ଦଳ ଗଠନ କରନ୍ତି । ଏମାନଙ୍କର ପ୍ରଧାନ ଖାଦ୍ୟ

ଘାସ । ଚରିବା ସମୟ ସକାଳ ଓ ସନ୍ଧ୍ୟା । ସମସ୍ତ ସମୟରେ ରାତିରେ ମଧ୍ୟ ଚରିବାକୁ ବାହାରିଥାନ୍ତି । ଦିନବେଳେ ଏମାନେ ଉଚ୍ଚ ଘାସ ଭିତରେ ବା ନାଳ ଖାଲ ଆଦିର ପାଣି କାଦୁଅରେ ପଶି ବିଶ୍ରାମ କରନ୍ତି । ଖରାଦିନେ ଚରିବା ପାଇଁ ଉପଯୁକ୍ତ ସ୍ଥାନର ସଂଧାନରେ ଅରଣା ମଇଁଷି ଛୋଟ ଛୋଟ ପାହାଡ଼ ଅତିକ୍ରମ କରିବାର ଦେଖା ଯାଇଅଛି । ଗୟଳ ପରି, ବଣମଇଁଷି ଲାଜକୁଳା ସ୍ୱଭାବର ନୁହେଁ ଓ ମଣିଷ ଦେଖିଲେ ଭୀତ ହୁଏ ନାହିଁ । ଏମାନେ ସୁଯୋଗ ପାଇଲେ ଶସ୍ୟକ୍ଷେତରେ ପଶି ଫସଲ ନଷ୍ଟ କରନ୍ତି । ଥରେ କ୍ଷେତରେ ପଶିଲେ ଏମାନଙ୍କୁ ତଡ଼ିବା କଷ୍ଟକର ।

ଅଣ୍ଡିରା ଅରଣା ଏପରି ହିଂସ୍ର ଯେ ଉତ୍ତ୍ୟକ୍ତ କରଯାଇ ନ ଥିଲେ ମଧ୍ୟ ଧପସି ଆସି ଆକ୍ରମଣ କରେ । ମାତ୍ର ସବୁ ଅଣ୍ଡିରା ଏଭଳି ପ୍ରକୃତିର ହୋଇ ନ ଥାନ୍ତି । କେତେକ ଧୀର ଓ କାରଣ ନ ଥାଇ ଆକ୍ରମଣ କରନ୍ତି ନାହିଁ । ଛୁଆ କରିଥିବା ସମୟରେ ମାଈ ଅରଣା ଅତି ଭୀଷଣ ଓ ଦେଖିଲା ମାତ୍ରେ ଗୋଡ଼ାଇ ଆସି ଆକ୍ରମଣ କରେ । ଏହି ପ୍ରକୃତି କେତେକ ପରିମାଣରେ ଗୃହପାଳିତ ମଇଁଷିଙ୍କ ଠାରେ ମଧ୍ୟ ଦେଖିବାକୁ ମିଳେ । ଅରଣା ମଇଁଷି ଅତ୍ୟନ୍ତ ସାହସୀ । ସେମାନେ ବାଘ ସହିତ ଯୁଝିବାକୁ ମଧ୍ୟ ପଛାନ୍ତି ନାହିଁ । ଏଥିପାଇଁ କଥାରେ ଅଛି, “ମଇଁଷି ଶିଙ୍ଗ ଫଟା, ଯୁଝିଲା ବେଳକୁ ଗୋଟା” । ମନୁଷ୍ୟ ବ୍ୟତୀତ ଅରଣା ମଇଁଷିର ଏକମାତ୍ର ଶତ୍ରୁ ବାଘ । ଗୋଟିଏ ବଳବାନ୍ ଅଣ୍ଡିରା ଅରଣା ମଇଁଷିକୁ ବାଘ ମଧ୍ୟ ପାରେ ନାହିଁ । ଅତର୍କିତରେ ଆକ୍ରାନ୍ତ ହେଲେ ମହିଷ ବାଘର ଶିକାର ହୋଇଥାଏ । ବନ୍ୟ ମହିଷ ଗନ୍ଧ ବାରିବାରେ ଧୁରନ୍ଧର । ସେମାନେ ଭଲ ଶୁଣି ପାରନ୍ତି । ସେମାନଙ୍କ ଦୃଷ୍ଟି-ଶକ୍ତି ମଧ୍ୟମ ଧରଣର । ଫଳେ ଅରଣା ଚରି ବୁଲୁଥିଲା ବେଳେ, ପରସ୍ପର ସହିତ ସମ୍ପର୍କ ରଖିବା ପାଇଁ ଏକ ପ୍ରକାର ଗୁରଳି (grunt) କରନ୍ତି । ଷଣ୍ଢ ପରି ବୋବାଇବା କ୍ୱଚିତ୍ । ଅଣ୍ଡିରା ଅରଣା ଆକ୍ରମଣ କଲାବେଳେ ଘୋଡ଼ାପରି ନାକରେ ଏକପ୍ରକାର ଶବ୍ଦ କରେ ବା ଉତ୍ତେଜିତ ଭାବେ ପାଦରେ ଭୂମିକୁ କୁଦେ ।

ବୟଃପ୍ରାପ୍ତ ଅଣ୍ଡିରା ଅରଣା ସାଧାରଣତଃ ଦଳ ଠାରୁ ବିଚ୍ଛିନ୍ନ ହୋଇ ଚରି ବୁଲୁଥାଏ । ବେଳେ ବେଳେ ସେମାନେ ଦଳରେ ଆସି ମିଶନ୍ତି । ମାଈ

ମଇଁଷିଙ୍କ ଉପରେ ଅଧିକାର ପାଇଁ ଅର୍ଣ୍ଣିଗଙ୍କ ଭିତରେ ଲଢ଼ାଇ ହୁଏ । ସେମାନଙ୍କର ପ୍ରଜନନ କାଳର ସ୍ଥାୟିତ୍ୱ ପ୍ରାୟ ପାଞ୍ଚମାସ । ବର୍ଷର ପ୍ରଥମ ଛଅମାସ ମଧ୍ୟରେ ସେମାନଙ୍କର ପ୍ରଜନନ ହୁଏ । ମାର୍ଚ୍ଚ ଠାରୁ ମେଁ ମାସ ମଧ୍ୟରେ ସାଧାରଣତଃ ଶାବକ ଜନ୍ମ ହୁଅନ୍ତି ।

ଗୃହପାଳିତ ମହିଷ ସାଧାରଣତଃ ଗାଁପାଖ ଜଙ୍ଗଲକୁ ଚରିବାକୁ ଯାନ୍ତି । ଅନେକ ସମୟରେ ଅରଣା ମଇଁଷି ଗୃହପାଳିତ ମଇଁଷିଙ୍କ ସହିତ ମିଶି ଚରନ୍ତି ଓ ସେମାନଙ୍କ ମଧ୍ୟରେ ଯୌନ ମିଳନ ଫଳରେ ଶାବକ ଜାତ ହୁଅନ୍ତି ।

ଅରଣାର ଏକମାତ୍ର ପ୍ରଧାନ ଶତ୍ରୁ ବାଘ । ବାଘ ସଂଖ୍ୟା ଅତି ଦ୍ରୁତ ବେଗରେ ହ୍ରାସ ପାଇବାରେ ଲାଗିଛି । ତଥାପି କ୍ରୂର ଘୋର ଶିକାରୀଙ୍କ ଦାଉରେ ଅରଣା ମହିଷ ଅବଲୁପ୍ତ ପ୍ରାୟ । 1969 ସାଲରେ ପ୍ରକାଶିତ ଏକ ବିବରଣୀରୁ ଜଣାପଡ଼େ, ଭାରତରେ ଅରଣା ମହିଷଙ୍କ ସଂଖ୍ୟା ପ୍ରାୟ 2000 । ଆସାମ ଓ ତରାଇ ଅଞ୍ଚଳରେ ପ୍ରାୟ 1000 ; ଦକ୍ଷିଣ ଭାରତ (ମହାରାଷ୍ଟ୍ର)ରେ ଖୁବ୍ ବେଶୀ ହେଲେ 400 ରୁ 500 ; ମାଧ୍ୟପ୍ରଦେଶର ଦକ୍ଷିଣ ବସ୍ତରର 1,040 ବର୍ଗ କିଲୋମିଟାର ଜଙ୍ଗଲ ଅଞ୍ଚଳରେ 200 ରୁ 250, ବସ୍ତରର ଦକ୍ଷିଣକୁ ଜଙ୍ଗଲରେ ପ୍ରାୟ 50 ; କୋରାପୁଟ ଜିଲାର ବାଲିମେଳା ଅଞ୍ଚଳରେ ଗୋଟିଏ ଦଳ ଓ କଳାହାଣ୍ଡି ଜିଲାର ଖଡ଼ିଆଳ ଅଞ୍ଚଳର ସୁନାବେଡ଼ା ଉପତ୍ୟକାରେ ଏକ ଦଳ—ଏହି ଦୁଇ ଦଳରେ ମୋଟ ପ୍ରାୟ 100 । ଇଏ ହେଲା ଭାରତର ଅରଣା ମହିଷିଙ୍କ ବାସ ଓ ସଂଖ୍ୟା । ଏବେ ସେମାନଙ୍କର ଏକମାତ୍ର ଅପେକ୍ଷାକୃତ ନିର୍ଭୟ ବାସ ହେଉଛି ଆସାମର ମାନସ ନଦୀକୂଳସ୍ଥ ଅଭୟାରଣ୍ୟ (Manas sanctuary) । ଏକ କାଳରେ ଅରଣା ମଇଁଷି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବହୁ ସଂଖ୍ୟାରେ ବାସ କରୁଥିଲେ । ପ୍ରାୟ 35 ବର୍ଷ ପୂର୍ବେ ବାଲେଶ୍ୱରର ପଶ୍ଚିମକୁ ଗୁନ୍ଦନୀପାଳ ଜଙ୍ଗଲରେ ଦଳେ ଅରଣା ବାସ କରୁଥିଲେ । ସୁନ୍ଦରଗଡ଼ ଜିଲାର ପୂର୍ବତନ ଗାଙ୍ଗପୁର ରାଜ୍ୟର ବ୍ରାହ୍ମଣୀ ଉପତ୍ୟକା ଓ ତା'ର 19 କିଲୋମିଟାର (12 ମାଇଲ) ପଶ୍ଚିମକୁ କୁମାରକେଲା ଅଞ୍ଚଳରେ ଅରଣା ଦଳ ଦଳ ହୋଇ ବିଚରଣ କରୁଥିଲେ । ଏହି ଅଞ୍ଚଳର ସର୍ବଶେଷ ଅର୍ଣ୍ଣିଗ ଅରଣା ମଇଁଷି ବଣାଇର ଉତ୍ତର-ପୂର୍ବ ଅଞ୍ଚଳରେ ଜଣେ ଗ୍ରାମବାସୀ ଦ୍ୱାରା 1906 ସାଲରେ ମରା ହୋଇଥିବାର ଉଲ୍ଲେଖ ଅଛି ।

ବିଭିନ୍ନ ଭଷାରେ ଅରଣା ମଈଁଷିର ନାମ .– ହିନ୍ଦି–ଅର୍ଣା (ଅଣ୍ଡୀଭ), ଅର୍ଣା (ମାଈ) ; ମାରଠୀ–ଜଙ୍ଗଲି ମହିଷ , କାନାଡ଼ି–କାଡୁକୋମା, କାଭଡି । ଇଂରଜୀରେ ଏହା Wild buffalo (ବନ୍ୟ ମହିଷ), Arna (ଅର୍ଣା , Carabao (କାରବାଉ) Indian buffalo (ଭରତୀୟ ମଈଁଷି) ଓ Water buffalo (ଜଳ ମହିଷ) ନାମରେ ପରିଚିତ । ଅରଣା ମହିଷ ଓ ଗୃହପାଳିତ ମହିଷ ଉଭୟର ବୈଜ୍ଞାନିକ ନାମ Bubalus bubalis (Linnaeus) ।

ୟୁରୋପର ବିଭିନ୍ନ ଅଞ୍ଚଳ ଯଥା – ବଲକାନ ଅଞ୍ଚଳ, ଗ୍ରୀସ ଓ ଇଟାଲୀ ; ଏସିଆ ମାଇନର, ମିଶର, ସୋଭିଏଟ ରୁଷର ଦକ୍ଷିଣାଞ୍ଚଳ, ଭରତ, ଶ୍ରୀଲଙ୍କା ଆଦି ବିଭିନ୍ନ ଅଞ୍ଚଳରେ ଲୋକେ ଗୃହପାଳିତ ମଈଁଷିକୁ ଚଷ କାର୍ଯ୍ୟରେ, ଦୁଗ୍ଧ ଉତ୍ପାଦନରେ ଓ ଅନ୍ୟାନ୍ୟ କାର୍ଯ୍ୟରେ ବିନିଯୋଗ କରିବାଲାଗି ପାଳନ କରନ୍ତି । ମଈଁଷିର ଏକ ବଡ଼ ଗୁଣ ହେଲ, ଏହା ଅତ୍ୟନ୍ତ କଷ୍ଟସହିଷ୍ଣୁ । ଏହା ଅତିଶୟ ଶୀତ ସହିପାରେ । ୟୁରୋପରେ ମଧ୍ୟ ସେମାନେ ଖୋଲରେ ରହିପାରନ୍ତି ; ସେମାନଙ୍କ ପାଇଁ କୌଣସି ପ୍ରକାର ଆଶ୍ରୟ ଆବଶ୍ୟକ ହୁଏ ନାହିଁ । ଭୂମଧ୍ୟସାଗରୀୟ ଅଞ୍ଚଳରେ ମଈଁଷି ଦୁଗଧରେ ପ୍ରସ୍ତୁତ ପନିର (cheese) ଖୁବ୍ ଲୋକପ୍ରିୟ ।

# ଉରିଆଲ

ଉରିଆଲ ଏକ ଜାତି ବନ୍ୟ ମେଷ । ଅନ୍ୟ ବନ୍ୟ ମେଷମାନଙ୍କ ତୁଳନାରେ ଏହାର ଆକାର କ୍ଷୁଦ୍ର । ଏହା ଗିଲଗିଟ, ଆଷ୍ଟର ଓ ଲଦାଖ, ପୂର୍ବରେ ଉତ୍ତର ତିବ୍ବତ ; ଦକ୍ଷିଣ ଓ ପଶ୍ଚିମରେ ପଞ୍ଜାବ, ସିନ୍ଧ ବେଲୁଚିସ୍ଥାନ ଓ ଦକ୍ଷିଣ ପାରସ୍ୟରେ ବାସ କରେ ।

ଲଦାଖ ଉରିଆଲର କାନ୍ଧ ଠାରେ ଉଚ୍ଚତା ପ୍ରାୟ 90 ସେଣ୍ଟିମିଟାର (3 ଫୁଟ) । ପଞ୍ଜାବର ଉରିଆଲ କ୍ଷୁଦ୍ରତର ପ୍ରାୟ 80 ସେଣ୍ଟିମିଟାର (2 ଫୁଟ 8 ଇଞ୍ଚ) ହୁଅନ୍ତି । ବଢ଼ ଶିଙ୍ଗକୁ ବଙ୍କା ଭବେ ମାପିଲେ ସାଧାରଣତଃ ହୁଏ 50-75 ସେଣ୍ଟିମିଟାର (20-30 ଇଞ୍ଚ) ।



[ଚିତ୍ର ନଂ 107, ଉରିଆଲ]

ଲଦାଖ ଉରିଆଲର ଗ୍ରୀଷ୍ମକାଳରେ ବର୍ଣ୍ଣ ଲାଲସିଆ ବାଦାମୀ ବା ହଳଦିଆ ବାଦାମୀ ; ଶୀତ ଋତୁରେ ବର୍ଣ୍ଣ ଧୂସର ଓ ବାଦାମୀ ମିଶାମିଶି । ଶିଙ୍ଗ ବଳି ହେଲାପରି, ପଛଆଡ଼କୁ ବୁଲାକାରରେ ବଙ୍କା ଓ ଦୁଇ ଶିଙ୍ଗ ପାଖା-ପାଖି ରହିଥାଏ ।

ଲଦାଖରେ ଏହି ବନ୍ୟ ମେଷ ପାଦପ-ରେଖା (tree-line) ନିମ୍ନରେ ଦୁରାରୋହ ପାହାଡ଼ର ଢାଲୁ ଅଂଶରେ, ତୃଣଭୂମିରେ ବାସ କରନ୍ତି । ପଞ୍ଜାବ, ସିନ୍ଧ ଓ ବେଲୁଚିସ୍ଥାନରେ ପାହାଡ଼ ଅଞ୍ଚଳରେ ଉରିଆଲ ବିଚରଣ କରେ । ଏମାନେ ମୁକ୍ତ ଆକାଶତଳେ ବାସ କରୁଥିବାରୁ ସଦାବେଳେ ଅତ୍ୟନ୍ତ ସତର୍କ । ଗ୍ରୀଷ୍ମକାଳରେ ମେଣ୍ଢୀ ଓ ଅପ୍ରାପ୍ତବୟସ୍କ ଅଣ୍ଡିରା ମେଷ କ୍ଷୁଦ୍ର କ୍ଷୁଦ୍ର ଦଳରେ ଏକତ୍ର ବାସ କରନ୍ତି । ଏ ସମୟରେ ଗାରଡ଼ (ଅଣ୍ଡିରା ମେଷ)ମାନେ ଦଳ ଠାରୁ ଅଲଗା ରହନ୍ତି । ପଞ୍ଜାବରେ ଉରିଆଲର ମୁଖ୍ୟ ପ୍ରଜନନ ଋତୁ ହେଲା ସେପ୍‌ଟେମ୍ବର–ଅକ୍ଟୋବର ମାସ । ଏବେବେଳେ ଗୋଟିଏ ଗାରଡ଼ ତିନି-ଚାରିଟି ଭେଡ଼ି ସହିତ ବୁଲୁଥିବାର ଦେଖିବାକୁ ମିଳେ । ଲଦାଖ ଓ ଆସ୍ତରରେ ସେପ୍‌ଟେମ୍ବର ମାସର ବହୁତ ପରେ ପ୍ରଜନନ ଋତୁ ଆରମ୍ଭ ହେଉଥିବ । କାରଣ ସେଠାରେ ଗ୍ରୀଷ୍ମକାଳରେ ଶାବକ ଜାତ

ହୁଅନ୍ତି । ଉରିଆଲର ଗର୍ଭଧାରଣ କାଳ ନିର୍ଦ୍ଦିଷ୍ଟଭବେ ଜଣା ନାହିଁ ; 4-6 ମାସ ବୋଲି ବିଶ୍ୱାସ କରଯାଏ । ଥରକେ ଗୋଟିଏ ବା ଦୁଇଟି ଶାବକ ଜାତ ହୁଅନ୍ତି ।

ବିଭିନ୍ନ ଭଷାରେ ଉରିଆଲର ନାମ :— ପଞ୍ଜାବୀ—ଉରିଆଲ ; ବେଲୁଚି ଓ ସିନ୍ଧି-କର (ଏ଼ଣ୍ଡିଗ), ଗାଡ୍ (ମାଈ) ; ଲଦାଖୀ—ସା', ସାପୋ (ଅଣ୍ଡିଗ) ସାମୋ (ମାଈ) ; ଇଂରଜୀ—Shapu, Urial ; ବୈଜ୍ଞାନିକ ନାମ Ovis Orientalis Gmelin

## ନୟାନ

ନୟାନ ତିବ୍ବତର ବନ୍ୟ ମେଷ । ଉତ୍ତର ଲଦାଖରୁ ସିକିମ୍‌ର ଉତ୍ତରାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ତିବ୍ବତୀୟ ମାଳଭୂମିରେ ଏହା ବାସ କରେ ।



[ଚିତ୍ର ନଂ 108. ନୟାନ]

ଚରିବା ସ୍ଥାନ ସନ୍ଧାନରେ ବେଳେ ବେଳେ ଏମାନେ ସ୍ପିଟି, ନେପାଳ, କୁମାଓନ ଏବଂ ସିକିମର ଅତି ଉତ୍ତରାଞ୍ଚଳର ସୋ ଲମାହ୍ରଦ (Tso Lhama Lake) ଅଞ୍ଚଳକୁ ଆସନ୍ତି ।

ନୟାନ ବନ୍ୟମେଷ ମାନଙ୍କ ମଧ୍ୟରେ ବୃହତ୍ତମ । କାନ୍ଧଠାରେ ଏହାର ଉଚ୍ଚତା 110-120 ସେଣ୍ଟିମିଟାର ( $3\frac{1}{2}$–4 ଫୁଟ ) । ଶିଙ୍ଗର ଲମ୍ବ 90-100 ସେଣ୍ଟିମିଟାର ( 36 ରୁ 40 ଇଞ୍ଚ ) । ସବୁଠାରୁ ବଡ଼ ଶିଙ୍ଗର ଲମ୍ବ 144.8 ସେଣ୍ଟିମିଟାର ( 57 ଇଞ୍ଚ ) ଯାଏ ହେବାର ଦେଖାଯାଇ-ଅଛି ।

ଏହା ଏକ ମନୋହର ମେଷ । ଭେଡାର (ଗାରଡ଼) ବର୍ଣ୍ଣ ଫିକା ବାଦାମୀ । ସ୍କନ୍ଧ ଓ ଗ୍ରୀବାର ମିଳନସ୍ଥଳ ଅଂଶ ଘନ ରଙ୍ଗର । ନିତମ୍ବ, ଲାଞ୍ଜମୂଳର ଗୁରିଆଡ଼, ତଣ୍ଟି ଅଂଶ ଛାତି ପେଟ ଓ ଗୋଡର ଭିତର ପାଖ ଧଳା । ବୁଢ଼ା ଅଣ୍ଡିରାର ବେକରେ ଗଳବନ୍ଧନୀପରି ଲୋମ ଉଠେ । ଗ୍ରୀଷ୍ମକାଳରେ ଏଥିରୁ ବେଶୀଭାଗ ଲୋମ ଝଡ଼ିପଡ଼େ । ମାଈମାନଙ୍କର ପ୍ରାୟ ଗ୍ରୀବାକେଶର ନଥାଏ । ଅଣ୍ଡିରାମେଷ ପରି ମାଈର ଧଳା ଅଂଶ ସେତେ ଧଳା ନୁହେଁ; ମସିଆ; ଲାଞ୍ଜ ମୂଳର ଧଳା ଅଂଶ ସ୍ପଷ୍ଟ ନୁହେଁ । ଶୀତକାଳରେ ଅଣ୍ଡିରା ଓ ମାଈ ଉଭୟର ବର୍ଣ୍ଣ ଫିକା । ଏମାନଙ୍କର ଗୋଡ଼ ଲମ୍ବା । ଅଣ୍ଡିରାର ଶିଙ୍ଗ ବୃତ୍ତାକାର । ତିବ୍ବତୀୟ ଉପତ୍ୟକାର ଯେଉଁ ଅଞ୍ଚଳରେ ନୟାନ ବାସ କରନ୍ତି, ସେ ଅଞ୍ଚଳ ତରଙ୍ଗାୟିତ, ନିମ୍ନ, ବାଲୁକା ପାହାଡ଼ମୟ । ଜନଶୂନ୍ୟ ଅଞ୍ଚଳରେ ଗ୍ରୀଷ୍ମକାଳରେ ସୂର୍ଯ୍ୟତାପ ପ୍ରଖର ଓ ଶୀତକାଳରେ ଶୀତ ପ୍ରବଳ । ଏପରି ମରୁଭୂମି ଅଞ୍ଚଳରେ ନୟାନ ଖାଦ୍ୟ ଓ ଜଳ ଉଦ୍ଦେଶ୍ୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବିଚରଣ କରିବା ସ୍ୱାଭାବିକ । ବସନ୍ତ ଋତୁରେ ବରଫ ତରଳିବାକୁ ଆରମ୍ଭ କଲେ ଯେଉଁ ସାମାନ୍ୟ ଗୁଳ୍ମ ଗଜୁରି ଉଠେ, ତାକୁ ଖାଇବାକୁ ନୟାନ ତୁଷାର ରେଖା ( Snow-line) ନିକଟରେ ଆସି ପହଞ୍ଚନ୍ତି ଅଥବା ସଂକୀର୍ଣ୍ଣ ଗିରିପଥ ମଧ୍ୟରେ ପ୍ରବାହିତ ଝରଣା ଦୁଇପଟେ ଉଠିଥିବା ତୃଣ ଓ ଗୁଳ୍ମ ଚରନ୍ତି । ଗ୍ରୀଷ୍ମ କାଳରେ ସେମାନେ 4575 ମିଟାର (15,000 ଫୁଟ) ରୁ ଅଧିକ ଉଚ୍ଚ ସ୍ଥାନରେ ରହନ୍ତି । ଶୀତ-ଋତୁରେ ଆଶ୍ରୟ ଲାଗି ନିମ୍ନ ଉପତ୍ୟକା ଅଞ୍ଚଳକୁ ଚାଲି ଆସନ୍ତି । ସେମାନେ ଓଦା ବରଫ ସ୍ଥାନରେ ନ ରହି ଶୁଖିଲା ବରଫ ଥିବା ସ୍ଥାନରେ ରହନ୍ତି । ମୋ.ଟାର ବରଫକୁ ଆଡ଼େଇ ସେଠାରେ ବିଶ୍ରାମ ନିଅନ୍ତି । ପ୍ରଦୋଷ ଓ ଉପର ବେଳା ଏମାନଙ୍କର ଚରିବା ସମୟ । ଏମାନଙ୍କର ବର୍ଣ୍ଣ ବାସସ୍ଥାନର ବର୍ଣ୍ଣ ସହିତ ସୁନ୍ଦରଭାବେ ମିଶିଯାଏ ।

ଶରତ କାଳର ଶେଷଭାଗ ସେମାନଙ୍କର ପ୍ରଜନନ ଋତୁ । ମେ-ଜୁନ୍ ମାସରେ ଶାବକ ଜନ୍ମ ହୁଅନ୍ତି । ବସନ୍ତ ଋତୁରେ ମାଈ ଅଣ୍ଡିରା ଅଲଗା ହୋଇଯାନ୍ତି । ଗ୍ରୀଷ୍ମକାଳରେ ଅଧିକ ବୟସ୍କ ଅଣ୍ଡିରା ମେଷ କ୍ଷୁଦ୍ର କ୍ଷୁଦ୍ର ଦଳରେ ଅଲଗା ବାସକରନ୍ତି ଏବଂ ମାଈ ଓ ଶାବକମାନେ ଅଲଗା ରହନ୍ତି ।

ବିଭିନ୍ନ ଭାଷାରେ ନୟାନ୍‌ର ନାମ-ଲଦାଖୀ-ନୟାନ୍ ( ଅଣ୍ଡିରା ), ନୟାନ୍‌ମୋ (ମାଈ); ତିବ୍ବତୀୟ-ନୟାଙ୍ଗ, ଇଂରାଜି—Nayan, Great Tibetan sheep. ( ବୃହତ୍ ତିବ୍ବତୀୟ ମେଷ ) । ବୈଜ୍ଞାନିକ ନାମ—Ovis ammon hodgsoni Blyth ।

ନୟାନ ଓ ମାର୍କୋପୋଲୋ ମେଷ ( ପରେ ଦେଖ ) ଏକ ଜାତିର ମାତ୍ର ଭିନ୍ନ କିସମର । ଦ୍ୱିତୀୟ ଜାତି ମେଷର ବୈଜ୍ଞାନିକ ନାମ Ovis ammon polii Blyth ।

## ମାର୍କୋପୋଲୋ ମେଷ

ବୟଃପ୍ରାପ୍ତ ଅଣ୍ଡିରା ମାର୍କୋପୋଲୋ ମେଷ ତଳୁ କାନ୍ଧଯାଏ 110 ସେଣ୍ଟିମିଟାର (44 ଇଞ୍ଚ ) ଯାଏ ଉଚ୍ଚ ହୁଏ । ଓଜନ 115 କିଲୋଗ୍ରାମ ( 250 ପାଉଣ୍ଡ) । ମାଈ ମେଷ ପ୍ରାୟ ଏକ-ତୃତୀୟାଂଶ ଯାଏ କ୍ଷୁଦ୍ର । ଶିଙ୍ଗର ଲମ୍ବ 130 ସେଣ୍ଟିମିଟାର ( 52 ଇଞ୍ଚ ); ମୂଳଠାରେ ଗୋଲେଇ 38 ସେଣ୍ଟିମିଟାର ( 15 ଇଞ୍ଚ ) । ସବୁଠାରୁ ଲମ୍ବଶିଙ୍ଗ 190.5 ସେଣ୍ଟିମିଟାର ( 75 ଇଞ୍ଚ ) ହେବାର ଦେଖାଯାଇଅଛି ।

ନୟାନ ପରି ଏହି ମେଷର ଗୋଡ଼ ଲମ୍ବା ଓ ଗଢ଼ଣ ଖୁବ୍ ସୁନ୍ଦର । ଗାରଡ଼ର ଶିଙ୍ଗ ଖୁବ୍ ବଳି ହେଲାପରି ଓ ବର୍ଣ୍ଣ ପୁରୁଣା ହାତୀ ଦାନ୍ତର ରଙ୍ଗପରି । ଏମାନଙ୍କର ଶିଙ୍ଗ ଥରେ ବୃତ୍ତାକାରରେ ବୁଲି ବାହାର ଆଡ଼କୁ ପୁଣି ବଙ୍କାଇ ବାହାରି ରହିଥାଏ । ଶିଙ୍ଗର ଏପରି ଗଢ଼ଣ ଦ୍ୱାରା ମାର୍କୋପୋଲ ମେଷକୁ ନୟାନ ଭେଡ଼ାଠାରୁ ସହଜରେ ଚିହ୍ନିହୁଏ । ଶୀତକାଳରେ ଅଣ୍ଡିରା ମାର୍କୋପୋଲର ମସ୍ତକ, ଗୋଡ ଓ ପେଟ ଫିକା ହଳଦିଆ ଆସିଆଧଳା । ଏହି ମେଷମାନଙ୍କର ଦେହର ବର୍ଣ୍ଣ ପରିବେଶର ବର୍ଣ୍ଣ ସହିତ ଏଭଳି ସ୍ୱାଭାବି

ଭାବେ ମିଳିଯାଏ ଯେ ବିଚରଣ କରିବା ସମୟ ଭିନ୍ନ ଅନ୍ୟ ସମୟରେ ସେମାନଙ୍କର ଉପସ୍ଥିତି ସହଜରେ ଜଣାପଡ଼େ ନାହିଁ । ପିଠି ପାଖର



[ ଚିତ୍ର ନଂ 109 ମାର୍କୋପୋଲେ ମେଷ ]

ସାଧାରଣ ବର୍ଣ୍ଣ ଧୂସର । ଶାବକ ମାନଙ୍କର ବର୍ଣ୍ଣ ମଧ୍ୟ ଧୂସର । ଶୀତ-କାଳର ଗହଳ ଲୋମ ଗ୍ରୀଷ୍ମକାଳରେ ଝଡ଼ିପଡ଼େ ।

ଭାରତରେ କେବଳ ହୁଞ୍ଜା ଅଞ୍ଚଳରେ ଏମାନେ ଦେଖାଯାନ୍ତି । ଏମାନେ ତାଗଦୁମବାସ ପାମୀର ଅଞ୍ଚଳରେ ଓ ସୋଭିଏଟ ରୁଷର ପାମୀର ଅଞ୍ଚଳରେ ( ବିଶେଷକରି ଶେଷୋକ୍ତ ଅଞ୍ଚଳରେ ) ଅଧିକ ସଂଖ୍ୟାରେ ବାସ କରନ୍ତି ।

ବସନ୍ତ କାଳରେ ତୁଷାର–ରେଖା (Snow-line) ବା ଝରଣା କୂଳରେ ଉଠୁଥିବା ଘାସ ଏମାନଙ୍କର ଆହାର । ପରବର୍ତ୍ତୀ କାଳରେ ମରୁଭୂମି ଅଞ୍ଚଳରେ ଜାତ ହେଉଥିବା ଏକ ଜାତି ବନ୍ୟ ପିଆଜ ସେମାନଙ୍କର ଖାଦ୍ୟ ହୋଇଥାଏ । କଠିନ ଶୀତଋତୁ ପରେ ଖାଦ୍ୟ ଅଭାବ ଘଟିଲେ ସେମାନଙ୍କ ମଧ୍ୟରେ ଅନାହାର-ମୃତ୍ୟୁ ଦେଖାଦିଏ । ଗ୍ରୀଷ୍ମଋତୁରେ ପାମୀର ମାଳଭୂମିରେ

ଉଠୁଥିବା ଘାସ ସେମାନଙ୍କର ଆହାର । ସେମାନେ ସକାଳେ ଓ ଉପର-ବେଳା ଚରନ୍ତି ଏବଂ ଅନ୍ୟ ସମୟରେ ପାହାଡର ଗଡାଣିଆ ସ୍ଥାନରେ ବିଶ୍ରାମ ନିଅନ୍ତି । ଗତି କଲାବେଳେ ଗୋଟିକ ପଛରେ ଗୋଟିଏ ଚାଲେ । ଏ ସମୟରେ ବଡ ମେଷମାନେ ଆଗେ ଆଗେ ଚାଲନ୍ତି । ଏମାନଙ୍କର ଦୃଷ୍ଟି ତୀକ୍ଷଣ ଓ ଘ୍ରାଣଶକ୍ତି ପ୍ରଖର । ବିପଦର ଆଶଙ୍କା ହେଲେ ଏମାନେ ସମ୍ପୂର୍ଣ୍ଣ ନିଶବ୍ଦରେ ଠିଆ ହୋଇ ରହନ୍ତି ନଚେତ୍ ଠୁଳ ହୋଇ ତଳେ ଆଗପାଦ ବାଡାନ୍ତି ଓ ବେଳେ ବେଳେ ଏହିପରି ଭାବେ ଆଗେଇ ଆସନ୍ତି । ହଠାତ୍ ଗୋଟିଏ ମେଷ ଲମ୍ଫ ଦେଇ ପଳାୟନ କରିବାକୁ ଆରମ୍ଭ କରେ ଓ ଅନ୍ୟମାନେ ତା'ର ପଶ୍ଚାତ୍‌ଧାବନ କରନ୍ତି । ଏତେବେଳେ ସେମାନେ ମୁଣ୍ଡକୁ ଉତ୍ତୋଳିତ କରି ରଖିଥାଆନ୍ତି । ମାର୍କୋପୋଲୋ ମେଷ ଅତ୍ୟନ୍ତ କୌତୂହଳୀ । କିଛି ବାଟ ଲମ୍ବା କଦମ ପକାଇ ଦୌଡିଲା ପରେ ସେମାନେ ଠିଆ ହୋଇ ପଛକୁ ଅନାଇ ଦେଖନ୍ତି କ'ଣ ତାଙ୍କୁ ଭୟଭୀତ କରିଥିଲା ।

ସେମାନଙ୍କର ପ୍ରଜନନ ଆଚରଣ ତିବ୍ବତୀୟ ନୟାନ ଠାରୁ ଭିନ୍ନ ନୁହେଁ । ଅନ୍ୟ ମେଷମାନଙ୍କ ପରି ମାଈ ମେଷ ଉପରେ ଅଧିକାର ନେଇ ଅଣ୍ଡିରଙ୍କ ଭିତରେ ଦୁଇପଟୁ ସିଧା ମୁଣ୍ଡବାଡିଆ ଲଢ଼େଇ ହୁଏ । ଏହି ଲଢେଇର ଠୋ ଠୋ ଶବ୍ଦ ବେଶ ଦୂରକୁ ଶୁଣାଯାଏ । କଡରୁ ପଞ୍ଜରହାଡକୁ ଲକ୍ଷ୍ୟକରି ମଧ୍ୟ ଏମାନେ ଭିଡ଼ି ମରାମରି ହୁଅନ୍ତି ।

ମାର୍କୋପୋଲୋ ମେଷର ବିଭିନ୍ନ ଭାଷାରେ ନାମ :– ଓ୍ୟାଖାନ– କୁଘନ୍ (ଅଣ୍ଡିର), ମେଷ (ମାଈ) ; ତୁର୍କୀ (ପୂର୍ବ ତୁର୍କୀସ୍ଥାନ)–ଗୁଲ୍‌ଜା (ଗାରଡ), ଆରକର (ମେଣ୍ଢା) ; ଇଂରାଜୀ–Marcopol's sheep ; ବୈଜ୍ଞାନିକ ନାମ Ovis ammon polli Blyth । ତ୍ରୟୋଦଶ ଶତାବ୍ଦୀର ମାର୍କୋପୋଲୋ (1256-1323) ନାମକ ପ୍ରସିଦ୍ଧ ପରିବ୍ରାଜକ ଚୀନ୍, ଭାରତ, ତିବ୍ବତ ଆଦି ଅଞ୍ଚଳରେ ଭ୍ରମଣ କରି "ପୃଥିବୀର ଛାତବାସୀ" ଏହି ମେଷ-ମାନଙ୍କ ସମ୍ବନ୍ଧରେ ତାଙ୍କ ବିବରଣୀରେ ଉଲ୍ଲେଖ କରି ସର୍ବପ୍ରଥମେ ୟୁରୋପୀୟ-ମାନଙ୍କର ଦୃଷ୍ଟି ଆକର୍ଷଣ କରିଥିବାରୁ ପରିବ୍ରାଜକଙ୍କ ନାମାନୁସାରେ ସେମାନଙ୍କର ସାଧାରଣ ନାମକରଣ କରଯାଇ ଅଛି ।

# ଭରାଲ

ଦୈହିକ ଗଠନ ଓ ଆଚରଣ ଦୃଷ୍ଟିରୁ ମେଷ ଓ ଛାଗଳମାନଙ୍କ ମଧ୍ୟରେ ଭରାଲର ସ୍ଥାନ । ଏମାନଙ୍କର ଶିଙ୍ଗ ଗୋଲ ଓ ମସୃଣ । ଏହା ପଛଆଡକୁ ବେକ ଉପରେ ବଙ୍କାଇ ରହିଥାଏ । ଭରାଲର ମୁଖମଣ୍ଡଳରେ



[ଚିତ୍ର ନଂ 110, ଭରାଲ]

ଆନନ ଗ୍ରନ୍ଥି (face glands) ନ ଥାଏ । ସେହି ସ୍ଥାନ ଏକ ଲୋମ-ଅନାବୃତ ଚର୍ମଦ୍ୱାରା ଚିହ୍ନିତ । ଏ ସମସ୍ତ ଛାଗଳ ଲକ୍ଷଣ । ମାତ୍ର ଅଣ୍ଡିରା ଛାଗଙ୍କଙ୍କ ପରି ଅଣ୍ଡିରା ଭରାଲର ଦାଢ଼ି ବା କଟୁ "ଛାଗଳ ଗନ୍ଧ" ନ ଥାଏ । ଭରାଲର ଖୁରିଦ୍ୱୟର ମଧ୍ୟରେ ଗ୍ରନ୍ଥି ଥାଏ । ଛାଗଳମାନଙ୍କର ପଛ ଗୋଡ଼ ଖୁରା ମଧ୍ୟରେ ଏଭଳି ଗ୍ରନ୍ଥି ନ ଥାଏ ।

ଏମାନଙ୍କର ମସ୍ତକ ଓ ପିଠିପାଖର ସାଧାରଣ ବର୍ଣ୍ଣ ବାଦାମୀ ଧୂସର ଓ ତାʼ ଭିତରେ ଶିଲଟିଆ ନୀଳରଙ୍ଗ ମିଶି ରହିଥାଏ । ଗ୍ରୀଷ୍ମଋତୁରେ ରଙ୍ଗ ବାଦାମୀ ଆସିଆ ଓ ଶୀତଋତୁରେ ଶିଲଟିଆ ଧୂସର (Slaty grey) । ସେ ଯାହାହେଉ, ସେମାନଙ୍କର ବର୍ଣ୍ଣ ସେମାନଙ୍କର ବାସସ୍ଥାନର ବର୍ଣ୍ଣ ସହିତ ସୁନ୍ଦର ଭାବେ ମିଶିଯାଏ । ବୁଢ଼ା ଅଣ୍ଡିରାଙ୍କର ମୁଖମଣ୍ଡଳ ଓ ଛାତି କଳା ।

ଦେହର ପ୍ରତି କଡ଼ରେ ଓ ଗୋଡ଼ର ସାମନା ଅଂଶରେ ଉପରୁ ତଳକୁ (ଚିତ୍ର ଦେଖ) କଳା ରେଖାଟିଏ ରହିଥାଏ । ଏହି କଳାରେଖା ମାଈମେଷ ଠାରେ ଦେଖାଯାଏ ନାହିଁ । ଶିଙ୍ଗ ଚିକ୍‌କଣ ଓ ସେଥିରେ ସୂକ୍ଷ୍ମରେଖା ବିଦ୍ୟମାନ । ଏଗୁଡ଼ିକ ବୃଦ୍ଧି ରେଖାର ଚିହ୍ନ । ହୃଷ୍ଟପୁଷ୍ଟ ଗାରଡ଼ ଠାରେ ଶିଙ୍ଗ ବାହାର ଓ ତଳଆଡ଼କୁ ବଙ୍କ ଓ ଅଗ୍ରଭାଗରେ ପଛଆଡ଼କୁ ବଙ୍କାଇ ଯାଇଥାଏ ।

ଭରଲର ସ୍କନ୍ଧଠାରେ ଉଚ୍ଚତା 90 ସେଣ୍ଟିମିଟାର (3 ଫୁଟ) ; ଓଜନ 55-70 କିଲୋଗ୍ରାମ (120-150 ପାଉଣ୍ଡ) ; ଶିଙ୍ଗର ଲମ୍ବ 58-61 ସେଣ୍ଟି-ମିଟାର (23-24 ଇଞ୍ଚ) ; ସବୁଠାରୁ ଲମ୍ବ ଶିଙ୍ଗ 84.5 ସେଣ୍ଟିମିଟାର ($33\frac{1}{4}$ ଇଞ୍ଚ) ତିବ୍ବତର ୟାଙ୍ଗସି ଠାରୁ ମିଳିଥିଲା ।

ଭରଲ ଅତି ଉଚ୍ଚସ୍ଥାନରେ ବାସ କରେ । ଗ୍ରୀଷ୍ମକାଳରେ ଏମାନେ 4880 ମିଟାର (16,000 ଫୁଟ) ଉଚ୍ଚସ୍ଥାନରେ ଦେଖାଯାନ୍ତି ଓ ଶୀତକାଳରେ କ୍ୱଚିତ୍ 3660 ମିଟାର (12,000 ଫୁଟ) ନିମ୍ନକୁ ଓହ୍ଲାନ୍ତି । ତିବ୍ବତ, ସିକିମ୍, ଲଦାଖ ଓ ନେପାଳ ଏମାନଙ୍କର ବିହାରଭୂମି । ପାଦପରେଖା ଓ ତୁଷାର-ରେଖା ମଧ୍ୟରେ ପ୍ରଚୁର ଘାସ ମିଳୁଥିବା ଅଞ୍ଚଳରେ ଏମାନେ ବାସ କରନ୍ତି । ମେଷପରି ଭରଲ ପାର୍ବତ୍ୟ ଅଞ୍ଚଳର ମୁକ୍ତ ଢାଲୁ ଅଞ୍ଚଳରେ ଘାସ ଚରେ ; ପୁଣି ଶାନ୍ତି ଭଙ୍ଗ ହେଲେ ଛାଗଳପରି ଅତି ଉଚ୍ଚ ତୀଖ ସ୍ଥାନକୁ ଚଢ଼ିଯିବାରେ ଅତ୍ୟନ୍ତ ପଟୁ । ସେମାନେ ଜଙ୍ଗଲ ବା ବୁଦାଳିଆ ଜଙ୍ଗଲକୁ ଯାଆନ୍ତି ନାହିଁ । ଦିନସାରା ସେମାନେ ମଝିରେ ମଝିରେ ଚରନ୍ତି ଓ ବିଶ୍ରାମ ନିଅନ୍ତି । ଚରୁଥିବା ସ୍ଥାନରେ ବିଶ୍ରାମ ନେଲାବେଳେ ଭରଲମାନଙ୍କର ଦେହର ବର୍ଣ୍ଣ ପରିପାର୍ଶ୍ୱ ସହିତ ଏଭଳି ମିଳିଯାଏ ଯେ ସେମାନଙ୍କର ଉପସ୍ଥିତି ସହଜରେ ଜଣା-ପଡ଼େ ନାହିଁ ।

ଗ୍ରୀଷ୍ମକାଳରେ ଏହି ମେଷମାନେ ଦଳ ଦଳ ହୋଇ ବାସ କରନ୍ତି । ଗୋଟିଏ ଦଳରେ 10 ରୁ 50 ଯାଏ ମେଷ ଥାନ୍ତି । ବେଳେ ବେଳେ ଗୋଟିଏ ଗୋଟିଏ ଦଳରେ 200 ଯାଏ ମେଷ ଦେଖିବାକୁ ମିଳେ । ଏଥିରେ ଅଣ୍ଡିରା, ମାଈ ଓ ଶାବକ ଥାନ୍ତି । ବୟଃପ୍ରାପ୍ତ ଅଣ୍ଡିରା ମେଷ ସାଧାରଣତଃ

ଦଳଠାରୁ ଅଲଗା ରହନ୍ତି । ବସନ୍ତ ଓ ଗ୍ରୀଷ୍ମକାଳରେ ଅଧିକ ବୟସରେ ଗାରଡ଼ମାନେ ଉଚ୍ଚସ୍ଥାନକୁ ଚାଲିଯାନ୍ତି । ପ୍ରଜନନ ଋତୁ ଆରମ୍ଭରେ ସେପ୍ଟେମ୍ବର ମାସ ବେଳକୁ ଫେରିଆସି ମାଈ ଓ ଛୁଆ ଅଣ୍ଡିରା ଦଳ ସହିତ ମିଶନ୍ତି । ଉରିଆଲମାନଙ୍କ ପରି ଭରାଲ ଗୃହପାଳିତ ମେଷଙ୍କ ସହିତ ରମଣ କରେ ନାହିଁ । ଏମାନେ ସହଜରେ ପୋଷ ମାନନ୍ତି ନାହିଁ ।

ବିଭିନ୍ନ ଭାଷାରେ ଭରାଲର ନାମ .– ହିନ୍ଦି–ଭରଲ, ଭରର, ଭରୁତ୍ , ଲଦାକୀ–ନା, ସ୍ନା ; ନେପାଳୀ–ନାରଭତି ; ଭୋଟିଆ–ନାଓ, କ୍ନାଓ; ଇଂରାଜୀ– Bharal, Blue sheep (ବର୍ଣ୍ଣ କେତେକ ପରିମାଣରେ ନୀଳାପିଆ ହୋଇଥିବାରୁ 'ନୀଳ ମେଷ' ନାମ ହୋଇଅଛି ।) ; ବୈଜ୍ଞାନିକ ନାମ – Pseudois nayaur (Hodgson) ।

# କାଇଲ୍

ମଧ୍ୟ ଏସିଆର ଆଲଟାଇସ ଠାରୁ ହିମାଳୟ ଏବଂ ଆଫଗାନିସ୍ଥାନରୁ କୁମାଓନ ପର୍ଯ୍ୟନ୍ତ ପାର୍ବତ୍ୟ ଅଞ୍ଚଳ କାଇଲ ଛାଗଳର ବାସଭୂମି । ହିମାଳୟ କାଇଲ ପ୍ରକୃତ ପକ୍ଷେ ହିମାଳୟରେ ପଶ୍ଚିମାଞ୍ଚଳରେ ମୁଖ୍ୟ ହିମାଳୟ ପର୍ବତ-ମାଳାର ଉଭୟ ପାର୍ଶ୍ୱରେ ଏବଂ କାଶ୍ମୀର ଓ ବଲଟିସ୍ଥାନ ସେପଟର ପାର୍ବତ୍ୟ ଅଞ୍ଚଳରେ ବିଚରଣ କରନ୍ତି । ଏମାନେ ପୂର୍ବରେ ସତ୍‌ଲେଜ୍ ନଦୀ ପର୍ଯ୍ୟନ୍ତ ଦେଖାଯାନ୍ତି ।

ଏହା ଗୋଟିଏ ବଳିଷ୍ଠ ନିଦା ଛାଗଳ । ଅଣ୍ଡିରା ଛାଗଳର ଲମ୍ବା ଦାଢ଼ି ଥୋମଣୀ ତଳକୁ ଓହଳି ଥାଏ । ଦେହ ଟାଆଁସା ଲୋମରେ ଆବୃତ । ଶୀତ ଋତୁରେ ଘନଲୋମ ଉଠିବା ଫଳରେ ସେମାନେ ପ୍ରଚଣ୍ଡ ଶୀତରୁ ରକ୍ଷା ପାନ୍ତି । ଏ ସମୟର ଲୋମର ରଙ୍ଗ ସାଧାରଣତଃ ହଳଦିଆ । ସେଥିରେ ବାଦାମୀ ଓ ଧୂସର ଆଭା ଥାଏ । ଗ୍ରୀଷ୍ମକାଳରେ ବର୍ଣ୍ଣ ଘନ ବାଦାମୀ ଓ ଏଠି ସେଠି ବିକ୍ଷିପ୍ତଭାବେ ଧଳାରଙ୍ଗ ଥାଏ । ମାଈ ଛାଗର ବର୍ଣ୍ଣ ହଳଦିଆ

ଟାଦାମୀ । ଅର୍ଣ୍ଣିଗ ଛାଗର ମୁଣ୍ଡରୁ ଚୌଡା ବକ୍ର ତରବାରୀ ପରି ବଡ଼ ଶିଙ୍ଗ ଟାହାରି ଥାଏ । ଶିଙ୍ଗର ସମ୍ମୁଖ ଅର୍ଥାତ୍ ବାହାରପାଖ ସ୍ପଷ୍ଟଭାବେ କୁଞ୍ଚିତ ।



[ଚିତ୍ର ନଂ 111, କାଇଲ]

ପୁରୁଷ ଛାଗର କାନ୍ଧଠାରେ ତଳୁ ଉଚ୍ଚତା 100 ସେଣ୍ଟିମିଟାର (40 ଇଞ୍ଚ) ; ମାଈ ଅର୍ଣ୍ଣିଗ ଠାରୁ କ୍ଷୁଦ୍ର । ସୂତାରେ ବକ୍ର ରେଖାରେ ଶିଙ୍ଗକୁ ମାପିଲେ 100-115 ସେଣ୍ଟିମିଟାର (40-45 ଇଞ୍ଚ) ଯାଏ ହୋଇପାରେ । ସବୁଠାରୁ ବଡ ଶିଙ୍ଗର ଲମ୍ବ 147.3 ସେଣ୍ଟିମିଟାର (58 ଇଞ୍ଚ) [ଟିଆନ୍ ସା (ହ) ନ୍‌ରୁ ପ୍ରାପ୍ତ] ; 139.7 ସେଣ୍ଟିମିଟାର (55 ଇଞ୍ଚ) [ଗିଲ୍‌ଗିଟ୍‌ରୁ ପ୍ରାପ୍ତ] । ହୃଷ୍ଟପୁଷ୍ଟ ଅର୍ଣ୍ଣିଗର ଓଜନ 90 କିଲୋଗ୍ରାମ (200 ପାଉଣ୍ଡ) ହୁଏ ।

ପାଦପରେଖା (tree-line) ଠାରୁ ଉଚ୍ଚସ୍ଥାନରେ କାଇଲ ଦେଖାଯାନ୍ତି । ବସନ୍ତ ଋତୁରେ ଉତ୍ତୁଙ୍ଗ ଢାଲୁ ଅଂଶରେ ଉଠୁଥିବା ନୂତନ ଘାସକୁ ଚରିବା ଲାଗି ସେମାନେ ତୁଷାର ରେଖା (Snow-line) ର ବେଶ ତଳକୁ ଓହ୍ଲାଇ ଆସନ୍ତି । ସେମାନେ ଖରା ପଡ଼ି ସକାଳ ହେଲାଯାଏ ଓ ଉପରବେଳା ଚରନ୍ତି । ଭୀତ ହେଲେ ଚଳିବା ସ୍ଥାନରୁ ଉପରକୁ ଡେଁଯାଇ ପାହାଡ଼ର

ତୀଖ ଗିରିଚୂଡ଼ାରେ ଆଶ୍ରୟ ନିଅନ୍ତି । ଏ ସ୍ଥାନ ଏପରି ଅଗମ୍ୟ ଯେ ସେଠାକୁ ଉଠିବା ବିପଦ ସଙ୍କୁଳ । ତା ସଂଗକୁ ମାଈ ଛାଗମାନଙ୍କର ସଜାଗ ଦୃଷ୍ଟି ସର୍ବଦା ତଳଆଡ଼କୁ ରହିଥାଏ ଓ ସେମାନଙ୍କର ଗନ୍ଧ ବାରିବା ଶକ୍ତି ପ୍ରବଳ ।



[ଚିତ୍ର ନଂ 112, କାଇଲର ଖୁର – ପାହାଡ଼ ଚଢ଼ିଲା ବେଳେ ପାଦର ପଛ ଅଂଶ ତଳେ ଘୁପି ରହିବାରୁ (ତଳ ଚିତ୍ର) ପାଦ ଖସିଯାଏ ନାହିଁ ; ଅନ୍ୟ ସମୟରେ ପାଦର ପଛ ଅଂଶ ଉପରକୁ ଉଠି ରହିଥାଏ (ଉପର ଚିତ୍ର) ।]

ଶତ୍ରୁ ଉପରକୁ ଉଠିବାର ଦେଖିଲେ ନଜର ରଖିଥିବା ଛାଗଳ ଏକ ପ୍ରକାର ଚିରିଚିରିଆ ଫୁସୁରି ଧ୍ୱନି କରେ । ଏହା ଶୁଣି ଦଳକଯାକ କାଇଲ ଦୁଲ୍ ଦୁଲ ହୋଇ ତଳକୁ ଓହ୍ଲାଇ ଆସି ପୁଣି ଉପରଆଡ଼କୁ ଆଶ୍ରୟ ପାଇଁ ଉଠିଯାନ୍ତି ।

ଏମାନେ ଦଳବାନ୍ଧି ବାସ କରନ୍ତି । ଗୋଟିଏ ଦଳରେ 40 ରୁ 50 ଯାଏ ଛାଗ ଥାନ୍ତି । ବେଳେ ବେଳେ ତା'ଠୁ ଅଧିକ ସଂଖ୍ୟକ ଛାଗ ମଧ୍ୟ ଥାନ୍ତି । ବସନ୍ତ ଋତୁର ଆରମ୍ଭରୁ ଓ ଗ୍ରୀଷ୍ମକାଳରେ ଅଣ୍ଡିରା କାଇଲ ମାଈ ଓ ଶାବକମାନଙ୍କ ଦଳ ନିକଟରେ ବା ତାଙ୍କ ସହିତ ରହିଥିବାର ଦେଖାଯାଏ । ଗ୍ରୀଷ୍ମଋତୁ ଆସେଇଗଲେ, ଅଣ୍ଡିରାମାନେ ଦଳ ଛାଡ଼ି ଏକାକୀ ବା ତିନି-ଚାରିଗୋଟି

ଏକତ୍ର ହୋଇ ଅଗମ୍ୟ ସ୍ଥାନରେ ଯାଇ ବାସ କରନ୍ତି । ପୁଣି ଅକ୍ଟୋବର ମାସରେ ପ୍ରଜନନ ପାଇଁ ଦଳରେ ଆସି ମିଶନ୍ତି । ମେ ଓ ଜୁନ୍ ମାସରେ ହିମାଳୟ ଅଞ୍ଚଳରେ ଖାଦ୍ୟ ପ୍ରଚୁର ଓ ଏ ସମୟରେ ଛାଗ ଶାବକ ଜନ୍ମ ହୁଅନ୍ତି । ଶୀତ ଋତୁରେ ସେମାନଙ୍କ ଦେହ ଘନଲୋମରେ ଆଚ୍ଛାଦିତ ହେଉଥିବାରୁ ସେମାନେ ଶୀତ କଷ୍ଟ ସହିପାରନ୍ତି ଓ ଅଳ୍ପ ତୁଷାର ଥିବା ସ୍ଥାନରେ ବାସ କରନ୍ତି ; ତଳକୁ ଓହ୍ଲାଇ ଆସନ୍ତି ନାହିଁ । କୋମଳ ଲୋମ ସଂଗ୍ରହ ପାଇଁ ଶିକାରୀ କାଇଲ ଶିକାର କରନ୍ତି । ଲୋମ ଶାଲର କଡ଼ ଏବଂ ମୋଜା ଓ ହାତମୋଜା ତିଆରିରେ ବ୍ୟବହୃତ ହୁଏ । କାଇଲ ଚମଡ଼ାରେ ମୋଟା ପରିକା ଜୋତା ତିଆର ହୁଏ । ଏହା କାଶ୍ମୀର ଓ ପାମୀର ଅଞ୍ଚଳର ଅଧିବାସୀମାନେ ବ୍ୟବହାର କରିଥାନ୍ତି ।

ବିଭିନ୍ନ ଭାଷାରେ କାଇଲର ନାମ :— ଲଦାକୀ—ସିନ୍, ସାକିନ୍ (ଅଣ୍ଡିରା) ; ତବ୍‌ମୋ, ତାନ୍‌ମୋ (ମାଈ) ; କାଶ୍ମିରୀ—କାଇଲ ; କୁଲୁ—ଟଙ୍ଗୋଲ । ଇଂରାଜୀ—Ibex (ଇବେକସ) । ବୈଜ୍ଞାନିକ ନାମ—Capra ibex linnaeus ।

# ପସିନ୍

ପସିନ୍ ଏକ ଜାତି ବନ୍ୟଛାଗଳ । ଏହା ଦେଖିବାକୁ ସୁନ୍ଦର । ଥୋମଣି ତଳକୁ ଗୋଛାଏ ଦାଢ଼ି ଥାଏ । ଶୀତକାଳରେ ବର୍ଣ୍ଣ ବାଦାମୀ ଧୂସର; ଗ୍ରୀଷ୍ମ କାଳରେ ହଳଦିଆ ବା ଲାଲସିଆ ବାଦାମୀ । ଲୋମ କ୍ଷୁଦ୍ର । ପେଟ ପାଖ ଧଳା । ବୁଢ଼ା ଅଣ୍ଡିରା ଛେଳିଙ୍କ ବର୍ଣ୍ଣ ଫିକା । ଉତ୍ତମ ବୃଦ୍ଧି ପ୍ରାପ୍ତ ଅଣ୍ଡିରା ଛାଗର ଗ୍ରୀବା ପୃଷ୍ଠଠାରୁ ପିଠି ଦେଇ ଲାଞ୍ଜ ମୂଳ ପର୍ଯ୍ୟନ୍ତ ଏକ କଳା ଡ଼ୋରା ପଡ଼ିଥାଏ । ମୁଖ ମଣ୍ଡଳ, ଚିବୁକ ଓ ଦାଢ଼ି ( କେବଳ ଅଣ୍ଡିରାଙ୍କର ଥାଏ ), ତଣ୍ଡି; ଲାଞ୍ଜ, ଗୋଡ଼ର ସମ୍ମୁଖ ପଟ ( ଆଣ୍ଠୁକୁ ଛାଡ଼ି ), ଏବଂ କଡ଼ ପଟ ଘନ ବାଦାମୀ । ଅଣ୍ଡିରା ଛାଗର ଶୃଙ୍ଗ ଚୌଡ଼ା ତରବାରୀ ଆକାର ଓ ଲମ୍ବା । ତାହା ଉପର ଆଡ଼କୁ ଉଠି ପଛ ଆଡ଼କୁ ବଙ୍କାଇ ରହିଥାଏ । କାଇଲର ଶୃଙ୍ଗ ପରି



[ ଚିତ୍ର ନଂ 113, ପସିନ୍]

ବାହାର ପଟରେ ଦନ୍ତୁରିତ ନ ହୋଇ ନିୟମିତ ଭାବେ ସୁନ୍ଦର ଭାବେ ଆବୁ ଆବୁଆ । ଛାଗୀ ମାନଙ୍କର ଶୃଙ୍ଗ ଅନେକ ଛୋଟ, ଆଡ ବାଗରେ ଶିରଳିଆ, ଉପର ଆଡକୁ ଠିଆ ହୋଇ ପଛ ଆଡ଼କୁ ସାମାନ୍ୟ ବଙ୍କ ।

ଉତ୍ତମ ବୟଃପ୍ରାପ୍ତ ଅଣ୍ଡିଗ ଛାଗର କାନ୍ଧଠାରେ ଉଚ୍ଚତା 95 ସେଣ୍ଟିମିଟାର (37 ଇଞ୍ଚ), ମାଈମାନେ ସାନ ହୁଅନ୍ତି । ଉତ୍ତମ ରୂପେ ବର୍ଦ୍ଧିତ ଶିଙ୍ଗକୁ ମାପିଲେ 100 ସେଣ୍ଟିମିଟାର (40 ଇଞ୍ଚ) ଯାଏ ଲମ୍ବ ହୁଏ । ସବୁଠାରୁ ବଡ ଶିଙ୍ଗ ଲମ୍ବରେ 134.4 ସେଣ୍ଟିମିଟାର (52.5 ଇଞ୍ଚ) ଓ ମୋଟେଇରେ 17.8 ସେଣ୍ଟିମିଟାର (7 ଇଞ୍ଚ) ହେବାର ଦେଖା ଯାଇଛି ।

ଦକ୍ଷିଣ-ପଶ୍ଚିମ ଏସିଆରେ କକେସସ୍‌ଠୁ ସିନ୍ଧ ପର୍ଯ୍ୟନ୍ତ ବିସ୍ତୃତ ପାହାଡ଼ିଆ ଅଞ୍ଚଳ ପସିନ୍ ଛାଗଳର ବାସଭୂମି । ଭୌଗଳିକ ଭାରତରେ ବେଲୁଚିସ୍ଥାନ ଓ ପଶ୍ଚିମ ସିନ୍ଧ ଅଞ୍ଚଳର ତୃଣହୀନ ପାହାଡ଼ିଆ ଅଞ୍ଚଳରେ ଏହି ଛାଗଳ ଦେଖା ଯାନ୍ତି । ଏମାନେ ବୋଲନ ସଂକୀର୍ଣ୍ଣ ଗିରିପଥ ଓ କ୍ୱେଟାର ପୂର୍ବ ଏବଂ ଉତ୍ତର ପୂର୍ବକୁ ଦେଖା ଯାନ୍ତି ନାହିଁ । ସିନ୍ଧ୍-ବେଲୁଚିସ୍ଥାନର ପସିନ୍ କକେସସ୍

ଅଞ୍ଚଳର ପସିନ୍ ଠାରୁ ଆକାରରେ ଛୋଟ ହୁଏ ଓ ଭିନ୍ନ କିସମର (capra hireus blythe Hume) ।

ସିନ୍ଧରେ ଏହି ନେଏ ଛାଗଳ ଅଳ୍ପ ବା ଅଧିକ ସଂଖ୍ୟାରେ ଦଳ ବାନ୍ଧି ବାସ କରନ୍ତି । ଖିରତା (ହା)ର ପର୍ବତମାଳା ଅଞ୍ଚଳରେ ତୃଣହୀନ ପ୍ରସ୍ତରମୟ ଅଞ୍ଚଳରେ କଣ୍ଟା ଓ ନାଗଫେଣୀ ଗଛ ବିକ୍ଷିପ୍ତ ଭାବେ ଦେଖିବାକୁ ମିଳେ । ସେ ଅଞ୍ଚଳରେ ଭୀଷଣ ଜଳାଭାବ, ଗ୍ରୀଷ୍ମକାଳରେ ଅଗ୍ନିକୁଣ୍ଡ ପରି ଗରମ, ଶୀତକାଳରେ ପ୍ରଚଣ୍ଡ ଶୀତ । ଏହିପରି ପରିବେଶରେ ପସିନ୍ ଛାଗଳ ବାସ କରନ୍ତି । କେବଳ ଯେ ବାସ କରନ୍ତି ତାହା ନୁହେଁ, ଏଭଳି ସ୍ଥାନରେ ସେମାନେ ଖୁବ୍ ଚଞ୍ଚଳ, ଶିଖର ଚୂଡ଼ାରେ ପଥରରୁ ପଥର ଉପରକୁ ଡେଇଁ ଡେଇଁ ଖେଳି ବୁଲୁଥାନ୍ତି । ପାଦ ଉପରେ ଏମାନଙ୍କର ଏପରି ଆୟତ୍ତ ଯେ କୁଦା କୁଦି ବେଳେ କେବେ ଗୋଡ଼ ଖସିଯାଏ ନାହିଁ । ପାହାଡ଼ ଚୂଡ଼ାରେ ସେମାନେ ବିଶ୍ରାମ ନିଅନ୍ତି ଓ ବିପଦ ଆପଦ ପାଇଁ ତଳ ଆଡ଼କୁ ନଜର ରଖିଥାନ୍ତି ।

ପୂର୍ବେ ୟୁରୋପ ଓ ପ୍ରାଚ୍ୟ ଦେଶରେ "ବିଜ୍‌ପଥର" ('bezoar stone') ପ୍ରସିଦ୍ଧି ଲାଭ କରିଥିଲା । ପ୍ରାଚ୍ୟ ଦେଶ ମାନଙ୍କରେ ବିଷ-ନାଶକ ରୂପେ ଓ କେତେକ ରୋଗରେ ଔଷଧ ରୂପେ ଏହା ବ୍ୟବହୃତ ହେଉଥିଲା । "ବିଜ୍ ପଥର" ଏହି ଛାଗଳର ପାକସ୍ଥଳୀରେ ଗଠିତ ହୋଇଥାଏ ମାର୍ଚ୍ଚ-ମେଁ ମାସ ମଧ୍ୟରେ ପସିନ ଛୁଆ କରନ୍ତି ।

ବିଭିନ୍ନ ଭାଷାରେ ପସିନ୍‌ର ନାମ:—ସିନ୍ଧି-ଟେର, ସାଂଗ୍ର (ହା); ବେଲୁଚି- ପସିନ୍, ପଚିନ୍, ଇଂରାଜି Sind Ibex, wild goat । ବୈଜ୍ଞାନିକ ନାମ— Capra Hireus Linnaeus ।

ପସିନ୍ ଛାଗଳର ବିଶେଷତ୍ୱ ଏହିଯେ ସମସ୍ତ ପ୍ରକାର ଗୃହପାଳିତ ଛାଗ ଏମାନଙ୍କଠାରୁ ଉଦ୍ଭୂତ ।

# ମାର୍ଖୋର

ବୁଢ଼ା ଅଣ୍ଡିଗ ମାର୍ଖୋରର ଶିଙ୍ଗ ବଡ଼ ଓ ମୋଡ଼ି ମୋଡ଼ି ହୋଇ ଉପରଆଡ଼କୁ ଉଠି ଯାଇଥାଏ ; ଲମ୍ବ କେଶର ବେକ ଓ ସ୍କନ୍ଧଠାରୁ ଆଣ୍ଠୁ ପର୍ଯ୍ୟନ୍ତ ଓହଳି ଥାଏ । ଏହାର ମୋଟାମୋଟି ଚେହେରା ଗାମ୍ଭୀର୍ଯ୍ୟପୂର୍ଣ୍ଣ । ଶୀତକାଳରେ ବର୍ଣ୍ଣ ଲୁହା କଳଙ୍କିଆ-ଧୂସର । ଗ୍ରୀଷ୍ମକାଳରେ ଲୋମ ଶୀତ-



[ ଚିତ୍ର ନଂ 114, ମାର୍ଖୋର ]

କାଳର ଲୋମ ତୁଳନାରେ ଛୋଟ ଓ ଲାଲ-ବାଦାମୀ ଆସିଆ । ବୁଢ଼ା ଅଣ୍ଡିଗ ଭଣା ଅଧିକ ଧଳା ବର୍ଣ୍ଣର । ଅଳ୍ପ ବୟସ ଅଣ୍ଡିରଙ୍କର ବୁଢ଼ାଙ୍କ ପରି ବେଶୀ ଲମ୍ବା ଓ ଲୋମ ବହୁଳ ଦାଢ଼ି ନ ଥାଏ । ଛେଳୀମାନଙ୍କର ବର୍ଣ୍ଣ ଘନ ହଳଦିଆ-ବାଦାମୀ ।

ବୁଢ଼ା ଅଣ୍ଡିରର ଉଚ୍ଚତା କାନ୍ଧଠାରେ 95-100 ସେଣ୍ଟିମିଟାର (38-41 ଇଞ୍ଚ) । ସବୁଠାରୁ ବଡ଼ ଶିଙ୍ଗର ଲମ୍ବ 165.1 ସେଣ୍ଟିମିଟାର (65 ଇଞ୍ଚ) (ଆସ୍ତର ଓ ପିର ପଞ୍ଜାଲର ମାର୍ଖୋର) ।

ମାର୍ଖୋର ହିମାଳୟ ପର୍ବତମାଳାରେ କାଶ୍ମୀର ଉପତ୍ୟକାଠୁ ପଶ୍ଚିମକୁ ଓ ହିନ୍ଦୁକୁଶ ଅଞ୍ଚଳରେ ବାସ କରନ୍ତି । ଶିଙ୍ଗର ପ୍ରକାର ଭେଦରେ 5 (ପାଞ୍ଚ) କିସମର ମାର୍ଖୋର ଦେଖାଯାନ୍ତି । କାହା ଶିଙ୍ଗ ଖୁବ୍ ଫରଗ୍ସ ତ କାହାର ଅଳ୍ପ ଫରଗ୍ସ । ଆହୁରି ମଧ୍ୟ, ବିଭିନ୍ନ କିସମର ମାର୍ଖୋର ବିଭିନ୍ନ ପରିବେଶରେ ବାସ କରନ୍ତି । କେହି ଘନ ପାଇନ୍ ଜଙ୍ଗଲରେ ବାସ କରେ ଓ କେହି ଖୋଲରେ ଅନୁର୍ବର ପାହାଡ଼ିଆ ଅଞ୍ଚଳରେ ରହେ ।

ଏମାନେ କ୍ୱଚିତ୍ ତୁଷାର-ରେଖା (Snow-line) ଉପରସ୍ଥ ଅଞ୍ଚଳରେ ଦେଖାଯାନ୍ତି । ଶୀତକାଳରେ ଏମାନଙ୍କ ଲୋମ ତଳେ କାଇଲଙ୍କ ପରି କ୍ଷୁଦ୍ର ଲୋମ ଉଠେ ନାହିଁ । ଏଣୁ ଶୀତକାଳରେ ଏମାନେ ପ୍ରବଳ ଶୀତ ହେଉ ନ ଥିବା ନିମ୍ନ ଅଞ୍ଚଳକୁ ଓହ୍ଲାଇ ଆସନ୍ତି । ସେମାନେ ବନ୍ଧୁର ପର୍ବତ ଶିଖରର କଙ୍କର ସ୍ତର ଉପରେ ବିଶ୍ରାମ ନିଅନ୍ତି ; କାରଣ ଏହା ତାଙ୍କପାଇଁ ସବୁଠାରୁ ନିରାପଦ ସ୍ଥାନ ।

ଅନ୍ୟ ଛାଗମାନଙ୍କ ପରି ମାର୍ଖୋର ଦଳ ଦଳ ହୋଇ ବାସ କରନ୍ତି । ସେମାନେ ପାହାଡ଼ର ନୁଆଁଣିଆ ଜାଗା ଦେଖି ରହନ୍ତି । ମାର୍ଖୋର ଯେପରି ଅତି ବିପଦସଙ୍କୁଳ ପାହାଡ଼ର ତୀକ୍ଷ୍ଣସ୍ଥାନକୁ ଉଠିପାରେ, ଅନ୍ୟ କୌଣସି ଛାଗଳ ତା'ସହିତ ସମକକ୍ଷ ହୋଇ ପାରନ୍ତି ନାହିଁ । ଗ୍ରୀଷ୍ମଋତୁରେ ବଳୁଆ ଅଣ୍ଡିରା-ମାନେ ଦଳ ଛାଡ଼ି ଏକାକୀ ବା 4-5ଟି ମିଶି ଦଳବାନ୍ଧି ଅଲଗା ରହନ୍ତି । ଅକ୍ଟୋବର–ଡ଼ିସେମ୍ବର ମାସ ସେମାନଙ୍କର ପ୍ରଜନନ ଋତୁ । ଏତେବେଳେ ସେମାନେ ପୁଣି ଆସି ମାଈ ଓ ଶାବକ ଥିବା ଦଳରେ ଯୋଗ ଦିଅନ୍ତି । ମେଁ–ଜୁନ୍ ମାସରେ ଗୋଟିଏ ବା ଦୁଇଟି ଶାବକ ଜନ୍ମ ହୁଏ ।

ମାର୍ଖୋରର ବିଭିନ୍ନ ଭଷାରେ ନାମ :– ପଞ୍ଜାବ ଓ ଦକ୍ଷିଣ କାଶ୍ମୀର– ମାର୍ଖୋର ; ଲଦାକୀ–ରପୋଚେ (ଅଣ୍ଡିରା), ରଓ୍ୟାଚେ (ମାଈ) ; ଇଂରାଜୀ– Markhor । ବୈଜ୍ଞାନିକ ନାମ–Capra falconeri (wagner) ।

# ଟେହେର୍

## (1) ହିମାଳୟ ଟେହେର୍

ଏହି ବନ୍ୟ ଛାଗର ମୁଣ୍ଡ ଉତ୍ତମ ଗଠିତ, କାନ ସଙ୍କୀର୍ଣ୍ଣ ଓ ଉପର-ଆଡ଼କୁ ଠିଆ, ଦେହ ଓଜନିଆ, ଗୋଡ଼ ଲମ୍ବା ଓ ମଜବୁତ୍ । ମୁଖମଣ୍ଡଳ ଓ ମୁଣ୍ଡରେ ଲୋମ କ୍ଷୁଦ୍ର । ଦେହ ତଳଆଡ଼କୁ ଓହଳି ପଡିଥିବା କଟକଟିଆ ରକ୍ଷ ଲୋମ ଦ୍ୱାରା ଆବୃତ । ବେକ ଏବଂ କାନ୍ଧଠାରେ ଲୋମ ବଢ଼ି କେଶର



[ ଚିତ୍ର ନଂ 115, ହିମାଳୟ ଟେହେର୍ ]

ଗଠନ କରିଥାଏ ଏବଂ ତାହା ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥାଏ । ଏମାନଙ୍କର ବର୍ଣ୍ଣ ପରିବର୍ତ୍ତନଶୀଳ । ସାଧାରଣ ବର୍ଣ୍ଣ ଘନ ଲାଲ-ବାଦାମୀ । ପିଠିର ମଧ୍ୟ-ସ୍ଥଳରେ ଏକ ଗାଢ଼ ରେଖାଥାଏ । ଏହି ରେଖା ସାଧାରଣତଃ ସ୍ପଷ୍ଟ ନୁହେଁ । ବୁଢ଼ା ଅଣ୍ଡିରମାନଙ୍କର ବର୍ଣ୍ଣ ଅଧିକ ଗାଢ଼, ବିଶେଷ କରି ପଛପାଖ ଗାଢ଼ । ମାଈ ଓ ବେଶୀ ବୟସ ହୋଇ ନ ଥିବା ଅଣ୍ଡିରମାନଙ୍କର ବର୍ଣ୍ଣ ଫିକା-ବାଦାମୀ । ଶାବକମାନଙ୍କର ବର୍ଣ୍ଣ ଆହୁରି ହାଲୁକା । ହିମାଳୟ ଟେହେର୍‌ମାନଙ୍କର ଶିଙ୍ଗ

ଛୋଟ ଓ ପାଖାପାଖି ଅବସ୍ଥିତ । ଶିଙ୍ଗ ମୂଳ ସ୍ଥୂଳ ; ଶେଷାଂଶ ବ୍ୟତୀତ ବାକି ଅଂଶ ମୋଡ଼ି ମୋଡ଼ିଆ ଓ ପଛଆଡ଼କୁ ବଙ୍କା । ବୁଢ଼ା ଅର୍ଣ୍ଣିଘମାନଙ୍କର ଶିଙ୍ଗ ପଶ୍ଚାତ୍‌ଭାଗରେ ତଳଆଡ଼କୁ ବକ୍ର ।

ଅର୍ଣ୍ଣିଘ ହିମାଳୟ ଟେହେର୍‌ର କାନ୍ଧଠାରେ ଉଚ୍ଚତା 90-100 ସେଣ୍ଟିମିଟାର (36-40 ଇଞ୍ଚ) ; ଓଜନ ପ୍ରାୟ 90 କିଲୋଗ୍ରାମ (200 ପାଉଣ୍ଡ) ; ଶିଙ୍ଗର ଲମ୍ବ 30-40 ସେଣ୍ଟିମିଟାର ; ସବୁଠାରୁ ଅଧିକ ଲମ୍ବର ଶିଙ୍ଗ 41.6 ସେଣ୍ଟିମିଟାର (16½ ଇଞ୍ଚ) ଓ ତା'ର ଗୋଲେଇ 25.4 ସେଣ୍ଟିମିଟାର (10 ଇଞ୍ଚ) । ହିମାଳୟ ଟେହେର୍ ପିର ପଞ୍ଜାଲରୁ ସିକିମ୍ ପର୍ଯ୍ୟନ୍ତ ହିମାଳୟର ସର୍ବତ୍ର ଦେଖାଯାନ୍ତି ।

ଯେତେ ଜାତିର ବନ୍ୟ ଛାଗ ଅଛନ୍ତି ତନ୍ମଧ୍ୟରେ ଟେହେର୍ ସବୁଠାରୁ ଦୁର୍ଗମ ସ୍ଥାନରେ ବାସ କରନ୍ତି । ସେମାନେ ପାଦପ-ରେଖା (tree-line) ଅର୍ଥାତ୍ 3050-3660 ମିଟାର (10,000—12,000 ଫୁଟ) ଠାରୁ ଅଧିକ ଉଚ୍ଚରେ ବାସ ନ କଲେ ମଧ୍ୟ, ସେମାନଙ୍କର ପ୍ରିୟ ବାସସ୍ଥଳୀ ହେଲା ଅତି ଉଚ୍ଚ ଗିରିଚୂଡ଼ା, ପଥର, ଘନ ବୁଦାଝାଟି ଓ ଅରଣ୍ୟ ଥିବା ଦୁର୍ଗମ ଅଞ୍ଚଳ । କାଇଲ (Ibex) ଓ ମାର୍ଖୋର ଭୟଭୀତ ହେଲେ ସେଭଳି ଦୁର୍ଗମ ସ୍ଥାନକୁ ଉଠି ଯାଉଥିଲେ ମଧ୍ୟ ଟେହେର୍ ସେ ସ୍ଥାନକୁ ତା'ର ବାସରୂପେ ବ୍ୟବହାର କରେ । ଏଣୁ ଏମାନଙ୍କୁ ଶିକାର କରିବା ସହଜ ନୁହେଁ । ତା' ସାଙ୍ଗକୁ ଛାଇ ଓ ସୁରକ୍ଷିତ ସ୍ଥାନରେ ବିଶ୍ରାମ ନେବାକୁ ଭଲ ପାଉଥିବାରୁ ସେମାନେ ଅଧିକ ନିରାପଦରେ ବାସ କରନ୍ତି । ମାଈ ଟେହେର୍ ଅନେକ ସମୟରେ ଉନ୍ମୁକ୍ତ ଅଞ୍ଚଳରେ ଚରିବାକୁ ଆସେ ; କିନ୍ତୁ ବୁଢ଼ା ଅର୍ଣ୍ଣିଘ କେବେ ଛାଇ ଓ ନିରାପଦ ସ୍ଥାନ ଛାଡ଼ି ମୁକ୍ତ ଅଞ୍ଚଳକୁ ବାହାରନ୍ତି ନାହିଁ । ସେମାନେ ଓକ୍ ଓ ବେତର ଜଙ୍ଗଲ ଭିତରେ ଲୁଚି ରହିଥାନ୍ତି । କେବଳ ଉପରବେଳା ପଦାକୁ ବାହାରନ୍ତି । ସୂର୍ଯ୍ୟ ଭଲଭାବେ ଉପରକୁ ଉଠିଗଲା ପରେ କେବେହେଲେ ବାହାରନ୍ତି ନାହିଁ । ଟେହେରମାନେ ପ୍ରକୃତ ଛାଗଳମାନଙ୍କ ପରି ଦଳବଦ୍ଧ ଭାବରେ ବାସ କରନ୍ତି । ମାର୍ଚ୍ଚ—ଏପ୍ରିଲ ମାସରେ ବରଫ ତରଳିବାକୁ ଆରମ୍ଭ କରିବା ଠିକ୍ ପୂର୍ବରୁ ଏମାନେ ଉପତ୍ୟକାର ନିମ୍ନାଂଶରେ ଆସି ଏକଜୁଟ

ହୁଅନ୍ତି । ଏ ସମୟରେ ସେମାନେ ବେଶୀ ସଂଖ୍ୟାରେ ଶିକାର ହୋଇଥାନ୍ତି । ପରେ ସେମାନେ ଉଚ୍ଚ ଦୁର୍ଗମ ଅଞ୍ଚଳକୁ ପୁଣି ଉଠିଯାନ୍ତି । ଗ୍ରୀଷ୍ମଋତୁର ଶେଷଆଡ଼କୁ ବୁଢ଼ା ଅଣ୍ଡିରା ଦଳକୁ ବାହାରିଯାଇ ଅଲଗା ବାସ କରେ । ଶରତକାଳର ଶେଷଆଡ଼କୁ ସେମାନେ ପୁଣି ଦଳରେ ଆସି ଯୋଗ ଦିଅନ୍ତି । ଶୀତକାଳରେ ପ୍ରଜନନ ହୁଏ । ଏତେବେଳେ ମାଈ ଉପରେ ଆଧିପତ୍ୟଲାଗି ଅଣ୍ଡିରାଙ୍କ ଭିତରେ ଜୋର ଲଢ଼େଇ ହୁଏ । ଉଚ୍ଚ ପର୍ବତର ତୀଖ ଅଞ୍ଚଳରେ ଲଢ଼େଇ କଲାବେଳେ ପାଦ ଥୋଇବାକୁ ସ୍ଥାନର ଅଭାବ ହେବା ଫଳରେ ଅନେକ ପ୍ରତିଦ୍ୱନ୍ଦୀ ତଳକୁ ଖସିପଡ଼ି କଙ୍କର ସ୍ତରରେ ପିଚି ହୋଇ ପ୍ରାଣ ହରନ୍ତି । ମେଁ–ଜୁନ୍ ମାସରେ ଶାବକ ଜନ୍ମ ହୁଅନ୍ତି ।

ଟେହେରମାନଙ୍କୁ ଗୃହପାଳିତ ଛାଗମାନଙ୍କ ସହିତ ରମଣ କରାଇଲେ ଶାବକ ଜାତ ହୁଅନ୍ତି ନାହିଁ । ମାଈ ଟେହେରର ମାଂସ ସ୍ୱାଦୁ । ଅଣ୍ଡିରାର ମାଂସ ତୀବ୍ର ଛେଳିଆ ଗନ୍ଧ ହୁଏ । ଅବଶ୍ୟ ସ୍ଥାନୀୟ ଲୋକଙ୍କୁ ଏ ମାଂସ ଖୁବ୍ ଭଲ ଲାଗେ ।

ବିଭିନ୍ନ ଭାଷାରେ ଟେହେର୍‌ର ନାମ–ପଶ୍ଚିମ ହିମାଳୟ–ଟେହେର୍, ଝେହେର ; କାଶ୍ମୀର–ଜ୍ଞାସ, ଜାଗଲା ; ନେପାଳୀ–ଝରାଲ ; ଇଂରାଜୀ–Himalayan Tahr, ବୈଜ୍ଞାନିକ ନାମ– Hemitragus jemlahicus (H. Smith).

## (2) ନୀଳଗିରି ଟେହେର୍

ଦକ୍ଷିଣ ଭାରତରେ ନୀଳଗିରି ପର୍ବତମାଳା ଠାରୁ ଆନାମଲାଇ ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଓ ସେଠାରୁ ପଶ୍ଚିମ ଘାଟ ପର୍ବତମାଳା ଦେଇ ଦକ୍ଷିଣକୁ ବ୍ୟାପିଥିବା ପାର୍ବତ୍ୟ ଅଞ୍ଚଳରେ 1220-1830 ମିଟାର (4000-6000 ଫୁଟ) ଉଚ୍ଚତାରେ ଆଉ ଏକ ଜାତି ଟେହେର୍ ବାସ କରନ୍ତି । ବନ୍ୟ ଛାଗଙ୍କମାନେ ଉତ୍ତରଅଞ୍ଚଳରେ ବାସ କରୁଥିଲା ବେଳେ ଏକ ଜାତି ଟେହେର୍ ଦକ୍ଷିଣାଞ୍ଚଳରେ ବାସ କରୁଥିବାରୁ ମନେହୁଏ ଅତୀତ କାଳରେ ଏହି ଅଞ୍ଚଳ

ହିମାଳୟ ସହିତ ସଂଯୁକ୍ତ ଥିଲା ଓ ସମଗ୍ର ଅଞ୍ଚଳର ସମଶୀତୋଷ୍ଣ ଜଳବାୟୁରେ ସେମାନେ ବାସ କରୁଥିଲେ । କାଳକ୍ରମେ ଭୂମିର ପୃଷ୍ଠଭାଗର ପରିବର୍ତ୍ତନ ଓ



[ଚିତ୍ର ନଂ 116, ନୀଳଗିରି ଟେହେର]

ଦକ୍ଷିଣାଞ୍ଚଳ ବିଚ୍ଛିନ୍ନ ହେବା ଫଳରେ ସେମାନେ ଏବେ ଉଲ୍ଲିଖିତ ପାର୍ବତ୍ୟ ଅଞ୍ଚଳରେ ମାତ୍ର ଦେଖାଯାନ୍ତି ।

ଆକାରରେ ନୀଳଗିରି ଟେହେର ହିମାଳୟ ଟେହେର ଠାରୁ ଅଳ୍ପ ବଡ଼ । କାନ୍ଧଠାରେ ଏମାନଙ୍କର ଉଚ୍ଚତା 100-110 ସେଣ୍ଟିମିଟାର । ସବୁଠାରୁ ବଡ଼ ଅଣ୍ଡିରର ଶିଙ୍ଗ ଲମ୍ବରେ 44.5 ସେଣ୍ଟିମିଟାର (17½ ଇଞ୍ଚ) ଓ ତା'ର ସର୍ବାଧିକ ଗୋଲେଇ 25.1 ସେଣ୍ଟିମିଟାର(9 $\frac{7}{8}$ ଇଞ୍ଚ) । ମାଈ ଟେହେରର ସବୁଠାରୁ ବଡ ଶିଙ୍ଗ ଲମ୍ବରେ 35.6 ସେଣ୍ଟିମିଟାର । (14 ଇଞ୍ଚ) ହୁଏ ।

ହିମାଳୟ ଟେହେରର ଏକ ନିକଟତମ ଜ୍ଞାତି ହେଲେ ମଧ୍ୟ ନୀଳଗିରି ଟେହେରଙ୍କର ବିଶେଷତ୍ୱ ହେଲା ସେମାନଙ୍କ ଦେହର ଲୋମ ଛୋଟ ଓ ମାଈଙ୍କର ଚାରିଟି ପରିବର୍ତ୍ତେ କେବଳ ଦୁଇଟି ଚୁଚୁକ (teat) ଥାଏ । ଏମାନଙ୍କର ସାଧାରଣ ବର୍ଣ୍ଣ ହଳଦିଆ-ବାଦାମୀ, ପେଟପାଖ ଫିକା । ମାଈ ଓ ଗଧା ଅଣ୍ଡିରଙ୍କର ବର୍ଣ୍ଣ ଧୂସର । ବୟସ ବଢ଼ିଲା ସାଙ୍ଗେ ସାଙ୍ଗେ ଅଣ୍ଡିରଙ୍କ ବର୍ଣ୍ଣ

କ୍ରମେ ଗାଢ଼ ବାଦାମୀ ଓ ଶେଷରେ ପ୍ରାୟ କଳା ହୋଇଯାଏ, କେବଳ କମର ସ୍ଥାନରେ ପିଠି ଉପରେ ହାଲୁକା "ଜିନ୍ ପଟି" ଚିହ୍ନ ରହିଥାଏ (ଚିତ୍ର ଦେଖ) । ଦୂରରୁ ଜିନ୍ ପଟି ପ୍ରାୟ ଧଳା ଦେଖାଯାଏ । ଅର୍ଣ୍ଣିଗ ନୀଳଗିରି ଟେହର ମାଈଙ୍କ ଠାରୁ ଅଧିକ ମଜବୁତ୍ । ଶିଙ୍ଗ ମୂଳରେ ପ୍ରାୟ ଲଗାଲଗି ହୋଇ ରହିଥାଏ । ସେ ଦୁଇଟି ଉପରକୁ ଅଳ୍ପଦୂର ସମାନ୍ତରାଳ ଭାବେ ଉଠି ହଠାତ୍ ତଳକୁ ବଙ୍କ ହୋଇ ଥାଏ । ଶିଙ୍ଗ ଅତିଶୟ ମୋଡ଼ି ମୋଡ଼ିକା ।

ନୀଳଗିରି ପର୍ବତ ମାଳାରେ ଜଙ୍ଗଲ ଉପରକୁ ଉଠିଥିବା ବନ୍ଧୁର ପର୍ବତ ଅଞ୍ଚଳ ଟେହେରର ପ୍ରିୟ ବାସସ୍ଥଳୀ । ବେଳେ ବେଳେ ଏମାନେ ଘାସ ଭରା ଉଚ୍ଚ ପର୍ବତର ଢ଼ାଲୁ ଅଂଶରେ ଆସି ମଧ୍ୟ ଚରନ୍ତି । ଏମାନେ ଦଳବାନ୍ଧି ରହନ୍ତି । ଗୋଟିଏ ଦଳରେ ଛଅଟି ଯାଏ ଟେହେର ଥାନ୍ତି । ବେଳେ ବେଳେ ଗୋଟିଏ ଗୋଟିଏ ଦଳରେ ଅଧିକ ସଂଖ୍ୟକ ପ୍ରାଣୀ ଏକଜୁଟ ହୋଇ ଥିବାର ଦେଖାଯାଏ । ବଡ଼ିସକାଳୁ ଓ ଉପର ବେଳା ଖର ତାଣ ନ ଥିବା ବେଳେ ଏମାନେ ଚରିବାକୁ ବାହାରନ୍ତି । ତାଣ ଖର ବେଳେ ସେମାନେ ବନ୍ଧୁର ପର୍ବତ ଓ ବଡ଼ ବଡ଼ ପଥର ଆଢୁଆଳରେ ନିରାପଦ ଛାଇ ଜାଗାରେ ବିଶ୍ରାମ ନିଅନ୍ତି । ନୀଳଗିରି ଟେହେର ହିମାଳୟ ଟେହେର ବା ମାର୍ଖୋର ପରି ସର୍ବଦା ସଜାଗ । ସେମାନଙ୍କର ଦୃଷ୍ଟିଶକ୍ତି ତୀକ୍ଷ୍ଣ ଓ ଦୁର୍ଗମ ସ୍ଥାନରେ ମଧ୍ୟ ଗତି ଚଞ୍ଚଳ । ତଥାପି ତାଙ୍କ ପାଦ ଖସିଯାଏ ନାହିଁ । ବିଶ୍ରାମ ସମୟରେ ଏକ ବା ଅଧିକ ମାଈ ପ୍ରହରୀର କାର୍ଯ୍ୟ କରନ୍ତି । ବିପଦ ଆପଦ ପାଇଁ ସେମାନେ ତଳ ଆଡ଼କୁ ସଜାଗ ଦୃଷ୍ଟି ରଖିଥାନ୍ତି । ବନ୍ୟ ଛେଳି ମାନଙ୍କ ପକ୍ଷରେ ଏହା ଏକ ସାଧାରଣ କଥା । ମାତ୍ର ମଜାର କଥା ଏଇ ଯେ, ନୀଳଗିରି ଟେହେର ତଳ ଆଡ଼କୁ ଯେତେ ଦୃଷ୍ଟି ରଖନ୍ତି ଉପର ଆଡକୁ ସେତେ ନିଘା ରଖନ୍ତି ନାହିଁ । ଏମାନଙ୍କର ପ୍ରଧାନ ଶତ୍ରୁ କଲରା ପତ୍ରିଆ ବାଘ ଓ ବଳିଆ କୁକୁର । ଶିକାରୀଙ୍କ ଦୌରାତ୍ମ୍ୟ ଯୋଗୁ ନୀଳଗିରି ଟେହେରଙ୍କ ସଂଖ୍ୟା ବହୁ ପରିମାଣରେ ହ୍ରାସ ପାଇଥିଲା । ଜାନୁଆରୀ 1963 ସାଲରେ ନୀଳଗିରି 'ବନ୍ୟ ଜୀବ ଆସୋସିଏନ' ଟେହେରଙ୍କର ସଂଖ୍ୟା ଗଣନା କରାଇଥିଲେ । ଗଣତିରେ ସେମାନଙ୍କ ସଂଖ୍ୟା ହେଲା 292 । ଟେହେରଙ୍କର ଅନୁମାନିକ ମୋଟ ସଂଖ୍ୟା 400 ବୋଲି ଅନୁମାନ କରା ଯାଇଥିଲା । ଏହାପରେ କଡ଼ା କଡ଼ି ଭାବେ

'ପ୍ରାଣୀସଂରକ୍ଷଣ' ନିୟମ ପ୍ରଣୟନ ଫଳରେ ସେମାନଙ୍କର ସଂଖ୍ୟା ବୃଦ୍ଧି ପାଇଛି ବୋଲି ମନେ ହୁଏ ।

ନୀଳଗିରି ଟେହେରଙ୍କର ପ୍ରଧାନ ପ୍ରଜନନ କାଳ ସମ୍ବନ୍ଧରେ କିଛି ଜଣା ନାହିଁ । ଗ୍ରୀଷ୍ମକାଳରେ ବୁଢ଼ା ଅଣ୍ଡିଗ ଦଳ ଛାଡ଼ି ଏକାକୀ ବୁଲନ୍ତି । ବର୍ଷର ଅଧିକାଂଶ ମାସରେ ମାଈଙ୍କ ସହିତ ଛୁଆ ଦେଖିବାକୁ ମିଳନ୍ତି । ସାଧାରଣତଃ ଗୋଟିଏ, ବେଳେ ବେଳେ ଦୁଇଟି ଶାବକ ଜନ୍ମ ହୁଅନ୍ତି । ଗ୍ରୀଷ୍ମ ଋତୁର ଆରମ୍ଭ ସମୟରେ ବେଶୀ ଛୁଆ ଜନ୍ମ ହେବାର ଦେଖାଯାଏ ।

ନୀଳଗିରି ଟେହେରର ବିଭିନ୍ନ ଭାଷାରେ ନାମ —ତାମିଲ ଓ କାନାରି-

ବୁରେ ଆଡୁ, ମାଲୟାଲୀ–ମୁଲା ଅଡୁ, ଇଂରାଜି–Nilgiri Ibex, Nilgiri Tahr । ବୈଜ୍ଞାନିକ ନାମ–Hemitragus hylocrius (Ogilby) ।



# ଊନବିଂଶ ଅଧ୍ୟାୟ

# ଛାଗଳ-ଏଣ୍ଟିଲୋପ

ସ୍ତନ୍ୟପାୟୀ ପ୍ରାଣୀ ଶ୍ରେଣି (Mammalia) ଅଧୀନରେ ଆର୍ଟିଓଡ଼େକ୍‌ଟାଇଲ (ସମଖୁରିକ) ଏକ ପ୍ରଧାନ ବର୍ଗ । ବୋଭିଡ଼ି ବଂଶ (ଫମ୍ପା ଶିଙ୍ଗ ରୋମନ୍ଥକ ପ୍ରାଣୀ) ଏହାର ଅନ୍ତର୍ଭୁକ୍ତ । ଏହି ବଂଶ ପାଞ୍ଚଟି ପ୍ରଧାନ ଉପ-ବଂଶରେ ବିଭକ୍ତ ଯଥା—ବୋଭିନି (Bovinae—ଗୋମହିଷାଦି ପ୍ରାଣୀ), କାପ୍ରିନି (Caprinae-ମେଷ, ଛାଗ ଆଦି ପ୍ରାଣୀ), ରୁପିକାପ୍ରିନି (Rupicaprinae ସାଗଉ, ଗୋରଲ ଓ ତାକିନ୍), ପାନ୍ଥୋଲୋପିନି (Pantholopinae ଚିରୁ ଓ ଏଣ୍ଟିଲୋପିନି (Antilopinae-ଏଣ୍ଟିଲୋପ, ଯଥା—ଚିଙ୍କାରା, କୃଷ୍ଣସାର, ଚଉଶିଙ୍ଗା ଓ ନୀଳଗାଈ) ।

ରୁପିକାପ୍ରିନି ଉପବଂଶଭୁକ୍ତ ପ୍ରାଣୀମାନଙ୍କୁ ଛାଗଳ-ଏଣ୍ଟିଲୋପ (goat-antelope) କହନ୍ତି । କାରଣ ଏହି ବିଭାଗର ପ୍ରାଣୀମାନଙ୍କ ଠାରେ ଉଭୟ ଛାଗଳ ଓ ଏଣ୍ଟିଲୋପ ମାନଙ୍କର କେତେକ ଲକ୍ଷଣ ଦେଖାଯାଏ । ଏମାନେ ସମସ୍ତେ ପର୍ବତ ବାସୀ । କେତେକଙ୍କର ଗଢଣ ଓ ଦନ୍ତ ଛାଗଳଙ୍କ ପରି ଏବଂ ଲାଞ୍ଜ କ୍ଷୁଦ୍ର, ଛାଗଳଙ୍କ ପରି ପାର୍ବତ୍ୟ ଅଞ୍ଚଳରେ ଉଚ୍ଚ ସ୍ଥାନକୁ ଚଢି ପାରନ୍ତି, ସେମାନଙ୍କ ଦେହରୁ ଛେଳିଆ ଗନ୍ଧ ବାହାରେ, ମାତ୍ର ଥୋମଣି ଗୋମହିଷ ଓ ଏଣ୍ଟିଲୋପ ମାନଙ୍କ ପରି । ଛାଗ ମାନଙ୍କ ପରି ଏମାନଙ୍କର ଦାଢି ନ ଥାଏ । ମାଈ ଅଣ୍ଡିରା ଉଭୟଙ୍କର କ୍ଷୁଦ୍ର ନଳାକାର ଶିଙ୍ଗ ଥାଏ । କେତେକଙ୍କର ବେକରେ କେଶର ଥାଏ । ୟୁରୋପର ଶ୍ୟାମଏସ୍ (Chamois-Rupicapra rupicapra ଏମାନଙ୍କ ଚମଡ଼ା ପ୍ରସିଦ୍ଧ) ଓ ଉତ୍ତର ଆମେରିକାର ଶିଳାସ୍ତୂପ ଭରା ପାର୍ବତ୍ୟ ଛାଗ (Rocky mountain goat-Oreamnos americanus) ମଧ୍ୟ ଛାଗଳ ଏଣ୍ଟିଲୋପ ବିଭାଗର ଅନ୍ତର୍ଭୁକ୍ତ ।

ଭୌଗୋଳିକ ଭାରତରେ ଯେଉଁ ଛାଗଳ-ଏଣ୍ଟିଲୋପ ଦେଖା ଯାନ୍ତି ସେମାନେ ହେଲେ ସାରଭ (Serow), ଗୋରଲ (Goral) ଓ ଟାକିନ୍ (Takin)। ସାରଭ ଓ ଗୋରାଲଙ୍କର ଶିଙ୍ଗ ଶଙ୍କ୍ୱାକାର (Conical) ଓ ପଛ ଆଡ଼କୁ ବଙ୍କାଇ ରହିଥାଏ। ଘମଏସ୍‌ର ଶିଙ୍ଗ ଆଖି ସିଧା ଉପରକୁ ଉଠି ଅଗ୍ରଭାଗରେ ହଠାତ୍ ପଛ ଆଡକୁ ବଙ୍କ। ବାହାରକୁ ସାରଭ ଓ ଗୋରାଲ ମଧ୍ୟରେ ବିଶେଷ ସାମଞ୍ଜସ୍ୟ ଥିଲେ ମଧ୍ୟ ସେମାନଙ୍କର କରୋଟି (skull)ର ଗଠନରେ ଅଦ୍ଭୁତ ପ୍ରଭେଦ ଦେଖିବାକୁ ମିଳେ। ସାରାଭର ମୁଖ ମଣ୍ଡଳରେ କରୋଟିର ଏକ ସାମାନ୍ୟ ନୀଚ ଅଂଶରେ ସୁବର୍ଦ୍ଧିତ ଆନନ ଗ୍ରନ୍ଥି (Face gland) ଥାଏ। ଗୋରାଲର ତାହା ନାହିଁ। ଏହି ଗ୍ରନ୍ଥି ଚକ୍ଷୁ ନିମ୍ନକୁ କ୍ଷୁଦ୍ର ରନ୍ଧ୍ର ଦେଇ ଉନ୍ମୁକ୍ତ। ବେଳେ ବେଳେ ଏହି ରନ୍ଧ୍ର କ୍ଷୁଦ୍ର ଘାଆ ପରି ଦେଖା ଯାଏ। ରନ୍ଧ୍ର ବାଟେ ଏକ ପ୍ରକାର ଧଳା ରସ କ୍ଷରିତ ହୁଏ। ଶୁଖିଗଲେ ବାବଲ ଅଠା ପରି ଦିଶେ। ସାରାଭ ଦେହରୁ ତୀବ୍ର ଛେଳିଆ ଗନ୍ଧ ବାହାରେ।

ଗୋରାଲ ଆକାରରେ ସାରାଭଙ୍କ ଠାରୁ ବହୁତ ଛୋଟ। ସେମାନଙ୍କର ଆନନ-ଗ୍ରନ୍ଥି ନ ଥିଲେ ମଧ୍ୟ ମେଷମାନଙ୍କ ପରି ପାଦରେ ପଦ ଗ୍ରନ୍ଥି (foot gland) ଅଛି। ଏହି ଗ୍ରନ୍ଥି ଗୁଡ଼ିକ ଖୁରା ଉପରକୁ ଅଶ୍ୱ ଗୁଲଫ (Pastern) ନିକଟରେ ଉନ୍ମୁକ୍ତ। ସାରାଭର ଏ ଗ୍ରନ୍ଥି ଅଛିକି ନାହିଁ ତାହା ଜଣା ନାହିଁ। ଗୋରାଲ କରୋଟି (skull)ର ଟାକିନ କରୋଟି ସହିତ ସାମଞ୍ଜସ୍ୟ ଅଧିକ, ଅଥଚ ବାହାରୁ ଦେଖିଲେ ଏହି ଦୁଇ ପ୍ରାଣୀମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଅଳ୍ପ।

ଟାକିନ୍ ଆକାରରେ ବଡ଼ ଓ ତା'ର ବଳିଷ୍ଠ ଦେହ ନିଦା। ଏହା ବରଂ ଏକ ଅସାଧାରଣ ବିବର୍ତ୍ତିତ ଛାଗଳ ଏଣ୍ଟିଲୋପ ବୋଲି କୁହାଯାଇ ପାରେ। ସାରାଭ ଓ ଗୋରାଲ ପରି ଏହାର ଗୋଡ଼ ଓ ଦେହ ହାଲୁକା ଭାବେ ଗଠିତ ନୁହେଁ ଏବଂ ସେମାନଙ୍କ ପରି ଟାକିନ୍ ଚଞ୍ଚଳ ନୁହେଁ। ଟାକିନ୍‌ର ଦୁଇ ଶିଙ୍ଗ ମୂଳରେ ପ୍ରାୟ ଲାଗିଥାଏ। ଏହା ଉପର ଆଡ଼କୁ ଉଠି, ତଳଆଡ଼କୁ ବା ପଛ ଆଡକୁ ବଢ଼ି ପୁଣି ହଠାତ୍ ଉପର ଓ ପଛ ଆଡକୁ ବର୍ଦ୍ଧିତ (ଚିତ୍ରଦେଖ)।

# ସାରାଉ

ସାରଉର ମୁଣ୍ଡ ବଡ଼, ଗଧ କାନପରି କାନ, ବେକ ମୋଟା ଓ ଗୋଡ଼ ଛୋଟ । ଏକ କଥାରେ କହିଲେ, ଏହା ଗୋଟିଏ ଖୁବ ସୁନ୍ଦର ପ୍ରାଣୀ ନୁହେଁ । ଆଗ ଗୋଡ଼କୁ ଫରଙ୍କ କରି, ଖୁର ମେଲଇ ମୁଣ୍ଡକୁ ଡକକୁ କରି ଠିଆ ହେବା ଏହାର ଅଭ୍ୟାସ । ଏହି ଭଙ୍ଗୀ ତା'ର ଚେହେରକୁ



[ ଚିତ୍ର ନଂ 117, ସାରାଉ ]

ଆହୁରି କଦାକାର କରେ । ମାଈ ଅଣ୍ଡିର ଉଭୟଙ୍କର ଗଢ଼ଣ ପ୍ରାୟ ଏକା ପରି । ଦେହର ଲୋମ ରୁକ୍ଷ, ନିମ୍ନାଞ୍ଚଳବାସୀ ସାରଉମାନଙ୍କର କେଶ ପାତଳ, ଘନ ନୁହେଁ । ଦେହର ସାଧାରଣ ବର୍ଣ୍ଣରେ କିଛି ସ୍ଥିରତା ନ ଥାଏ । ଈଷତ୍ ଧୂସର କଳା ବା ଧଳା ଚିହ୍ନଯୁକ୍ତ କଳାସିଆ ଧୂସରରୁ ଲାଲବର୍ଣ୍ଣ ହୋଇପାରେ । ସ୍କନ୍ଧ, ଦେହର କଡ଼, ଜଙ୍ଘର ନିମ୍ନଭାଗ କଳଙ୍କିଆ ଲାଲ ; ଗୋଡ଼ର ଭିତର ପାଖ ଓ ପେଟପାଖ ମସିଆ ଧୂସର । ଥୋମଣି, ତଣ୍ଟି ଓ ଛାତି ଅଂଶ ଅଳ୍ପ ବହୁତ ଧଳା । ହିମାଳୟ ଅଞ୍ଚଳର ସାରାଉଙ୍କର ଗୋଡ଼ର ନିମ୍ନାଂଶ ମସିଆ ଧଳା ଓ ଉପର ଅଂଶ ଫିକା ବାଦାମୀ । ମାଲୟର ସାରାଉଙ୍କର ଗୋଡ଼ ପୂରାପୂରି କଳା । ମାଈ ଅଣ୍ଡିରା ଉଭୟଙ୍କର ଶିଙ୍ଗ ଥାଏ । ଶିଙ୍ଗ କଳା, ଶଙ୍କ୍ୱାକାର ଓ ଲମ୍ବର ଚତୁର୍ଥଭାଗରୁ ତିନିଭାଗ ଘନଭାବେ ବଳିଲା ପରି କୁଞ୍ଚିତ ।

ବୁଢ଼ା ଅଣ୍ଡିରା ସାରାଉ କାନ୍ଧଠାରେ 100-110 ସେଣ୍ଟିମିଟାର (39-42 ଇଞ୍ଚ) ଉଚ୍ଚ ହୁଅନ୍ତି । ଓଜନ 90 କିଲୋଗ୍ରାମ (200 ପାଉଣ୍ଡ) ରୁ ଅଧିକ ହୋଇପାରେ । ଶିଙ୍ଗ ଲମ୍ବରେ 23-25 ସେଣ୍ଟିମିଟାର (9-10 ଇଞ୍ଚ) ଓ ଗୋଲେଇରେ 13-15 ସେଣ୍ଟିମିଟାର (5-6 ଇଞ୍ଚ) ହୁଏ ।

ହିମାଳୟ ଅଞ୍ଚଳରେ କାଶ୍ମୀର ଠାରୁ ଆସାମର ମିସ୍‌ମି ପାହାଡ଼, ପୂର୍ବରେ ୟୁନାନ ଓ ଜେଚୁଆନ୍ (Szechuan) ପର୍ବତମାଳା, ବର୍ମା, ଶ୍ୟାମ, ମାଲୟ ଉପଦ୍ୱୀପ ଓ ସୁମାତ୍ରାର ପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ସାରଉର ବାସଭୂମି । ଏହି ବିସ୍ତୀର୍ଣ୍ଣ ଅଞ୍ଚଳରେ ବିଭିନ୍ନ କିସମର ସାରଉ ଦେଖାଯାନ୍ତି ।

ହିମାଳୟର ପାର୍ବତ୍ୟ ଅଞ୍ଚଳରେ 1850-3050 ମିଟାର (6,000—10,000 ଫୁଟ) ଉଚ୍ଚତାରେ ସାରାଉ ରହେ । ବର୍ମାର ପାର୍ବତ୍ୟ ଅଞ୍ଚଳରେ 200-2450 ମିଟାର (700-8000 ଫୁଟ) ଉଚ୍ଚତାରେ ସେମାନେ ବାସ କରନ୍ତି ।

ଘନ ଜଙ୍ଗଲ ପରିବେଷ୍ଟିତ ସଂକୀର୍ଣ୍ଣ ଗିରିପଥର ଢାଲୁ ଅଂଶରେ ବଡ଼ ବଡ଼ ପଥର ଦ୍ୱାରା ଗୁହାପରି ହୋଇଥିବା ସ୍ଥାନରେ ସାରାଉ ରହନ୍ତି । ଏହି ଆଶ୍ରୟ ସେମାନଙ୍କୁ ଖରା ବର୍ଷାରୁ ରକ୍ଷା କରେ । ସକାଳେ ଓ ଅପରବେଳା ସେମାନେ ଚରି ବାହାରନ୍ତି ଓ ମୁକ୍ତ ଢାଲୁ ଅଂଶରେ ଜନ୍ମିଥିବା ଗୁଳ୍ମ ଖାନ୍ତି । ସେଇ ଏକ ପାହାଡ଼ରେ ଗୁରି ପାଞ୍ଚଟି ସାରାଉ ଚରିବାର ଦେଖାଗଲେ ମଧ୍ୟ, ସେମାନେ ଉଣା ଅଧିକ ଏକାକୀ ରହନ୍ତି । ଏମାନେ ଅତ୍ୟନ୍ତ ଚଞ୍ଚଳ । ସମତଳ ଭୂମିରେ ଯେପରି, ପ୍ରସ୍ତରମୟ ପାହାଡ଼ିଆ ଭୂମିରେ ସେହିପରି ସେମାନେ ତତ୍ପରତାର ସହ ଯାତାୟତ କରିପାରନ୍ତି । ଶାନ୍ତି ଭଙ୍ଗ ହେଲେ ସାରାଉ ଏକ ପ୍ରକାର ସୀତ୍କାର ନାସିକାଧ୍ୱନି (ଘୋଡ଼ାର ନାକବାଟେ ସାପର ଫଁ ଶବ୍ଦ ବାହାରିଲେ ଯେପରି ହେବ) କରି ଦୌଡ଼ି ପଳାଏ । ଏକ ଆରେକକୁ ଡାକିବା ଧ୍ୱନି ହୁଇସିଲିଆ ଚିତ୍କାର ପରି ।

ହିମାଳୟ ଅଞ୍ଚଳରେ ଅକ୍ଟୋବର ମାସର ଶେଷଆଡ଼କୁ ସେମାନଙ୍କର ପ୍ରଜନନ ହୁଏ । ମେ–ଜୁନ୍ ମାସରେ ଶାବକ ଜନ୍ମ ହୁଅନ୍ତି । ଥରକେ ଗୋଟିଏ, କ୍ୱଚିତ୍ ଦୁଇଟି ଛୁଆ ଜନ୍ମ ହୁଏ । ବର୍ମାରେ ସାରାଉ ସେପ୍ଟେମ୍ବର

ମାସ ଶେଷଆଡ଼କୁ ଛୁଆ କରନ୍ତି । ଗର୍ଭଧାରଣ କାଳ ସାତମାସ ବୋଲି କୁହାଯାଏ ।

ବିଭିନ୍ନ ଭାଷାରେ ସାରାଉର ନାମ – ଉତ୍ତର ପଶ୍ଚିମ ହିମାଳୟ– ସାରାଉ ; କାଶ୍ମିରୀ–ରାମୁ, ହାଲଜ, ସାଲଭୀର ; ସିକିମ–ଗ୍ୟା ; ବର୍ମିଜ– ଟାଉଟ ସିଇକ୍ ; ମାଳୟ–କାମ୍ବିଙ୍ଗ ଉଟାନ୍ ; ଇଂରାଜୀ–Serow । ବୈଜ୍ଞାନିକ ନାମ Capricornis sumatraensis (Bechstein) ।

# ଗୋରାଲ

ଗୋରାଲ ଗୋଟିଏ ମଜବୁତ ଛେଳିପରି ପ୍ରାଣୀ । ଛେମ ରଙ୍ଗ ଓ ବେକ ଠାରେ ଛୋଟ ଚୂଳଥାଏ । କାନ୍ଧଠାରେ ଉଚ୍ଚତା 65-70 ସେଣ୍ଟିମିଟାର (26-28 ଇଞ୍ଚ) ; ଓଜନ 25-30 କିଲୋଗ୍ରାମ (58-63 ପାଉଣ୍ଡ) ; ଶିଙ୍ଗର ଲମ୍ବ 13 ସେଣ୍ଟିମିଟାର (5 ଇଞ୍ଚ) । ଦୁଇ କିସମର ଗୋରାଲ ଦେଖାଯାନ୍ତି, ଯଥା– ଧୂସର ଗୋରାଲ ଓ ବାଦାମୀ ଗୋରାଲ ।

ଧୂସର ଗୋରାଲ କାଶ୍ମୀର ଓ ପଶ୍ଚିମ ହିମାଳୟରେ ବାସ କରେ । ଏହାର ସାଧାରଣ ବର୍ଣ୍ଣ କଳାମିଶା ହଳଦିଆ ଧୂସର । ଚିବୁକ, ଉପର ଓଠ, ହନୁ ତଳଭାଗ, ଚର୍ମ ଅଂଶ ଧଳା । ମେରୁଦଣ୍ଡ ସିଧାରେ କଳା ରେଖା ଥିଲେ ତାହା କାନ୍ଧ ପଛକୁ ବିସ୍ତୃତ ହୋଇ ନ ଥାଏ । ଲାଞ୍ଜ ମଝିରେ ରେଖା ନ ଥାଏ । ଜଙ୍ଘ ପଛରେ ଉପର ଆଡ଼କୁ କୌଣସି ରେଖା ନ ଥାଏ ।

ବାଦାମୀ ଗୋରାଲ ନେପାଳ ଓ ସିକିମ୍‌ରେ ବାସ କରେ । ଏହାର ବର୍ଣ୍ଣ କଳାମିଶା ସ୍ୱର୍ଣ୍ଣାଭ ବା ଲାଲସିଆ–ବାଦାମୀ । ମେରୁଦଣ୍ଡ ସିଧାରେ କଳାରେଖା ଲାଞ୍ଜ ମୂଳପର୍ଯ୍ୟନ୍ତ ବିସ୍ତୃତ; ମାତ୍ର ନିତମ୍ବ ଅଂଶରେ କ୍ଷୀଣ ହୋଇଯାଇ ଅସ୍ପଷ୍ଟ । ଲାଞ୍ଜ ଉପର ପାଖ କଳା । ଗୋଇଠି ଠାରୁ ଜଙ୍ଘ ଉପର ଯାଏ କଳା ରେଖା ଚିହ୍ନ ଥାଏ ।



[ ଚିତ୍ର ନଂ 118, ଗୋଗଲ ]

ଗୋଗଲମାନଙ୍କର ଶିଙ୍ଗ କ୍ଷୁଦ୍ର । ତାହା ବାହାରଆଡ଼କୁ ଅଳ୍ପ ଫରସ୍ତ ହୋଇ ପଛଆଡ଼କୁ ବଙ୍କାଇ ରହିଥାଏ । ଶିଙ୍ଗର ବେଶୀ ଅଂଶରେ ମୁଦ୍ରିକା ବା ହିଡ଼ ଥାଏ ।

ଏମାନେ ହିମାଳୟ ଅଞ୍ଚଳରେ 900-2750 ମିଟାର (3000-9000 ଫୁଟ) ଉଚ୍ଚତାରେ ବାସ କରନ୍ତି । ବେଳେ ବେଳେ ଅଧିକ ଉଚ୍ଚକୁ ଉଠିଥାନ୍ତି ଓ 3950-4250 ମିଟାର (13000-14000 ଫୁଟ) ଉଚ୍ଚସ୍ଥାନରେ ଦେଖାଯାନ୍ତି । ଆସାମ ଓ ଚୀନ ପର୍ବତମାଳାରେ ସେମାନେ 900 ମିଟାର (3000 ଫୁଟ) ସ୍ୱଳ୍ପ ଉଚ୍ଚସ୍ଥାନରେ ବାସ କରନ୍ତି । ଏହା ଅନେକ ସମୟରେ ପାହାଡ଼ିଆ ସ୍ୱାସ୍ଥ୍ୟ ନିବାସ ନିକଟରେ ଦେଖିବାକୁ ମିଳିଥାଏ । ସକାଳେ ଓ ଉପରବେଳା ଦଳ ଦଳ ହୋଇ ଏମାନେ ପଥୁରିଆ ଜଙ୍ଗଲ ଏବଂ ଘାସ ଥିବା ବନ୍ଧୁର ପାହାଡ଼ର ଡାଲୁ ଅଂଶରେ ଚରନ୍ତି । ଗୋଟିଏ ଗୋଟିଏ ଦଳରେ ଛଅଟିରୁ ଆଠଟି ଯାଏ ଗୋଗଲ ଥାନ୍ତି । ମେଘୁଆପାଗ ହୋଇଥିଲେ ଦିନସାରା

ଚରନ୍ତି । ବିପଦର ଆଶଙ୍କା ହେଲେ ଗୋଟିଏ ଗୋରାଲ ଜୋରରେ ସୀତ୍କାର ଶବ୍ଦ କରେ ଓ ଅନ୍ୟମାନେ ସେଇପରି ଶବ୍ଦ କରନ୍ତି । ହିମାଳୟ ଅଞ୍ଚଳରେ ମେ–ଜୁନ୍ ମାସରେ ଛୁଆ ଜନ୍ମ ହୁଅନ୍ତି ।

ବିଭିନ୍ନ ଭାଷାରେ ଗୋରାଲର ନାମ – ଉତ୍ତର-ପଶ୍ଚିମ ହିମାଳୟ ଅଞ୍ଚଳ–ଗୋରାଲ ; କାଶ୍ମିରୀ–ପିଜ ପୈଜୁର, ରାଇ, ରେମ୍ ; ସିକିମ୍ ଭୋଟିଆ–ର ଗିଭ ; ଆସାମୀ–ଦେଓ ଛାଗଲ ; ଇଂରାଜୀ–Goral । ବୈଜ୍ଞାନିକ ନାମ–Nemorhaedus goral (Hardwicke) ; ଧୂସର ଗୋରାଲ–Nemorhaedus goral goral (Hardwicke); ବାଦାମୀ ଗୋରାଲ–Nemorhaedus goral hodgsoni pocock ।

## ଟାକିନ୍

କାନ୍ଧଠାରେ ଟାକିନ୍‌ର ଉଚ୍ଚତା 110 ସେଣ୍ଟିମିଟର ($3\frac{1}{2}$ ଫୁଟ) । ଏହା ଏକ ଓଜନିଆ କଦାକାର ପ୍ରାଣୀ । ଶିଙ୍ଗ ଦେଖି ମନେ ହେବ, ହୁଏତ



[ ଚିତ୍ର ନଂ 119, ଟାକିନ୍ ]

ଟାକିନ ନୁ (gnu–ଆଫ୍ରିକାର ଏକ ପ୍ରକାର ରୋମନ୍ଥକ ପ୍ରାଣୀ) ବା ମେରୁ-ଗାଈ (Musk ox–ଗ୍ରୀନ୍‌ଲଣ୍ଡ ଅଞ୍ଚଳର ଏକ ଜାତି ଗାଈର ଏକ ଜ୍ଞାତି ।

ପ୍ରକୃତ ପକ୍ଷେ ତାକିନ୍‌ର ଏହି ପ୍ରାଣୀମାନଙ୍କ ସହିତ ଗଠନଗତ ସାମଞ୍ଜସ୍ୟ ନାହିଁ । ଉତ୍ତଳ (convex) ବଡ ମୁଖମଣ୍ଡଳ, ଓଳନିଆ ମୁହଁ ଓ ଅତି ମୋଟା ବେକ ଏହାର ବିଶେଷ ଲକ୍ଷଣ । ଅଗ୍ରାଂଶ ଭିନ୍ନ ଥୋମଣିର ସମସ୍ତ ଅଂଶ ଲୋମାଚ୍ଛାଦିତ । ଶୀତକାଳରେ ଯେଉଁଠି ଘ୍ରିଆତ ବରଫରେ ଢାଙ୍କି ହୋଇଯାଏ ଏବଂ ଖାଦ୍ୟ ପାଇଁ ଯେଉଁ ଅଞ୍ଚଳରେ କୌଣସି ପ୍ରାଣୀକୁ ବରଫକୁ କୋରି ତା ନିମ୍ନରେ ଥିବା ଉଦ୍ଭିଦକୁ ଖାଇବାକୁ ପଡ଼େ, ସେପରି ସ୍ଥାନରେ ବାସ କରୁଥିବା ପ୍ରାଣୀମାନଙ୍କର ଏହା ଏକ ବିଶେଷତ୍ୱ । କାରଣ, ଚମରୀ ଗାଈର ମଧ୍ୟ ଥୋମଣି ଅଗକୁ ଛାଡ଼ି ବାକି ସବୁ ଅଂଶ ଲୋମଭରା । ତାକିନ୍‌ର ଦେହ ଭରା, ଗୋଡ ଛୋଟ ମାତ୍ର ମୋଟା, ଏପରିକି ଗୟଳର ଗୋଡ ଠାରୁ ମଧ୍ୟ ମୋଟା । କାନ୍ଧ ସାମାନ୍ୟ ଉଚ୍ଚ । ପଛପାଖ ଅଣ-ଓସାରିଆ ମଝି ଅଂଶ ସାମାନ୍ୟ ବଙ୍କାଇ ଲାଞ୍ଜ ମୂଳ ପର୍ଯ୍ୟନ୍ତ ଅଳ୍ପ ଢାଲୁ ।

ତାକିନ୍‌ର ବର୍ଣ୍ଣ ଘନ ବାଦାମୀରୁ ସ୍ୱର୍ଣ୍ଣାଭ ହଳଦିଆ । କାନ୍ଧଠାରେ ବର୍ଣ୍ଣ ଫିକା । ମିସ୍‌ମି ପାହାଡ଼ିଆ ଅଞ୍ଚଳର ବୟଃପ୍ରାପ୍ତ ଅଣ୍ଡିରା ତାକିନଙ୍କର ସାଧାରଣ ବର୍ଣ୍ଣ ସ୍ୱର୍ଣ୍ଣାଭ ହଳଦିଆ ଏବଂ ଦେହର ବାହାରପାଖ ଓ ପଛ ଘନ ବାଦାମୀ ବା କଳା । ପିଠି ମଝିରେ କଳା ରଙ୍ଗର ଏକ ରେଖା ପଡ଼ିଥାଏ । ଅପ୍ରାପ୍ତ ବୟସ୍କ ଅଣ୍ଡିରର ସାମନା ଭାଗ ଲାଲ ବାଦାମୀ ଓ ପଛପାଖ କଳା । ଛୁଆଙ୍କ ବର୍ଣ୍ଣ କଳା । ମାଈମାନେ ଅଣ୍ଡିରଙ୍କ ତୁଳନାରେ ଅଧିକ ଧୂସର ଓ ହଳଦିଆ ବର୍ଣ୍ଣ ଆଦୌ ନ ଥାଏ । ତାକିନ୍‌ଙ୍କର ଶିଙ୍ଗ ଉପରକୁ ଉଠି, ତା'ପରେ ବାହାରଆଡ଼କୁ ଓ ତଳଆଡକୁ ବଙ୍କାଇ ପୁଣି ଉପରକୁ ତୀର୍ଯ୍ୟକ୍ ଭାବେ ଉଠିଥାଏ । ଏହାର ଚକ୍ଷୁ ମସ୍ତକର ଉପର ଅଂଶରେ ଅବସ୍ଥିତ । ବସ୍ତୁତଃ, ଏହି ପ୍ରାଣୀଠାରେ ଗାଈ, ଛେଳି ଓ ଏଣ୍ଟିଲୋପର ଲକ୍ଷଣ ଦେଖିବାକୁ ମିଳେ ।

ତାକିନ ହିମାଳୟର ଭୁଟାନ୍, ମିସ୍‌ମୀ ପାହାଡ଼ମାଳା ଓ ସାଇ-ଭାଇନ୍—ଇତ୍ୟାଦି ଅଞ୍ଚଳର ପର୍ବତରେ ବାସ କରେ । ଘନ ଜଙ୍ଗଲପୂର୍ଣ୍ଣ ଉତ୍ତୁଙ୍ଗ ପର୍ବତର ଢାଲୁ ଅଂଶରେ, ବିଶେଷ କରି ପ୍ରଚୁର ବାଉଁଶ ଓ ରୋଡ଼ୋଡେନ୍‌ଡ୍ରନ୍ ଥିବା ସ୍ଥାନରେ 2135-3050 ମିଟାର (7,000-10,000 ଫୁଟ) ଉଚ୍ଚତାରେ ଦେଖାଯାନ୍ତି । ଗ୍ରୀଷ୍ମକାଳରେ ସେମାନେ ଏକାଠି ହୋଇ

ଦଳ ବାନ୍ଧନ୍ତି । ଉଷ୍ଣ ପ୍ରସ୍ରବଣ ବା ଜଳ ନିକଟରେ ଗୋଟିଏ ଗୋଟିଏ ଦଳରେ ତିନିଶତ ଯାଏ ତାକିନ ଦେଖାଯାଇ ଥାନ୍ତି । ଏମାନେ ସକାଳେ ଚରନ୍ତି ; ମଧ୍ୟାହ୍ନରେ ବିଶ୍ରାମ ନେଇ ପୁଣି ଉପରବେଳା ଚରି ବାହାରନ୍ତି । ଶୀତଋତୁରେ ବଡ଼ ଦଳ ଭାଙ୍ଗି ଯାଇ କ୍ଷୁଦ୍ର କ୍ଷୁଦ୍ର ଦଳ ଗଠିତ ହୁଏ । ପଶ୍ଚିମ ଚୀନ୍ ଅଞ୍ଚଳରେ ଜୁଲାଇ–ଅଗଷ୍ଟ ମାସରେ ପ୍ରଜନନ ହୋଇଥାଏ । ଥରକେ ଗୋଟିଏ ଛୁଆ ଜନ୍ମ ହୁଏ । ମାର୍ଚ୍ଚ ଶେଷ ଏପ୍ରିଲ ଆରମ୍ଭ ଶାବକର ଜନ୍ମ ସମୟ ।

ତାକିନ୍‌ର ବୈଜ୍ଞାନିକ ନାମ – Budorcas taxicolor Hodgson ।



# ତ୍ରିଂଶ ଅଧ୍ୟାୟ

# ଏଣ୍ଟିଲୋପ ବଂଶ

ପୂର୍ବ ଅଧ୍ୟାୟରେ କୁହାଯାଇଛି ବୋଭିଡି ବଂଶ ପାଞ୍ଚଟି ଉପବଂଶରେ ବିଭକ୍ତ । ତନ୍ମଧ୍ୟରୁ ପାଚ୍ଚୋଲେପିନି ଓ ଏଣ୍ଟିଲୋପିନି ଦୁଇଟି । ବିବର୍ତ୍ତନ ଦୃଷ୍ଟିରୁ ଏଣ୍ଟିଲୋପମାନେ ରୋମନ୍ଥକ ପ୍ରାଣୀମାନଙ୍କ ମଧ୍ୟରେ ସର୍ବ ପ୍ରାଚୀନ । କାଳକ୍ରମେ ଏମାନଙ୍କଠାରୁ ଏକ ଦିଗରେ ଗୋମହିଷାଦି ଓ ଅନ୍ୟ ଦିଗରେ ମେଷ, ଛାଗ ଆଦିଙ୍କର ଉଦ୍ଭବ ହୋଇଥିଲ ବୋଲି ବିଶେଷଜ୍ଞମାନଙ୍କର ମତ । ତେଣୁ ଏଣ୍ଟିଲୋପମାନଙ୍କଠାରେ ଗୋ ଓ ମେଷ ଉଭୟପ୍ରାଣୀଙ୍କର ଲକ୍ଷଣର ସମାବେଶ ଦେଖିବାକୁ ମିଳେ । ସାଧାରଣ ଭାବେ କହିଲେ, ଯେଉଁ ଫମ୍ପା ଶିଙ୍ଗ ଯୁକ୍ତ ରୋମନ୍ଥକ ପ୍ରାଣୀଙ୍କୁ ଗୋବଂଶ, ମେଷ-ଛାଗ ବଂଶ ବା ସାରାଉ ଗୋରାଲ-ତାକିନ୍ ବଂଶର ଅନ୍ତର୍ଭୁକ୍ତ କରା ନ ଯାଇ ପାରେ ସେମାନେ ଏଣ୍ଟିଲୋପ । ଏଣ୍ଟିଲୋପମାନେ ଆଫ୍ରିକା ଓ ଏସିଆରେ ବାସକରନ୍ତି । ଏମାନଙ୍କର ଆକାରରେ ବିଶେଷ ପ୍ରଭେଦ ପରିଲକ୍ଷିତ ହୁଏ । କେତେକ ଶଶକ ପରି କ୍ଷୁଦ୍ର ହୋଇଥିଲା ବେଳେ କେତେକ ଷଣ୍ଢଠାରୁ ମଧ୍ୟ ବଡ ହୁଅନ୍ତି । କେତେକଙ୍କର ଆନନଗ୍ରନ୍ଥି ( face gland ), ଗଳ କମ୍ବଳ ( dewlap ) ଓ ଚୂଳ ଥିଲବେଳେ ଅନ୍ୟମାନଙ୍କର ସେ ସବୁ ନ ଥାଏ । କେତେକ କ୍ଷେତ୍ରରେ ମାଈ ଅଣ୍ଡିଗ ଉଭୟର ଶିଙ୍ଗ ଉଠେ, ପୁଣି କେତେକ କ୍ଷେତ୍ରରେ କେବଳ ଅଣ୍ଡିରର ଶିଙ୍ଗ ଉଠେ, ମାଈର ଶିଙ୍ଗ ନ ଥାଏ । ଏମାନଙ୍କର ଶିଙ୍ଗ ସରଳ ଓ ହରିଣପରି ପ୍ରତିବର୍ଷ ଖସିପଡେ ନାହିଁ । ମାତ୍ର ତାହା କ୍ଷୁଦ୍ର ଅଥବା ଲମ୍ବା, ସମ୍ମୁଖକୁ ବା ପାଶ୍ଚାତ୍‌ଭାଗକୁ ବଙ୍କାଇ ଥାଏ, U- ଆକାର ବା V- ଆକାର ହୁଏ, ପ୍ରଥମେ ମେଲିଯାଇ ପୁଣି ଭିତର ଆଡ଼କୁ ବଙ୍କା ହୋଇପାରେ, କାହାରି ଶିଙ୍ଗମୂଳ ଲଗାଲଗି, କାହାରି ଛଡା ଛଡ଼ି ଏବଂ ସର୍ବୋପରି ଏକ ଜାତି ଏଣ୍ଟିଲୋପର ଦୁଇଟି ଶିଙ୍ଗ ପରିବର୍ତ୍ତେ ଚାରିଟି ଶିଙ୍ଗ (ଚୌଶିଙ୍ଗା) । ଏଣ୍ଟିଲୋପ

ଓ ଏଣ୍ଟିଲୋପ ସମ ପ୍ରାଣୀମାନଙ୍କୁ ଦୁଇଟି ଉପବଂଶ ଭୁକ୍ତ କରଯାଏ ଯଥା- ପାନ୍ଥୋଲୋପିନି (Pantholopinae) ଓ ଏଣ୍ଟିଲୋପିନି (Antilopinae) ପାନ୍ଥୋଲୋପିନ ଉପବଂଶର କେବଳ ଗୋଟିଏ ରୋମନ୍ଥକ ପ୍ରାଣୀ ଭୌଗୋଳିକ ଭାରତରେ ଦେଖାଯାଏ । ତାହାହେଲା ତିବତର ଚିରୁ ( Chiru, Tibetan antelope ) । ଆକୃତିରେ ସାମଞ୍ଜସ୍ୟ ନଥିଲେ ମଧ୍ୟ ଏହା ରୁଷର ବିଶାଳ ପ୍ରାନ୍ତର ( Russian Steppes ) ବାସୀ ସାଇଗା ଏଣ୍ଟିଲୋପ ( Saiga antelope ) ର ଏକ ଜାତି । ଏଣ୍ଟିଲୋପିନି ଉପବଂଶର ବହୁ ପ୍ରାଣୀ ଭାରତରେ ଦେଖାଯାନ୍ତି, ଯଥା—ଚିଙ୍କାରା ( Chinkara ବା Indian gazelle), କୃଷ୍ଣସାର, ଚୌଶିଙ୍ଗା ଓ ନୀଳଗାଈ ।

ଏଣ୍ଟିଲୋପମାନଙ୍କର ସାଧାରଣ ଗଢଣ ସୁନ୍ଦର । ଏମାନଙ୍କର ସିଙ୍ଗରେ ସାଧାରଣତଃ ସ୍ପଷ୍ଟ ମୁଦ୍ରିକା ଥାଏ । ସାଧାରଣତଃ ଏମାନଙ୍କ ଚକ୍ଷୁ ତଳକୁ ଏକ ଗ୍ରନ୍ଥିଥାଏ । ଏହା ଗାଈ ବା ଛେଳିଙ୍କର ଥାଏ ନାହିଁ । ଆମର କୃଷ୍ଣସାର ମୃଗର ଆଖି ତଳକୁ ଏହି ଗ୍ରନ୍ଥି ଫୁଲିକରି ରହିଥାଏ । ଗ୍ରନ୍ଥିର ଉନ୍ମୁକ୍ତ ସ୍ଥାନ ଏକ ଲୋମହୀନ କଳା ଭୂଲମ୍ବ ଛେଦଦ୍ୱାରା ଚିହ୍ନିତ । ଏମାନଙ୍କର ଜଙ୍ଘାନ୍ତର ଗ୍ରନ୍ଥି (Inguinal glands) ଅଛି ଓ ଉତ୍ତମ ବର୍ଦ୍ଧିତ । ଖୁର ମଧ୍ୟରେ ମଧ୍ୟ ଏଣ୍ଟିଲୋପମାନଙ୍କର ଗ୍ରନ୍ଥି ଥାଏ ।

ଏଣ୍ଟିଲୋପମାନଙ୍କ ମଧ୍ୟରେ ଚିଙ୍କାର ଜାତୀୟ ପ୍ରାଣୀ ସବୁଠାରୁ ସୁନ୍ଦର ହୁଅନ୍ତି । ଏମାନଙ୍କର (ଏଣ୍ଟିଲୋପ ମାନଙ୍କର) ମାଈ ଅଣ୍ଡିରା ଉଭୟଙ୍କର ଶିଙ୍ଗ ଉଠେ । । ଶିଙ୍ଗସାରା ମୁଦ୍ରିକା ଥାଏ । ସେମାନଙ୍କର ଆଣ୍ଠୁରୁ ଗୋଛାଏ ଲୋମ ବାହାରିଥାଏ ।

ଏଣ୍ଟିଲୋପମାନେ ସାଧାରଣତଃ ଖୋଲା ତୃଣମୟ ଅଞ୍ଚଳରେ ବାସ କରନ୍ତି । ପୂର୍ବେ ଏମାନେ ଶହଶହ ସଂଖ୍ୟାରେ ଦଳବାନ୍ଧି ବାସ କରୁଥିଲେ । କ୍ରୁର ଶିକାରୀଙ୍କ ଉତ୍ପାତରେ ଅନେକଙ୍କର ଆଦିବଂଶ ଲୋପ ହେବାକୁ ବସିଲାଣି ।



# ଚିରୁ

ଅର୍ଣ୍ଣିଗ ଚିରୁ ଉଚ୍ଚରେ ୫୦ ସେଣ୍ଟିମିଟାର (32 ଇଞ୍ଚ) ହୁଏ । ଶିଙ୍ଗର ଲମ୍ବ 60-65 ସେଣ୍ଟିମିଟାର (24-26 ଇଞ୍ଚ) । ସବୁଠାରୁ ଅଧିକ ଲମ୍ବର ଶିଙ୍ଗ 70.5 ସେଣ୍ଟିମିଟାର (27-³ ଇଞ୍ଚ) ହେବାର ଦେଖାଯାଇଛି । ଚିରୁର ଏକ ବିଶେଷତ୍ୱ ତା'ର ସ୍ଫୀତ ନାସାଗ୍ର । ବିଶେଷକରି ଅର୍ଣ୍ଣିଗମାନଙ୍କର ଥୋମଣୀ ବେଶ୍ ଫୁଲ୍‌କା ପ୍ରତ୍ୟେକ ନାକପୁଡ଼ା ଭିତରେ ଗୋଟିଏ କରି ପାର୍ଶ୍ୱକକ୍ଷ ବା ଥଳୀ ଥାଏ । ଉଚ୍ଚ ସ୍ଥାନର କମ୍ ଚାପ ବିଶିଷ୍ଟ ବାୟୁକୁ ସେବନ କରିବାରେ ଏହା ସାହାଯ୍ୟ କରୁଥିବ ବୋଲି ବିଶେଷଜ୍ଞମାନଙ୍କର ଅନୁମାନ । ଚିରୁମାନଙ୍କର ଆଉ ଏକ ବିଶେଷତ୍ୱ ହେଲ, ସେମାନଙ୍କ ଜଂଘାନ୍ତର ଗ୍ରନ୍ଥି (inguinal or groin gland ) ଅତି ମାତ୍ରାରେ ବର୍ଦ୍ଧିତ । ଏହି ଗ୍ରନ୍ଥି ଅନ୍ୟ ରୋମନ୍ଥକ ପ୍ରାଣୀମାନଙ୍କଠାରେ ଦେଖାଯାଏ । ଏମାନେ ଚଲେ ଜଂଘ ପାରି ବିଶ୍ରାମ ନେଉଥିଲାବେଳେ ଏହି ଗ୍ରନ୍ଥିର ସ୍ରାବ ଭୂମିରେ ଲଗୁଥିବ । ପରେ ଅନ୍ୟ ରୋମନ୍ଥକ ପ୍ରାଣୀ ସେଠାକୁ ଆସି ଭୂମି ଶୁଙ୍ଘି ଗନ୍ଧ ଜାଣି ପାରୁଥିବ । ଗୋଟିଏ ଦଳର ପ୍ରାଣୀ ତାଙ୍କ ଦଳର ପ୍ରାଣୀ କେଉଁଠାରେ ବିଶ୍ରାମ ନେଉଥିଲ, ତାହା ଏତଦ୍ୱାରା ଜାଣି ପାରନ୍ତି । ବାଲିରେ ଉଖାରି ଅଗଭୀର ଖାତରେ ଚିରୁ ଆତ୍ମଗୋପନ କରି ବିଶ୍ରାମ ନିଏ । ଏମାନଙ୍କର ଆନନ ଗ୍ରନ୍ଥି (face gland) ନାହିଁ । ଦେହ ଘନ ଲୋମରେ ଆବୃତ । ପିଠି ପାଖର ବର୍ଣ୍ଣ ଫିକା ହଳଦିଆ-ବାଦାମୀ । ପେଟ ପାଖ ଧଳା । ଅର୍ଣ୍ଣିଗମାନଙ୍କର ସମଗ୍ର ମୁଖ ମଣ୍ଡଳ କଳାସିଆ ବା ଘନ ବାଦାମୀ ଏବଂ ପ୍ରତି ଗୋଡର ସାମନା ପାଖରେ ସେହି ରଙ୍ଗର ଏକ ରେଖା ପଡ଼ିଥାଏ । ଆହୁରି ମଧ୍ୟ ସେମାନଙ୍କର (ଅର୍ଣ୍ଣିଗଙ୍କର) ଶିଙ୍ଗ ମୂଳ ଖୁବ୍ ପାଖାପାଖି; ସାମାନ୍ୟ ସାମନା ଆଡ଼କୁ ଉଠି ଯାଇ ଶେଷ ଭାଗରେ ପରସ୍ପର ହୋଇ ଯାଇଥାଏ । ଲମ୍ବା ସରୁଆ ଶିଙ୍ଗକୁ ଦୂରରୁ ଦେଖିଲେ ଗୋଟିଏ ଶିଙ୍ଗ ବୋଲି ଭ୍ରମ ହୁଏ । ଯାହାକୁ ଦେଖି ଅତୀତ କାଳରେ ଲୋକେ ଏକଶୃଙ୍ଗୀ ପଶୁ

(Unicorn) ର କଳ୍ପନା କରିଥିବେ ବୋଲି କେତେକ ବିଶେଷଜ୍ଞଙ୍କର ଅନୁମାନ । ମାଈ ଚିରୁଙ୍କର ଶିଙ୍ଗ ନଥାଏ ।

ତିବ୍ବତର ଉତ୍ତରାଞ୍ଚଳର ମରୁଭୂମି ଚିରୁର ବାସ । ଭାରତର ଚ୍ଛଙ୍ଗ-ଚେନ୍-ମୋ ଉପତ୍ୟକାରେ ସେମାନେ ଦେଖାଯାନ୍ତି । ତିବ୍ବତରୁ ସେମାନେ ଏଠାକୁ ଲନକ ଲ ଗିରିପଥ ଦେଇ ଆସିଥାନ୍ତି ।



( ଚିତ୍ର ନମ୍ବର 120, ଚିରୁ )

ଉତ୍ତର ତିବ୍ବତର ଚ୍ଛଙ୍ଗଟାଙ୍ଗ ମରୁଭୂମିରେ ଚିରୁ ବହୁସଂଖ୍ୟାରେ ଦଳଦଳ ହୋଇ ବାସ କରନ୍ତି । ଗ୍ରୀଷ୍ମକାଳରେ ବରଫ ତରଳିଲେ ନଦୀର ଉପତ୍ୟକା ଅଞ୍ଚଳରେ ପ୍ରଚୁର ଘାସ ହୁଏ । ତାଙ୍କୁ ଚରିବାକୁ ସେମାନେ ନିମ୍ନ ଭୂମିକୁ ଓହ୍ଲାଇ ଆସିଥାନ୍ତି । ସେହି କାରଣରୁ ଭାରତର ଚ୍ଛଙ୍ଗ ଚେନ ମୋ ନଦୀ

ଉପତ୍ୟକାରେ ସେମାନେ ଗ୍ରୀଷ୍ମକାଳର ମଝାମଝି ବେଳକୁ ଦେଖାଯାନ୍ତି । ସେମାନେ ସକାଳେ ଚରନ୍ତି; ତା' ପରେ ପାହାଡର ଉଚ୍ଚ ଅଞ୍ଚଳକୁ ଯାଇ ବିଶ୍ରାମ ନିଅନ୍ତି । ସେମାନଙ୍କର ପ୍ରହରୀ ବିପଦ ଆପଦ ପାଇଁ ତଳ ଆଡ଼କୁ ସଜାଗ ଦୃଷ୍ଟି ରଖିଥାଏ । ଚିରୁମାନଙ୍କର ଦୃଷ୍ଟି ଓ ଶ୍ରବଣ ଶକ୍ତି ପ୍ରଖର । ଭୂମିରେ ଖାତ ଖୋଳି ସେମାନେ ବିଶ୍ରାମ ନିଅନ୍ତି ବୋଲି ପୂର୍ବେ କୁହାଯାଇ ଅଛି । ଉପରବେଳା ସେମାନେ ପୁଣି ଚରିବାକୁ ବାହାରନ୍ତି । ଶୀତକାଳରେ ସେମାନଙ୍କର ପ୍ରଜନନ ହୁଏ । ମେ-ଜୁନ ମାସରେ ସନ୍ତାନ ଜନ୍ମ ହୁଅନ୍ତି ।

ବିଭିନ୍ନ ଭଷାରେ ଚିରୁର ନାମ :—

ତିବ୍ବତୀୟ—ସୁସ (ଅଣ୍ଡିଗ), ଚୁସ୍ (ମାଈ), ଚିରୁ, ଚୁକୁ ।
ଇଂରାଜି—Chiru (ଚିରୁ), Tibetan antelope (ତିବ୍ବତୀୟ ଏଣ୍ଟିଲୋପ) ।
ବୈଜ୍ଞାନିକ ନାମ—Pantholops hodgsoni (Abel) ।



# ଚିଙ୍କାରା

ଚିଙ୍କାରା ଦେଖିବାକୁ ଗୋଟିଏ ସୁନ୍ଦର ଛୋଟ ପ୍ରାଣୀ । ପିଠି ପାଖର ବର୍ଣ୍ଣ ବାଦାମୀ । ପେଟ ପାଖ ଧଳା । ଦେହର ପାର୍ଶ୍ୱ ଓ ନିତମ୍ବର ଯେଉଁ ଅଂଶରେ ଉପର ପାଖର ବାଦାମୀ ବର୍ଣ୍ଣ ପେଟ ପାଖର ଧଳା ବର୍ଣ୍ଣ ସହିତ ମିଶିଥାଏ, ସେଠାରେ ଏହି ବାଦାମୀ ବର୍ଣ୍ଣ ଘନ । ମୁଖମଣ୍ଡଳର ଦୁଇ କଡ଼ରେ ଧଳା ରେଖାଥାଏ । ନାକ ଉପରକୁ ଏକ ଧୂସର ବର୍ଣ୍ଣର ଚିହ୍ନଥାଏ ।



( ଚିତ୍ର ନମ୍ବର 121 ଚିଙ୍କାରା )

ପୂର୍ଣ୍ଣ ବୃଦ୍ଧିପ୍ରାପ୍ତ ଅଣ୍ଡିରର କାନ୍ଧଠାରେ ଉଚ୍ଚତା 65 ସେଣ୍ଟିମିଟର (26ଇଞ୍ଚ), ଓଜନ ପ୍ରାୟ 23 କିଲୋଗ୍ରାମ ( 50 ପାଉଣ୍ଡ ) । ଅଣ୍ଡିରା ଚିଙ୍କାରର ଶିଙ୍ଗ ମାଈ ତୁଳନାରେ ବଡ । ସାମନାରୁ ଦେଖିଲେ ଶିଙ୍ଗ ସିଧା ବୋଲି

ମନେହୁଏ; ମାତ୍ର କଡରୁ ଦେଖିଲେ ଟିକିଏ S ଆକାର । ଶିଙ୍ଗ ଲମ୍ବରେ 25-30 ସେଣ୍ଟିମିଟାର ( 10-12 ଇଞ୍ଚ ) ଯାଏହୁଏ । ସେଥିରେ 15-25 ଟି ଯାଏ ମୁଦି୍ରକା ଥାଏ । ଭାରତର ଉତ୍ତର ପଶ୍ଚିମ ମରୁ ଅଞ୍ଚଳ ଓ ରାଜପୁତାନାରେ ଚିଙ୍କାରମାନଙ୍କର ମୁଣ୍ଡ ଓ ଶିଙ୍ଗ ସବୁଠାରୁ ଭଲ ବଢ଼େ । ସବୁଠାରୁ ବଡ ଶିଙ୍ଗ 40 ସେଣ୍ଟିମିଟାର (17 ଇଞ୍ଚ ) ଲମ୍ବହେବାର ଦେଖାଯାଇଛି । ମାଈ ଚିଙ୍କାରାର ଶିଙ୍ଗ ମସୃଣ ଓ ସାଧାରଣତଃ 10-13 ସେଣ୍ଟିମିଟାର ( 4-5 ଇଞ୍ଚ ) ଲମ୍ବହୁଏ । କେତେକ ମାଈଙ୍କର ଆଦୌ ଶିଙ୍ଗ ଉଠେନାହିଁ ।

ଭାରତର ଉତ୍ତର ପଶ୍ଚିମ ଓ ମଧ୍ୟାଞ୍ଚଳର ସମତଳ ଓ ନିମ୍ନପାର୍ବତ୍ୟ ଅଞ୍ଚଳଠାରୁ ଦାକ୍ଷିଣାତ୍ୟର ମୁକ୍ତ ଅଞ୍ଚଳଦେଇ କୃଷ୍ଣା ନଦୀର ଦକ୍ଷିଣ ପର୍ଯ୍ୟନ୍ତ ବିସ୍ତୃତ ଭୂଭାଗ ଚିଙ୍କାରର ବାସଭୂମି । ବିକ୍ଷିପ୍ତ ବୁଦା, ପତଳା ଜଙ୍ଗଲ, ନାଳ ଓ ସଙ୍କୀର୍ଣ୍ଣ ଗିରିପଥ ଥିବା ପତିତ ଭୂମିରେ ଚିଙ୍କାର ବିଚରଣ କରେ । ମରୁଭୂମିର ବାଲି ପାହାଡ ଓ ପଞ୍ଜାବର ଲବଣ ପର୍ବତମାଳା ( Salt Range ) ରେ ସେମାନେ ଦେଖାଯାନ୍ତି ଓ 1200 ମିଟାର ( 4000 ଫୁଟ ) ଉଚ୍ଚତା ଯାଏ ଉଠନ୍ତି । ସେମାନେ ଜନବସତିଠାରୁ ଦୂରରେ ରହନ୍ତି । ସେଥିପାଇଁ ବାଡ଼ି ବଗିଚା ଭିତରକୁ ସାଧାରଣତଃ ଆସନ୍ତି ନାହିଁ । ସକାଳୁ ସକାଳୁ ଚରାବୁଲା ସାରି ଚିଙ୍କାର ବିଶ୍ରାମ ନିଏ, ପୁଣି ଭଲକରି ଖରା ଛାଡ଼ିଗଲେ ଚରିବାକୁ ବାହାରେ । ଏମାନେ ଦଳବାନ୍ଧି ବାସ କରନ୍ତି । ଗୋଟିଏ ଗୋଟିଏ ଦଳରେ 10-20 ଯାଏ ପ୍ରାଣୀ ଥାନ୍ତି । ଭୀତ ହେଲେ ଅତି ଦ୍ରୁତ ବେଗରେ ଦୌଡ଼ନ୍ତି । 180-275 ମିଟାର (200-300 ଗଜ ) ୟପଟି ଗଲପରେ ଦୌଡ଼ା ବନ୍ଦ କରି ଦେଖନ୍ତି ଭୟର କାରଣ କ'ଣ । ଏମାନଙ୍କର ଦୃଷ୍ଟି, ଘ୍ରାଣ ଓ ଶ୍ରବଣ ଶକ୍ତି ପ୍ରଖର । ବିଭିନ୍ନ ପ୍ରକାର ଘାସ ପତ୍ର, ଧନ୍ୟାଦି ଶସ୍ୟ ଏବଂ ଲାଉ, ତରଭୁଜ ଆଦି ଫଳ ଚିଙ୍କାରଙ୍କର ପ୍ରଧାନ ଖାଦ୍ୟ ।

ଏମାନଙ୍କର ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ନାହିଁ । ଥରକେ ଗୋଟିଏ ବା ଦୁଇଟି ଶାବକ ଜନ୍ମହୁଏ । ଚିଙ୍କାରା ଓ କୃଷ୍ଣସାର ଔରସରେ ଶଙ୍କର ଜାତ ହୁଅନ୍ତି ।

ଚିଙ୍କାରର ବିଭିନ୍ନ ଭାଷାରେ ନାମ :- ହିନ୍ଦି-ଚିଙ୍କାର, କାଲ ପୁଞ୍ଛ, ତେଲୁଗୁ - ବୁରା, ଜିଙ୍କା; ଇଂରାଜି—Chinkara ( ଚିଙ୍କାର ), Indian

Gazelle ( ଭାରତୀୟ ଗେଜେଲ), ବୈଜ୍ଞାନିକ ନାମ Gazella gazella ( Pallas ) ।

ତିବ୍ବତରେ ଏକ ଜାତି ଚିଙ୍କରା ଦେଖାଯାନ୍ତି । ଏମାନେ ଉତ୍ତର-ପୂର୍ବ ଲଦାଖ ତିବ୍ବତୀୟ ମାଳଭୂମି ଓ ସେନ୍‌ସି ଅଞ୍ଚଳରେ ବାସ କରନ୍ତି । ଏମାନଙ୍କର ପିଠିର ବର୍ଣ୍ଣ ଗ୍ରୀଷ୍ମକାଳରେ ଶିଲଟର ରଙ୍ଗ ପରି ଧୂସର ଓ ଶୀତକାଳରେ ଫିକା ହଳଦିଆ ବାଦାମୀ । ଖରଦିନେ ଲୋମ ପାତଳ ଓ ଶୀତଦିନେ ଘନଳିଆ । ପିଚ୍ଛ ଅଞ୍ଚଳରେ ଧଳା ଚିହ୍ନଥାଏ । ଲାଞ୍ଜ ଚାରିପାଖରେ ଧଳାଚିହ୍ନ ସୁସ୍ପଷ୍ଟ । ଅର୍ଣ୍ଣିଗର ଶିଙ୍ଗ ଉପର ଆଡକୁ ସିଧାଉଠି ପଛଆଡକୁ ବଙ୍କାଇ ଥାଏ । ଇଂରାଜିରେ ଏହାକୁ "ତିବ୍ବତୀୟ ଗେଜେଲ" ( Tibetan gazelle ) କହନ୍ତି । ବୈଜ୍ଞାନିକ ନାମ Procapra picticaudata Hodgson ।



# କୃଷ୍ଣସାର

କୃଷ୍ଣସାର ବା ବାଲିହରିଣ ଏକ ଅତି ସୁନ୍ଦର ପ୍ରାଣୀ । ଏହାର ମୋଡ଼ି ମୋଡ଼ିକା ଶିଙ୍ଗ ମସ୍ତକ ଉପରକୁ ପିଠି ଆଡ଼କୁ କ୍ରମେ ବକ୍ର ହୋଇ ଉଠିବାରେ ତା'ର ସୌନ୍ଦର୍ଯ୍ୟ ବର୍ଦ୍ଧିତ ହୋଇଥାଏ । ଏହା ଭରତ ଭିନ୍ନ ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । ଛୁଆ ଓ ମାଈ କୃଷ୍ଣସାରର ବର୍ଣ୍ଣ ହଳଦିଆ ବାଦାମୀ । ତିନିବର୍ଷ ହେବାପରେ ଅଣ୍ଡିରର ବର୍ଣ୍ଣ କଳାସିଆ ହେବାକୁ ଆରମ୍ଭ କରେ । ସ୍ଥାନ ଭେଦରେ ଦେହର ବର୍ଣ୍ଣ କମ୍ ବା ବେଶୀ ଗାଢ ହୋଇଥାଏ । ଦକ୍ଷିଣ-ଭରତରେ ବୟଃପ୍ରାପ୍ତ ଅଣ୍ଡିର କୃଷ୍ଣସାରର ବର୍ଣ୍ଣ ସାଧାରଣତଃ ଘନ ବାଦାମୀ । ବୟଃପ୍ରାପ୍ତ ଅଣ୍ଡିରର ବର୍ଣ୍ଣ ଯେ କୌଣସି ସ୍ଥାନରେ ବାଦାମୀ ହୋଇପାରେ । ଗ୍ରୀଷ୍ମକାଳରେ ସାଧାରଣତଃ ସେମାନଙ୍କର ବର୍ଣ୍ଣଫିକା ଓ ବର୍ଷାଦିନେ ମଖମଲ ପରି ଅଳ୍ପ ତାଜା । ବର୍ଷିକିଆ କୃଷ୍ଣସାରର ଶିଙ୍ଗ ମୋଡ଼ିମୋଡ଼ିକା ନୁହେଁ । ଦୁଇ ବର୍ଷବେଳେ ଶିଙ୍ଗ ମୋଡ଼ି ହେବାକୁ ଆରମ୍ଭ କରି ତିନିବର୍ଷ ଶେଷ ହେବା ବେଳକୁ ପୂରାମୋଡ଼ି ହୋଇଯାଏ । ସାଧାରଣତଃ ମାଈ ବାଲି ହରିଣର ଶିଙ୍ଗ ନଥାଏ, କ୍ୱଚିତ୍ ଦେଖିବାକୁ ମିଳେ ।

ପୂର୍ଣ୍ଣ ବୟଃପ୍ରାପ୍ତ ଅଣ୍ଡିର କୃଷ୍ଣସାର କାନ୍ଧଠାରେ 80 ସେଣ୍ଟିମିଟାର (32 ଇଞ୍ଚ ) ଯାଏ ଉଚ୍ଚ ହୁଏ ଓଜନ ହାରାହାରି 40 କିଲୋଗ୍ରାମ ( 90 ପାଉଣ୍ଡ ) ଦକ୍ଷିଣ ଭରତରେ ବାଲିହରିଣଙ୍କର ଶିଙ୍ଗ ଲମ୍ବରେ 50 ସେଣ୍ଟିମିଟାର ( 20 ଇଞ୍ଚ ) ରୁ ଅଧିକ ହୁଏ ନାହିଁ, ଉତ୍ତର ଭରତରେ 65 ସେଣ୍ଟିମିଟାର ( 25 ଇଞ୍ଚ ) ଯାଏ ହୋଇଥାଏ ।

ସୁରତ ( ସୁରାଟ୍) ଠାରୁ ଦକ୍ଷିଣକୁ ବ୍ୟାପ୍ତ ସମୁଦ୍ର ଉପକୂଳ ବ୍ୟତୀତ ଭରତର ସମତଳ ଭୂମିରେ ସର୍ବତ୍ର କୃଷ୍ଣସାର ବାସ କରନ୍ତି । ସେମାନେ ପାହାଡ଼ିଆ ଓ ଜଙ୍ଗଲ ଅଞ୍ଚଳରେ ରହନ୍ତି ନାହିଁ । ଓଡ଼ିଶାରେ ସମ୍ବଲପୁର ଜିଲ୍ଲାରୁ ସେମାନେ ଆଜି ଅବଲୁପ୍ତ ପ୍ରାୟ । ବାଲେଶ୍ୱର, ପୁରୀ ଓ ଗଞ୍ଜାମ ଜିଲ୍ଲାର ସମୁଦ୍ରବେଳା ଭୂମିରେ ଅଳ୍ପ ସଂଖ୍ୟାରେ କେଉଁଠି କେଉଁଠି ଅଛନ୍ତି ବୋଲି

ମନେହୁଏ । ଗଞ୍ଜାମ ଜିଲ୍ଲାର ଆସ୍କାଠାରୁ ପ୍ରାୟ ଆଠ କିଲୋମିଟାର ଦୂରରେ ଭେଟନଇ ନାମକ କ୍ଷୁଦ୍ର ଗ୍ରାମ ନିକଟରେ ଦଳେ କୃଷ୍ଣସାର ବାସକରନ୍ତି । ଏହି କୃଷି ପ୍ରଧାନ ଗ୍ରାମବାସୀମାନଙ୍କ ତତ୍ପରତା ଯୋଗୁ ଏମାନେ ଆଜି ପର୍ଯ୍ୟନ୍ତ ଲୋପ ପାଇ ନାହାନ୍ତି । ଏଠାର ବାଲି ହରିଣ ଧାନ ବିଲରେ ରହନ୍ତି; ଫସଲ ବେଳେ ଆଖ ପାଖର ବୁଦିବୁଦିଆ ଜଙ୍ଗଲ ଭିତରକୁ ଗ୍ଭଲିଯାନ୍ତି । ଏମାନେ ଧାନ୍ୟାଦି ଫସଲ ଏବଂ ଲାଉ କଖାରୁ ଆଦି ଫସଲ ଅଳ୍ପ ପରିମାଣରେ ନଷ୍ଟ କରୁଥିଲେ ହେଁ ଗ୍ରାମବାସୀ ମାନେ ସେମାନଙ୍କୁ ମାରନ୍ତି ନାହିଁ କି ଆଉ କାହାରିକୁ ମାରିବାକୁ ଦିଅନ୍ତି ନାହିଁ । 1974 ସାଲରେ ଏହି କୃଷ୍ଣସାର ଦଳରେ ପ୍ରାଣୀ ସଂଖ୍ୟା ଥିଲା ପ୍ରାୟ 100 । ରାଜପୁତନା ଓ ଗୁଜରାଟର କେତେକ ପ୍ରାଣୀ ଉଦ୍ୟାନରେ କୃଷ୍ଣସାର ମାନଙ୍କୁ ସଂରକ୍ଷଣ କରାଯାଇଥିବାରୁ ସେମାନେ ସେ ସବୁ ଅଞ୍ଚଳରୁ ଲୋପପାଇ ନାହାନ୍ତି ।



କୃଷ୍ଣସାର ମାଈ



କୃଷ୍ଣସାର ଅଣ୍ଡିରା

( ଚିତ୍ର ନଂ 122 କୃଷ୍ଣସାର )

କୃଷ୍ଣସାର ଗୋଷ୍ଠୀବଦ୍ଧ ରହନ୍ତି । ଗୋଟିଏ ଗୋଟିଏ ଦଳରେ ସାଧାରଣତଃ 20-30 ପ୍ରାଣୀ ଥାନ୍ତି । ପୂର୍ବେ ରାଜପୁତାନା ଓ ପଞ୍ଜାବରେ

ଗୋଟିଏ ଗୋଟିଏ ଦଳରେ ଶହ ଶହ କୃଷ୍ଣସାର ଦେଖାଯାଉଥିଲେ । ସେହି ମନୋରମ ଦୃଶ୍ୟ ଏବେ ସ୍ୱପ୍ନ ହୋଇ ପଡ଼ିଛି । ଏହି ପ୍ରାଣୀମାନେ ସାଧାରଣତଃ ପଦା ଜାଗାରେ ଫସଲ ଜମିରେ ବା ଅଳ୍ପ ବୁଦାଗଛ ଥିବା ଅଞ୍ଚଳରେ ବାସ କରନ୍ତି । ଯେଉଁ ଜଙ୍ଗଲ ଅଞ୍ଚଳରେ ଉଚ୍ଚ ଘାସଥାଏ ତା' ଭିତରେ ଚରିବା ପାଇଁ ଓ ଶତ୍ରୁ ହାତରୁ ରକ୍ଷା ପାଇବାପାଇଁ ଲୁଚିବା ନିମନ୍ତେ କୃଷ୍ଣସାରମାନେ




( ଚିତ୍ର ନଂ 123 କୃଷ୍ଣସାର )

ଜଙ୍ଗଲରେ ପଶିବାର ଦେଖାଯାଏ । ସେମାନଙ୍କର ପ୍ରଧାନ ଖାଦ୍ୟ ଘାସ ଓ ଧାନ୍ୟାଦି ଶସ୍ୟ । ସେମାନେ ସାଧାରଣତଃ ସକାଳୁ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବାଯାଏ ଚରନ୍ତି ; ତା'ପରେ ଛାଇ ଜାଗାଦେଖି ବିଶ୍ରାମ ନିଅନ୍ତି, ପୁଣି ବେଳ ବୁଡ଼ ଆଡକୁ ଚରନ୍ତି । ସେମାନଙ୍କର ଶ୍ରବଣ ଶକ୍ତି ମଧ୍ୟମ ଧରଣର ଓ ଶୁଙ୍ଘିବା ଶକ୍ତି ମନ୍ଦ ନୁହେଁ । ମାତ୍ର ଶତ୍ରୁ ହସ୍ତରୁ ରକ୍ଷା ପାଇବା ପାଇଁ

ସେମାନଙ୍କର ସାହା ତୀକ୍ଷ୍ଣ ଦୃଷ୍ଟି ଓ ଦୌଡ଼ିବାରେ କ୍ଷିପ୍ରତା । ତରକିଲ ମାତ୍ରେ ସେମାନେ ଅଳ୍ପ ଅଳ୍ପ ଡ଼େଇଁବାକୁ ଆରମ୍ଭ କରି ତା'ପରେ କ୍ଷିପ୍ର ବେଗରେ ଦୌଡ଼ନ୍ତି । କୃଷ୍ଣସାର ଗୋଟିଏ ଅତି ଦ୍ରୁତଗାମୀ ପ୍ରାଣୀ । ଏହା ଘଣ୍ଟାକୁ ପ୍ରାୟ 65 କିଲୋମିଟାର ବେଗରେ ଦୌଡ଼ିପାରେ ଓ ବହୁପଥ ଦୌଡ଼ିପାରେ । ପ୍ରଥମେ ଲମ୍ଫଡ଼ିଆଁ, ତା'ପରେ ଲମ୍ଫ ଦେଇ ଦେଇ ତ୍ୱରାନ୍ୱିତ ଗତି । କୃଷ୍ଣସାର ପଲ ଦୌଡ଼ି ଗଲବେଳର ଦୃଶ୍ୟ ଅତି ମନୋହର । ସତେ ଯେପରି ପବନରେ ଅଧା ଉଡ଼ି ଉଡ଼ି ଯାଉଛନ୍ତି । କବି ଗଙ୍ଗାଧର ମେହେର 'ପ୍ରଣୟ ବଲ୍ଲରୀ' ରେ ରଜା ଦୁଷ୍ମନ୍ତଙ୍କ ଶରଭୀତ କୃଷ୍ଣସାରର ଦୌଡ଼ିବାର ଚମତ୍କାର ବର୍ଣ୍ଣନା ଏହିପରି ଦେଇ ଅଛନ୍ତି –

" ସ୍ତବ୍ଧ - ସ୍ଖଳିତ ଲମ୍ଫେ କୃଷ୍ଣସାର
ଗଗନେ ଅଧିକ ଯାଇ
ଥରେ ଥରେ ମାତ୍ର ଦେଉଥାଏ ବନ-
ଭୂମିରେ ପାଦ ପକାଇ ।
ପୁଚ୍ଛ ଲପଟାଇ ସ୍ଫୀତ ସଙ୍କୁଚଇ
ଆଶୁଗ–ପତନ–ଭୟେ,
ଗ୍ରୀବା ଭଙ୍ଗି ଥରେ ଥରେ ରଥେ ଚାହିଁ
ପଳାଏ ପୁଣି ଅଥୟେ ।"

ଏହି ପଦ୍ୟାନୁବାଦ ହୋଇଛି ମହାକବି କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍' ନାଟକର ଅନୁରୂପ ବର୍ଣ୍ଣନାରୁ, ଯଥା :–

ଗ୍ରୀବାଭଙ୍ଗାଭିରାମଂ ମୁହୁରନୁପତତି ସ୍ୟନ୍ଦନେ ଦତ୍ତଦୃଷ୍ଟିଃ
ପଶ୍ଚାର୍ଦ୍ଧେନ ପ୍ରବିଷ୍ଟଃ ଶରପତନଭୟାଦ୍ଭୂୟସା ପୂର୍ବକାୟମ୍
ଦର୍ଭୈରର୍ଦ୍ଧାବଲୀଢ଼ୈଃ ଶ୍ରମବିବୃତମୁଖଭ୍ରଂଶିଭିଃ କୀର୍ଣ୍ଣବର୍ତ୍ମା
ପଶ୍ୟୋଦଗ୍ରପ୍ଲୁତତ୍ୱାଦ୍ ବିୟତି ବହୁତରଂ ସ୍ତୋକମୁର୍ବ୍ୟାଂ ପ୍ରୟାତି ।

ଏମାନଙ୍କ ସମ୍ବନ୍ଧରେ ଏକ ଆଶ୍ଚର୍ଯ୍ୟର କଥା ଏହି ଯେ ଗୋଟିଏ ବୁଢ଼ୀ ମାଈ କୃଷ୍ଣସାର ଦଳପତିର କାମ କରେ । ବିପଦ ଆପଦକୁ ଜଗିବା ପାଇଁ

ତା'ର ତୀକ୍ଷ୍ଣ ଦୃଷ୍ଟି ସବୁବେଳେ ଜାଗ୍ରତ ଥାଏ । ତା'ର ପ୍ରତିକ୍ରିୟା ଅନୁସାରେ ଦଳର ଅନ୍ୟମାନେ ସତର୍କ ହୁଅନ୍ତି ।

ବର୍ଷର ସବୁ ସମୟରେ କୃଷ୍ଣସରମାନେ ସନ୍ତାନ ପ୍ରସବ କରନ୍ତି । ସେମାନଙ୍କର ପ୍ରଧାନ ଯୌନ ମିଳନ କାଳ ଫେବୃୟାରୀ–ମାର୍ଚ୍ଚ । ଏ ସମୟରେ ମାଈ ଉପରେ ଆଧିପତ୍ୟ ଲାଗି ଅଣ୍ଡିରାମାନଙ୍କ ମଧ୍ୟରେ ଘମାଘୋଟ ଲଢେଇ ହୁଏ । ପ୍ରଜନନ ସମୟରେ ଅଣ୍ଡିରର ଆଚରଣ ସ୍ୱତନ୍ତ୍ର । ସେତେବେଳେ ସେ ମୁଣ୍ଡକୁ ସଗର୍ବରେ ଟେକି ପାଟିକି ପାକୁଳି କଲାପରି କରି 'ଯୁଦ୍ଧଂଦେହି' ଆହ୍ୱାନ ଶବ୍ଦ କରେ । ଏତେବେଳେ ଶିଙ୍ଗ ପିଠି ଉପରେ ପ୍ରାୟ ପାରି ହୋଇଯାଏ ଓ ଆନନ୍ଦ ଗ୍ରନ୍ଥିର ବହିର୍ଦ୍ୱାର ଫାଉଁ ହୋଇଯାଏ । ପ୍ରଜନନ ଋତୁରେ ବେଳେ ବେଳେ ଗୋଟିଏ ଶିଙ୍ଘାଳ ତା'ର ସବୁଠାରୁ ପସନ୍ଦର ମାଈଟିକୁ ସାଥିରେ ଧରି ଦଳ ଛାଡ଼ି ଅନ୍ୟତ୍ର ଚାଲିଯାଏ । ଥରକେ ଗୋଟିଏ ବା ଦୁଇଟି ଶାବକ ଜନ୍ମ ହୁଅନ୍ତି । ବିପଦ ଆପଦରୁ ରକ୍ଷା କରିବା ପାଇଁ ମା' କୃଷ୍ଣସାର ତା'ର ଶାବକ ମାନଙ୍କୁ ପ୍ରଥମାବସ୍ଥାରେ ଘାସ ଭିତରେ ଲୁଚାଇ ରଖେ । ଖୁବ୍ ଶୀଘ୍ର ବା ପରେ ପରେ ଶାବକମାନଙ୍କର ବଳ ବୃଦ୍ଧି ପାଇଁ ପୁଣି ଦଳରେ ଆସି ଯୋଗଦିଅନ୍ତି ।

ବିଭିନ୍ନ ଭାଷାରେ କୃଷ୍ଣସାରର ନାମ :– ହିନ୍ଦି–କାଲା ହିରନ୍, ହରନା (ଅଣ୍ଡିରା), ହରନୀ (ମାଈ), କାଲଉଇଟ୍ (ମାଈ), ମୃଗ, ମାଗଠୀ–ହରଣ, କାଲଭଇଟ୍ (ଅଣ୍ଡିରା); ତାମିଲ–ମୁ(ଉ) ଲୁକୁ (ଉ) ମାରନ୍; କାନାଡ଼ି–ହୁ(ଉ)ଲ କେର୍ ରା: ତେଲୁଗୁ–ଜିଙ୍କା; ସଂସ୍କୃତ–ଏନା (ଅଣ୍ଡିରା) ହରିଣ (ମାଈ), ମୃଗ; ଓଡ଼ିଆ– ବାଲି ହରିଣ, କୃଷ୍ଣସାର, କୃଷ୍ଣାଜିନ; ବଙ୍ଗଳା– କୃଷ୍ଣସାର; ଇଂରଜୀ– Black buck, Indian antelope (ଭାରତୀୟ ଏଣ୍ଟିଲୋପ); ବୈଜ୍ଞାନିକ ନାମ– Antilope cervicapra (Linnaeus) ।



# ଚାରିଶିଂଗା

ଚାରିଶିଙ୍ଗାର ଶିଙ୍ଗ ଚାରିଟି । ପଛ ଶିଙ୍ଗ ଦୁଇଟି ଆଗ ଶିଙ୍ଗ ଅପେକ୍ଷା ଲମ୍ବା । ଆଗ ଶିଙ୍ଗ ଲମ୍ବାରେ 1-2.5 ସେଣ୍ଟିମିଟାର ($\frac{1}{2}$ ରୁ 1 ଇଞ୍ଚ) ଓ ପଛ ଶିଙ୍ଗ 8 ରୁ 10 ସେଣ୍ଟିମିଟାର (3-4 ଇଞ୍ଚ) ହୋଇଥାଏ । ମାଈ ଚାରିଶିଙ୍ଗାର ଆଦୌ ଶିଙ୍ଗ ନଥାଏ । ବେଳେ ବେଳେ ଚାରିଶିଙ୍ଗାର ଆଗ ଶିଙ୍ଗ ଦୁଇଟି



( ଚିତ୍ର ନମ୍ବର 124, ଚାରିଶିଙ୍ଗା )

ନ ବଢ଼ି କେବଳ ସେ ସ୍ଥାନରେ ଦୁଇଟି ଚକି ପରି ହୋଇଥାଏ । ଅଣ୍ଡ ର ଉଚ୍ଚରେ କାନ୍ଧଠାରେ 65 ସେଣ୍ଟ ମିଟାର (25 ଇଞ୍ଚ) ହୁଅନ୍ତି । ଚାରିଶିଙ୍ଗାର ପିଠିପଟର ବର୍ଣ୍ଣ ମଟିଆ ଲାଲ-ବାଦାମୀ, ପେଟ ପଟର ବର୍ଣ୍ଣ ଧଳା ।

ବୁଢ଼ା ଅଣ୍ଡିରଙ୍କ ରଙ୍ଗ ହଳଦିଆ । ପ୍ରତି ଗୋଡର ସାମନାରେ ଉପରୁ ତଳକୁ ଏକ କଳାଗାର ପଡିଥାଏ । ଆଗ ଦୁଇ ଗୋଡରେ ଏହା ଓସାରିଆ ଓ ଅଧିକ ସ୍ପଷ୍ଟ ।




( ଚିତ୍ର ନଂ 125 ଘୁରିଶିଙ୍ଗାର ବିସ୍ତୃତି

ଘୁରି ଶିଙ୍ଗାର ପଛଗୋଡ଼ର ଖୁର ମଧ୍ୟରେ ଏକ ଉତ୍ତମ ବର୍ଦ୍ଧିତ ଗ୍ରନ୍ଥି ଅବସ୍ଥିତ । ଏହା ଉଭୟ ମାଈ ଓ ଅଣ୍ଡିରଙ୍କର ଥାଏ । ଅନ୍ୟ କୌଣସି ଏଣ୍ଟିଲୋପର ଏ ଭଳି ଗ୍ରନ୍ଥି ନଥାଏ । ଏଣ୍ଟିଲୋପମାନଙ୍କ ମଧ୍ୟରେ କେବଳ ଘୁରିଶିଙ୍ଗା ଓ ନୀଳଗାଈଙ୍କର ଶିଙ୍ଗରେ ମୁଦ୍ରିକା ନ ଥାଏ । ମାତ୍ର ପ୍ରକୃତ ଏଣ୍ଟିଲୋପଙ୍କର ଲକ୍ଷଣ ହେଲା ଶିଙ୍ଗରେ ମୁଦ୍ରିକା ଥିବ । ଏହି ବିଶେଷ ଲକ୍ଷଣ ଓ ଆଉ କେତେକ ଲକ୍ଷଣ ଯୋଗୁ ଘୁରିଶିଙ୍ଗା ଓ ନୀଳ ଗାଈକୁ ଏକ ସ୍ବତନ୍ତ୍ର ଉପଶ୍ରେଣୀ ଭୁକ୍ତ ( Boselaphinae ) କରାଯାଏ ।

ଭାରତରେ ଉପଦ୍ୱୀପ ଅଞ୍ଚଳରେ ପ୍ରାୟ ସର୍ବତ୍ର ଚୁରିଶିଙ୍ଗା ଦେଖାଯାନ୍ତି । ପାହାଡ଼ିଆ ଓ ଘଞ୍ଚ ଜଙ୍ଗଲ ଅଞ୍ଚଳ ଏମାନଙ୍କର ବାସ । ମାଲବାରର ଉପକୂଳ ଅଞ୍ଚଳରେ ଚୁରିଶିଙ୍ଗା ଦେଖାଯାନ୍ତି ନାହିଁ । ଏକ କାଳରେ ଏମାନେ ଓଡ଼ିଶାର ପ୍ରାୟ ସର୍ବତ୍ର ବହୁ ସଂଖ୍ୟାରେ ଦେଖାଯାଉଥିଲେ; ମାତ୍ର ଏବେ କେବଳ କଟକ, ପୁରୀ, ସମ୍ବଲପୁର ଓ ଫୁଲବାଣୀ ଜିଲ୍ଲାରେ ଅଳ୍ପ ସଂଖ୍ୟାରେ ଦେଖାଯାନ୍ତି ।

ଚୁରିଶିଙ୍ଗା ଉଚ୍ଚନୀଚ ହୋଇଥିବା ପାହାଡ଼ିଆ ଅଞ୍ଚଳରେ ବାସକରେ ଏବଂ ଉଚ୍ଚଘାସ ଓ ଖୋଲାଜଙ୍ଗଲ ଦେଖି ବିଶ୍ରାମ ନିଏ । ଅର୍ଣ୍ଣିରମାନେ ଶୁଙ୍କୁରି ମାରିବା ପରି କ୍ଷୀଣ ଶବ୍ଦ କରନ୍ତି । ଗ୍ରୀଷ୍ମକାଳରେ ଏହି ଧ୍ୱନି ପୁନଃ ପୁନଃ ଶୁଣିବାକୁ ମିଳିଥାଏ । ଭୟଭୀତ ହେଲେ ଏହା ନିମ୍ନ ସ୍ୱରରେ କ୍ରୁଟ୍‌ସ ପରି ଶବ୍ଦ କରେ ।

ଏମାନେ ନିୟମିତ ଭାବେ ପାଣି ପିଅନ୍ତି । ସେଥିପାଇଁ ଚୁରିଶିଙ୍ଗା ସାଧାରଣତଃ ପାଣି ପାଖରେ ରହନ୍ତି । ଗ୍ରାମର ପୋଖରୀ କଡ଼କୁ ଲାଗି ଜଙ୍ଗଲ ଥିଲେ ତାହା ଚୁରିଶିଙ୍ଗାର ପ୍ରିୟ ବାସସ୍ଥାନ । ଅନ୍ୟ ଏଣ୍ଟିଲୋପ ମାନଙ୍କପରି ଏମାନେ ବଡ଼ ଗୋଠ ବାନ୍ଧନ୍ତି ନାହିଁ । ସାଧାରଣତଃ ଏମାନେ ଏକାକୀ ବା ଯୋଡ଼ି ଯୋଡି ହୋଇ ବୁଲନ୍ତି । ବର୍ଷାକାଳ ପୂର୍ବରୁ ମାଈ ସହିତ ଗୋଟିଏ ବା ଦୁଇଟି ଛୁଆ ବୁଲୁଥିବାର ଦେଖାଯାଏ । ବେଳେବେଳେ ଗୋଟିଏ ଅର୍ଣ୍ଣିର ସହିତ ଚାରି ପାଞ୍ଚଟି ମାଈ ମଧ୍ୟ ଦେଖାଯାନ୍ତି । ଜଙ୍ଗଲର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ଚୁରିଶିଙ୍ଗା ମଳତ୍ୟାଗ କରନ୍ତି ।

ବର୍ଷା ଋତୁରେ ଚୁରିଶିଙ୍ଗା ମାନଙ୍କର ଯୌନମିଳନ ହୁଏ । ଜାନୁୟାରୀ ଫେବୃୟାରୀ ମାସରେ ଶାବକ ଜାତ ହୁଅନ୍ତି । ଗର୍ଭଧାରଣ କାଳ ଆଠରୁ ସାଢ଼େ ଆଠମାସ । ପିଲା ଅବସ୍ଥାରୁ ପାଳିଲେ ଏମାନେ ଭଲ ପୋଷମାନନ୍ତି ।

ବିଭିନ୍ନ ଭାଷାରେ ଚୁରିଶିଙ୍ଗାର ନାମ-ହିନ୍ଦି-ଚୌଶିଙ୍ଗା, ଚୌକା, ଡୋଡା; ତାମିଲି - ନାଲିକୋମ୍ବୁମାର୍ନ; କାନାଡ଼ି - କୁଉଣ୍ଡୁଭ କୁ୯ ଭ ୬ରୀ ପୋକି ; ଇଂରାଜି - Fourhorned antelope, Chowsingha, ବୈଜ୍ଞାନିକ ନାମ Tetracerus quadricornis ( Blainville ) ।



# ନୀଳ ଗାଈ

ନୀଳଗାଇ ପ୍ରକୃତିର ଏକ ବିଚିତ୍ର ପ୍ରାଣୀ । ଏହା କେତେକ ପରିମାଣରେ ଘୋଡାପରି, ମାତ୍ର ଘୋଡା ନୁହେଁ; କେତେକ ପରିମାଣରେ





( ଚିତ୍ର ନଂ 126 ନୀଳ ଗାଈ )

ଗାଈ ପରି ମାତ୍ର ଗାଈ ନୁହେଁ । ପ୍ରକୃତ ପକ୍ଷେ ନୀଳ ଗାଈଠାରେ ଆକୃତି, ପ୍ରକୃତି ଓ ଆଚରଣରେ ଗାଈ, ହରିଣ, ଛାଗ, ଓଟ ଓ ଘୋଡ଼ାମାନଙ୍କର

କେତେକ ଲକ୍ଷଣ ଓ ଗୁଣର ସମାବେଶ ଦେଖିବାକୁ ମିଳେ । ଏହାର କାନ୍ଧର ମଝିଅଂଶ ଉଚ୍ଚ ଓ ପିଠି ଅଂଶ ନୀଚ । ବୟଃପ୍ରାପ୍ତ ଅର୍ଣ୍ଣିଗ ନୀଳଗାଈର ବର୍ଣ୍ଣ ଲୁହାର ରଙ୍ଗପରି ନୀଳ ଧୂସର । ସେଥିପାଇଁ ଏହାର ନାମ "ନୀଳଗାଈ" । ଅର୍ଣ୍ଣିଗର ଓଠ, ଚିବୁକ, କାନର ଭିତର ପାଖ ଓ ଲାଞ୍ଜର ତଳ ପାଖ ଧଳା । ଅପ୍ରାପ୍ତ ବୟସ୍କ ଅର୍ଣ୍ଣିଗ ଓ ମାଈ ମାନଙ୍କର ବର୍ଣ୍ଣ ପ୍ରାପ୍ତବୟସ୍କ ଅର୍ଣ୍ଣିଗଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେମାନଙ୍କର ବର୍ଣ୍ଣ ହଳଦିଆ ଆସିଆ ବାଦାମୀ । ଅର୍ଣ୍ଣିଗ ଓ ମାଈ ଉଭୟଙ୍କର ଗ୍ରୀବାଦେଶରେ କଳାରଙ୍ଗର କେଶର ଥାଏ । ତା'ସାଙ୍ଗକୁ ଅର୍ଣ୍ଣିଗମାନଙ୍କର ତଣ୍ଟି ଦେଶରୁ ଗୋଛାଏ ଶକ୍ତ କଳା ଲୋମ ତଳ ଆଡ଼କୁ ଓହଳିଥାଏ । ସେମାନଙ୍କର ଶିଙ୍ଗ କଠିନ ଗୋଜା ଓ ଆଗଆଡକୁ ସାମାନ୍ୟ ବଙ୍କା । ଶିଙ୍ଗର ମୂଳ ତ୍ରିକୋଣାକାର କିନ୍ତୁ ଅଗ୍ର ଗୋଲକାର । ମାଈଙ୍କର ଶିଙ୍ଗ ନ ଥାଏ । ନୀଳଗାଈ ଏସିଆର ବୃହତ୍ତମ ଏଣ୍ଟିଲୋପ । ଅର୍ଣ୍ଣିଗ କାନ୍ଧଠାରେ 130-140 ସେଣ୍ଟିମିଟର ( 52-56 ଇଞ୍ଚ ) ଉଚ୍ଚ ହୁଏ . ସମୟ ସମୟରେ 150 ସେଣ୍ଟିମିଟର (58 ଇଞ୍ଚ ) ପର୍ଯ୍ୟନ୍ତ ମଧ୍ୟ ହୋଇ ପାରେ । ଶିଙ୍ଗର ସାଧାରଣ ଲମ୍ବ 20 ସେଣ୍ଟିମିଟର ( 8 ଇଞ୍ଚ, ଦୀର୍ଘତମ ଶିଙ୍ଗର ଲମ୍ବ 29.8 ସେଣ୍ଟିମିଟର ( $11\frac{3}{4}$ ଇଞ୍ଚ ) ହେବାର ଦେଖାଯାଇଅଛି ।

ନୀଳଗାଈ କେବଳ ଭାରତର ଉପଦ୍ୱୀପ ଅଞ୍ଚଳରେ ବାସକରେ । ହିମାଳୟ ପର୍ବତମାଳାର ପାଦଦେଶଠାରୁ ଆରମ୍ଭ କରି ମହୀଶୂର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଏହାରଚର ଭୂଇଁ । ପୂର୍ବବଙ୍ଗ ( ବାଙ୍ଗଲା ଦେଶ ), ଆସାମ ଓ ମାଲବାରର ଉପକୂଳ ଅଞ୍ଚଳରେ ନୀଳଗାଈ ଦେଖାଯାଏ ନାହିଁ ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରେ ନୀଳ ଗାଈ ଅଛନ୍ତି ।

ଏମାନେ ଘନ ଜଙ୍ଗଲରେ ବାସକରନ୍ତି ନାହିଁ । ଅଳ୍ପ ଜଙ୍ଗଲିଆ ପାହାଡ, ଘାସ ଓ ବୁଦାଥିବା ଉଚ୍ଚନୀଚ ସମତଳ ଭୂମି ଓ ଗଛପତ୍ର ଥିବା ସମତଳ ଭୂମି ନୀଳଗାଈର ଚରଭୂଇଁ । ସେମାନେ ଶସ୍ୟ କ୍ଷେତ୍ରରେ ମଧ୍ୟ ପଶିଯାଇ ବିସ୍ତର କ୍ଷତି ଘଟାନ୍ତି । ସେମାନଙ୍କୁ ଖରା ବିଶେଷ ବାଧେ ନାହିଁ । ଖରା ବେଶୀ ହେବାଯାଏ ଚରନ୍ତି; ଖୁବ୍ ଖରବେଳେ ଛାଇରେ ବିଶ୍ରାମ ନିଅନ୍ତି; ପୁଣି ଖରା ଥାଉ ଥାଉ ଉପର ବେଳା ଚରନ୍ତି । ଘାସ, ପତ୍ର ଓ ବିଭିନ୍ନ ଜାତି କୋଳି ସେମାନଙ୍କର ପ୍ରଧାନ ଖାଦ୍ୟ । ମହୁଲଫୁଲ ଖାଇବା ପାଇଁ

ନୀଳଗାଈ ମହୁଲ ଗଛ ତଳକୁ ଆସନ୍ତି । ଏମାନଙ୍କୁ ବେଶୀ ଶୋଷ କରେ ନାହିଁ । ଏପରିକି ଖରଦିନେ ମଧ୍ୟ ଏମାନେ ନିୟମିତ ରୂପେ ଜଳପାନ କରନ୍ତି ନାହିଁ । ଭୀତତ୍ରସ୍ତ ହେଲେ ଏମାନେ ଏକ ପ୍ରକାର ଗୁରଳି ଶବ୍ଦ କରି ମୁଣ୍ଡ ଉପରକୁ ଟେକି ଘୋଡ଼ାପରି ଦୌଡ଼ନ୍ତି । ସତେ ଯେପରି ଆକାଶର ତାର ଆଡକୁ ଅନାଇଥାନ୍ତି । ଏମାନଙ୍କର ଦୃଷ୍ଟି ଓ ଆଘ୍ରାଣ ଶକ୍ତି ପ୍ରଖର ।



( ଚିତ୍ର ସଂ 127 ନୀଳ ଗାଈର ବିସ୍ତୃତି )

ଶ୍ରବଣ ଶକ୍ତି ମଧ୍ୟମ ଧରଣର । ଶତ୍ରୁଠାରୁ ପ୍ରାଣରକ୍ଷା କରିବା ପାଇଁ ସେମାନଙ୍କର ପ୍ରଧାନ ସହାୟ ଦ୍ରୁତଗତି । ଗୋଟିଏ ଅର୍ଦ୍ଧଗ ନୀଳଗାଈ

ବୁଦାଝାଟିଥିବା ସମତଳ ବା ଜଙ୍ଗଲ ଦେଇ ଯେତେବେଳେ ଦୌଡ଼ିପାରେ ତା’ ସହିତ ଭଲ ଘୋଡ଼ାଟିଏ ଦୌଡ଼ି ପାରିବା କଷ୍ଟ ।

ନୀଳଗାଈ ମାନଙ୍କର ମଳତ୍ୟାଗ କରିବା ରୀତି ବଡ ବିଚିତ୍ର । ସେମାନେ ପ୍ରତିଦିନ ଗୋଟିଏ ସ୍ଥାନରେ ଆସି ମଳତ୍ୟାଗ କରନ୍ତି । ସେଥିପାଇଁ ଜଙ୍ଗଲର ଗୋଟିଏ ଗୋଟିଏ ସ୍ଥାନରେ ଗଦା ଗଦା ଗୋବର ଦେଖିବାକୁ ମିଳେ । ଏପରି ଅଭ୍ୟାସରେ ସୁବିଧା ଏହି ଯେ ଯଦି ଗୋଟିଏ ଦଳର କୌଣସି ଜୀବ କୌଣସି କାରଣରୁ ଗୋଠରୁ ବିଚ୍ଛିନ୍ନ ହୋଇ ଯାଇଥାଏ, ତେବେ ମଳତ୍ୟାଗ ସ୍ଥାନରେ ଦଳ ସହିତ ପୁଣି ଆସି ମିଳିତ ହେବାରେ ସୁବିଧା ହୁଏ । ଅନ୍ୟ ଏଣ୍ଟିଲୋପମାନଙ୍କର ମଳତ୍ୟାଗ ରୀତି ମଧ୍ୟ ଏହିପରି ।

ନୀଳ ଗାଈ ଦଳ ବାନ୍ଧି ରହନ୍ତି । ଗୋଟିଏ ଦଳରେ ଚାରିଟିରୁ ଦଶଟିଯାଏ ପ୍ରାଣୀ ଥାନ୍ତି । ବେଳେବେଳେ ଗୋଟିଏ ଗୋଟିଏ ଗୋଠରେ କୋଡ଼ିଏଟିଯାଏ ନୀଳଗାଈ ଥାନ୍ତି । ମାଈ, ଛୁଆ ଓ ଗଣ୍ଡା ଅର୍ଣ୍ଣିଗ ଦଳରେ ଥାନ୍ତି । ବୋଭିଡ଼ି ବଂଶର ଅନ୍ୟ ପ୍ରାଣୀମାନଙ୍କ ପରି ବୁଢା ଅର୍ଣ୍ଣିଗ ଏକାକୀ ବା ସେମାନଙ୍କ ଭିତରୁ କେତୋଟି ଦଳବାନ୍ଧି ଅଲଗା ରହନ୍ତି । ବର୍ଷର ସବୁ ସମୟରେ ନୀଳଗାଈ ଶାବକ ଜନ୍ମକରନ୍ତି । ମାଈ ନୀଳଗାଈ ଫଳ ଯିବାର ଆଠ-ନଅ ମାସ ପରେ ଛୁଆ ଜନ୍ମ କରେ । ଭାରତର ଅନେକ ଅଞ୍ଚଳରେ ନୀଳଗାଈକୁ ଗାଈର ଜାତି ବୋଲି ଶିକାର କରନ୍ତି ନାହିଁ । ପୋଷ ମନାଇଲେ ଏମାନେ ଭଲ ପୋଷା ମାନନ୍ତି । ପୂର୍ବେ କେତେକ ଅଞ୍ଚଳରେ ଲୋକେ ନୀଳଗାଈଙ୍କୁ ଛୋଟ ଶଗଡରେ ଯୋଚି ବ୍ୟବହାର କରୁଥିଲେ ।

ବିଭିନ୍ନ ଭାଷାରେ ନୀଳଗାଈର ନାମ — ହିନ୍ଦି - ନୀଲ୍, ନୀଲଗାଈ, ରୋଜ୍ (ହ), ରୋଜ୍, ରୋଜର, ମାରଠୀ - ରୋହୁ, ନୀଳଗାଈ; ନୀଳ (ଅର୍ଣ୍ଣିଗ) ଇଂରାଜି - Nilgai, nylghaie, blue bull । ବୈଜ୍ଞାନିକ ନାମ — Boselaphus tragocamelus ( Pallas ) ।

✿

# ଏକବିଂଶ ଅଧ୍ୟାୟ

## ମୃଗ ବଂଶ

ମୃଗ ବଂଶ ବହୁ ସମଗୋଷ୍ଠୀୟ ପ୍ରାଣୀମାନଙ୍କର ଏକ ଅପୂର୍ବ ସମାହାର । ସାଧାରଣ ଆକୃତି ରୋମନ୍ଥକ · ପ୍ରାଣୀ ଛାଞ୍ଚରେ ଗଢ଼ାହେଲେ ମଧ୍ୟ, କେତେକ ସ୍ୱତନ୍ତ୍ର ଲକ୍ଷଣ ଥିବାରୁ ମୃଗମାନଙ୍କୁ ସାର୍ଭିଡ଼ି ( Cervidae ) ବଂଶଭୁକ୍ତ କରାଯାଏ । ଅଣ୍ଡିରା ହରିଣର ଶିଙ୍ଗ ଉଠେ, ମାଈମାନେ ଶିଙ୍ଗହୀନ । କେବଳ ମେରୁ ଅଞ୍ଚଳର ବଲ୍ଗାହରିଣ ( Reindeer, Rangifer tarandus ) ଓ ଆମେରିକାର କାରିବାଉ ( Caribou, Rangifer ( arcticus ) ହରିଣଙ୍କର ମାଈ ଅଣ୍ଡିରା ଉଭୟଙ୍କର ଶିଙ୍ଗଥାଏ । ଶିଙ୍ଗ ବେଶ ବଡ଼ ହୁଏ । ଅଣ୍ଡିରାଙ୍କର ଶିଙ୍ଗ ତୁଳନାରେ ମାଈର ଶିଙ୍ଗ ସାନ । ହରିଣର ଶିଙ୍ଗ ଗାଈ ଶିଙ୍ଗପରି ଶିଙ୍ଗ ନୁହେଁ; ତାହା ହାଡ଼ । ଏହା ପ୍ରତିବର୍ଷ ଝଡ଼ି ପଡ଼େ ଓ ପ୍ରତିଥର ନୂଆ କରି ଉଠେ । ଗାଈ ମଇଁଷି, ମେଣ୍ଢା ଛେଳି ଓ ଏଣ୍ଟିଲୋପ ମାନଙ୍କର ଶିଙ୍ଗର ହାଡ଼ମୂଳ ଅଂଶ ଅସ୍ଥି; ବାକୀ ଅଂଶ ଚମ୍ପା । ଏହା ସ୍ଥାୟୀ,ପ୍ରତିବର୍ଷ ଖସି ପଡେ ନାହିଁ । ସାଧାରଣ ଭାବେ ମୃଗମାନଙ୍କୁ ନିଦାଶିଙ୍ଗ ବିଶିଷ୍ଟ ରୋମନ୍ଥକ ପ୍ରାଣୀ ବୋଲଯାଇ ପାରେ । ମୃଗ-ଶିଙ୍ଗ ସାଧାରଣତଃ ଶାଖା ପ୍ରଶାଖା ମେଲିଥାଏ । ମୃଗ ପାଦରେ ଚାରିଟି ଅଙ୍ଗୁଳି । ତନ୍ମଧ୍ୟରୁ ତୃତୀୟ ଓ ଚତୁର୍ଥ ଅଙ୍ଗୁଳି ଉତ୍ତମ ବର୍ଦ୍ଧିତ । ଦ୍ୱିତୀୟ ଓ ପଞ୍ଚମ ଅଙ୍ଗୁଳି କ୍ଷୁଦ୍ର ଏବଂ ଭୂମି ସ୍ପର୍ଶ କରେ ନାହିଁ । ମୃଗମାନଙ୍କର ଦନ୍ତ ଅନେକ ପରିମାଣରେ ଗାଈ ଦାନ୍ତ ପରି । ଗାଈଙ୍କର ଉପର ଓ ତଳପାଟିରେ 32ଟି ଦାନ୍ତ ଥିବା ସ୍ଥଳେ ଅଣ୍ଡିରା ମୃଗଙ୍କର ଦାନ୍ତ 34 ଟି । କାରଣ, ଏମାନଙ୍କ ଉପର ପାଟିର ପ୍ରତି ଅର୍ଦ୍ଧରେ ଗୋଟିଏ କରି ଶ୍ୱାଦନ୍ତ ( Canine ) ଅଧିକ ଥାଏ ଓ ଏହା ଉତ୍ତମ ବର୍ଦ୍ଧିତ । ମୃଗମାନଙ୍କର ପ୍ରଥମ ଚର୍ବଣ ଦନ୍ତ ( premolar ) ଗୋଲାକାର ଓ କ୍ଷୁଦ୍ର । ଏମାନଙ୍କର ବଳିଷ୍ଠ ଶରୀର ସୌଷ୍ଠବ ପୂର୍ଣ୍ଣ ଏବଂ ଗୋଡର

ଗଠନ ଓ ଗ୍ଭଲିରେ ଲକ୍ଷ୍ୟ ପରିଲକ୍ଷିତ ହୁଏ । ଥୋମଣି କେଶହୀନ । କାନ




( ଚିତ୍ର ନଂ 128 ମୃଗ ବଂଶ ( ସଂଖ୍ୟା କାନ୍ଧଠାରେ ସେଣ୍ଟିମିଟାରରେ ଉଚ୍ଚତା ସୂଚାଏ ) ।

ସାଧାରଣତଃ ବଡ । ଆଖି ତଳକୁ ଆନନ ଗ୍ରନ୍ଥି ( Face gland ) ଅବସ୍ଥିତ । ଏହାକୁ କେହି କେହି ଲୋତକ ଗ୍ରନ୍ଥି" ( Tear gland ) ବୋଲି କହିଲେ ମଧ୍ୟ ପ୍ରକୃତ ଲୋତକ ଗ୍ରନ୍ଥି ( Lachrymal gland ) ସହିତ ଏହାର କୌଣସି ସମ୍ପର୍କ ନାହିଁ । ଏମାନଙ୍କ ଦେହରେ ବାହାର ଆଡକୁ କିଛି ରୁକ୍ଷ ଲୋମ ଥିଲେ ମଧ୍ୟ ତା' ତଳକୁ କୋମଳ ଲୋମ ରହିଥାଏ ; ଋତୁଭେଦରେ ଲୋମର ବର୍ଣ୍ଣ ବଦଳିଥାଏ । ଅଣ୍ଡିରା ମୃଗ ମାନଙ୍କର ବେକତଳକୁ କେଶର ପରି ଲମ୍ବା ଲୋମ ଥାଏ । ଶାବକ ମାନଙ୍କର ଦେହରେ ସାଧାରଣତଃ ଧଳା ଚିହ୍ନ ପଡିଥାଏ । ଲାଞ୍ଜ ସାଧାରଣତଃ କ୍ଷୁଦ୍ର । ଉତ୍ତେଜିତ ହେଲେ ତାହା ଉତ୍ତୋଳିତ ହୁଏ । ମୃଗମାନଙ୍କର ଆକାର ଓ ଉଚ୍ଚତାରେ ବିଶେଷ ପ୍ରଭେଦ ଦେଖିବାକୁ ମିଳେ । ଦକ୍ଷିଣ ଆମେରିକାର ପୁଡୁ ( Pudu )ର କାନ୍ଧଠାରେ ଉଚ୍ଚତା ହୁଏ 30 ସେଣ୍ଟିମିଟାର ( 13 ଇଞ୍ଚ ) ଏବଂ ୟୁରୋପୀୟ ଏଲକ୍ ( European Elk, Alces alces ) ଉଚ୍ଚରେ 236 ସେଣ୍ଟିମିଟାର ( 7 ଫୁଟ 9 ଇଞ୍ଚ ) ଓ ଓଜନ 816 କିଲୋଗ୍ରାମ ( 1୫00 ପାଉଣ୍ଡ ) ଯାଏ ହୋଇପାରେ । ଆମ ଭାରତର ଖୁରଣ୍ଟ ( Mouse-deer ) ଉଚ୍ଚରେ 25-30 ସେଣ୍ଟିମିଟାର ( 10-13 ଇଞ୍ଚ ) ହୋଇଥାଏ ; ମାତ୍ର ଖୁରଣ୍ଟ ଏକ ପ୍ରକୃତ ମୃଗ ନୁହେଁ । ଏହା ପରେ ଆଲୋଚିତ ହୋଇଅଛି । ବୋଭିଡ଼ି ବଂଶର ( ଗୋ-ଛାଗଳାଦି ପ୍ରାଣୀମାନଙ୍କର ପିତ୍ତାଶୟ ଥାଏ । ମାତ୍ର କେବଳ କସ୍ତୁରୀ ମୃଗ ( musk deer ) କୁ ଛାଡ଼ି ଦେଲେ ଅନ୍ୟ କୌଣସି ମୃଗର ପିତ୍ତାଶୟ ( gall bladder ) ନାହିଁ ।

## ହରିଣର ଶିଂଗ

ହରିଣର ଶିଙ୍ଗ ପ୍ରକୃତିର ଏକ ବୈଚିତ୍ର୍ୟ । ଅଣ୍ଡିରା ମାନଙ୍କର ଏହା ମୁକୁଟ ଓ କେବଳ ଯେ ତା'ର ଶୋଭା ବର୍ଦ୍ଧନ କରେ ତା' ନୁହେଁ, ଲଢେଇ ବେଳେ ଅସ୍ତ୍ରରୂପେ ବ୍ୟବହୃତ ହୋଇଥାଏ । ହରିଣର ଶିଙ୍ଗରେ ଆଦୌ 'ଶିଙ୍ଗ' ନ ଥାଏ; ମୂଳରୁ ଚୂଳ ଯାଏ ତାହା ପୁରାପୁରି ହାଡ । ହାଡ଼ର ଏହି ମୁକୁଟକୁ ମୁଣ୍ଡରେ ବହନ କରି ଅଣ୍ଡିରା ମୃଗ ସଗର୍ବରେ ବିଚରଣ କରେ । ଆଉ ଶିଙ୍ଗର ଓଜନ ହରିଣ ଦେହର ସମସ୍ତ କଙ୍କାଳର ଓଜନ ଠାରୁ ମଧ୍ୟ ଅଧିକ

ହୋଇ ପାରେ । ମୃଗ ଶିଙ୍ଗର ଗଠନ ଓ ବୃଦ୍ଧି ଆହୁରି ବିଚିତ୍ର । ଇଲ ମାଛ ମାନଙ୍କର ଅଭିଗମନ ଓ ପିମ୍ପିଳିକା ମାନଙ୍କର ସମାଜ ସଂଗଠନ ପରି ଏହା ଜଟିଳ । ଜୀବ ବିଜ୍ଞାନବିତ୍ ମାନଙ୍କ ପକ୍ଷରେ ଏହା ଏକ ବିସ୍ମୟ ।

ହରିଣର ଶିଙ୍ଗ ପ୍ରଥମତଃ ସଂଯୋଜକ ଟିସ୍ୟୁ (Connective tissue) ରୁ ଗଠିତ ହୋଇଥାଏ । ଏହାର ବିଶେଷତ୍ୱ ଦୁଇଟି । ଏହା ସାଧାରଣତଃ ଶାଖିତ । ଏହା ପ୍ରତିବର୍ଷ ମୂଳରୁ ଭାଙ୍ଗି ଝଡ଼ି ପଡ଼େ ଓ ପୁଣି ନୂଆ କରି ଉଠେ । ବିଜ୍ଞାନୀକୁ କିଂ କର୍ତ୍ତବ୍ୟ ବିମୂଢ଼ କରିବା ବିଷୟଟି ଏହାହିଁ । ବିରାଟ ଶିଙ୍ଗ, ଯାହାର ଓଜନ ଦେହର କଙ୍କାଳର ଓଜନ ଠାରୁ ଅଧିକ ହୋଇପାରେ, ତାହା କିପରି କେତୋଟି ମାସ ଭିତରେ ଗଠିତ ହୁଏ ? ଅଳ୍ପ କାଳ ମଧ୍ୟରେ ଶିଙ୍ଗର ହାଡ଼ କେବଳ ଯେ ଗଢ଼ି ଉଠେ ତା' ନୁହେଁ, ଦ୍ରୁତ ଗତିରେ ବୃଦ୍ଧି ପାଉଥିବା 'ଶିଙ୍ଗର' ଉପରି ଭାଗ ପ୍ରଥମାବସ୍ଥାରେ ମଖମଲ (Velvet) ଦ୍ୱାରା ଆବୃତ୍ତ ରହିଥାଏ । ଶିଙ୍ଗ ବଢ଼ୁଥିଲା ବେଳେ ତା' ଉପରେ ସେହି ଅନୁପାତରେ ବଢ଼ୁଥିବା 'ମଖମଲ' ଜଡ଼ ବା ମୃତ ପଦାର୍ଥ ନୁହେଁ, ତାହା ଚର୍ମ । ଆଉ ସେହି ଚର୍ମରେ ରକ୍ତ-ବାହିନୀ (blood-vessels), ସ୍ନାୟୁ (nerves), ଗ୍ରନ୍ଥି (glands) , ଲୋମ-ପୁଟକ (hair-follicles) ଏବଂ ସୂକ୍ଷ୍ମ ନରମ ଲୋମ ରହିଥାଏ । 'ମଖମଲ'ର ପରିମାଣ ଯେ ସାମାନ୍ୟ ତାହା ନୁହେଁ; ଏଲକ (Elk) ମୃଗର ବିରାଟ ଶିଙ୍ଗ କରତଳା କାର ଓ ତେଣୁ ତା'ର ମଖମଲର କ୍ଷେତ୍ରଫଳ ପ୍ରଭୁତ . ଶିଙ୍ଗ ପୂର୍ଣ୍ଣ ଭାବେ ଗଠିତ ହୋଇଗଲା ପରେ, ହାଡ଼ ଉପରେ ରହିଥିବ ଚର୍ମ ବା 'ମଖମଲ' ଶୁଖିଯାଏ । ମୃଗ ତାକୁ ଗଛରେ ଘଷି ଛଡ଼ାଇ ଦିଏ । ଚର୍ମର ତଳ ବା ଭିତର ଅଂଶରୁ କ୍ଷରଣ ଫଳରେ ହରିଣ ଶିଙ୍ଗର ଅସ୍ଥି ବୃଦ୍ଧି ପ୍ରାପ୍ତ ହୋଇଯାଏ । ଫମ୍ପା ଶିଙ୍ଗ ପ୍ରାଣୀମାନଙ୍କର ଶିଙ୍ଗର ବୃଦ୍ଧି, ଚର୍ମର ବହିର୍ଭାଗରୁ କ୍ଷରଣ ହୋଇ ମଞ୍ଜ (core) ଉପରେ ଜମିବା ଫଳରେ ଘଟି ଥାଏ ।

"ଶିଙ୍ଗ" ଅଣ୍ଡଘ ହରିଣର ଲୈଙ୍ଗିକ ଲକ୍ଷଣ (Secondary sexual character) ଅଟେ । ଏହାର ବୃଦ୍ଧି ଜନନ–ଗ୍ରନ୍ଥି (genital gland)ରୁ କ୍ଷରିତ ହରମୋନ୍ (hormone) ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ପିଟୁଇଟାରୀ (pituitary) ବା ପୋଷପିଣ୍ଡର ଅଗ୍ରପାଳି (anterior lobe ରୁ କ୍ଷରିତ

ହରମୋନ ମଧ୍ୟ ହରିଣ ଶିଙ୍ଗର ବୃଦ୍ଧି ଉପରେ ପ୍ରଭାବ ପକାଇ ଥାଏ । ଗୋଟିଏ ଅଣ୍ଡିରା ଶାବକର ମୁଷ୍କ ଛେଦନ କଲେ, ତା ମୁଣ୍ଡରୁ ଆଉ ଶିଙ୍ଗ ଉଠେ ନାହିଁ । ବୁଢା ଅଣ୍ଡିରର ଶିଙ୍ଗ ବର୍ଷକୁ ବର୍ଷ ଛୋଟ ହୁଏ ଏବଂ ସେଥିରେ ଶାଖାର ସଂଖ୍ୟା କମି ଯାଏ । ସେ ଯଦି ବହୁ ବର୍ଷ ବଞ୍ଚେ ତେବେ ଶେଷକୁ ତା'ର ଶିଙ୍ଗ ଏକ ବର୍ଷିଆ ଅଣ୍ଡିରା ହରିଣର ଶିଙ୍ଗପରି ଏକ-ରେଖିକ ହୁଏ । ଅପର ପକ୍ଷରେ ଗୋଟିଏ ମାଈ ହରିଣ ବନ୍ଧ୍ୟା ହୋଇଗଲେ, ତା' ମୁଣ୍ଡରେ ସାନ ସାନ ଶିଙ୍ଗ ଉଠେ, ଗଲ କମ୍ବଳ ଦେଖା ଦିଏ ଓ ଅଣ୍ଡିରା ପରି ଶ୍ୱାଦନ୍ତ ଉଠେ ।

ପ୍ରଜନନ ଋତୁ ବେଳକୁ ଅଣ୍ଡିରାର ଶିଙ୍ଗ ଉତ୍ତମ ବର୍ଦ୍ଧିତ ହୋଇଥାଏ । ରମଣ ଋତୁରେ ମାଈ ଉପରେ ଆଧିପତ୍ୟ ଲାଗି ଅଣ୍ଡିରାଙ୍କ ଭିତରେ ଲଢେଇ ହୁଏ ଓ ଶିଙ୍ଗ ବ୍ୟବହୃତ ହୁଏ । ଏ ଋତୁ ଶେଷ ହୋଇ ଗଲା ପରେ ଶିଙ୍ଗ ଝଡି ପଡେ । ଅଣ୍ଡିରା ମାଈ ପରି ଦେଖାଯାଏ । କେତେ ସପ୍ତାହ ପରେ ନୂଆ ଶିଙ୍ଗ ଗଜୁରିବାକୁ ଆରମ୍ଭ କରେ ।

ଅଣ୍ଡିରା ହରିଣକୁ ଏକ ବର୍ଷ ହେଲାବେଳେ ତା' ମୁଣ୍ଡର ଉପରି ଭାଗରେ ଦୁଇଟି ଆବୁ ପରି ଅଂଶ ଦେଖାଦିଏ । ଏ ଗୁଡିକୁ ବୃନ୍ତ (pedicel, pedicle) କହନ୍ତି । ଏହା କରୋଟି (skull) ଅସ୍ଥିର ଅଂଶ ବିଶେଷ । ବୃନ୍ତ ଶିଙ୍ଗର ମୂଳ ଅଂଶ । ପରେ ଶିଙ୍ଗ ଖସି ପଡିଲାବେଳେ ଏହି ବୃନ୍ତଟି ରହି ଯାଏ । ସାଧାରଣତଃ ପ୍ରଥମ ବର୍ଷ ପରେ ଶିଙ୍ଗ ଉଠିବାକୁ ଆରମ୍ଭ କରେ । ଦ୍ୱିତୀୟ ବର୍ଷକୁ ଶିଙ୍ଗ କେବଳ ଏକ ଶାଖା ବିଶିଷ୍ଟ ହୋଇଥାଏ । ତୃତୀୟ ବର୍ଷକୁ ଏଥିରୁ ଗୋଟିଏ ଶାଖା ବାହାରେ । ତାକୁ 'ଭ୍ରୂ ଶାଖା' ('brow-tine') କହନ୍ତି । ଆଖି ସାମନାକୁ ଓ ଉପରକୁ ଉଠିଥାଏ ବୋଲି ଏହାର ଏପରି ନାମକରଣ ହୋଇଅଛି । ପରବର୍ତ୍ତୀ ବର୍ଷ ମାନଙ୍କରେ କ୍ରମେ ଶିଙ୍ଗରୁ ଶାଖା-ପ୍ରଶାଖା ବାହାରେ । ମୂଳ ଦଣ୍ଡରୁ ଭ୍ରୂ-ଶାଖା ଉପରକୁ ଆଉ ଶାଖା ବାହାରେ । ତାକୁ "ଦ୍ୱିତୀୟ ଶାଖା" ବା "କଡି ଶାଖା" ( "beztine ବା beam ") କହନ୍ତି । ଆହୁରି ଉଚ୍ଚରେ ଉଠିବା ଶାଖାକୁ "ତୃତୀୟ ଶାଖା" "(treztine)" ବୋଲାଯାଏ । ଶେଷରେ ତିନି ବା ଅଧିକ ଶାଖା ଦ୍ୱାରା "କପ୍" ବା "ମୁକୁଟ" ("Cup"ବା"Crown" )ଗଠିତ ହୁଏ । ଏହା ଶିଙ୍ଗର ପୂର୍ଣ୍ଣ

ଗଠନ ଅବସ୍ଥା ଓ ଏଭଳି ହରିଣକୁ "ଗଜ ମୃଗ" ( 'royal hart') କହନ୍ତି । ଉଦାହରଣରେ, ଅଣ୍ଡିଗ ଶମ୍ବର ହରିଣର ପ୍ରଥମ ବର୍ଷରେ ଶିଙ୍ଗ ଏକଦଣ୍ଡ ବିଶିଷ୍ଟ, ଶାଖା ନାହିଁ । ଏ ଶିଙ୍ଗ ଖସି ପଡେ । ଦ୍ୱିତୀୟ ବର୍ଷକୁ ଶିଙ୍ଗ ମୂଳରୁ ଏକ ଶାଖା ବାହାରେ । ବର୍ତ୍ତମାନ ଶିଙ୍ଗର ଦୁଇଟି ଶାଖା । ଏହା ଖସିପଡେ । ତୃତୀୟ ବର୍ଷରେ ମୁଖ୍ୟ ଶିଙ୍ଗରୁ ଆଉ ଏକ ଶାଖା ବାହାରେ । ପ୍ରାପ୍ତ ବୟସ୍କ, ସମ୍ବର, ଚିତଲ ଓ ପାରା-ହରିଣ ( Hog-deer ) ର ପ୍ରତ୍ୟେକ ଶିଙ୍ଗ ତିନି ଶାଖା ବିଶିଷ୍ଟ । ହାଙ୍ଗଲ ( Kashmir stag ), ବାରଶିଙ୍ଗା ଓ ସାଙ୍ଗାଇ ( Brow-antlered deer ) ହରିଣ ମାନଙ୍କର ଶିଙ୍ଗ ବହୁ ଶାଖିତ । କାଶ୍ମୀରର ହାଙ୍ଗଲ ମୃଗର ଶିଙ୍ଗର ମୁଖ୍ୟ ଶିଙ୍ଗ ବା "କଡ଼ି" ( beam )ରେ ଠିକ୍ କଣ୍ଟକୀ (burr) ଉପରକୁ ଏକ ଶାଖା ରହିଥାଏ । ଭ୍ରୂଲତା ବା ଲଲାଟ ( fore-head ) ର ଉପରକୁ ରହିଥିବାରୁ ଅବସ୍ଥିତି ଅନୁସାରେ ଏହାକୁ "ଭ୍ରୂଶାଖା" ( 'brow tine' ) କହନ୍ତି ବୋଲି ପୂର୍ବେ କୁହାଯାଇ ଅଛି । ଭ୍ରୂଶାଖା ଉପରକୁ ଆହୁରି ଦୁଇଟି ପ୍ରଧାନ ଶାଖା ଉଦ୍‌ଗତ ହୋଇଥାଏ । ଏହାକୁ 'ଦ୍ୱିତୀୟ ଶାଖା' ( 'bez' ) ଓ ତା' ଉପରକୁ ଥିବା ଶାଖାକୁ 'ତୃତୀୟ ଶାଖା' ('trez' or 'royal') ବୋଲଯାଏ । ଯା ସାଙ୍ଗକୁ ସବା ଉପରେ ଥିବା ଶାଖାଗୁଡ଼ିକୁ ଏକତ୍ର ମୁକୁଟ' (Crown) କହନ୍ତି । ସାଧାରଣତଃ ହାଙ୍ଗଲର ପ୍ରତ୍ୟେକ ଶିଙ୍ଗରେ ପାଞ୍ଚଟି ଡାଙ୍ଗ ଥାଏ । ବାରଶିଂଗା ହରିଣର ପ୍ରତ୍ୟେକ ଶିଂଗରେ କୋଡ଼ିଏଟି ଯାଏ ବା ଅଧିକ ଡାଙ୍ଗ ଥାଏ । ବର୍ଷକୁବର୍ଷ ଶିଂଗ ପଡ଼ି ପଡ଼ି ଶିଂଗରେ ଯେତେ ଶାଖା ହେବା କଥା ସେତିକି ହେଲ ପରେ ଏଣିକି ପ୍ରତ୍ୟେକ ଥର ଶିଙ୍ଗ ପଡ଼ିଲ ପରେ ତାହା ଆକାରରେ ବୃଦ୍ଧିପାଏ । ସବୁଠାରୁ ଅଧିକ ଗଠିତ ହେଲପରେ ପୁଣି କ୍ରମେ ତା'ର କ୍ଷୟ ଅବସ୍ଥା ଆରମ୍ଭ ହୁଏ । ତେଣୁ ସବୁଠାରୁ ବୁଢା ଅଣ୍ଡିଗ ହରିଣର ଶିଂଗ ସବୁଠୁ ବଡ଼ ହେବ ଏ ଧାରଣା ଭୁଲ ।

ଶିଂଗ ଖସି ପଡ଼ିଲ ପରେ ଯେଉଁ ନୂଆ ଶିଂଗ ଉଠେ, ତାହା ମୋଟା ଅଥଚ କୋମଳ ଚର୍ମଦ୍ୱାରା ଆବୃତ ହୋଇଥାଏ । ଚର୍ମ ଉପରେ ସୂକ୍ଷ୍ମ ଲୋମ ଘନଭାବେ ରହିଥାଏ । ଏହା ଉପରେ ହାତ ମାଇଲେ ମଖମଲ ପରି ଲଗେ ।

ଏଣୁ ତା'ର ନାମ 'ମଖମଲ' ('velvet')। ଚର୍ମରେ ପ୍ରଭୂତ ରକ୍ତ ବାହାନୀ ଓ ସ୍ନାୟୁ ରହିଥିବାରୁ ତାହା ଅତ୍ୟନ୍ତ ସଂବେଦୀ ( sensitive ) ଏବଂ ସହଜରେ ଆଘାତ ପ୍ରାପ୍ତ ହୁଏ । ଶିଂଗ ବଢ଼ୁଥିଲାବେଳେ ହରିଣମାନେ ଅତି ସାବଧାନତାର ସହ ଚଲାବୁଲା କରନ୍ତି । ବିଶେଷ କରି ଘନ ଅରଣ୍ୟବାସୀ ହରିଣ ଖୁବ୍ ସାବଧାନ ହୁଅନ୍ତି, ନଚେତ୍ କୋମଳ ଶିଂଗ ଗଛ ଲଟାରେ ଲାଗି କ୍ଷତ ବିକ୍ଷତ ହୋଇଯିବ । ସମ୍ବର ହରିଣ ଏଥିପାଇଁ ଜଂଗଲ ଛାଡ଼ି ଏ ସମୟରେ ଅପେକ୍ଷାକୃତ ଖୋଲା ତୃଣଭୂମିରେ ବାସ କରେ । ଏତେବେଳେ ସେମାନେ ନିଭୃତରେ ବାସ କରନ୍ତି, ଚଲାବୁଲା କମ୍ କରନ୍ତି ଓ ଖାଦ୍ୟ ପାଇଁ ଯେତିକି ବୁଲିଲେ ଚଳିବ କେବଳ ସେତିକି ବୁଲନ୍ତି । 'ମଖମଲ' ଅବସ୍ଥା ବେଳେ ଅର୍ଣ୍ଣିଗ ହରିଣ ଆକ୍ରମଣ ବା ଆତ୍ମରକ୍ଷା ପାଇଁ ଶିଙ୍ଗ ବ୍ୟବହାର କରେ ନାହିଁ । ନିହାତି ଲଢ଼ିବା ଆବଶ୍ୟକ ହେଲେ, ସେ ମାଈ ହରିଣ ପରି ପଛ ଗୋଡ଼ ଉପରେ ଠିଆ ହୋଇ ଆଗଗୋଡ ଟେକି ତା ସାହାଯ୍ୟରେ ଆଘାତ କରେ ।

ହରିଣର ଶିଙ୍ଗ ଯଥେଷ୍ଟ ବୃଦ୍ଧି ପାଇବା ପରେ ବୃନ୍ତ ( pedicel) ର ଅସ୍ଥାୟୀ ଅସ୍ଥିର ସାମାନ୍ୟ ଉପରକୁ ଏକ ମୁଦ୍ରିକା ଗଠିତ ହୁଏ । ଏହାକୁ 'କଣ୍ଟକୀ' ( burr' ) କହନ୍ତି । 'କଣ୍ଟକୀ'ର ବୃଦ୍ଧି ଫଳରେ ମଖମଲରେ ଥିବା ରକ୍ତ ବାହିନୀ ଗୁଡ଼ିକୁ କ୍ରମେ ସଙ୍କୁଚିତ କରି ସେଥିକୁ ରକ୍ତ ସଞ୍ଚାଳନ ବନ୍ଦ କରିଦିଏ । ରକ୍ତ ସଞ୍ଚାଳନ ବନ୍ଦ ହୋଇ ଯିବାରୁ ମଖମଲ ଶୁଖିଯାଏ ଓ ଚମ ଛାଡ଼ିଲା ପରି ଛାଡ଼ିବାକୁ ଆରମ୍ଭ କରେ । ଅର୍ଣ୍ଣିଗ ହରିଣ ଗଛର ଗଣ୍ଡିରେ ତା' ଶିଂଗକୁ ଘଷି ସେ ସବୁକୁ ଛଡାଇ ଦିଏ । ଏପରି ଶିଂଗ ଘଷିବାକୁ ସମ୍ବର ମାନଙ୍କର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଗଛ ଥାଏ । ଗତି ପରେ ଗତି ସେଇ ଗୋଟିଏ ଗଛରେ ଆସି ସମ୍ବର ତା' ଶିଙ୍ଗକୁ ଘଷେ । ଯେଉଁ ଗଛର ବଲ୍କଲ ଚିକ୍କଣ ସେଇ ଗଛରେ ସେମାନେ ଶିଂଗ ଘଷନ୍ତି । ବାରଶିଂଗା ହରିଣ ଗଛରେ ଶିଂଗ ଘଷନ୍ତି ନାହିଁ । ଉଚ୍ଚ ଘାସ ଥିବା ଅଞ୍ଚଳରେ ସେମାନେ ବାସ କରୁଥିବାରୁ, ସେମାନଙ୍କ ଶିଂଗ ଘାସରେ ବାଜିବା ଫଳରେ ଶୁଖିଲା ମଖମଲ ଆପେ ଆପେ ସଫା ହୋଇଯାଏ । ମଖମଲ ଛାଡ଼ିଗଲା ପରେ ହରିଣର ଶିଂଗ ପୁରାପୁରି ହାଡ ।

ପ୍ରଜନନ ଋତୁର ଆରମ୍ଭ ବେଳକୁ ଅଣ୍ଡିରା ହରିଣର ଶିଂଗ ଶକ୍ତ ହୋଇ ଯାଇ ଥାଏ ଓ ଶୁଖିଲା ମଖମଲ ଛାଡ଼ି ସଫା ହୋଇଯାଇଥାଏ । କାରଣ, ରମଣ ଋତୁରେ ଅଣ୍ଡିରା ହରିଣଙ୍କ ଭିତରେ ହରିଣୀ ପାଇଁ ଲଢ଼େଇ ହୁଏ । ମୁଣ୍ଡ ନୁଆଇଁ ଦୁଇ ପ୍ରତିଦ୍ୱନ୍ଦୀ ଏକ ଆରେକ ଆଡ଼କୁ ଆଗେଇ ଆସନ୍ତି । ମୁଣ୍ଡ ସହିତ ମୁଣ୍ଡ ବାଜେ । ବେଳେ ବେଳେ ଶିଂଗ ସହିତ ଶିଂଗ ଛନ୍ଦି ହୋଇଯାଏ ।




ଚିତ୍ର ନଂ 129
(ହରିଣର ଶିଂଗ ଖସିବା ଓ ନୂତନ ଶିଂଗ ଗଠନର ବିଭିନ୍ନ ପର୍ଯ୍ୟାୟ । )

ଜଣେ ଜଣକୁ ଠେଲି ଠେଲି ନେଇଯାଏ । ଉଭୟ କ୍ଳାନ୍ତ ହୋଇଗଲେ ଯୁଦ୍ଧରେ ବିରତି ଘଟେ । ବିଶ୍ରାମ ପରେ ଦେହ ଟିକିଏ ଖ୍ୱଂଗା ହୋଇଗଲେ ପୁଣି ଲଢ଼ାଇ ଆରମ୍ଭ ହୁଏ । ଶେଷରେ ଜଣେ ହଟି ରଣ କ୍ଷେତ୍ରରୁ ପଳାୟନ କରିବା ପର୍ଯ୍ୟନ୍ତ ଏଇପରି ଚାଲିଥାଏ । ବମ୍ବେ ପ୍ରକୃତି ବିଜ୍ଞାନ ସମିତି (Bombay Natural History Society) ର ସଂଗ୍ରହାଳୟରେ ମଧ୍ୟପ୍ରଦେଶର ଏକ ଜଂଗଲରୁ ମିଳିଥିବା ଦୁଇଟି ଚିତଳ ଅଣ୍ଡିରା ହରିଣର ଶିଂଗ ଯୁକ୍ତ କର୍ପର ଅଛି । ଦୁଇଟି ଅଣ୍ଡିରା ଲଢ଼େଇ କଲା ବେଳେ ଉଭୟର ଶିଂଗ ଛନ୍ଦି ହୋଇ ଯିବା ଫଳରେ ପରସ୍ପର ଠାରୁ ମୁକୁଳି ନ ପାରି ସେମାନେ ପ୍ରାଣ ହରାଇ ଥିବାର ଏହା ଏକ ନିଦର୍ଶନ ମାତ୍ର ।

ଅବଶ୍ୟ ଲଢ଼େଇ ପାଇଁ ଶିଙ୍ଗ ଯେ ଅପରିହାର୍ଯ୍ୟ ଏପରି ଧାରଣା କରିବା ଭ୍ରମାତ୍ମକ । ସ୍କଟଲଣ୍ଡରେ ବାସ କରୁଥିବା ଲାଲ ମୃଗ (Red deer) ମାନଙ୍କ ମଧ୍ୟରେ ଉଭୟ ଶୃଙ୍ଗହୀନ ('hummel') ଓ ଶୃଙ୍ଗ ଥିବା ଅଣ୍ଡିରା

ଦେଖାଯାନ୍ତି । ଶୃଙ୍ଗହୀନ ଅର୍ଣ୍ଣିଗ ଅପେକ୍ଷାକୃତ ବଳବାନ ହୁଅନ୍ତି । ମୃଗୀ ପାଇଁ ଲଢ଼ାଇ ବେଳେ ଅନେକ ସମୟରେ ଶୃଙ୍ଗହୀନ ଅର୍ଣ୍ଣିଗ ଶୃଙ୍ଗଯୁକ୍ତ ଅର୍ଣ୍ଣିଗର ପଞ୍ଜରରେ ଢ଼ିହ ମାରି ତାକୁ ହଟାଇ ଦିଏ ।

ପ୍ରଜନନ ଋତୁ ପରେ କିଛି କାଳ ପର୍ଯ୍ୟନ୍ତ ମୃଗର ମୁଣ୍ଡରେ ଶିଙ୍ଗ ଥାଏ; ତା' ପରେ ତାହା ଝଡ଼ି ପଡ଼େ । ଅଧିକ ବୟସ ମୃଗଙ୍କର ଶିଙ୍ଗ କମ୍ ବୟସର ମୃଗଙ୍କ ତୁଳନାରେ ଡ଼େରିରେ ଝଡ଼େ । ପର୍ଯ୍ୟାପ୍ତ ଖାଦ୍ୟ ସହିତ ଶିଙ୍ଗ ଝଡ଼ିବାର ସମ୍ପର୍କ ଥିଲ ପରି ମନେ ହୁଏ । କାରଣ ସବୁ କ୍ଷେତ୍ରରେ ପର୍ଯ୍ୟାପ୍ତ ଖାଦ୍ୟ ମିଳୁଥିବା ବେଳେ ହରିଣ ମାନଙ୍କର ନୂଆ ଶିଙ୍ଗ ଉଠେ । ହରିଣ ମାନଙ୍କର ପ୍ରଧାନ ଖାଦ୍ୟ ଘାସ । ଘାସର ପ୍ରାଚୁର୍ଯ୍ୟ ବେଳେ ସେମାନଙ୍କର ନୂଆ ଶିଙ୍ଗ ଉଠେ । ଶିଙ୍ଗ ହାଡ଼ ନିର୍ମିତ ହୋଇ ଥବାରୁ ତା'ର ଗଠନ ଓ ବୃଦ୍ଧି ପାଇଁ ଯଥେଷ୍ଟ କାଲସିୟମ (Calcium) ଆବଶ୍ୟକ । ଏହା ସେମାନେ ଅବଶ୍ୟ ଘାସରୁ ପାଆନ୍ତି ।

# ମୃଗ ଓ ସେମାନଙ୍କର ପରିବେଶ

ବିବର୍ତ୍ତନ ଦୃଷ୍ଟିରୁ ରୋମନ୍ଥକ ପ୍ରାଣୀ ମାନଙ୍କ ମଧ୍ୟରେ ମୃଗ ସର୍ବ ପ୍ରାଚୀନ । ନିମ୍ନ ଅଳ୍ପ ନୂତନ (Lower miocene) କାଳରେ ଅର୍ଥାତ୍ ପ୍ରାୟ 250 ଲକ୍ଷ ବର୍ଷ ପୂର୍ବେ ଏମାନଙ୍କର ଉଦ୍ଭବ ହୋଇଥିଲ । ପ୍ରଥମାବସ୍ଥାରେ ସେମାନଙ୍କର ଆକାର ଥିଲ କ୍ଷୁଦ୍ର ଓ ସେମାନେ ବେଶୀଭାଗ ଶିଙ୍ଗହୀନ ଥିଲେ ।

ଜଙ୍ଗଲ ଓ ତୃଣ ଥିବା ଜଙ୍ଗଲ ମୃଗ ମାନଙ୍କର ପ୍ରଧାନ ବାସ । ପୁରାତନ ଗୋଲାର୍ଦ୍ଧ (old world) ରେ ୟୁରୋପ ଓ ଏସିଆର ଅଧିକାଂଶ ଜଙ୍ଗଲାଞ୍ଚଳରେ ମୃଗ ଦେଖାଯାନ୍ତି । ଆଫ୍ରିକାର ସାହାରା ମରୁଭୂମିର ଦକ୍ଷିଣକୁ ଥିବା ଅଞ୍ଚଳରେ ସେମାନେ ମିଳନ୍ତି ନାହିଁ ।

ବାସସ୍ଥାନର ଭୌଗୋଳିକ ଅବସ୍ଥିତି ଅନୁସାରେ ହରିଣ ମାନଙ୍କର ଶାରୀରିକ ବୃଦ୍ଧି ହୁଏ । ଉଦାହରଣ ସ୍ୱରୂପ ମଧ୍ୟ ପ୍ରଦେଶ, ତରାଇ ଏବଂ ହିମାଳୟର ପାଦ ଦେଶରେ ବାସ କରୁଥିବା ଚିତଳ ହରିଣ ସବୁଠାରୁ ବଡ଼ ଓ ସୁନ୍ଦର ହୁଅନ୍ତି । ମଧ୍ୟ ଭାରତର ସମ୍ବର ହରିଣ ସବୁଠାରୁ ବଡ଼ ଓ ସେମାନଙ୍କର

ଶିଙ୍ଗ ସବୁଠୁ ବଡ ହୁଏ । ଗଙ୍ଗା ନଦୀର ଉତ୍ତରାଞ୍ଚଳରେ ଏବଂ ଦକ୍ଷିଣ ମଧ୍ୟ ଭାରତର ସମ୍ବରଙ୍କ ଶିଙ୍ଗ ଭାରତ ଓ ସିଂହଳରେ ବାସ କରୁଥିବା ସମ୍ବର ମାନଙ୍କର ଶିଂଗ ତୁଳନାରେ କ୍ଷୁଦ୍ର । ଆସାମ, ବର୍ମା ଓ ମାଲୟ ଉପଦ୍ୱୀପରେ ସମ୍ବର ଶିଂଗ ସ୍ଥୂଳ; ମାତ୍ର ବେଶୀ ଦୀର୍ଘ ହୁଏ ନାହିଁ । ଲମ୍ବରେ 75 ସେଣ୍ଟି ମିଟାର (30 ଇଞ୍ଚ) ରୁ ଅଧିକ ବଢ଼େ ନାହିଁ । ଖାଦ୍ୟ ଓ ବାସ ସ୍ଥାନର ଭୌଗୋଳିକ ଅବସ୍ଥିତି ଉଭୟ ଏହାର କାରଣ ହେବା ସମ୍ଭବ । ଉପରୋକ୍ତ ଅଞ୍ଚଳ ମାନଙ୍କରେ ଶିଂଗ ବଢ଼ ହେଲେ ସମ୍ବର ମାନଙ୍କର ଦ୍ରୁତ ଚଲବୁଲରେ ଅବଶ୍ୟ ବିଘ୍ନ ଘଟିବା ସମ୍ଭବ । ପ୍ରାକୃତିକ ନିର୍ବାଚନ ଫଳରେ କ୍ରମେ ବୃହତ୍ ଶିଂଗ ଯୁକ୍ତ ସମ୍ବର ପରିବର୍ତ୍ତେ କ୍ଷୁଦ୍ର ଓ ସ୍ଥୂଳ ଶିଂଗ ଥିବା ସମ୍ବରର ଉଦ୍ଭବ ଘଟିଥିବ ।

ବାସସ୍ଥାନର ପ୍ରଭେଦ ଅନୁସାରେ ଦୈହିକ ଗଠନରେ ମଧ୍ୟ କେତେକ ପ୍ରଭେଦ ଘଟିଥାଏ । ବାରଶିଂଗା ହରିଣ ତହିଁର ଏକ ଉଦାହରଣ । ତରାଇ ଅଞ୍ଚଳରେ ବାରଶିଂଗା ଜଳ ଜମି ଥିବା କର୍ଦ୍ଦମାକ୍ତ ଭୂମିରେ ବାସ କରେ । ଏଥିପାଇଁ ଏଠାର ବାରଶିଂଗାଙ୍କର ଖୁରା ସ୍ପଞ୍ଜ ତୁଲ୍ୟ, ବଡ଼ ଓ ବିସ୍ତୃତ । ମଧ୍ୟ ପ୍ରଦେଶର ଶୁଷ୍କ ତୃଣ ଭୂମିରେ ବାରଶିଂଗା ବାସ କରୁ ଥିବାରୁ ସେମାନଙ୍କର ଖୁରା ନିଦା, କ୍ଷୁଦ୍ର ଓ ଅପେକ୍ଷାକୃତ କମ୍ ପ୍ରସାରିତ ।

ଆହୁରି ମଧ୍ୟ, ବାସସ୍ଥାନ ମୃଗମାନଙ୍କର କାନର ଆକାରକୁ ପ୍ରଭାବିତ କରିଥାଏ । ସମ୍ବର ଓ ବାରଶିଂଗା ହରିଣଙ୍କର କାନ ବଡ଼ ଏବଂ ଓସାରିଆ । ଚିତଳ ହରିଣର କାନ ଛୋଟ ଓ ବେଶୀ ଓସାରିଆ ନୁହେଁ । ସମ୍ବର ଘନ ଜଂଗଲରେ ଓ ବାରଶିଂଗା ଉଚ ଘାସ ଭୂମିରେ ବାସ କରନ୍ତି । ଏ ସବୁ ସ୍ଥାନରେ ବେଶୀ ଦୂର ଯାଏ ଦେଖି ପାରିବା ସମ୍ଭବ ନୁହେଁ; ଭରସା କାନ । ଏଣୁ ସମ୍ବର ଓ ବାରଶିଂଗାଙ୍କର କାନ ଶବ୍ଦ ଗ୍ରହଣ ପାଇଁ ବଡ଼ ଓ ଓସାରିଆ । ଚିତଳ ହରିଣ ଜଂଗଲ ପ୍ରାନ୍ତରେ ଖୋଲା ଜାଗାରେ ବାସ କରେ । ଏଠାରେ ଦୂର ଯାଏ ଦେଖିବାରେ କୌଣସି ଅସୁବିଧା ନାହିଁ । ଏଣୁ ସେମାନଙ୍କର କାନ ସେତେ ବଡ଼ ନୁହେଁ । ସାଧାରଣ ଭାବେ କହିଲେ, ଜଂଗଲରେ ବାସ କରୁଥିବା ମୃଗମାନଙ୍କର ଶ୍ରବଣ ଓ ଘ୍ରାଣ ଶକ୍ତି ତୀବ୍ର ଏବଂ ଦୃଷ୍ଟି ଶକ୍ତି ମଧ୍ୟମ ଧରଣର; ଅପେକ୍ଷାକୃତ ଖୋଲା ଜାଗାରେ ବାସ କରୁଥିବା ମୃଗମାନଙ୍କର ସବୁ ଇନ୍ଦ୍ରିୟ ମୋଟା ମୋଟି ସମବର୍ଦ୍ଧିତ ।

ଯେତେ ମୃଗ ଦେଖାଯାନ୍ତି, ସେମାନଙ୍କ ମଧ୍ୟରେ ସମ୍ବର ହରିଣର ଆନନ ଗ୍ରନ୍ଥି (facial gland) ସବୁଠାରୁ ବଡ ଓ ଉତ୍ତମ ବର୍ଦ୍ଧିତ । ଏହାର କାରଣ ଅଛି । ସମ୍ବର ଜଙ୍ଗଲବାସୀ ହୋଇ ଥିବାରୁ ଅଣ୍ଡିଗ ସମ୍ବର ପକ୍ଷେ ମାଈ ଯୋଗାଡ଼ କରିବା ସେତେ ସହଜ ନୁହେଁ । ଅଣ୍ଡିଗ ତା'ର ଡ଼ାକ ଓ ଆନନ ଗ୍ରନ୍ଥିରୁ ନିଃସୃତ ଗନ୍ଧଦ୍ୱାରା ମାଈକୁ ଆକୃଷ୍ଟ କରେ । ପ୍ରଜନନ ଋତୁରେ ଏମାନଙ୍କର ଆନନ ଗ୍ରନ୍ଥିରୁ ବେଶୀ ସ୍ରାବ ହୋଇଥାଏ । ବାରଶିଙ୍ଗା ଓ ଚିତଲ ହରିଣମାନଙ୍କର ଆନନ ଗ୍ରନ୍ଥି ସେତେ ଉତ୍ତମ ବର୍ଦ୍ଧିତ ନୁହେଁ । ଏହି ହରିଣ ମାନଙ୍କର ଅଣ୍ଡିରମାନେ ମାଈଙ୍କ ଉପସ୍ଥିତିରେ ଯୁଝନ୍ତି ।

ଆବାସ ଅନୁସାରେ ବର୍ଣ୍ଣ—ଋତୁ ଭେଦରେ ହରିଣମାନଙ୍କର ବର୍ଣ୍ଣରେ ପରିବର୍ତ୍ତନ ଘଟିଥାଏ । ଶୀତ କାଳରେ ସେମାନଙ୍କର ଲୋମ ଘଞ୍ଚ ଓ ବର୍ଣ୍ଣ ଘନ ହୁଏ ; ମାତ୍ର ଗ୍ରୀଷ୍ମ ଋତୁରେ ଲୋମ ପତଳା ଓ ବର୍ଣ୍ଣ ହାଲୁକା । ମୌସୁମୀ-ବର୍ଷାର ପରବର୍ତ୍ତୀ କାଳରେ ଯଥେଷ୍ଟ ଉଦ୍ଭିଦ ଥିବାରୁ ଓ ଶୀତ କାଳ ଯୋଗୁ ଜଙ୍ଗଲରେ ଆଲୁଅ କମ୍; ସେଥିପାଇଁ ମୃଗମାନଙ୍କର ଲୋମର ବର୍ଣ୍ଣ ଘନ । ଗ୍ରୀଷ୍ମ କାଳରେ ଗଛ ଲଟା ଶୁଖି ଯିବାରୁ ଓ ଯଥେଷ୍ଟ ଆଲୁଅ ଯୋଗୁ ସେମାନଙ୍କରୁ ଲୋମର ବର୍ଣ୍ଣ ଫିକା ।

ଗ୍ରୀଷ୍ମ କାଳରେ ଅନେକ ମୃଗଙ୍କର ବର୍ଣ୍ଣ ଚିପିଚିପିକିଆ ହୋଇଥାଏ । ଏ ସମୟରେ ହାଙ୍ଗଲ ମୃଗର ଶାବକ, ହରିଣୀ ଓ ଅପ୍ରାପ୍ତ ବୟସ ଅଣ୍ଡିଗ ମାନଙ୍କର ଦେହର ବର୍ଣ୍ଣ ଚିପିଚିପିଆ । ବାରଶିଙ୍ଗା ଓ ପାଗ-ହରିଣ (hog-deer)ଙ୍କ ଠାରେ ମଧ୍ୟ ତାହାହିଁ ଦେଖାଯାଏ । ସେମାନଙ୍କର ଦେହରେ ଧଳା ବା ଫିକା ବର୍ଣ୍ଣର ଲୋମ ମଝିରେ ମଝିରେ ରହିଥାଏ । ନିର୍ଦ୍ଦିଷ୍ଟ ଆଲୋକରେ ତାହା ସ୍ପଷ୍ଟ ଜଣା ପଡ଼େ । ଏ ପ୍ରକାର ଚିତ୍ରିତାବସ୍ଥା ଆତ୍ମ ଗୋପନ କରିବାରେ ସାହାଯ୍ୟ କରେ । ୟୁରୋପର ଫାଲୋ ହରିଣ (fallow deer) ଓ କାଶ୍ମୀରର ହାଙ୍ଗଲ ମୃଗ ମାନଙ୍କର ଗ୍ରୀଷ୍ମ କାଳର ଚିପିଚିପିଆ ଧଳା ଚିହ୍ନ ଶୀତକାଳକୁ ଉଭେଇ ଯାଏ । ଶୀତ କାଳରେ ଏହି ଥଣ୍ଡା ସ୍ଥାନ ମାନଙ୍କରେ ଆଲୋକ ସମାନ ଭାବେ ପଡ଼େ । ସେଥିପାଇଁ ଏପରି ଘଟୁଥିବ । ଗ୍ରୀଷ୍ମାଞ୍ଚଳ ମାନଙ୍କର ଏହା କେତେଦୂର ସତ୍ୟ ସେ ସମ୍ପର୍କରେ ବିଶେଷ ଗବେଷଣା ହୋଇନାହିଁ । କାରଣ, ଗ୍ରୀଷ୍ମଶୀତ ଉଭୟ ଋତୁରେ ଛାଇଛାଇଆ ଆଲୋକ ପୂର୍ଣ୍ଣ ଜଙ୍ଗଲରେ

ବ୍ୟାସକରୁଥିଲେ ମଧ୍ୟ ସମ୍ବର ଦେହରେ ଟିପ୍‌ଟିପିଆ ଚିହ୍ନ ନ ଥାଏ । ଚିତଳ ହରିଣ ଦେହରେ ସବୁ ଋତୁରେ ଧଳା ଟିପିଟିପିଆ ଚିହ୍ନ ରହିଥାଏ । ଅବଶ୍ୟ ଏହି ବର୍ଣ୍ଣ ତାକୁ ଜଙ୍ଗଲର ଅଳ୍ପ-ଅଧିକ ଆଲୋକ ସହିତ ଖାପ ଖୁଆଇ ଆତ୍ମ-ଗୋପନ କରିବାରେ ସାହାଯ୍ୟ କରେ । ମାତ୍ର ଚିତଳ ହରିଣ ତ ବେଶୀ ସମୟ ଜଙ୍ଗଲ ଭିତରେ ରହେ ନାହିଁ; ତାହା ଜଙ୍ଗଲ ପ୍ରାନ୍ତରେ ଅଧିକାଂଶ ସମୟ ବିତାଏ । ଏଠାରେ ଦେହରେ ଧଳା ଡୋରିଆ ଚିହ୍ନ ଯୋଗୁ ତାର ବର୍ଣ୍ଣ ଅଧିକ ସ୍ପଷ୍ଟ ହୁଏ ସିନା, ଆତ୍ମଗୋପନ କରିବାରେ ସହାୟକ ହୁଏ ନାହିଁ । ବାରଶିଙ୍ଗା ବେଳକୁ ମଧ୍ୟ ସେଇ କଥା । ତରାଇ ଅଞ୍ଚଳରେ ସେମାନେ ଉଚ୍ଚ ଘାସ ଭିତରେ ଆତ୍ମଗୋପନ କରନ୍ତି, ମାତ୍ର ଗ୍ରୀଷ୍ମକାଳରେ ସେମାନଙ୍କ ଦେହରେ ଟିପ୍‌ଟିପିକିଆ ଚିହ୍ନ ଦେଖାଯାଏ । ଏ ସମୟରେ ଘାସ ଶୁଖି ଜଳିଯାଏ ଓ ସେ ସ୍ଥାନରେ ନୂଆ ଘାସ ଜଅଁଳେ । ସେମାନେ ତାକୁ ଚରିବାକୁ ଓ ଜଳଜ ଉଦ୍ଭିଦ ଖାଇବାକୁ ପାଣି ଭିତରେ ପଶନ୍ତି । ଏତେବେଳେ ଦେହରେ ଟିପିଟିପିକିଆ ଚିହ୍ନ ଥିବାରୁ ସେମାନଙ୍କୁ ଆତ୍ମଗୋପନ କରିବାରେ ସାହାଯ୍ୟ କରେ ନାହିଁ । ପାରା-ହରିଣ (hog-deer) ବେଳକୁ ମଧ୍ୟ ସେହି କଥା । ସେମାନେ ଜଳାଭୂମି ଓ ବୁଦା ମାନଙ୍କରେ ଚରନ୍ତି । ଗ୍ରୀଷ୍ମକାଳର ଟିପିଟିପିଆ ବର୍ଣ୍ଣ ସେମାନଙ୍କୁ ଆତ୍ମଗୋପନ କରିବାରେ ସାହାଯ୍ୟ କରେ ନାହିଁ । ଆଲୁଅ ଓ ଛାଇ ରହିଥିବା ଜଙ୍ଗଲରେ ଟିପିଟିପିଆ ବର୍ଣ୍ଣ ଆତ୍ମଗୋପନରେ ସାହାଯ୍ୟକାରୀ । ଏ ସବୁ ଦୃଷ୍ଟାନ୍ତରୁ ମନେ ହୁଏ, ହରିଣର ଦେହରେ ଧଳା ଟିପିଟିପିଆ ଚିହ୍ନ ଏକ ପୂର୍ବ ପୁରୁଷାନୁକ୍ରମିକ ପୋଷାକ । ସେଥିପାଇଁ ଅଧିକାଂଶ ମୃଗ ମାନଙ୍କଠାରେ ଶାବକ ଅବସ୍ଥାରେ ତାହା ଦେଖାଯାଏ; ମାତ୍ର ବଡ ହୋଇଗଲେ ଉଭେଇଯାଏ ବା ଗ୍ରୀଷ୍ମ କାଳରେ ଦେଖାଯାଏ । ସମ୍ଭବତଃ ଏହି ପୂର୍ବପୁରୁଷଙ୍କ ପରିଚ୍ଛଦ (ancestral livery ) କାଳକ୍ରମେ ବିଭିନ୍ନ ଜାତି ମୃଗଠାରେ ଉଭେଇବା ଅବସ୍ଥାରେ ଅଛି ଏବଂ ସମ୍ବର ଓ ଅନ୍ୟ କେତେକ ଜାତି ମୃଗଙ୍କଠାରେ ଲୋପ ପାଇଗଲଣି ।

ପରିବେଶ ଓ ସ୍ୱଭାବ—

ବର୍ଷର ବିଭିନ୍ନ ସମୟରେ ଋତୁ ପରିବର୍ତ୍ତନ ଯୋଗୁ ଅଧିକ ଉତ୍ତାପ, ଆର୍ଦ୍ରତା ଓ ଶୈତ୍ୟ ଅନୁଭୂତ ହୁଏ । ତା ସଙ୍ଗେ ସଙ୍ଗେ କେତେବେଳେ ଖାଦ୍ୟ

ଯଥେଷ୍ଟ ମିଳେ ଓ କେତେବେଳେ ଖାଦ୍ୟର ଅଭାବ ଘଟେ । ତଦନୁସାରେ ମୃଗମାନଙ୍କର ସ୍ୱଭାବ ଓ ଜୀବନ ଯାପନ ରୀତିରେ ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । କାଶ୍ମୀରର ହାଙ୍ଗଲ ମୃଗ ଶୀତକାଳରେ ପାହାଡ଼ର ନିମ୍ନାଞ୍ଚଳକୁ ଖସିଆସନ୍ତି ଓ ଗ୍ରୀଷ୍ମକାଳରେ ଅଧିକ ଉଚ୍ଚତାରେ ଯାଇ ବାସ କରନ୍ତି । ମଧ୍ୟ ପ୍ରଦେଶର ସମ୍ବରମାନଙ୍କର ସ୍ୱଭାବରେ ଏକ ବିଚିତ୍ର କଥା ଦେଖାଯାଏ । ସେଠାରେ ଖୁବ ଶୀତ ପଡ଼ିଲେ, ସମ୍ବରମାନେ ଦଳ ଦଳ ହୋଇ ପାଣିରେ ପଶନ୍ତି । ଏହାର କାରଣ ଏହି ଯେ ସେତେବେଳେ ବାହାରର ବାୟୁ ଅପେକ୍ଷା ପାଣି ଅପେକ୍ଷାକୃତ ଉଷ୍ମ । ପ୍ରକୃତି ବିଜ୍ଞାନବିତ୍ ଡାନବର ବ୍ରେଣ୍ଡାର ( Danbar Brander ) ଏହା ଦେଖି ଲିପିବଦ୍ଧ କରିଯାଇ ଅଛନ୍ତି ।

ଶତ୍ରୁ ହସ୍ତରୁ ରକ୍ଷା ପାଇବା ପାଇଁ ମୃଗ ମାନଙ୍କର ତିନୋଟି ଇନ୍ଦ୍ରିୟ ବିଶେଷ ସାହାଯ୍ୟକାରୀ; ତାହା ହେଲା ଘ୍ରାଣ, ଶ୍ରବଣ ଓ ଦୃଷ୍ଟି । ମୃଗମାନେ ଯୂଥଚାରୀ ଏବଂ ଏହି ସ୍ୱଭାବ ସେମାନଙ୍କୁ ଶତ୍ରୁ ହସ୍ତରୁ ରକ୍ଷା କରିବାରେ ସହାୟକ । ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ବାସ କରୁଥିବା ମୃଗ ସାଧାରଣତଃ ଅନ୍ୟ ଅଞ୍ଚଳ ବାସୀ ହରିଣ ତୁଳନାରେ ଅଧିକ ଯୂଥଚାରୀ ଓ ବଡ଼ ବଡ଼ ଦଳ ଗଠନ କରନ୍ତି । ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ମହାବଳ ବାଘ କଲରା ପତ୍ରିଆ, ବଣିଆ କୁକୁର ଆଦି ମାଂସାଶୀ ପ୍ରାଣୀ ଅଦ୍ଭୁତ ଦଳବଦ୍ଧ ହୋଇ ବାସକଲେ ଏମାନଙ୍କ ହାତରୁ ରକ୍ଷା ପାଇବା ସହଜ ହୋଇପାରେ; ମାତ୍ର ଗୋଟିଏ ଦୁଇଟି ଏକାଠି ବାସ କଲେ ହିଂସ୍ର ପ୍ରାଣୀର ଶିକାର ହେବା ଅଧିକ ସମ୍ଭାବ୍ୟ ।

ଯେଉଁ ପ୍ରାଣୀମାନେ ଶତ୍ରୁ ନୁହଁନ୍ତି ସେମାନଙ୍କ ସହିତ ଚଳାଫେରା କରିବାରେ ବିଭିନ୍ନ ଜାତିର ହରିଣ ବିଭିନ୍ନ ପ୍ରକାର ସ୍ୱଭାବ ପ୍ରଦର୍ଶନ କରନ୍ତି । ଏ ଦିଗରେ ଚିତଲ ହରିଣ ସବୁଠାରୁ ଟିକିଏ ଓ ସାମାଜିକ ବୋଲି ମନେ ହୁଏ । ଏମାନେ ବାରଶିଙ୍ଗା ନୀଳଗାଈ, କୃଷ୍ଣସାର ଏପରିକି ଶୁକରମାନଙ୍କ ସହିତ ସାଥୀ ହୋଇ ବୁଲୁଥିବାର ଦେଖାଯାଏ । ମାଇ ସମ୍ବର ବାରଶିଙ୍ଗା ସହିତ ସାଥୀ ହେବେ ସିନା ଅଣ୍ଡିରା ସମ୍ବର ସହିତ ବୁଲନ୍ତି ନାହିଁ । ହନୁମାନ ଚିତଳ ହରିଣର ଏକ ବିଶେଷ ବନ୍ଧୁ ପରି ଜଣାପଡ଼େ । ମାଙ୍କଡ଼ ପଛ ଗଛରେ

ଥିଲେ ହରିଣ ଓ ବନ୍ୟ ଗୋ-ଜାତି ପ୍ରାଣୀ ଆସି ଗଛତଳେ ଜୁଟନ୍ତି । ମାଙ୍କଡ଼ ଖାନ୍ତି ଯେତେ ତା'ଠୁ ନଷ୍ଟ କରନ୍ତି ବେଶୀ । ସେମାନେ ତଳେ ପକାଉଥିବା ଫଳ ଓ ଡାଳକୁ ହରିଣ ଓ ବନ୍ୟ ଗୋ-ଜାତି ପ୍ରାଣୀ ଖାନ୍ତି । ବଣି ଓ ଅନ୍ୟାନ୍ୟ କେତେକ ପକ୍ଷୀ ହରିଣ ଓ ବନ୍ୟ ଗୋ ଜାତୀୟ ପ୍ରାଣୀ ସହିତ ସାଥୀ ହେବାର ଦେଖାଯାଏ । ଏହି ପଶୁମାନେ ଚାଲିଗଲାବେଳେ ଘାସରେ ଥିବା ପୋକ ଡ଼େଇଁ ପଳାନ୍ତି ଓ ସେ ସମୟରେ ବଣି ଓ ଅନ୍ୟ ପକ୍ଷୀ ସେଗୁଡ଼ିକୁ ଆହାର କରନ୍ତି । ଆହୁରି ମଧ୍ୟ, ଏହି ପକ୍ଷୀମାନେ ପଶୁମାନଙ୍କ ପିଠି ଉପରେ ବସି ସେମାନଙ୍କ ଦେହରେ ଲାଗିଥିବା ଟିକ ଇତ୍ୟାଦି ଟୁଙ୍କି ଖାଇ ଦିଅନ୍ତି ।

ମୃଗ ଓ ମନୁଷ୍ୟ—

କେଉଁ ଆଦିମ କାଳରୁ ମୃଗ ଓ ମନୁଷ୍ୟର ସମ୍ପର୍କ ବଧ୍ୟ ଓ ଘାତକ ଶିକାର–ଶିକାରୀର ସମ୍ପର୍କ । 'ମୃଗ' ଶବ୍ଦର ଏକ ଅର୍ଥ ଶିକାର ଏବଂ ମୃଗୟାର ଅର୍ଥ ଶିକାର । ମୃଗ ପଛରେ ଅନୁଧାବନ କରି ଶର ନିକ୍ଷେପ କରିବା ମୃଗୟା । ମନୁଷ୍ୟର ଅମାନୁଷିକ ଶିକାର ଫଳରେ ଆଗର ପଲ ପଲ ହରିଣ ବର୍ଣ୍ଣନା ଏବେ ପ୍ରାୟ କହିର କାହାଣୀ ମଧ୍ୟରେ ସୀମିତ ହୋଇଛି । କେତେକ ସ୍ଥାନରୁ ନିର୍ଦ୍ଦିଷ୍ଟ ଜାତି ହରିଣ ଅବଲୁପ୍ତ ହୋଇ ଅଛନ୍ତି । ଆଗେ ବାରଶିଙ୍ଗା ହରିଣ ସମ୍ବଲପୁର ଜିଲ୍ଲାରେ ବାସ କରୁଥିଲେ । ସେମାନେ 40/50 ବର୍ଷ ହେଲା ସମ୍ବଲପୁର ଓ ତା' ସଙ୍ଗେ ସଙ୍ଗେ ଓଡ଼ିଶାରୁ ଲୋପ ପାଇ ଗଲେଣି । ହରିଣମାନେ ସାଧାରଣତଃ ଯେତେବେଳେ ଛୁଆ କରନ୍ତି, ସେତେବେଳେ ଖାଦ୍ୟର ପ୍ରାଚୁର୍ଯ୍ୟ ଥାଏ । ବଡ଼ ବଡ ଶିଙ୍ଗାଳମାନଙ୍କର ରମଣ ସ୍ୱଭବ ସର୍ବାଗ୍ରେ ପ୍ରକାଶ ପାଏ । ମାଈ ପାଇଁ ସେମାନଙ୍କ ମଧ୍ୟରେ ଲଢ଼ାଇ ହୁଏ । ବଳବାନ ବିଜେତା ମାଈଙ୍କ ସହିତ ରମଣ କରେ ଓ ଶାବକ ଜନ୍ମ ହୁଅନ୍ତି । ତା'ପରେ ଯାଇ ସଦ୍ୟ ବୟଃପ୍ରାପ୍ତ ଓ ଅଳ୍ପ ବଳବାନ ଅଣ୍ଡିରଙ୍କର ପାଳି । ଶିକାରୀଙ୍କର ସର୍ବ ପ୍ରଥମ ଲକ୍ଷ୍ୟ ବଡ଼ ବଡ଼ ଶିଙ୍ଗାଳ ମାନଙ୍କ ଉପରେ । ଫଳରେ ବିଳମ୍ବରେ ରମଣେଚ୍ଛା ପ୍ରକାଶ ପାଉଥିବା ତରୁଣ ଅଣ୍ଡିରା ଗୁଡ଼ିକ ରମଣ ଋତୁ ଶେଷରେ ମାଈ ସହିତ ମିଳିତ ହୁଅନ୍ତି । ଫଳରେ ଡେରିରେ ଶାବକ ଜନ୍ମ ହୁଅନ୍ତି । ଡେରିରେ ଶାବକ ଜନ୍ମ ହେବା କାରଣରୁ ସେମାନେ ଯଥେଷ୍ଟ ଖାଦ୍ୟ ଖାଇ ପାରନ୍ତି ନାହିଁ । ଏହା ମଧ୍ୟ ମୃଗବଂଶ ନାଶର ଅନ୍ୟ

ଏକ କାରଣ । ତା'ସାଙ୍ଗକୁ ମୃଗ ହିଂସ୍ର ଜନ୍ତୁ ମାନଙ୍କର ପ୍ରଧାନ ଆହାର । ହରିଣ ଶିକାର ଫଳରେ ହିଂସ୍ର ଜନ୍ତୁ ଖାଦ୍ୟ ନ ପାଇ ଗୃହପାଳିତ ପଶୁଙ୍କୁ ଶିକାର କରନ୍ତି । ମୃଗମାନଙ୍କ ସଂଖ୍ୟା ହ୍ରାସ ସଙ୍ଗେ ସଙ୍ଗେ ବଣର ପ୍ରାକୃତିକ ଶୋଭାବର୍ଦ୍ଧନକାରୀ ସମ୍ପଦ–ହିଂସ୍ର ଜନ୍ତୁମାନଙ୍କର ସଂଖ୍ୟା କମିବାରେ ଲାଗିଛି । ଖାଦ୍ୟର ଅଭାବ ଫଳରେ ଖାଦକର ବଂଶହାନୀ ପ୍ରକୃତିର ତ ନିୟମ ।

## ମୃଗ ମାନଙ୍କର ସମାଜ–ଜୀବନ ଓ ବାତ୍ସଲ୍ୟ

ସଂଯୋଗ ସ୍ଥାପନ –ମୃଗମାନେ ବିପଦବେଳେ ଏକ ଆରେକକୁ ସତର୍କ କରିବା ପାଇଁ ବା ସାବଧାନ ସଂକେତ ଦେବା ପାଇଁ ବିଭିନ୍ନ ପ୍ରକାର ଶବ୍ଦ କରିଥାନ୍ତି । ସବୁ ଜାତିର ମୃଗଙ୍କର ଆତଙ୍କ ଡାକ, ରହି ରହି ଡାକ, ସୁସୁରି ଡାକ ଆଦି ଅବସ୍ଥା ଭେଦରେ ଭିନ୍ନ ଭିନ୍ନ ପ୍ରକାର ଡାକ ଅଛି । ଆଉ ପ୍ରକାରେ ମଧ୍ୟ ସେମାନେ ଦୃଷ୍ଟି ଆକର୍ଷଣ କରିଥାନ୍ତି । ତାହା ହେଲା, ଭୂମିରେ ପାଦ ବାଡ଼ାଇବା । କେତେକ ଜାତି ମୃଗ ଆତଙ୍କ ଡାକ ପୂର୍ବେ ଭୂମିରେ ଗୋଡ଼ ବଗାଡ଼ିଥାନ୍ତି ।

ରମଣ ପୂର୍ବେ ବା ରମଣ ବେଳେ ଶିଙ୍ଗାଳ ଯେଉଁ ଗର୍ଜନ କରିଥାଏ ସେ ଡାକ ଆତଙ୍କଡାକ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହି ଗର୍ଜନ ଭିତରେ ଲାଳସା, କ୍ରୋଧ ଓ ଉଦ୍‌ବେଗ–ସମସ୍ତ ମିଶି ରହିଥାଏ । ଜଙ୍ଗଲରେ ଏହି ଭୀମ ଗର୍ଜନ ସବୁଠାରୁ ଚମତକମକାରୀ ଶବ୍ଦ କହିଲେ ଭୁଲ ହେବ ନାହିଁ । କାରଣ, ଏହି ଡାକରେ ରହିଥାଏ ପ୍ରତିଦ୍ୱନ୍ଦୀମାନଙ୍କୁ ଆହ୍ୱାନ । ଅଣ୍ଡିରା ଚିତଳ ହରିଣର ଏପରି ଡାକ ଦ୍ୱାରା ଆକୃଷ୍ଟ ହୋଇ ମାଈ ହରିଣ ତା' ନିକଟକୁ ଆସିଥାନ୍ତି । ମା' ହରିଣ ଅନୁଚ୍ଚ ଅସ୍ପଷ୍ଟ ଧ୍ୱନି ଦ୍ୱାରା ଶାବକମାନଙ୍କୁ ଡାକିଥାଏ ଏବଂ ଭୂମିକୁ କୁଦି ତାଙ୍କର ଦୃଷ୍ଟି ଆକର୍ଷଣ କରେ ।

ଗନ୍ଧ ଗ୍ରନ୍ଥି–ଅଧିକାଂଶ ମୃଗଙ୍କର ଗନ୍ଧଗ୍ରନ୍ଥି ଅଛି । ଗନ୍ଧ ପରସ୍ପରକୁ ଜାଣିବାରେ ସାହାଯ୍ୟ କରେ । ଅଧିକାଂଶ ମୃଗଙ୍କ ଆଖି ତଳକୁ ଏକ ଗନ୍ଧ ଗ୍ରନ୍ଥି ଥାଏ । ଏହାକୁ ଆନନ ଗ୍ରନ୍ଥି ( Facial gland ) କୁହାଯାଏ ।

ଏହା ସାଙ୍ଗକୁ କୁଟ୍ରା ( muntjac ) ମାନଙ୍କର ଲଲାଟରେ ଏକ ଗନ୍ଧ ଗ୍ରନ୍ଥିଥାଏ । ତାକୁ ଭାଲ ଗ୍ରନ୍ଥି ( frowtal gland ) କହନ୍ତି । ସଙ୍ଗମ ଋତୁରେ ଏ ସମସ୍ତ ଗନ୍ଧଗ୍ରନ୍ଥିରୁ ଚରମ ରୂପେ ସ୍ରାବ କ୍ଷରିତ ହୋଇଥାଏ ଓ ମୁଖ୍ୟତଃ ମାଈକୁ ଅଣ୍ଡିରା ନିଜଟକୁ ଆକୃଷ୍ଟ କରିଥାଏ । ବିଶେଷ କରି ଯେଉଁ ମୃଗମାନେ ଘନ ଜଙ୍ଗଲରେ ରହନ୍ତି ଓ ପରସ୍ପରକୁ ଦେଖି ପାରିବା ସହଜ ନୁହେଁ, ସେ କ୍ଷେତ୍ରରେ ଗନ୍ଧଗ୍ରନ୍ଥି ବିଶେଷ ସାହାଯ୍ୟ କରିଥାଏ । ସେମାନଙ୍କର ଆନନ ଗ୍ରନ୍ଥି ବେଶ ବଡ଼ । ଆନନ ଗ୍ରନ୍ଥି ଛାଡ଼ି ଅଧିକାଂଶ ମୃଗଙ୍କର ଖୁରା ମଝିରେ ମଧ୍ୟ ଗ୍ରନ୍ଥିଥାଏ । ପ୍ରତ୍ୟେକ ପଛ ଗୋଡ଼ରେ ଏକ ବା ଦୁଇଟି କରି ଏହି ଗ୍ରନ୍ଥି ସାଧାରଣତଃ ଖୁରାର ଟିକିଏ ଉପରକୁ ରହିଥାଏ । କେତେକ କ୍ଷେତ୍ରରେ ଗୋଇଠିର ଭିତର ଅଂଶରେ ଏକ ଗ୍ରନ୍ଥିଥାଏ । ଗନ୍ଧ ଗ୍ରନ୍ଥିର ଅବସ୍ଥିତି ସେଠାରେ ଥିବା ସ୍ୱତନ୍ତ୍ର ଓ ଭିନ୍ନ ରଙ୍ଗର ଗୋଛାଏ ଲମ୍ବା ଲୋମ ଦ୍ୱାରା ଜଣା ପଡ଼େ । ମୃଗ ଯେଉଁବାଟ ଦେଇଯାଏ ସେ ବାଟରେ ପଦଗ୍ରନ୍ଥି ( foot gland ) ରୁ ନିର୍ଗତ ଗନ୍ଧ ରହିଯାଏ । ଏହି ଗନ୍ଧ ଦ୍ୱାରା ମୃଗ ତା' ଦଳର ଅନ୍ୟମାନେ କେଉଁବାଟେ ଯାଇ ଅଛନ୍ତି ତାହା ଜାଣିପାରେ । ବାରଶିଙ୍ଗା ହରିଣ ଘାସ ଭିତରେ ବିଶ୍ରାମ ନେଉଥିବା ବେଳେ ଦୂରରୁ ଗନ୍ଧ ଦ୍ୱାରା ଅନ୍ୟ ମାନଙ୍କର ଅବସ୍ଥିତି ଜାଣିପାରେ ।

ସାମାଜିକ ସଂଗଠନ– ଅଧିକାଂଶ ବଡ଼ ମୃଗ ଯୂଥଚାରୀ । ୟୁରୋପର ଲାଲ ମୃଗ ( Red deer , Cervus elaphus linnaeus ) ମାନଙ୍କ ଠାରେ ଉଚ୍ଚ ଧରଣର ସାମାଜିକ ସଂଗଠନ ଦେଖିବାକୁ ମିଳେ । ସେମାନଙ୍କ ସମାଜରେ ମା' ହରିଣ ମୁଖ୍ୟସ୍ଥାନ ଗ୍ରହଣ କରେ । ଦୀର୍ଘକାଳଯାଏ ହରିଣୀ ତା'ର ଶାବକ ମାନଙ୍କୁ ପାଖରେ ରଖି ସେମାନଙ୍କୁ ତାଲିମ ଦିଏ । ଅଣ୍ଡିରା ହରିଣର କାମ କେବଳ ପ୍ରଜନନ । ଅଣ୍ଡିରା ଶାବକ ବୟଃପ୍ରାପ୍ତ ହେଲାପରେ ଦଳ ଛାଡ଼ି ଚାଲିଯାଏ । ଗଭା ବୟଃପ୍ରାପ୍ତ ଅଣ୍ଡିରା ହରିଣ ଅଳ୍ପ ସଂଖ୍ୟାରେ ଏକାଠି ସାଥୀ ହୋଇ ପାରନ୍ତି । ବୟସ୍କ ଅଣ୍ଡିରା ମୃଗ ରମଣ ସମୟଟକ ଛଡ଼ା ଅନ୍ୟ ସମୟରେ ଏକାକୀ ବାସ କରନ୍ତି ।

ହରିଣୀ ମାନଙ୍କର ସାମାଜିକ ସଂଗଠନ ଭିନ୍ନ ପ୍ରକାର । ଶାବକମାନେ ବୟଃପ୍ରାପ୍ତ ହେବା ଯାଏ, ଅର୍ଥାତ୍ ତିନିବର୍ଷ ଯାଏ ମା' ସହିତ ବାସ କରନ୍ତି ।

ଏଣୁ ମା' ସହିତ ତା' ପରିବାର ବୁଲୁଥାଏ । ଆଉ ସେ ଦଳରେ ସଦ୍ୟଜାତ ଶାବକ ଠାରୁ ତିନିବର୍ଷ ପର୍ଯ୍ୟନ୍ତ ବଡ଼ ଶାବକ ରହିଥାନ୍ତି । ସେ ଦଳର ନେତ୍ରୀ ମା' ହରିଣ । ଏହିପରି କେତୋଟି ହରିଣ ପରିବାର ଏକାଠି ମିଶି ଗୋଟିଏ ବଡ଼ ଦଳ ଗଠନ କରି ପାରନ୍ତି । ସେହି ଦଳର ଦଳନେତ୍ରୀ ହୁଏ ଗୋଟିଏ ହରିଣୀ । ସେଥିପାଇଁ ହରିଣୀ ହରିଣୀ ମଧ୍ୟରେ ଲଢ଼େଇ ହୁଏ ନାହିଁ । ଦଳ ବଡ଼ ହୋଇଥିଲେ ଓ ଅଧିକ ପଥ ପରିଭ୍ରମଣର ଆବଶ୍ୟକତା ଥିଲେ ଅନ୍ୟ ଗୋଟିଏ ହରିଣୀ ଉପନେତ୍ରୀ ରୂପେ କାର୍ଯ୍ୟକରି ଦଳର ସବା ପଛରେ ଚାଲେ । ଚରୁଥିଲା ବେଳେ ଓ ବିଶ୍ରାମ କରୁଥିବା ସମୟରେ ଦଳନେତ୍ରୀ ଗନ୍ଧ ବାରିବା, ଦେଖିବା ଓ ଶୁଣିବା ପାଇଁ ଚାରିଆଡ଼କୁ ଅନାଉଥାଏ । ଏହି ସତର୍କତା ମାଈ ଶାବକମାନଙ୍କ ଠାରେ ମଧ୍ୟ ଦେଖିବାକୁ ମିଳେ । ଅଣ୍ଡିରା ଶାବକମାନେ ମଧ୍ୟ ସତର୍କତା ପ୍ରଦର୍ଶନ କରନ୍ତି; ମାତ୍ର ବର୍ଷକର ହେଲାପରେ ସେହି ସତର୍କ ଭାବ ଆଉ ରହେ ନାହିଁ । ବୟଃପ୍ରାପ୍ତି ପରେ, ମା'ର ଆଶ୍ରୟ ଛାଡ଼ି ଏକାକୀ ଜୀବନ ଆରମ୍ଭ କଲେ ପୁଣି ସେମାନଙ୍କ ଠାରେ ଅତ୍ୟନ୍ତ ସତର୍କତା ଦେଖାଯାଏ । ପ୍ରଜନନ ସମୟରେ ମଧ୍ୟ ହରିଣୀ ଦଳନେତ୍ରୀ ରୂପେ କାର୍ଯ୍ୟ କରେ । ଅଣ୍ଡିରାର ଏକମାତ୍ର ଲକ୍ଷ୍ୟ ରମଣ ଓ ତା'ର ଗଣୀ ଦଳରୁ କୌଣସି ହରିଣୀ ଅନ୍ୟ କୌଣସି ପ୍ରତିଦ୍ୱନ୍ଦୀ ଅଣ୍ଡିରାର ପ୍ରଭୁତ୍ୱକୁ ଯେପରି ଚାଲି ନଯାଏ ସେଥିପ୍ରତି ସତର୍କତା । ବିପଦର ଆଶଙ୍କା ହେଲେ ଦଳର ସମସ୍ତେ ଦଳନେତ୍ରୀ ପଛରେ ଠୁଳ ହୁଅନ୍ତି ଓ ସେ ଯେଉଁବାଟେ ପଳାୟନ କରେ ତା' ପଛେ ପଛେ ଅନ୍ୟମାନେ ଅନୁଧାବନ କରନ୍ତି । ଅଣ୍ଡିରା ସେତେବେଳେ ନିର୍ବିକାର । ଦଳର କଥାତ ପଛକଥା, ନିଜର ରକ୍ଷା ପାଇଁ ମଧ୍ୟ ତା'ର ବିଶେଷ ଉଦ୍‌ବେଗ ପ୍ରକାଶ ପାଇଲା ପରି ଜଣାପଡ଼େ ନାହିଁ । ପଳାୟନ ବେଳେ ସେ ଦଳର ଅନ୍ୟମାନଙ୍କ ସହିତ ମିଶି ବା ନିଜର ଅନ୍ୟ କୌଣସି ବାଟେ ଦୌଡ଼େ ।

**ଆଞ୍ଚଳିକତା ଓ ଆଞ୍ଚଳିକ ଆଧିପତ୍ୟ** — ଲାଲ ହରିଣ (Red deer) କ୍ଷୁଦ୍ର କ୍ଷୁଦ୍ର ପାରିବାରିକ ଦଳରେ ଚରିବୁଲନ୍ତି । ଏହି ଦଳ ଗୋଟିଏ ହରିଣୀ ଓ ତା'ର ଶାବକମାନଙ୍କୁ ନେଇ ଗଠିତ । ଜଳବାୟୁ ଓ ଖାଦ୍ୟର ପ୍ରଭାବରେ ଏକାଧିକ ଦଳ ଏକତ୍ର ହୋଇ ମଧ୍ୟ ଚରବୁଲ କରନ୍ତି । ଏପରି ପ୍ରତ୍ୟେକ ଦଳର ନିର୍ଦ୍ଦିଷ୍ଟ ଚାରଣ ଭୂମି ଥାଏ । ଏହା ସେମାନଙ୍କର ଶୀତକାଳୀନ ଚରଭୂମି ।

ଏହି ଭୂଇଁରୁ ଉଚ୍ଚ ସ୍ଥାନରେ ଅବସ୍ଥିତ ଗ୍ରୀଷ୍ମକାଳୀନ ଚରଭୂଇଁକୁ ଯିବାଲାଗି ଭ୍ରମଣ ଅଧିକ ସଳଖ ବାଟ ଥାଏ । ଶୀତକାଳୀନ ଚରଭୂଇଁ ଇଳ ହରିଣମାନଙ୍କର ସାବକ ଘର ବା ଜନ୍ମଭୂମି । ଏହି ଅଞ୍ଚଳରୁ ହରିଣୀ ଓ ତା'ର ପରିବାର ଗ୍ରୀଷ୍ମ କାଳରେ ଚରିବାକୁ ଗ୍ରୀଷ୍ମକାଳୀନ ଚରଭୂଇଁକୁ ଯାନ୍ତି ଏବଂ ପ୍ରଜନନ ପାଇଁ ପୁଣି ଶୀତକାଳୀନ ଚରଭୂଇଁକୁ ବାହୁଡ଼ି ଆସନ୍ତି ଓ ସେଠାରେ ଛୁଆ ଜନ୍ମାନ୍ତି ।

ମାଈମାନଙ୍କ ପରି ଅଣ୍ଡିରା ମାନଙ୍କର ମଧ୍ୟ ସ୍ୱତନ୍ତ୍ର ଶୀତକାଳୀନ ଓ ଗ୍ରୀଷ୍ମକାଳୀନ ଚରଭୂଇଁ ଥାଏ । ମାତ୍ର ହରିଣୀଙ୍କ ତୁଳନାରେ ହରିଣମାନେ ଅଧିକ ବୁଲବୁଲି କରନ୍ତି । ପ୍ରଜନନ କାଳ ଉପଗତ ହେଲେ ସେମାନେ ଯାଇ ହରିଣୀମାନଙ୍କର ଶୀତକାଳୀନ ଚରଭୂଇଁରେ ପହଞ୍ଚନ୍ତି । ହରିଣୀମାନଙ୍କ ଉପରେ ଆଧିପତ୍ୟ ଲାଗି ଅଣ୍ଡିରା ମାନଙ୍କ ମଧ୍ୟରେ କଳହ, ଗର୍ଜନ ଓ ଲଢ଼େଇ ହୁଏ । ପ୍ରଜନନ ଋତୁର ଆରମ୍ଭରେ ଶୀତକାଳୀନ ଚରଭୂଇଁରେ ଆଗ ଆଗ ପହଞ୍ଚି ଅଣ୍ଡିରା ହରିଣ ତା'ର ପ୍ରତିଦ୍ୱନ୍ଦୀମାନଙ୍କୁ ହଟାଇ ବେଳେ ବେଳେ ପଚାଶଟି ପର୍ଯ୍ୟନ୍ତ ମାଈ ଯୋଗାଡ଼ କରେ । ଯେତେ ଅଞ୍ଚଳ ଭିତରେ ସେ ନିଜର ଆଧିପତ୍ୟ ବଜାୟ ରଖି ପାରିବ ସେତିକି ସୀମା ଭିତରେ ସେ ସେମାନଙ୍କୁ ଠୁଳ କରି ରଖେ । ଏହା ଅଣ୍ଡିରାର ବଳ, ବିଚକ୍ଷଣତା ଓ ଦକ୍ଷତା ଉପରେ ନିର୍ଭର କରେ, କାରଣ ମାଈମାନଙ୍କର ଅଣ୍ଡିରା ପ୍ରତି କୌଣସି ବିଶେଷ ଆଶକ୍ତି ବା ଆନୁଗତ୍ୟ ନଥାଏ । ସେମାନେ ଚରୁ ଚରୁ ଅନ୍ୟ ଅଣ୍ଡିରା ପାଇଲେ ତା' ପାଖକୁ ଗ୍ଲଲିଯାନ୍ତି । ଯହୁଁ ଯହୁଁ ପ୍ରଜନନ ଋତୁ ଆଗେଇ ଚାଲେ, ତହୁଁ ତହୁଁ ପ୍ରଜନନ ପାଇଁ ଅଧିକ ଅଣ୍ଡିରା ଆସି ଜୁଟ ହୁଅନ୍ତି । ଫଳରେ ଆଗରୁ ଆସିଥିବା ଅଣ୍ଡିରା ତା'ର କେତେକ 'ରାଣୀ' ଓ ଅଞ୍ଚଳ ହରାଏ । ପ୍ରଜନନ ଋତୁର ଶେଷ ଭାଗରେ କୌଣସି ଅଣ୍ଡିରାର 'ରାଣୀ' ସଂଖ୍ୟା ସବୁଠାରୁ କମ୍ ଓ 'ଅଞ୍ଚଳ' ସବୁଠାରୁ ସୀମିତ ହୋଇଥାଏ । କାରଣ ସେତେବେଳେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବହୁ ଅଣ୍ଡିରା ଓ ମାଈ ସୀମିତ ସ୍ଥାନରେ ରମଣରେ ଲିପ୍ତ ରହିଥାନ୍ତି । ଆହୁରି ମଧ୍ୟ, ଆଗନ୍ତୁ ଆସିଥିବା ଅଣ୍ଡିରା ରମଣ ପରେ, ଆଉଥରେ ତାର ସଙ୍ଗମ ଲିପ୍ସା ଉଦ୍ରେକ ହେବା ପୂର୍ବରୁ ନବାଗତ ଅଣ୍ଡିରା ଦ୍ୱାରା ବିତାଡ଼ିତ ହୁଏ । ଏଣୁ ଏତେବେଳେ ଅଞ୍ଚଳର ସୀମା ସରହଦ ଆଉ ନିର୍ଦ୍ଦିଷ୍ଟ ହୋଇ ରହି ପାରେ ନାହିଁ । ପ୍ରଜନନ ଋତୁର ଶେଷ ଭାଗ ଆଡକୁ ଅଳ୍ପ ବୟସର ଯେଉଁ ଅଣ୍ଡିରାମାନେ

ବଡ଼ ଅଣ୍ଡିରଙ୍କ ଭୟରେ ଏ ଯାଏ ବାହାରେ ବାହାରେ ରହିଥିଲେ, ସେମାନେ ରମଣ କ୍ଷେତ୍ରରେ ଆସି ପହଞ୍ଚନ୍ତି । ସେତେବେଳକୁ ଅଧିକାଂଶ ହରିଣୀ ଫଳ ଯାଇ ସାରିଥାନ୍ତି । ଯେଉଁ ଅଳ୍ପ କେତେକ ମାଈ ଅଣ୍ଡିରଙ୍କ ସହିତ ମିଳିତ ହୋଇ ନ ଥାନ୍ତି ସେମାନଙ୍କର ଏହି ଅଳ୍ପ ବୟସର ହରିଣ ମାନଙ୍କ ସହିତ ମିଳନ ହୁଏ । ଏଥିପାଇଁ ଏହି ତରୁଣ ଅଣ୍ଡିରମାନଙ୍କ ଭିତରେ ଲଢ଼ାଇ ହୁଏ ନାହିଁ ।

ୟୁରୋପର ଲାଲ ମୃଗ ( Red deer ) ଙ୍କର ସମାଜ ଜୀବନ, ଆଞ୍ଚଳିକ ଆଧିପତ୍ୟ ଇତ୍ୟାଦି ସମ୍ବନ୍ଧରେ ବିଶଦ୍ ବିବରଣୀ ଦେବାର କାରଣ ଏହି ଯେ ଭାରତୀୟ ମୃଗମାନଙ୍କ ସମ୍ବନ୍ଧରେ ସେ ସବୁ ଦିଗ ପର୍ଯ୍ୟବେକ୍ଷିତ ହୋଇ ନାହିଁ ଓ ସେମାନଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ସାମାନ୍ୟ । ଯାହା ଜଣାପଡେ, କାଶ୍ମୀରର ହାଙ୍ଗଲ ( Hangul ), ବାରଶିଙ୍ଗା ଓ ସାଙ୍ଗାଇ ହରିଣ ( Brow-antlered deer ) ଲାଲ ମୃଗ ପରି ଅନୁରୂପ ସମାଜ-ଜୀବନ ଯାପନ କରନ୍ତି । ଏହି ହରିଣମାନଙ୍କ ମଧ୍ୟରେ ମାଈ ଦଳନେତ୍ରୀ, ତା' ସହିତ ତା'ର ଶାବକ ବାସ କରନ୍ତି, ଅଣ୍ଡିର କେବଳ ପ୍ରଜନନ ଋତୁ ଭିନ୍ନ ଅନ୍ୟ ସମୟରେ ଅଲଗା ରହନ୍ତି ।

ହାଙ୍ଗଲ, ଲାଲ ମୃଗର ଏକ ଜାତି । ଏହା କାଶ୍ମୀରରେ ଲାଲମୃଗ ପରି ସମଶୀତୋଷ୍ଣ-ଜଳବାୟୁରେ ଓ ପାର୍ବତ୍ୟ ଅଞ୍ଚଳରେ ବାସ କରେ । ହାଙ୍ଗଲ ହରିଣୀ ଓ ତା'ର ଶାବକ କ୍ଷୁଦ୍ର ଦଳ ଗଠନ କରି ସ୍ୱତନ୍ତ୍ର ଭାବେ ବାସ କରନ୍ତି । ଅଣ୍ଡିର ଶାବକ ତିନିବର୍ଷରେ ବୟଃପ୍ରାପ୍ତ ହୁଏ । ବୟଃପ୍ରାପ୍ତ ହେଲେ ମା'କୁ ଛାଡ଼ି ଚାଲିଯାଏ । ସେମାନେ ଏକାକୀ ରହନ୍ତି ବା କ୍ଷୁଦ୍ରକ୍ଷୁଦ୍ର ଦଳ ଗଠନ କରନ୍ତି । ପାହାଡ଼ର ନିମ୍ନ ଢାଲୁ ଅଂଶରେ ଅଣ୍ଡିର ଓ ମାଈମାନଙ୍କର ଶୀତ କାଳୀନ ଚରାଭୂଇଁ ଥାଏ । ପାହାଡ଼ର ଉଚ୍ଚ ଅଂଶରେ ଗ୍ରୀଷ୍ମକାଳୀନ ଚରାଭୂଇଁ ଥାଏ । ପ୍ରଜନନ ଋତୁରେ ଅଣ୍ଡିରମାନେ ମାଈମାନଙ୍କ ଶୀତକାଳୀନ ଚରାଭୂଇଁରେ ଆସି ଲୁଣ୍ଡ ହୁଅନ୍ତି । ଏହି ପ୍ରଜନନ ଋତୁ ଦୀର୍ଘକାଳ ସ୍ଥାୟୀ ନୁହେଁ । ପ୍ରଜନନ ପରେ ବଡ଼ ଅଣ୍ଡିରମାନେ ସ୍ଥାନ ଛାଡ଼ି ଚାଲିଯାନ୍ତି । ନୂଆ ଅଣ୍ଡିର ଆସି ମାଈଙ୍କ ସହିତ ରହନ୍ତି । ବିସ୍ତୃତ ଅଞ୍ଚଳରେ ମାତ୍ର ହାଙ୍ଗଲ ବାସ କରନ୍ତି

ଓ ସେମାନଙ୍କ ସଂଖ୍ୟା ଅଣ୍ଡିରାଙ୍କ ତୁଳନାରେ ଅଧିକ ହୋଇଥିବାରୁ ପ୍ରଜନନ ଋତୁରେ "ଗଣୀ ମହଲ" ଓ "ଅଞ୍ଚଳ" ବିଶେଷ ନିର୍ଦ୍ଦିଷ୍ଟ ଭାବେ ଜଣା ପଡ଼େ ନାହିଁ ।

ବାରଶିଙ୍ଗା ହରିଣମାନଙ୍କ ମଧ୍ୟରେ ଅଣ୍ଡିରମାନେ ମାଈଙ୍କଠାରୁ ଅଲଗା ରହନ୍ତି । ଏମାନେ ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ବାସ କରୁଥିବାରୁ ଲାଲ ମୃଗ ଓ ହାଙ୍ଗଲ ପରି ଏମାନଙ୍କର ପ୍ରଜନନ ଋତୁ ସେତେ ନିର୍ଦ୍ଦିଷ୍ଟ ନୁହେଁ । ମାଧ୍ୟ ପ୍ରଦେଶରେ ଏମାନେ ଡିସେମ୍ବର ଓ ମାର୍ଚ୍ଚମାସ ମଧ୍ୟରେ ରମଣ କରନ୍ତି । ପ୍ରଜନନର ଶୀର୍ଷ ସମୟ ହେଲା ଡିସେମ୍ବର ମଝିଠାରୁ ଜାନୁଆରୀ ମଝି । ଏତେବେଳେ ବଡ଼ ବଡ଼ ଶିଙ୍ଗାଳ ତିରିଶଟି ଯାଏ ମାଈ ଅଧିକାର କରି ଆଞ୍ଚଳିକ ଆଧିପତ୍ୟ ବିସ୍ତାର କରନ୍ତି । ମାତ୍ର ସେମାନଙ୍କର ଏତେବେଳର ଜୀବନ ଆଦୌ ଶାନ୍ତିମୟ ନୁହେଁ । କାରଣ, ଅଞ୍ଚଳ ସୀମାରେ ନବୀନ ବୟଃପ୍ରାପ୍ତ ଅଣ୍ଡିରମାନେ ଘୂରି ବୁଲୁଥାନ୍ତି । ବଡ଼ ଶିଙ୍ଗାଳ ଗୋଟିକ ସହିତ ଲଢେଇରେ ମଉଥିଲାବେଳେ ଅନ୍ୟ ଗୋଟିଏ ନବୀନ ଅଣ୍ଡିରା ତା'ର ସାମୟିକ ଅନୁପସ୍ଥିତିର ସୁଯୋଗ ନେଇଥାଏ ।

ସମ୍ବର ହରିଣ ଘନ ଜଙ୍ଗଲରେ ବାସ କରୁଥିବାରୁ ସେମାନଙ୍କର ରମଣ ସ୍ୱଭାବରେ କେତେକ ପ୍ରଭେଦ ଦେଖାଯାଏ । ଏକଜୁଟ ହୋଇଥିବା ମାଈମାନଙ୍କ ଉପସ୍ଥିତିରେ ବା ତାଙ୍କ ପାଇଁ ଅଣ୍ଡିର ମାନଙ୍କ ଭିତରେ ଲଢ଼ାଇ ହୁଏ ନାହିଁ । ଆଞ୍ଚଳିକ ଆଧିପତ୍ୟ ନେଇ ସେମାନଙ୍କ ଭିତରେ ଲଢ଼ାଇ ହୁଏ । ବିଜେତା ତା ଅଞ୍ଚଳର ମାଈ ମାନଙ୍କର ଅଧିକାରୀ ହୁଏ । ତା'ର ବୋବାଳି ଓ ତୀବ୍ର ଗନ୍ଧ ଦ୍ୱାରା ଆକୃଷ୍ଟ ହୋଇ ସେ ଅଞ୍ଚଳର ମାଈମାନେ ତା' ପାଖକୁ ଆସନ୍ତି । ମାଈ ଉପରେ ଆଧିପତ୍ୟ ପାଇଁ ଲଢାଇ ନ ହେବାର କାରଣ ସମ୍ଭବତଃ ଏହି ଯେ, ଘନ ଜଙ୍ଗଲରେ ମାଈମାନଙ୍କୁ ଅଧିକାର କରି ତାଙ୍କ ଉପରେ ଆଖି ରଖିବା ସୁବିଧା ନହେଁ । ସେଥିପାଇଁ ଲଢ଼ାଇ ଆଞ୍ଚଳିକ ଅଧିକାରରେ ପର୍ଯ୍ୟବସିତ ହୋଇଛି । ଶାବକମାନେ ମା' ହରିଣ ସହିତ ଦୀର୍ଘ କାଳଯାଏ ବାସ କରନ୍ତି । ଅଣ୍ଡିର ଶାବକ ବୟଃପ୍ରାପ୍ତ ହେଲା ପରେ ମା'କୁ ଛାଡ଼ି ଚାଲିଯାନ୍ତି ।

ଚିତଳ ହରିଣ ଜଙ୍ଗଲ ବାହାରେ ସୀମା ଅଞ୍ଚଳରେ ବାସ କରନ୍ତି । ମାଈ ମାନଙ୍କ ଉପସ୍ଥିତିରେ ସେମାନଙ୍କ ପାଇଁ ଅଣ୍ଡିର ମାନଙ୍କ ମଧ୍ୟରେ

ସମାଧେ ଟ ଲଢ଼ାଇ ହୁଏ । ମାତ୍ର ଚିତଳଙ୍କ ମଧ୍ୟରେ ମାଈ ଅଣ୍ଡିଗ ଅଲଗା ଅଲଗା ରହିବା ରୀତି ସେତେ ସ୍ପଷ୍ଟ ନୁହେଁ । କାରଣ ବର୍ଷର ସବୁ ସମୟରେ ଅଣ୍ଡିଗ ଓ ମାଈ ଏକାଠି ଥିବାର ଦେଖାଯାଏ ଏବଂ ବର୍ଷର ସବୁ ସମୟରେ ଶାବକ ଜାତ ହୁଅନ୍ତି ।

ସାନ ସାନ ହରିଣ ଯଥା, ପାଘ-ହରିଣ (hog-deer), କୁଟୁର (barking deer) ଓ କସ୍ତୁରୀ ମୃଗ (musk deer) ବଡ଼ ବଡ଼ ମୃଗଙ୍କ ପରି ଯୂଥ ଗଠନ କରନ୍ତି ନାହିଁ । ପାଘ-ହରିଣ ତିନୋଟିରୁ ଅଧିକ ସଂଖ୍ୟାରେ ଏକାଠି ବୁଲିବାର ଦେଖାଯାନ୍ତି ନାହିଁ ; ମାଈ ଅଣ୍ଡିଗ ସାଧାରଣତଃ ଅଲଗା ବାସ କରନ୍ତି । କୁଟୁର ଗୋଟି ଗୋଟିକିଆ, ଯୋଡ଼ି ଯୋଡ଼ି ବା ଗୋଟିଏ ଗୋଟିଏ ପାରିବାରିକ ଦଳରେ ଦେଖାଯାନ୍ତି । କୁଟୁର ଦଳରେ ଦଳପତି ଶିଙ୍ଗାଳ ହରିଣ, ତାର ସଙ୍ଗିନୀ, ଶାବକ ଓ ବର୍ଷିକିଆ ଛୁଆ ତାକୁ ଅନୁସରଣ କରନ୍ତି । ଅଣ୍ଡିଗ କୁଟୁର ବିବାଦପ୍ରିୟ ଓ ବର୍ଷର ଯେ କୌଣସି ସମୟରେ ଅନ୍ୟ ଅଣ୍ଡିଗ ସହିତ ଯୁଝେ । ଶାବକ ବର୍ଷକର ହେଲା ପରେ ବୟଃପ୍ରାପ୍ତ ହୁଅନ୍ତି ଓ ପରିବାର ଛାଡ଼ି ଗ୍ଭଲିଯାନ୍ତି ବା ପରିବାରରୁ ବିତାଡ଼ିତ ହୁଅନ୍ତି, କାରଣ ଅଣ୍ଡିଗ ଅନ୍ୟ କୌଣସି ବୟଃପ୍ରାପ୍ତ [illegible] ହ୍ୟ କରିପାରେ ନାହିଁ ।

ଛୁଆ ଜନ୍ମ କରିବା ବେଳ ଉପଗତ ହେଲେ ହରିଣୀ ଦଳ ଛାଡ଼ି ଆଡ଼ୁଆଳ ଥିବା ଏକ ସ୍ଥାନକୁ ଯାଇ ଶାବକ ପ୍ରସବ କ[illegible] ତା'ର ଶାବକକୁ ଦୁଇ ଦିନରୁ ପାଞ୍ଚଦିନ ପର୍ଯ୍ୟନ୍ତ ଦଳରେ ଲୁଚାଇ ରଖାଏ । ପିଲା ଏଥର ଚଲବୁଲ କରିବାକୁ ଲାଗେ । ତାପରେ ମାଈ, ସଦ୍ୟ ଜାତ ଶାବକ ଓ ପୂର୍ବ ବର୍ଷମାନଙ୍କର ଅପ୍ରାପ୍ତ ବୟସ ଶାବକ ପୁଣି ଏକାଠି ଦଳ ଗଠନ କରି ଚରିବୁଲନ୍ତି । ବହୁକାଳ ପର୍ଯ୍ୟନ୍ତ ଏପରିକି ବର୍ଷକର ହେଇଯାଏ ଶାବକ ମା'ଠାରୁ କ୍ଷୀରପାନ କରେ । ପୂର୍ବେ କୁହାଯାଇ ଅଛି, ଭାଲ ହରିଣ ଶାବକ ତିନି ବର୍ଷରେ ବୟଃପ୍ରାପ୍ତ ହୁଏ ।

ଭାରତୀୟ ହରିଣ ଶାବକମାନଙ୍କ ସମ୍ବନ୍ଧରେ ଉପଲବ୍ଧ ବିଷୟରେ ବିବରଣୀ ନାହିଁ । ଶାବକ ପ୍ରସବ କରିବା ପୂର୍ବେ ମା' ହରିଣୀ ଏକ ନିଭୃତ ସ୍ଥାନକୁ ଯାଇ ଛୁଆ ଜନ୍ମ କରେ । ସେମାନେ ଛୁଆକୁ ଲୁଚାଇ ରଖିବାକୁ

ଚେଷ୍ଟା କରନ୍ତି ବୋଲି ମନେ ହୁଏ । ବନ୍ଦୀ ଅବସ୍ଥାରେ ଚିତଲ ହରିଣୀ ଛୁଆକୁ ଏପରି ଲୁଗ୍ଲଇ ଦିଏ ଯେ ପ୍ରକୃତରେ ସେ କେଉଁଠି ଶୋଇଛି ଜଣାପଡ଼େ ନାହିଁ । ସକାଳେ ତା' ପାଖରେ ଛୁଆ ଦେଖିଥିବେ, ଉପରବେଳା ଘରିଟା ବେଳକୁ ସେ ତାକୁ କେଉଁଠି ଶୁଆଇ ପକାଇଥିବ ଜଣା ପଡ଼ିବ ନାହିଁ । ଏହିପରି ସେ ଆଠ ଦଶଦିନ ଯାଏ କରିଥାଏ । ସମ୍ବର, ବାରଶିଙ୍ଗା ଓ ଚିତଲ ହରିଣ ଶାବକ ଦୁଇବର୍ଷରେ ବୟଃପ୍ରାପ୍ତ ହୁଅନ୍ତି ।

# ହାଂଗଲ

ୟୁରୋପୀୟ ଲାଲ ମୃଗ (Red deer) କାଶ୍ମୀରର ହାଙ୍ଗଲ ମୃଗର ଏକ କିସମ ମାତ୍ର । ଲାଲ ମୃଗର ବୈଜ୍ଞାନିକ ନାମ ସେରଭସ ଇଲଫାସ ଇଲଫାସ (Cervus elaphus elaphus) ; ହାଙ୍ଗଲର ବୈଜ୍ଞାନିକ ନାମ—ସେରଭସ ଇଲଫାସ ହାଙ୍ଗଲୁ (Cervus elaphas hanglu)

ସ୍କନ୍ଧଠାରେ ହାଙ୍ଗଲର ଉଚ୍ଚତା 120 ରୁ 125 ସେଣ୍ଟିମିଟାର (48-50 ଇଞ୍ଚ) । ବେଶ୍ ବଡ଼ ଶିଙ୍ଗାଳ ଓଜନରେ 180 କିଲୋଗ୍ରାମ (400 ପାଉଣ୍ଡ) ହୋଇପାରେ । ବୟଃପ୍ରାପ୍ତ ମୃଗର ଶିଙ୍ଗର ସାଧାରଣ ଲମ୍ବ 100 ସେଣ୍ଟିମିଟାର (40 ଇଞ୍ଚ) ହୁଏ । ସବୁଠାରୁ ଦୀର୍ଘତମ ଶିଙ୍ଗ (ଶିଙ୍ଗର ବାହାରପଟୁ ମାପିଲେ) 128.3 ସେଣ୍ଟିମିଟାର (50½ ଇଞ୍ଚ) ହେବାର ଦେଖାଯାଇଅଛି ।

ହାଙ୍ଗଲର ଦେହର ବର୍ଣ୍ଣ ଫିକା ବାଦାମୀରୁ ଘନ ବାଦାମୀ । ଓଷ୍ଠ, ଚିବୁକ, ପେଟର ତଳ ଓ ନିତମ୍ବ ମଳିନ ଧଳା । ପିଚ୍ଛର ଧଳା ଅଂଶ ଲାଞ୍ଜର ବିଶେଷ ଉପରକୁ ଉଠି ନଥାଏ ଏବଂ ଲାଞ୍ଜର ମୂଳ ପର୍ଯ୍ୟନ୍ତ, ବେଳେ ବେଳେ ଲାଞ୍ଜ ଆଗ ପର୍ଯ୍ୟନ୍ତ ବିସ୍ତୃତ ଏକ ଓସରିଆ ଘନ ରେଖା ଦ୍ୱାରା ଆର ପାଖ ପିଚ୍ଛର ଧଳା ଅଂଶ ଠାରୁ ଅଲଗା ରହିଥାଏ । ଗ୍ରୀଷ୍ମ କାଳରେ ଦେହର ସାଧାରଣ ବର୍ଣ୍ଣ ଫିକା । ଶୀତକାଳରେ ଘନ ଲୋମ ଉଠେ ଓ ଦେହର ବର୍ଣ୍ଣ ଘନ ହୁଏ ।

ବଡ଼ ଅଣ୍ଡିର ହାଙ୍ଗଲ ବେଶ କଳା ବା ଗାଢ଼-ବାଦାମୀ । ଶାବକମାନଙ୍କ ଦେହରେ ଧଳା ଟିପଟିପିଆ ଚିହ୍ନ ଥାଏ । ବୟସ୍କା ହରିଣୀ ଦେହରେ ଧଳା ଫୁଟ ଫୁଟିଆ ଦାଗ ଦେଖିବାକୁ ମିଳେ । ଅଣ୍ଡିରର ମୁଣ୍ଡରେ ଶାଖା ମେଲିଥିବା



( ଚିତ୍ର ନଂ 1୯0, ହାଙ୍ଗଲ )

ସୁନ୍ଦର ଶିଙ୍ଗ ବିଭିନ୍ନ ଆକାର ଧାରଣ କରିଥାଏ । ସାଧାରଣ ହାଙ୍ଗଲର ପ୍ରତ୍ୟେକ ଶିଙ୍ଗରେ ପାଞ୍ଚଟି କରି ତିଖ । ଛେ ଜଟି ଯାଏ ତିଖ ଥିବା ଶିଙ୍ଗ ମଧ୍ୟ ଦେଖା ଯାଇଛି ; ଚୌଦ ତିଖ କ୍ୱଚିତ୍ ଦେଖାଯାଏ, ତେର ଓ ଏଗାର ତିଖ ଅସାଧାରଣ ନୁହେଁ ।

ହାଙ୍ଗଲ କାଶ୍ମୀର ଉପତ୍ୟକାର ଉତ୍ତରାଞ୍ଚଳରେ ବିଶେଷ କରି ଡାଚିଗାନ ଅଭୟାରଣ୍ୟ ( Dachigan sanctuary ) ରେ ଦେଖିବାକୁ ମିଳେ । ଏହା ମୁଖ୍ୟତଃ ଜଙ୍ଗଲବାସୀ । ହାଙ୍ଗଲ ଏକାକୀ ବା କ୍ଷୁଦ୍ର ପାରିବାରିକ ଦଳରେ ଦେଖାଯାନ୍ତି । ଏମାନେ କୌଣସି ଏକ ଅଞ୍ଚଳରେ

ବେଶୀ କାଳ ରହନ୍ତି ନାହିଁ । ଚରିବା ପାଇଁ ଜଙ୍ଗଲରୁ ଜଙ୍ଗଲକୁ ଭ୍ରମଣ କରୁଥାନ୍ତି । ଶୀତକାଳରେ ସେମାନେ ପାହାଡ଼ର ନିମ୍ନାଂଶରେ ବିତାନ୍ତି । ମାର୍ଚ୍ଚ, ଏପ୍ରିଲ ମାସରେ ଅଣ୍ଡିରଙ୍କ ଶିଙ୍ଗ ଖସିପଡେ । ତା'ପରେ ଏହି ଅଣ୍ଡିରମାନେ ପାହାଡ଼ ଉପରକୁ ଉଠି ତୁଷାର ରେଖା (Snow line) ନିକଟରେ ରୁଣ୍ଡ ହୁଅନ୍ତି । ଗ୍ରୀଷ୍ମକାଳରେ ସେମାନେ 2750-3650 ମିଟାର (9000-12000 ଫୁଟ) ଉଚ୍ଚତାରେ ବାସ କରନ୍ତି । ସେପ୍ଟେମ୍ବର ଶେଷ ବେଳକୁ ଅଣ୍ଡିରମାନଙ୍କର ନୂଆ ଶିଙ୍ଗ ଶକ୍ତ ହୋଇ ଯାଇଥାଏ । ସେମାନେ ଗର୍ଜନ କରିବାକୁ ଆରମ୍ଭ କରନ୍ତି ଓ ଏକ ଆରେକ ସହିତ ଲଢ଼ିବାକୁ ତିଆର ହୁଅନ୍ତି । ଅକ୍ଟୋବର ମାସ ଆରମ୍ଭରେ ସେମାନେ ମାଈ ହାଙ୍ଗଲଙ୍କ ସହିତ ଆସି ମିଶନ୍ତି ଓ ସେମାନଙ୍କ ଉପରେ ଆଧିପତ୍ୟ ପାଇଁ ପରସ୍ପର ମଧ୍ୟରେ ଲଢ଼ାଇ କରନ୍ତି । ଗୋଟିଏ ଗୋଟିଏ ବଡ ଶିଙ୍ଗାଳ ଅନେକଗୁଡ଼ିଏ ମାଈଙ୍କୁ ଆୟତ୍ତ କରିନିଅନ୍ତି । ସେମାନଙ୍କ ଉପରେ ଆଧିପତ୍ୟ ନେଇ ମଝିରେ ମଝିରେ ଅଣ୍ଡିରଙ୍କ ଭିତରେ ଲଢ଼େଇ ଲାଗି ରହିଥାଏ । ନଭେମ୍ବର ମାସରେ ଯେତେବେଳେ ଶୁଖିଲା ପତ୍ର ଗଛମୂଳେ ପଡ଼ି ଜମା ହୁଏ, ସେତେବେଳେ ଅଣ୍ଡିରମାନେ ମାଈମାନଙ୍କୁ ଛାଡ଼ି ଉଚ୍ଚ ଅଞ୍ଚଳରେ ଥିବା ସବୁଜ ତୃଣଭୂମି ବା ବନ୍ୟ ବାଦାମ ଗଛ ଜଙ୍ଗଲକୁ ଚାଲିଯାନ୍ତି । ପ୍ରବଳ ଶୀତ ବେଳେ ହାଙ୍ଗଲମାନେ ନିମ୍ନ ଅଂଶକୁ ଓହ୍ଲାଇ ଆସିଥାନ୍ତି । ବସନ୍ତ ଋତୁ ଆରମ୍ଭରେ ସେମାନେ ନୂଆକରି ଅଙ୍କୁରିତ ହେଉଥିବା ଘାସ ଓ ମୁକୁଳ ଧରୁଥିବା ଶଙ୍କୁ ବୃକ୍ଷ (larches) ଚରିବାକୁ ଆହୁରି ନିମ୍ନଭୂମିକୁ ଆସନ୍ତି । ଏପ୍ରିଲ ମାସରେ ମାଈ ହାଙ୍ଗଲ ଶାବକ ପ୍ରସବ କରେ ।

ହାଙ୍ଗଲମାନଙ୍କର ସଂଖ୍ୟା ଦ୍ରୁତ ବେଗରେ ହ୍ରାସ ପାଇବାରେ ଲାଗିଛି । 1947 ସାଲରେ କାଶ୍ମୀର ଉପତ୍ୟକାରେ ସେମାନଙ୍କର ସଂଖ୍ୟା 2,000 ଥିଲା ବୋଲି ହିସାବ କରଯାଇଥିଲା । ତାପରେ ଆରମ୍ଭ ହେଲା ପାକିସ୍ଥାନ-ଭାରତ ଯୁଦ୍ଧ । ସୈନିକମାନେ ମନଇଚ୍ଛା ସେମାନଙ୍କୁ ଶିକାର କଲେ । ତା' ସାଙ୍ଗକୁ ଚୋର ଶିକାରୀଙ୍କ ଦୌରାତ୍ମ୍ୟ ସବୁବେଳେ ଲାଗି ରହିଛି । ଉଚ୍ଚ ପାହାଡ଼ ଅଞ୍ଚଳରେ ମଧ୍ୟ ଗୃହପାଳିତ ପଶୁ ଚରିବାକୁ ଯାଉଥିବାରୁ ହାଙ୍ଗଲର ଖାଦ୍ୟାଭାବ ପଡ଼େ । ଏ ସବୁ କାରଣରୁ ହାଙ୍ଗଲ ବଂଶ ଦ୍ରୁତ ଗତିରେ ଲୋପ ପାଇବାକୁ ଲାଗିଲା । 1969 ପୂର୍ବେ ହୋଇଥିବା

ଗଣନାରେ ସେମାନଙ୍କ ସଂଖ୍ୟା 280କୁ କମି ଯାଇଥିବାର ଲକ୍ଷ୍ୟ କରଗଲ । ମୋଟ ଉପରେ କାଶ୍ମୀରର ସୁନ୍ଦର ହାଙ୍ଗଲ ବା ହାଙ୍ଗୁଲ ହରିଣ ବର୍ତ୍ତମାନ ଦ୍ରୁତଗତିରେ ଲୋପ ପାଇବା ଅବସ୍ଥାରେ ପହଂଚିଛି ।

ବିଭିନ୍ନ ଭଷାରେ ହାଙ୍ଗଲର ନାମ– କାଶ୍ମିରୀ–ହାଙ୍ଗଲ, ହାଙ୍ଗୁଲ, ହୋଙ୍ଗଲୁ (ଅର୍ଣ୍ଣିଗ), ମାନ୍‌ୟାମାର (ମାଛ) ହିନ୍ଦି–ବାରଶିଙ୍ଗା ; ଇଂରଜୀ– "କାଶ୍ମୀର ବାରଶିଙ୍ଗ" (Kashmir barsingh), "କାଶ୍ମୀର ଶି ଗାଲ" (Kashmir stag), ହାଂଗୁଲ (Hangul), ବୈଜ୍ଞାନିକ ନାମ Cervus elaphus hanglu wagner ।

ତିବତର ଚୁଂବି ଉପତ୍ୟକା ଓ ଆଖପାଖର ଭୁଟାନ ଉପତ୍ୟକାରେ ଆଉ ଏକ ଜାତି ମୃଗ ବାସ କରେ । ଏହାକୁ ସୋଉ (Shou) କହଂତି । ବୈଜ୍ଞାନିକ ନାମ Cervus elaphus wallichi cuvier । ଏହା ହାଂଗଲ ଠାରୁ ବେଶ ବଡ଼ । କାନ୍ଧଠାରେ ଉଚ୍ଚତା ପ୍ରାୟ 140-150 ସେଣ୍ଟିମିଟାର (4½-5 ଫୁଟ) । ଏହାର ଶିଂଗ ହାଂଗଲର ଶିଂଗଠାରୁ ଅଧିକ ଲମ୍ବ ଓ ସ୍ଥୂଳ ଏବଂ ଶିଂଗର କଡ଼ି ଶାଖା (beam) ତୃତୀୟ ଶାଖା (trez line) ଉପରେ ଆଗଆଗକୁ ବେଶ୍ ବଙ୍କେଇ ହୋଇ ବାଙ୍କି ଯାଇଥାଏ ।

# ସାଂଗାଇ ହରିଣ

ସାଂଗାଇ ଗୋଟିଏ ସୁନ୍ଦର ହରିଣ । ତଳୁ କାନ୍ଧଯାଏଁ ଉଚ୍ଚରେ ହୁଏ ପ୍ରାୟ 120 ସେଂଟିମିଟାର (4 ଫୁଟ) ; ମାଇ ହରିଣ ଅର୍ଣ୍ଣିଗ ଠାରୁ ସାନ । ସାଂଗାଇ ହରିଣର ଶିଂଗକୁ ସାଧାରଣତଃ ଭ୍ରୂ–ଶାଖା (brow-antler) ମୂଳରୁ ମୁଖ୍ୟ କଡ଼ି–ଶାଖା (beam) ପର୍ଯ୍ୟନ୍ତ ମପାଯାଏ । ତଦନୁସାରେ ଏମାନଙ୍କର ଶିଂଗ ସର୍ବାଧିକ ଲମ୍ବରେ 107 ସେଂଟିମିଟାର (42 ଇଞ୍ଚ) ହୁଏ । 90 ସେଂଟିମିଟାର (35 ଇଞ୍ଚ) ଲମ୍ବର ଶିଂଗ ମଧ୍ୟ ବେଶ ବଡ଼ ବୋଲି ଧରଯାଏ । ବର୍ମାର ସାଂଗାଇମାନଙ୍କର ଶିଂଗ ସବୁଠୁ ବଡ଼ ଓ ଲମ୍ବାରେ 113 ସେଂଟିମିଟାର (44½ ଇଞ୍ଚ) ଯାଏ ହେବାର ଦେଖାଯାଇଅଛି । ଖୁବ୍

କ୍ୱଚିତ୍ ମୁଖ୍ୟ କଡ଼ି ଶାଖ ଚଟାଳିଆ ଓ ଓସାରିଆ ହୋଇ ଯାଇ କେତେକ ପରିମାଣରେ ଗ୍ରମଚ ଆକାର ଧାରଣ କରିଥାଏ ଏବଂ ସାଧାରଣତଃ ଛ'ଟି ଡିଖ ସ୍ଥାନରେ ବାରଟି ଡିଖ ଥାଏ ।



( ଚିତ୍ର ନଂ 131, ସାଂଗାଇ ହରିଣ )

ସାଂଗାଇର ଦେହ ଖୁବ୍ ଲୋମଶ ନୁହେଁ । ଲୋମ ରୁକ୍ଷ । ଅଣ୍ଡିରା-ମାନଙ୍କର ଦେହ କଳା-ବାଦାମୀ ବା ପ୍ରାୟ କଳା । ମାଈର ବର୍ଣ୍ଣ ଫିକା ହଳଦିଆ ବାଦାମୀ । ଶାବକମାନଙ୍କର ଦେହରେ ଟିପିଟିପିଆ ଚିହ୍ନ ଥାଏ । ଋତୁ ଅନୁସାରେ ସାଂଗାଇ ହରିଣର ବର୍ଣ୍ଣରେ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଶୀତଋତୁରେ ବର୍ଣ୍ଣ କଳା-ବାଦାମୀ ଓ ଗ୍ରୀଷ୍ମକାଳରେ ହଳଦିଆ-ବାଦାମୀ ।

ତିନି କିସମର ସାଂଗାଇ ଦେଖାଯାଂନ୍ତି । କେବଳ ମଣିପୁର ରାଜ୍ୟରେ ଯେଉଁ ସାଂଗାଇ ବାସ କରଂନ୍ତି ସେମାନଙ୍କର ବୈଜ୍ଞାନିକ ନାମ Cervus eldi eldi Mc Clelland । ମଣିପୁରୀ ଭାଷାରେ ଏହା 'ସାଂଘାଇ'

ନାମରେ ପରିଚିତ । ଇମ୍ଫାଲ–ବର୍ମା ରାସ୍ତାରେ ଇମ୍ଫାଲ ଠାରୁ ପ୍ରାୟ ୪୫ କିଲୋମିଟାର ଦୂରରେ ଲଗଟାକ୍ ହ୍ରଦ ଅବସ୍ଥିତ । ଏହି ହ୍ରଦର ଆୟତନ ଅନିୟମିତ, ବଢ଼ୁଥାଏ, ଛିଡୁଥାଏ । ଏଠାରେ ଶୀତକାଳରେ ଦୂର ଦୂରାନ୍ତରରୁ ଆସି ନାନାଜାତି ପକ୍ଷୀ ପଡ଼ନ୍ତି ବୋଲି ହ୍ରଦଟିର ନାମ ଡାକ ଅଛି । ହ୍ରଦର ଜଳ ଆଉ ସ୍ୱଚ୍ଛ ନୁହେଁ ; କେଶୀ ଭାଗ ଜଳା-ଭୂମିରେ ପରିଣତ ହୋଇଅଛି । ଖତୀର ( humus ) ଓ ମୃତ ଉଦ୍ଭିଦର ଏକ ମୋଟା ଆସ୍ତରଣ ପାଣି ଉପରେ ଭସୁଥାଏ; ସେଥିର ପାଞ୍ଚ ଭାଗରୁ ଚାରିଭାଗ ଥାଏ ପାଣିରେ ବୁଡ଼ି ଓ ଏକ ଭାଗ ପାଣି ଉପରେ । ମଣିପୁରୀମାନେ ଏହାକୁ "ଫୁମ୍‌ଡ଼ି" ବୋଲି କହନ୍ତି । ଏହା ଲଗଟାକ୍ ହ୍ରଦର ଗୋଟିଏ କୋଣରେ ପ୍ରାୟ 26 ବର୍ଗ କିଲୋମିଟାର ସ୍ଥାନ ଅଧିକାର କରିଅଛି । ଫୁମ୍‌ଡ଼ି ସମ୍ଭବତଃ ଏକମାତ୍ର ପ୍ଲାବମାନ ଅଭୟାରଣ୍ୟ ( floating sanctuary ) । ଏହାର ନାମ କାଇବୁଲ ଲମଜାଓ ( Keibul Lamjao ) ଅଭୟାରଣ୍ୟ । ଏହି ସ୍ଥାନ ସାଙ୍ଗାଇ ହରିଣର ପ୍ରଧାନ ବାସ । ସନ୍ତ ସନ୍ତିଆ ଭୂମିରେ ବାସ କରୁଥିବାରୁ ଏମାନଙ୍କର ଖୁରା ଅପେକ୍ଷାକୃତ ଓସାରିଆ ଓ ପଛ ଗୋଡ଼ର 'ଅଶ୍ୱ ଗୁଲ୍‌ଫ୍' ( pastern ) ପରିବର୍ତ୍ତିତ ହୋଇଅଛି । ଏହା ଲୋମଶ ନ ହୋଇ ଶିଙ୍ଗଦ୍ୱାରା ଗଠିତ ଓ ଚାଲିଲା ବେଳେ ତଳେ ଲାଗେ । ବର୍ମାରେ ବାସ କରୁଥିବା ସାଙ୍ଗାଇର 'ଅଶ୍ୱଗୁଲ୍‌ଫ୍' ସ୍ଥାନରେ ଲୋମ ରହିଥାଏ । ବର୍ମାରେ ସାଙ୍ଗାଇକୁ 'ଟାମିନ୍' କହନ୍ତି । ଏହାର ବୈଜ୍ଞାନିକ ନାମ Cervus eldithamin ( Thomas ) ଟାମିନ୍ ଟେନାସେରିମ, ଶ୍ୟାମ ଓ ସମ୍ଭବତଃ ମାଲୟ ଉପଦ୍ୱୀପରେ ମଧ୍ୟ ବାସ କରନ୍ତି । ଅନ୍ୟ ଗୋଟିଏ କିସମର ସାଙ୍ଗାଇ ଶ୍ୟାମ, ଅନାମ ଓ ହାଇନାନ ଅଞ୍ଚଳରେ ଦେଖାଯାନ୍ତି । ଏହାର ବୈଜ୍ଞାନିକ ନାମ ( Cervus eldi siamensis Lydekker )

ସାଙ୍ଗାଇର ଶିଙ୍ଗ ଦେଖିବାକୁ ଖୁବ୍ ସୁନ୍ଦର । ଶିଙ୍ଗର ବୃନ୍ତ (pedicel) ମୁଣ୍ଡରେ ପାଖାପାଖି ରହିଥାଏ ଓ ପ୍ରାୟ ସିଧା ଉପରକୁ ଉଠି ଯାଇଥାଏ । କଡ଼ରୁ ଦେଖିଲେ ଶିଙ୍ଗ ପ୍ରାୟ ବୃତ୍ତାକାର ମନେ ହୁଏ । ଭ୍ରୂ-ଶାଖା ( brow tine ) ର ଅଗ୍ରଭାଗରୁ କଡ଼ିଶାଖା ( beam ) ପର୍ଯ୍ୟନ୍ତ ଶିଙ୍ଗ ଗୋଟିଏ

ବକ୍ରରେଖାରେ ଖିଲଣ ସଦୃଶ୍ୟ ଉପରକୁ ଉଠି ଯାଇଥାଏ । ପ୍ରତି ଶିଙ୍ଗରେ ତୀକ୍ଷ୍ଣ ସଂଖ୍ୟା ଦୁଇ ବା ତିନିରୁ ଆଠ ବା ଦଶ ହୋଇପାରେ । ସାଙ୍ଗାଇର ଦ୍ୱିତୀୟ ବର୍ଷରେ ଶିଙ୍ଗ ଉଠେ ଓ ସାତବର୍ଷ ବେଳକୁ ପୂର୍ଣ୍ଣ ଗଠିତ ହୋଇଥାଏ ।

ସାଂଗାଇ ଘନ ଜଙ୍ଗଲରେ ରହନ୍ତି ନାହିଁ । ସେମାନେ ଖୋଲା ଜାଗାରେ ରହିବାକୁ ଭଲ ପାନ୍ତି । ସେମାନେ କ୍ଷୁଦ୍ର ଦଳରେ ବୁଲନ୍ତି । ସକାଳେ ଓ ଅପରବେଳା ଚରନ୍ତି; ଖରବେଳେ ଛାଇରେ ବିଶ୍ରାମ ନିଅନ୍ତି । ସନ୍ଧ୍ୟାପରେ ପୁଣି ଚରି ବାହାରନ୍ତି ଏବଂ ନିକଟବର୍ତ୍ତୀ କ୍ଷେତ୍ରରେ ପଶନ୍ତି । ସେମାନଙ୍କର ଗତି ଦ୍ରୁତ ଓ ଦୃଷ୍ଟିଶକ୍ତି ତୀକ୍ଷ୍ଣ ।

ଅଗଷ୍ଟ ମାସର ମଝିବେଳକୁ ଅଣ୍ଡିରା ସାଙ୍ଗାଇର ଶିଙ୍ଗ ଖସି ପଡେ । ଡିସେମ୍ବର ଶେଷକୁ ନୂଆ ଶିଙ୍ଗ ଟାଣ ହୋଇଯାଏ । ମାର୍ଚ୍ଚ-ଏପ୍ରିଲ ମାସରେ ସାଙ୍ଗାଇ ଯୋଡଯାନ୍ତି । ରମଣ ପରେ ଶିଙ୍ଗାଳ ଦଳଛାଡ଼ି ଚାଲିଯାଏ । ଗର୍ଭାଧାରଣ କାଳ 239 ରୁ 256 ଦିନ । ସାଧାରଣତଃ ଥରକେ ଗୋଟିଏ ଶାବକ ଜାତହୁଏ । ଅକ୍ଟୋବର ମାସରେ ସାଧାରଣତଃ ଛୁଆ ଜନ୍ମ ହୁଅନ୍ତି ।

ସ୍ୱର୍ଗତ ପ୍ରକୃତି ବିଜ୍ଞାନବିତ୍ ଇ. ପି. ଗି ( E. P. Gee ) ଯେଉଁ ସଂଖ୍ୟା ଗଣନା କରିଥିଲେ ( 1969 ପୂର୍ବରୁ) ମାତ୍ର ଶହେଟି ସାଙ୍ଗାଇ ମଣିପୁରରେ ଥିବାର ଜଣା ପଡ଼ିଥିଲା । ଏବର (1975) ଏକ ଗଣନାରୁ ଜଣାପଡ଼େ ସେମାନଙ୍କ ସଂଖ୍ୟା ପ୍ରାୟ 50 ରେ ପହଞ୍ଚିଛି । ମଣିପୁରର ଏହି ମନୋରମ "ନୃତ୍ୟଶୀଳ ମୃଗ" ( manipur dancing deer ) ର ସଂରକ୍ଷଣ ଲାଗି ଉଦ୍ୟମ ହେଉଅଛି । ବର୍ମାର ଟାମିନ୍‌ଙ୍କ ସଂଖ୍ୟା ମଧ୍ୟ ଦ୍ରୁତଗତିରେ ହ୍ରାସ ପାଇବାରେ ଲାଗିଛି ।

ସାଙ୍ଗାଇର ବୈଜ୍ଞାନିକ ନାମ ପୂର୍ବେ କୁହାଯାଇ ଅଛି; Cervus eldi eldi McCelland । ଇଂରାଜୀରେ ଏହା 'ଥାମିନ" (Thamin) ଓ "ଭୁରୁଶିଙ୍ଗା ହରିଣ" ( Brown-antlered deer ) ନାମରେ ପରିଚିତ ।

# ବାରଶିଂଗା

ବାରଶିଙ୍ଗା ହରିଣର ବର୍ଣ୍ଣ ବାଦାମୀରୁ ହଳଦିଆ-ବାଦାମୀ । ଘେମ ପଶମ ପରି । ଅଣ୍ଡିରାଙ୍କ ମୁଣ୍ଡରେ ଚୂଳଥାଏ । ସେମାନଙ୍କର ବର୍ଣ୍ଣ କଳାସିଆ ଖରଦିନେ ମାଈ ଓ ଅଣ୍ଡିରା ଉଭୟଙ୍କର ବର୍ଣ୍ଣ ଫିକା ଏବଂ କେତେକଙ୍କ ଦେହରେ ଟିପ୍ ଟିପ୍ ଧଳା ଚିହ୍ନଥାଏ । ଛୁଆ ବାରଶିଙ୍ଗା ମାନଙ୍କ ଦେହରେ ମଧ୍ୟ ଧଳା ଟିପିଟିପିଆ ଚିହ୍ନଥାଏ । ମଧ୍ୟପ୍ରଦେଶର ବାରଶିଙ୍ଗା ହରିଣ ଦେଖିବାକୁ ସବୁଠାରୁ ସୁନ୍ଦର ହୋଇଥାନ୍ତି । ଗୋଟିଏ ଉତ୍ତମ ବୃଦ୍ଧିପ୍ରାପ୍ତ ଅଣ୍ଡିରା କାନ୍ଧଠାରେ 135 ସେଣ୍ଟିମିଟାର (54 ଇଞ୍ଚ) ଉଚ୍ଚ ହୁଏ ଏବଂ ତା'ର ଓଜନ ହୁଏ 170-180 କିଲୋଗ୍ରାମ (370-400) ପାଉଣ୍ଡ । ବକ୍ର ରେଖାରେ ମାପିଲେ ଶିଙ୍ଗ ସାଧାରଣତଃ 75 ସେଣ୍ଟିମିଟାର (30 ଇଞ୍ଚ) ଲମ୍ବ ହୁଏ । ସବୁଠାରୁ ଲମ୍ବା ଶିଙ୍ଗ 104.1 ସେଣ୍ଟିମିଟାର (41 ଇଞ୍ଚ) ହେବାର ଦେଖାଯାଇ ଅଛି ।

ବାରଶିଙ୍ଗା ହରିଣର ଶିଙ୍ଗର ଆକାରରେ ଅନେକ ତାରତମ୍ୟ ଦେଖିବାକୁ ମିଳେ ତନ୍ମଧ୍ୟରୁ ଦୁଇ ପ୍ରକାର ଆକାର ସ୍ୱତନ୍ତ୍ର । ଗୋଟିଏ ପ୍ରକାର ଶିଙ୍ଗ ଗଠନରେ କଡ଼ିଶାଖା (beam) ପଛକୁ ବାଙ୍କିଯାଇ ପୁଣି ଆଗକୁ ବଙ୍କାଇଥାଏ । ଏହା ଫଳରେ ମୁଣ୍ଡ ଉପରେ ତାଖଗୁଡ଼ିକ ଏକ ଧାଡ଼ିରେ ରହେ । କଡ଼ିଶାଖର ମଧ୍ୟଭାଗ ଠାରୁ ତେଣିକି ମଧ୍ୟେ ମଧ୍ୟେ ଶାଖା ବାହାରିଥାଏ । ପ୍ରଥମ ଶାଖାର ନିଜର ସ୍ୱତନ୍ତ୍ର ପ୍ରରୋହ (shoot) ଥାଏ । ଦ୍ୱିତୀୟ ପ୍ରକାର ଶିଙ୍ଗ ଗଠନ ଆହୁରି ସୁନ୍ଦର । ସେଥିରେ ଭ୍ରୂଶାଖ (brow tine) କଡ଼ିଶାଖ (beam) ସହିତ ସମକୋଣ ଗଠନ କରିଥାଏ । କଡ଼ିଶାଖ ଆଗକୁ ତୋରଣ ପରି ବଙ୍କାଇ ଥିବାରୁ ଶିଙ୍ଗ ଅଧିକ ଆକ୍ରାନ୍ତରେ ମାଡ଼ିଥାଏ । କଡ଼ିଶାଖ ଯେଉଁଠି ଶାଖା ପକାଇଥାଏ ସେଠାରେ ତାହା ପ୍ରାୟ ଆନୁଭୂମିକ ବକ୍ର ରେଖାରେ ଘେର ମାରିଥାଏ ଓ ସେଥିରୁ ଅନେକଗୁଡ଼ିଏ ଭୂଲମ୍ବ ତାଖ ବାହାରିଥାଏ । ବାରଶିଙ୍ଗାର ପ୍ରତ୍ୟେକ ଶିଙ୍ଗରେ 10ରୁ 14ଟି ତାଖଥାଏ, ବେଳେବେଳେ କୋଡ଼ିଏଟି ତାଖ ମଧ୍ୟ ଦେଖାଯାଇ ଅଛି ।

ବାରଶିଂଗା ହରିଣ କେବଳ ଭାରତରେ ଦେଖଯାନ୍ତି । ଦୁଇ କିସମର ବାରଶିଂଗା ଅଛନ୍ତି । ସେମାନଙ୍କର ବୈଜ୍ଞାନିକ ନାମ Cervus duvauceli duvauceli ଓ Cervus duvauceli branderi । ପ୍ରଥମ କିସମ ଅର୍ଥାତ୍ 'ଡୁଭଉସେଲି' କିସମ ତରାଇ, ଉତ୍ତର ପ୍ରଦେଶ, ଆସାମ



( ଚିତ୍ର ନଂ 131 ବାରଶିଙ୍ଗା

ଓ ପଶ୍ଚିମ ବଂଗର ସୁନ୍ଦର ବନର ସନ୍ତସନ୍ତିଆ ସ୍ଥାନରେ ବାସ କରନ୍ତି । ସେମାନଙ୍କର କରୋଟି ( skull ) ବଡ ଓ ଖୁରା ଓସାରିଆ । ଦ୍ୱିତୀୟ କିସମ ଅର୍ଥାତ୍ 'ବ୍ରାଣ୍ଡେରି' କିସମ ମଧ୍ୟପ୍ରଦେଶର ଶକ୍ତ ଭୂମିରେ ବାସ କରନ୍ତି । ଡୁଭଉସେଲି କିସମ ତୁଳନାରେ ଏମାନଙ୍କର କରୋଟି କ୍ଷୁଦ୍ର ଏବଂ ଖୁରା ଛୋଟ । ପ୍ରାୟ ପଚାଶ ବର୍ଷ ପୂର୍ବେ ବାରଶିଂଗା ହରିଣ ସମ୍ବଲପୁର ଜିଲ୍ଲାରେ ଦେଖାଯାଉଥିଲେ; ଆଉ ନାହାନ୍ତି ।

ତରାଇ ଅଞ୍ଚଳରେ ବାରଶିଙ୍ଗା ସଉସଉଁଆ ସ୍ଥାନ ଭିତରେ ସଦାବେଳେ ରହେ; କ୍ୱଚିତ୍ ପଦାକୁ ବାହାରେ । ଆସାମର ଉଚ୍ଚଭୂମିରେ ସେମାନେ ପାଣି ନିକଟରେ ବାସ କରନ୍ତି । ମଧ୍ୟପ୍ରଦେଶରେ ବାରଶିଂଗା ଜଂଗଲ ପାଖରେ ଖୋଲା ଘାସ ଭୂମିରେ ରହନ୍ତି ଏବଂ ଚିତଲ ହରିଣ ତୁଳନାରେ ଜଳ ଉପରେ କମ୍ ନିର୍ଭର କରନ୍ତି । ବାରଶିଂଗାମାନେ ଦଳ ବାନ୍ଧି ରହନ୍ତି । ତରାଇ ଅଞ୍ଚଳରେ ପୂର୍ବେ ଏମାନେ ହଜାର ହଜାର ସଂଖ୍ୟାରେ ଦେଖା ଯାଉଥିଲେ । ସମ୍ବର ହରିଣପରି ବାରଶିଙ୍ଗା ବିଶେଷ ରାତ୍ରିଚର ନୁହେଁ । ସେମାନେ ବେଶ ସକାଳ ହେଲେଯାଏ ଚରନ୍ତି; ପୁଣି ଉପର ବେଳାକୁ ଚରିବାହାରନ୍ତି । ଦିନ ବେଳା ସେମାନଙ୍କର ବିଶ୍ରାମର ସମୟ । ସେମାନଙ୍କର ଦୃଷ୍ଟି ଓ ଶ୍ରବଣ ଶକ୍ତି ମଧ୍ୟମ ଧରଣର; ଘ୍ରାଣ ଶକ୍ତି ପ୍ରବଳ । ଭୟଭୀତ ହେଲେ ଦଳଟାଯାକ ଏକପ୍ରକାର ଚିରିଚିରିଆ ମୃଦୁ ଚିତ୍କାର କରନ୍ତି ଓ ଦୌଡ଼ି ପଳାଇ ଗଲାବେଳେ ସେହିପରି ଶବ୍ଦ କରୁଥାନ୍ତି । ପ୍ରଜନନ ଋତୁ ଆରମ୍ଭ ହେବା ପର୍ଯ୍ୟନ୍ତ ବାରଶିଙ୍ଗା ପଲ ମିଳିମିଶି ଏକାଠି ରହନ୍ତି । ସାଧାରଣତଃ ମଧ୍ୟପ୍ରଦେଶରେ ଡିସେମ୍ବର ମଝିରୁ ଜାନୁଆରୀ ଅଧଯାଏ, ଉତ୍ତର ପ୍ରଦେଶରେ ନଭେମ୍ବର ଓ ଡିସେମ୍ବର ମାସରେ ଏବଂ ଆସାମରେ ଏପ୍ରିଲ-ମେ ମାସରେ ସେମାନଙ୍କର ଯୌନମିଳନ ହୁଏ । ଏ ସମୟରେ ମାଈ ହରିଣ ଉପରେ ଆଧିପତ୍ୟ ଲାଗି ଅର୍ଣ୍ଣିଗଙ୍କ ଭିତରେ ଲଢ଼େଇ ହୁଏ । ଗୋଟିଏ ଗୋଟିଏ ବଳବାନ ଶିଙ୍ଗାଙ୍କ "ରାଣୀ ମହଲ"ରେ ତିରିଶଟି ଯାଏ ହରିଣୀ ଥିବାର ଦେଖାଯାଏ ।

ଯୌନ ମିଳନ ଋତୁ ଶେଷ ହେଲେ ପୁଣି ଅର୍ଣ୍ଣିଗ ହରିଣ ଏକାଠି ମିଶି ଛୋଟ ଛୋଟ ଦଳ ଗଠନ କରନ୍ତି । ବଡ଼ ବଡ଼ ଅର୍ଣ୍ଣିଗ ସାଧାରଣତଃ ଏକାକୀ ରହନ୍ତି ନଚେତ୍ ସମବୟସର ଆଉ ଏକ ଅର୍ଣ୍ଣିଗ ସହିତ ସାଥୀ ହୁଅନ୍ତି ।

ମାଈ ବାରଶିଂଗା ଛଅ ମାସ ଗର୍ଭଧାରଣ ପରେ ଶାବକ ପ୍ରସବ କରେ । ଶାବକ ବର୍ଷା ଋତୁ ଆରମ୍ଭର ଠିକ୍ ପୂର୍ବରୁ ଜାତ ହୁଅନ୍ତି । ଆସାମରେ ବାରଶିଂଗାଙ୍କର ଶାବକ ଜନ୍ମ ସମୟ ଡିସେମ୍ବର-ଜାନୁଆରୀ ଓ ବେଳେବେଳେ ଫେବୃଆରୀ ମାସ ପର୍ଯ୍ୟନ୍ତ ଗଡ଼ିଯାଏ ।

ଅଭୟାରଣ୍ୟମାନଙ୍କରେ ଭ୍ରମଣ ରତ୍ନ ଗତ ହୋଇ ଯାଇଥିଲେ ମଧ୍ୟ ଅନେକ ସମୟରେ ଦୁଇଟି ଶିଂଗାଳ ମୁଣ୍ଡକୁ ମୁଣ୍ଡ ଯୋଖି ଲଢ଼େଇ କରୁଥିବାର ଦେଖାଯାଏ । ଏହା ସେମାନଙ୍କର ପ୍ରକୃତ ଲଢ଼େଇ ନୁହେଁ । ଏହାକୁ "ଖୁମ୍ପା ନ୍ୟାୟ" ("Packing order" ବା "Peck order" ) ଆଖ୍ୟା ଦିଆଯାଇ ଅଛି । ପକ୍ଷୀମାନଙ୍କ ମଧ୍ୟରେ ଖୁମ୍ପା ନ୍ୟାୟ ବେଶୀ ଦେଖିବାକୁ । ସେମାନେ ଅଧିକାର ବା ଚଳୁଆ ଗିରି ପ୍ରତିଷ୍ଠା କରିବା ପାଇଁ ଏକ ଆରେକକୁ ଖୁମ୍ପନ୍ତି । ପ୍ରତ୍ୟେକ ବାରଶିଂଗା ଦଳରେ 'ଖୁମ୍ପା ନ୍ୟାୟ' ଦେଖିବାକୁ ମିଳେ । କୌଣସି ଦଳରେ ଯଦି ଗୋଟିଏ ତରୁଣ ଅଣ୍ଡିରା ବଡ଼ ଅଣ୍ଡିରାକୁ ଆହ୍ୱାନ ଜଣାଏ, ତେବେ ବଡ଼ ଅଣ୍ଡିରା ନିଜର ଅଧିକାର ସାବ୍ୟସ୍ତ କରିବା ପାଇଁ ଲଢ଼େଇ କରିବାକୁ ବାହାରି ପଡ଼େ । ଏଭଳି ଲଢ଼େଇ ବେଶୀକ୍ଷଣ ସ୍ଥାୟୀ ନୁହେଁ ଏବଂ କେତେ ମିନିଟ ପରେ ଉଭୟ ଛାଡ଼ଛଡ଼ି ହୋଇ ପୁଣି ଚରିବାକୁ ଆରମ୍ଭ କରନ୍ତି ।

ଅନ୍ୟ ବନ୍ୟ ପ୍ରାଣୀମାନଙ୍କ ପରି ବାରଶିଂଗାମାନଙ୍କର ସଂଖ୍ୟାକ୍ରମେ ଦ୍ରୁତବେଗରେ ହ୍ରାସ ପାଇବାରେ ଲାଗିଛି । ମଧ୍ୟପ୍ରଦେଶରେ ମଧ୍ୟ ସ୍ଥଳରେ ସାତପୁରା ପର୍ବତମାଳାର ଗଭୀର ଜଂଗଲ ମଧ୍ୟରେ 250 ବର୍ଗ କିଲୋମିଟାର ପରିମିତ ଅଞ୍ଚଳରେ 'କନ୍ହା ଜାତୀୟ ଜୀବ ଉଦ୍ୟାନ" ( Kanha National Park ) ଅବସ୍ଥିତ । ପୂର୍ବେ ଏହାର ନାମ ଥିଲା । "ବେଞ୍ଜୋର ଉପତ୍ୟକା ସଂରକ୍ଷିତ ବନଭୂମି" ( Banjor valley Reserve " ) । ଏହି ଜୀବ ଉଦ୍ୟାନରେ ନାନା ଜାତି ବନ୍ୟ ପ୍ରାଣୀ ବାସ କରନ୍ତି । ତନ୍ମଧ୍ୟରେ ବାରଶିଂଗା ଗୋଟିଏ । ଏଠାରେ ବାରଶିଂଗା ବିଖ୍ୟାତ ।

ବିଭିନ୍ନ ଭାଷାରେ ଏହାର ନାମ.–ହିନ୍ଦି–ବାରଶିଂଗା ମାହା; ନେପାଳ ତରାଇ ଅଞ୍ଚଳ–ଗେଣ୍ଡା, ଗୋନ୍ଦ୍‌, ଗୋ (ହ)ସ , ମଧ୍ୟ ଭାରତ–ଗୋଇନ୍ ଜାକ୍ ( ଅଣ୍ଡିରା ), ଗାଓନୀ ( ମାଈ), ସମର, ନେରଓ୍ୱାରୀ, ଇଂରାଜୀରେ "ବାରଶିଂଗା" ( Barasingha ) ଓ "କଳା ପାଟ ହରିଣ " ( Swamp beer ) ନାମରେ ପରିଚିତ । ବୈଜ୍ଞାନିକ ନାମ–cervus duvauceli cuvier ।

# ସମ୍ବର

ସମ୍ବର ଦକ୍ଷିଣ-ପୂର୍ବ ଏସିଆର ଏକ ସାଧାରଣ ଜଙ୍ଗଲ ହରିଣ । ଏହାର ଲୋମ ଘନ ଓ ଟାଂସା । ଅଣ୍ଡିରା ସମ୍ବରର ବେକ ଓ ଟଣାରେ ଏହି ଲୋମ ଏକ ପ୍ରକାର କେଶର ପରି ହୋଇଥାଏ । ଗ୍ରୀଷ୍ମକାଳରେ ସମ୍ବରଙ୍କ ଦେହରୁ ଅନେକ ଲୋମ ଝଡ଼ି ପଡ଼େ । ଏମାନଙ୍କର ସାଧାରଣ ବର୍ଣ୍ଣ ସାମାନ୍ୟ ହଳଦିଆ ବା ଧୂସର ରଙ୍ଗ ମିଶା ବାଦାମୀ । ପେଟ ପାଖର ରଙ୍ଗ ଫିକା । ଅଣ୍ଡିରାଙ୍କ ତୁଳନାରେ ମାଈ ସମ୍ବରଙ୍କ ରଙ୍ଗ ଫିକା । ଅଣ୍ଡିରା ସମ୍ବର ଯେତିକି ବଡ଼ ହୁଏ; ତା' ରଙ୍ଗ ସେତିକି କଳା



(ଚିତ୍ର ନଂ 133 ସମ୍ବର

ହୁଏ । ବୁଢ଼ା ସମ୍ବରର ବର୍ଣ୍ଣ ପ୍ରାୟ କଳା । ଏମାନଙ୍କର ଶିଙ୍ଗ ଶକ୍ତ ଓ ଅାବଡ଼ା ଖାବଡ଼ା । ଭ୍ରୂ-ଶାଖ (brow tine) ଜଡ଼ିଶାଖ (beam) ସହିତ ସୂକ୍ଷ୍ମ କୋଣ(acute angle)ଗଠନ କରିଥାଏ । ଜଡ଼ିଶାଖ ବା ଦ୍ୱିତୀୟ ଶାଖ ସର୍ବୋଚ୍ଚ ସ୍ଥାନରେ ଦୁଇଟି ସମ ଦୀର୍ଘ ଶାଖରେ ବିଭକ୍ତ ହୋଇଥାଏ । କେତେକ ସମ୍ବରର ଶିଙ୍ଗରେ ଏ ଦୁଇ ଶାଖ ମଧ୍ୟରୁ ବାହାର ଶାଖ ଓ କେତେକଙ୍କର ଭିତର ଶାଖ ଅପର ଶାଖଠାରୁ ଲମ୍ବା । ଅଣ୍ଡିରା ସମ୍ବରକୁ ଚାରିବର୍ଷ ହେଲେ ଶିଙ୍ଗ ପୂର ଶାଖାୟିତ ଓ ସୁବର୍ଦ୍ଧିତ ହୁଏ ।

ସମ୍ବର କାନ୍ଧଠାରେ 150 ସେଣ୍ଟିମିଟର (ପାଞ୍ଚଫୁଟ) ଯାଏ ଉଚ୍ଚ ହୁଏ; ସାଧାରଣ ଉଚ୍ଚତା 140 ସେଣ୍ଟିମିଟର ( 55ଇଞ୍ଚ) । ଗୋଟିଏ ପୂର୍ଣ୍ଣ

ବୟସ୍ତ ଅର୍ଣ୍ଣିଗ ସମ୍ବରର ଓଜନ 225ରୁ 320 କିଲୋଗ୍ରାମ (500-700 ପାଉଣ୍ଡ) ବା ଅଧିକ । ମଧ୍ୟ ପ୍ରଦେଶ ଏବଂ ନର୍ମଦା ଏବଂ ତାପ୍ତି ନଦୀକୂଳ ଅଞ୍ଚଳର ଜଙ୍ଗଲରେ ବାସ କରୁଥିବା ସମ୍ବରମାନଙ୍କର ଶିଙ୍ଗ ସବୁଠୁ ଭଲ ବଢେ ଓ ବଡ ହୁଏ । ସାଧାରଣତଃ ସମ୍ବରର ଶିଙ୍ଗ 65 ସେଣ୍ଟିମିଟାର (26 ଇଞ୍ଚ) ଲମ୍ବା ହୋଇଥାଏ । 75 ସେଣ୍ଟିମିଟାର (30ଇଞ୍ଚ) ଲମ୍ବର ଶିଙ୍ଗ ବେଶ ବଡ ବୋଲି ଧରାଯାଏ ଓ ଶିକାରୀ ତାକୁ ସାଇତି ରଖନ୍ତି । ଉତ୍ତର ଭାରତର ସମ୍ବରଙ୍କ ଶିଙ୍ଗ 95 ସେଣ୍ଟିମିଟାର (38 ଇଞ୍ଚ) ଓ ଦକ୍ଷିଣ ଭାରତର ସମ୍ବରଙ୍କ ଶିଙ୍ଗ 90 ସେଣ୍ଟିମିଟାର ( 6 ଇଞ୍ଚ) ହେଲେ ତାହା ବେଶ୍ ବଡ ବୋଲି ବୁଝିବାକୁ ହେବ । ଥରେ ଭୋପାଳରେ ଗୋଟିଏ ସମ୍ବର ମରା ଯାଇଥିଲା; ତା'ର ଶିଙ୍ଗର ଲମ୍ବ ଥିଲା 129.2 ସେଣ୍ଟିମିଟାର ($50\frac{7}{8}$ଇଞ୍ଚ) । ମାଳୟ ଉପଦ୍ୱୀପରେ ବାସ କରୁଥିବା ସମ୍ବରମାନଙ୍କର ମୁଣ୍ଡରେ ଶିଙ୍ଗ ଅପେକ୍ଷାକୃତ ପାଖାପାଖି ବାହାରିଥାଏ, ଅଧିକ ଆବଡ଼ାଖାବଡ଼ା ଓ ସ୍ଥୂଳ ।

ଭାରତ, ବର୍ମା, ସିଂହଳ, ମାଲୟ ଉପଦ୍ୱୀପ ଇତ୍ୟାଦି ପୂର୍ବରେ ଫିଲିପାଇନ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳର ଜଙ୍ଗଲରେ ସମ୍ବର ହରିଣ ବାସ କରନ୍ତି । ପର୍ବତର ଜଙ୍ଗଲପୂର୍ଣ୍ଣ ଢାଲୁ ଅଞ୍ଚଳରେ ସେମାନେ ରହନ୍ତି । ପାଖରେ କ୍ଷେତ ଥିଲେ ଆହୁରି ଭଲ । ଘାସ, ପତ୍ର ଓ ବିଭିନ୍ନ ଜାତିର ବନ୍ୟ ଫଳ ସେମାନଙ୍କର ଆହାର । ସେମାନେ ରାତି ସାରା ଚରି ବୁଲି ଭୋର ବେଳକୁ ଘଞ୍ଚ ଜଙ୍ଗଲ ଭିତରେ ଯାଇ ପଶନ୍ତି । ପୁଣି ବାହାରନ୍ତି ସଞ୍ଜ ବେଳକୁ । ସେମାନଙ୍କର ଦୃଷ୍ଟିଶକ୍ତି ମଧ୍ୟମ ଧରଣର; ଘ୍ରାଣ ଓ ଶ୍ରବଣ ଶକ୍ତି ପ୍ରବଳ । ସମ୍ବର ଗୋଟିଏ ବଡ଼ ପ୍ରାଣୀ, ଅଥଚ ଘନ ଜଙ୍ଗଲ ଭିତରେ ଗଲାବେଳେ ଟିକିଏ ହେଲେ ଶବ୍ଦ ହୁଏ ନାହିଁ । ଦରକାର ପଡ଼ିଲେ ଏହା ପାଣିରେ ପହଁରିପାରେ । ଏତେବେଳେ କେବଳ ମୁହଁ ଓ ଶିଙ୍ଗ ପାଣି ଉପରକୁ ରହିଥାଏ । ମଧ୍ୟ ଓ ଦକ୍ଷିଣ ଭାରତରେ ଅଧିକାଂଶ ସମ୍ବରଙ୍କର ଶିଙ୍ଗ ମାର୍ଚ୍ଚ ଶେଷ ଓ ଏପ୍ରିଲ ମଝି ବେଳକୁ ଖସିପଡ଼େ । ନୂଆ ଶିଙ୍ଗ ମେ଼ ମାସରେ ଗଜୁରେ । ଶିଙ୍ଗ ଟାଣ ନ ହେଲାଯାଏ "ମଖମଲ"ରେ ଆବୃତ ହୋଇଥାଏ । ନଭେମ୍ବର ମାସ ସୁଦ୍ଧା ଶିଙ୍ଗ ଟାଣ ହୋଇଯାଏ । ଶୁଖିଲା ଚମ ଛଡାଇବା ପାଇଁ ଶିଙ୍ଗକୁ ସେମାନେ ଗଛରେ ଘସନ୍ତି ।

ଜଙ୍ଗଲର ଏକ ଏକ ଅଞ୍ଚଳ ଗୋଟିଏ ଗୋଟିଏ ଅର୍ଣ୍ଣିଗ ସମ୍ବରର ରାଜ୍ୟ । ସେ ରାଜ୍ୟ ଭିତରେ ଅନ୍ୟ ଅର୍ଣ୍ଣିଗ ସମ୍ବରର ପ୍ରବେଶାଧିକାର ନାହିଁ । ଏଥିପାଇଁ ଅର୍ଣ୍ଣିଗମାନଙ୍କ ମଧ୍ୟରେ ଭୀଷଣ ଲଢେଇ ହୁଏ । ବିଜୟୀ ଅର୍ଣ୍ଣିଗର ରାଜ୍ୟ ଭିତରେ କୌଣସି ମାଈ ସମ୍ବର ପଶିଲେ ସେ ତା'ର ଗୋଟିଏ 'ରାଣୀ' ରୂପେ ପରିଗଣିତ ହୁଏ । ନଭେମ୍ବର-ଡ଼ିସେମ୍ବର ମାସରେ ସେମାନଙ୍କର ଯୌନ-ମିଳନ ଘଟେ । ଅର୍ଣ୍ଣିଗ ସମ୍ବରର ରାଣୀମାନଙ୍କ ସଂଖ୍ୟା ବେଶୀ ନୁହେଁ ଯୌନ-ମିଳନ ପରେ ଅର୍ଣ୍ଣିଗ ମାଈମାନଙ୍କଠାରୁ ଅଲଗା ହୋଇଯାଏ । ପୁଣି ପରବର୍ଷ ପ୍ରଜନନ ଋତୁ ଯାଏ ସେ ଏକାକୀ ବାସ କରେ । ବର୍ଷା ଆରମ୍ଭ ସମୟକୁ ଅର୍ଥାତ୍ ମେ ଶେଷ ବା ଜୁନ ପ୍ରଥମ ଭାଗଆଡ଼କୁ ଶାବକ ଜନ୍ମ ହୁଅନ୍ତି । ସାନ ହରିଣମାନେ ମା' ପାଖରେ ରହନ୍ତି । ସମ୍ବର କ୍ୱଚିତ୍ ବଡ ବଡ଼ ଦଳ ଗଠନ କରନ୍ତି । ଗୋଟିଏ ଦଳରେ ଚାରି ପାଞ୍ଚଟିରୁ 12ଟି ଯାଏ ହରିଣ ଥାନ୍ତି । ମାଈ ଓ ଅର୍ଣ୍ଣିଗ ସମ୍ବର ଅଲଗା ଅଲଗା ଏକାକୀ ବୁଲୁଥିବାର ଦେଖାଯାନ୍ତି । ପୁଣି ଗୋଟିଏ ଗୋଟିଏ ଦଳରେ ଏକାଧିକ ମାଈ ଓ ଶାବକ ଥାନ୍ତି; କିନ୍ତୁ ତାଙ୍କ ସହିତ ବୟଃପ୍ରାପ୍ତ ଅର୍ଣ୍ଣିଗ ନ ଥାଆନ୍ତି ।

ବିଭିନ୍ନ ଭାଷାରେ ସମ୍ବରର ନାମ—ହିନ୍ଦି—ସମ୍ବର, ସମର; ମାରଠି—ସମ୍ବର; ତାମିଲ—କୁଡ଼ୁଭ ମାରନ୍; ମାଲୟାଲମ୍—କୁଲେ ମାର୍ନ୍; କାବାଡ଼ି—କୁଡାଓ୍ୟେ, କାଡଡ଼ାମା; ବର୍ମି-ସୁଟ; ଇଂରାଜୀ—Sambar, ବୈଜ୍ଞାନିକ ନାମ—Cervus unicolor kerr ।

## ପାରା ହରିଣ

ପାରା ହରିଣକୁ ଇଂରାଜୀରେ ଘୁଷୁରି—ହରିଣ (Hog deer) ବୋଲି କହନ୍ତି । ଏହାର କାରଣ ଏହି ଯେ ଏହା କେତେକ ପରିମାଣରେ ଘୁଷୁରି ଓ ବାଙ୍ଗର ଏବଂ ଏହାର ଗତି ଘୁଷୁରି ପରି କହିଲେ ଭୁଲ ହେବ ନାହିଁ । ଦୌଡ଼ିଲା ବେଳେ ଏହା ମୁଣ୍ଡ ତଳକୁ କରି ଦୌଡ଼େ, ଅନ୍ୟ ହରିଣଙ୍କ ପରି ଲମ୍ଫ ଦେଇ ଦେଇ ଦଉଡ଼େ ନାହିଁ । ପାରା—ହରିଣ ଚିତଳ ହରିଣର ଏକ ଜାତି । ଏ ଦୁଇ-ଜାତି ହରିଣ ମଧ୍ୟରେ ଯୌନ—ମିଳନ ଘଟେ ଓ ଶଙ୍କରଜାତ ହେବାର ମଧ୍ୟ ଜଣା

ଅଛି । ପାରା ହରିଣ ଛୋଟିଆ ହରିଣଟିଏ ହେଲେ କ'ଣ ହେବ, ତା' ଦେହ ମଜଭୁତ ଓ ଲମ୍ବା, ମାତ୍ର ଗୋଡ଼ ତା' ତୁଳନାରେ କ୍ଷୁଦ୍ର । ଦେହର ବର୍ଣ୍ଣ ବାଦାମୀ । ଅଧିକ ବୟସର ଅଣ୍ଡିରା ପାରା ହରିଣର ବର୍ଣ୍ଣ କଳାସିଆ ବାଦାମୀ,



(ଚିତ୍ର ନଂ 134 ପାରା ହରିଣ)

ସେଥିରେ ହଳଦିଆ ବା ଲାଲ ଆଭା ଥାଏ । ଲୋମର ଅଗ୍ରଭାଗ ଧଳା ହୋଇ ଥିବାରୁ ଫୁଟି ଫୁଟିଆ ଦିଶେ । ପେଟ ପାଖ ଫିକା । କାନ ଭିତର ପାଖ ଓ ଲାଞ୍ଜ ତଳ ଅଂଶ ଧଳା । ଶାବକମାନଙ୍କ ଦେହରେ ଧଳା ଦାଗ ଥାଏ । ଏହି ଧଳା ଦାଗ ବିଶେଷ କରି ଗ୍ରୀଷ୍ମ କାଳରେ ମାଈ ପାରା ହରିଣ ଓ ଶାବକ ମାନଙ୍କ ଦେହରେ ଦେଖିବାକୁ ମିଳେ, ଅନ୍ୟ ଋତୁରେ ତାହା ସୁସ୍ପଷ୍ଟ ନୁହେଁ । ଗ୍ରୀଷ୍ମ କାଳରେ ପାରା ହରିଣର ବର୍ଣ୍ଣ ଫିକା ।

ଏମାନଙ୍କର ଶିଙ୍ଗ କ୍ଷୁଦ୍ର ମାତ୍ର ବୃନ୍ତ ଲମ୍ବା । ଭ୍ରୂ-ଶାଖା (brow-tine) କ୍ଷୁଦ୍ର ଓ ତା' ପରେ ଶିଙ୍ଗ ସିଧା ଉଠିଯାଇ ଦୁଇଟି ଶାଖାରେ ବିଭକ୍ତ ହୋଇ ଥାଏ । ସମ୍ମୁଖ ଶାଖା ବଡ଼ ଓ ପଛ ଆଡ଼ର ଶାଖା କ୍ଷୁଦ୍ର ।

ପାରା-ହରିଣର କାନ୍ଧଠାରେ ସର୍ବୋଚ୍ଚ ଉଚ୍ଚତା ହୁଏ 61 ସେଣ୍ଟିମିଟର (24 ଇଞ୍ଚ) । ଶିଙ୍ଗର ଲମ୍ବା 30 ରୁ 38 ସେଣ୍ଟିମିଟର (12 ରୁ 15 ଇଞ୍ଚ) । ବର୍ମାର ପାରା ହରିଣଙ୍କ ଶିଙ୍ଗ ବଡ଼ । ସେଠାର ହରିଣଙ୍କ ଶିଙ୍ଗ 61 ସେଣ୍ଟିମିଟର (24 ଇଞ୍ଚ) ଯାଏ ଲମ୍ବ ହେବାର ଦେଖାଯାଇ ଅଛି ।

ନଦୀର ବନ୍ୟା ପ୍ଲାବିତ ମୃତ୍ତିକା ଦ୍ୱାରା ଗଠିତ ନିମ୍ନ ସମତଳ ଘାସ ଭୂମିରେ ପାଗ–ହରିଣ ବାସ କରେ । ପାକିସ୍ଥାନର ସିନ୍ଧ ଓ ପଞ୍ଜାବରୁ ଆସାମ ଯାଏ ଏବଂ ପୁଣି ବର୍ମାରୁ ଟେନାସେରିମ୍ ଯାଏ ଅଞ୍ଚଳରେ ଏମାନେ ଦେଖା ଯାନ୍ତି । ଏମାନେ ଭାରତୀୟ ଉପଦ୍ୱୀପ ଅଞ୍ଚଳରେ ଦେଖାଯାନ୍ତି ନାହିଁ; ମାତ୍ର ସିଂହଳରେ ମିଳନ୍ତି ।

ନଦୀ ବନ୍ଧର ଘାସ ଜଙ୍ଗଲ, ଘାସ ପରିପୂର୍ଣ୍ଣ ତ୍ରିକୋଣଭୂମି ଅଞ୍ଚଳ ଓ ଖୋଲା ସମତଳ ଘାସ ଭୂମିରେ ପାଗ-ହରିଣ ରହନ୍ତି, ଉଚ୍ଚ ଘାସପୂର୍ଣ୍ଣ ଜଙ୍ଗଲରେ ବାସ କରନ୍ତି ନାହିଁ । ସିନ୍ଧର ଉଚ୍ଚ ଭୂମିରେ ସିନ୍ଧୁ ନଦୀ ବନ୍ଧର ବୁଦା ଝାଟି ଜଙ୍ଗଲରେ ଏମାନେ ବାସ କରନ୍ତି । ଅତୀତରେ ବର୍ମାରେ ନଦୀ ମୁହାଣର ତ୍ରିକୋଣ ଭୂମି ଅଞ୍ଚଳ (mangrove-କର୍ଦ୍ଦମାକ୍ତ ନଦୀମୁହାଣରେ ଉଠିଥିବା ଗଛ) ମାନଙ୍କରେ ସେମାନେ ଏକ ସାଧାରଣ ହରିଣ ଭାବେ ବାସ କରୁଥିଲେ । ପାଗ-ହରିଣ ସାଧାରଣତଃ ଏକାକୀ ରହନ୍ତି । ବେଳେବେଳେ ଏକ ଯୋଡ଼ା ଅର୍ଣ୍ଣିଶ ଓ ମାଈ ଗୋଟିଏ ନିର୍ଦ୍ଦିଷ୍ଟ ଘାସଭୂମି ଅଞ୍ଚଳରେ ରହିଥିବାର ଦେଖାଯାନ୍ତି । ପୁଣି ବେଳେବେଳେ ସେମାନେ ଏକାଠି କ୍ଷୁଦ୍ର କ୍ଷୁଦ୍ର ଦଳରେ ଚରୁଥିବାର ଦେଖିବାକୁ ମିଳେ । ଗୋଟିଏ ଦଳରେ ଅଠରଟି ଯାଏ ପାଗ-ହରିଣ ଥାଇ ପାରନ୍ତି । ସେମାନେ ପ୍ରଦୋଷ ଓ ଅପରବେଳା ଚରି ବାହରନ୍ତି; ଖରବେଳେ ଉଚ୍ଚ ଘାସ ଭିତରେ ଲୁଚି ରହନ୍ତି । ପାଗ-ହରିଣ ଭାରି ସତର୍କ ପ୍ରାଣୀ, ଟିକିକେ ହୁରୁଡ଼ି ପଳାନ୍ତି । ସେମାନଙ୍କର ଦୃଷ୍ଟି, ଶ୍ରବଣ ଓ ଘ୍ରାଣ ଶକ୍ତି ପ୍ରବଳ । ମନୁଷ୍ୟର ଉତ୍ପୀଡ଼ନ ଫଳରେ ସେମାନେ ସ୍ୱଭାବ ପରିବର୍ତ୍ତନ କରି ଅନେକତ୍ର ରାତ୍ରିଚର ପ୍ରାଣୀରେ ପରିଣତ ହୋଇ ଅଛନ୍ତି ।

ସେପ୍‌ଟେମ୍ବର–ଅକ୍ଟୋବର ମାସରେ ସେମାନଙ୍କର ଯୌନ–ମିଳନ ହୁଏ ବୋଲି ବିଶ୍ୱାସ କରାଯାଏ । ଏପ୍ରିଲ–ମେ ମାସରେ ଶାବକ ଜନ୍ମ ହୁଅନ୍ତି । ବର୍ଷା ଋତୁରେ ମଧ୍ୟ ଶାବକ ଜନ୍ମ ହେଉ ଥିବାରୁ ମନେ ହୁଏ ଜାନୁଆରୀ ମାସରେ ମଧ୍ୟ ପାଗ ହରିଣଙ୍କର ପ୍ରଜନନ ହୁଏ । ଗର୍ଭଧାରଣ କାଳ ଆଠ ମାସ ।

ବିଭିନ୍ନ ଭାଷାରେ ପାଗ–ହରିଣଙ୍କର ନାମ–ହିନ୍ଦି, ସିନ୍ଧିଓ ପଞ୍ଜାବୀ–ପାରା; ବର୍ମି–ଡେ ଏୟି । ଇଂରାଜୀ Hog deer (ଘୁଷୁରି–ହରିଣ) । ବୈଜ୍ଞାନିକ ନାମ–Axis porcinus (Zimmer mann) ।

# ଚିତଳ ହରିଣ

ଯେତେ ହରିଣ ଅଛନ୍ତି, ସେମାନଙ୍କ ମଧ୍ୟରେ ଚିତଳ ବା ଜିଆଦ ସବୁଠାରୁ ସୁନ୍ଦର । ଏହାର ଦେହର ବର୍ଣ୍ଣ ଚକଚକିଆ ଲାଲ–ବାଦାମୀ–ହଳଦିଆ । ତା' ଉପରେ ଧଳା ଟିପ୍ ଟିପ୍ ଚିହ୍ନ ପଡ଼ିଥାଏ । ଏ ଚିହ୍ନ କି ଛୋଟ କି ବଡ, ସବୁ ବୟସର ଜିଆଦଙ୍କ ଦେହରେ, କି ଶୀତ କି ବର୍ଷା, ବର୍ଷର ସବୁ ସମୟରେ ଦେଖାଯାଏ । ବୁଢା ଶିଙ୍ଗାଳଙ୍କର ବର୍ଣ୍ଣ ଅଧିକ



(ଚିତ୍ର ନଂ 135, ଚିତଳ ହରିଣ)

ବାଦାମୀ ଏବଂ କଳାସିଆ । ଦେହ କଡ଼ରେ ଥିବା ଧଳା ଚିହ୍ନ ଧାଡ଼ି ଧାଡ଼ି ହୋଇ ରହିଥାଏ । ଏଥିରୁ ମନେ ହୁଏ, ଧାଡ଼ି ଧାଡ଼ି ହୋଇ ରହିଥିବା ରେଖା ଚିହ୍ନ କାଳକ୍ରମେ ଭଙ୍ଗି ଯାଇଛି ।

ଏମାନଙ୍କର ଶିଙ୍ଗ ସୁନ୍ଦର ଓ ସେଥିରେ ତିନୋଟି ଶାଖା । ଭ୍ରୂଶାଖ (brow tine) ଲମ୍ବା ଓ କଡ଼ିଶାଖ (beam) ସହିତ ସମକୋଣ ଗଠନ କରିଥାଏ । ଉପରଆଡ଼କୁ ଦୁଇଟି ଶାଖା ଥାଏ । ସେଥି ମଧ୍ୟରୁ ବାହାର ଆଡ଼କୁ ଥିବା ଶାଖା କଡ଼ିଶାଖର ପ୍ରଲମ୍ବିତ ଅଂଶ ମାତ୍ର ଓ ସବୁବେଳେ ଅନ୍ୟଶାଖା ଅପେକ୍ଷା ଅଧିକ ଲମ୍ବ । ଅନେକ ସମୟରେ ବୁଢ଼ା ଅଣ୍ଡିରା ଶିଂଗରେ ଭ୍ରୂଶାଖ ଓ ମୁଖ୍ୟ କଡ଼ିଶାଖର ସଂଯୋଗ ସ୍ଥଳରେ ଏକ ବା ଅଧିକ ଛଦ୍ମ ତୀକ୍ଷ୍ଣ ରହିଥାଏ ।

ହିମାଳୟର ପାଦ ଦେଶ, ତରାଇ ଓ ମାଧ୍ୟପ୍ରଦେଶର ଜଂଗଲରେ ଯେଉଁ ଚିତଳ ଦେଖାଯାନ୍ତି, ସେମାନେ ସବୁଠାରୁ ବଡ଼ ଓ ସୁନ୍ଦର ହୁଅନ୍ତି । ଗୋଟିଏ ଉତ୍ତମ ବୃଦ୍ଧିପ୍ରାପ୍ତ ଅଣ୍ଡିରା ଜିଆଦର କାନ୍ଧଠାରେ ଉଚ୍ଚତା ହୁଏ 90 ସେଣ୍ଟିମିଟାର (36 ଇଞ୍ଚ) ଓ ଓଜନ 85 କିଲୋଗ୍ରାମ (190 ପାଉଣ୍ଡ) । ଚିତଳର ଶିଙ୍ଗ ଦକ୍ଷିଣ ଭାରତରେ 80 ସେଣ୍ଟିମିଟାର (31 ଇଞ୍ଚ) ଓ ଅନ୍ୟତ୍ର 85 ସେଣ୍ଟିମିଟାର (34 ଇଞ୍ଚ) ଲମ୍ବ ହୋଇଥିଲେ ବେଶ୍ ବଡ଼ ବୋଲି ଧରାଯାଏ । ସବୁଠାରୁ ବଡ଼ ଶିଙ୍ଗ 101 ସେଣ୍ଟିମିଟାର ($39\frac{3}{4}$ ଇଞ୍ଚ) ଯାଏ ଲମ୍ବ ହେବାର ଦେଖାଯାଇ ଅଛି ।

ହିମାଳୟ ପର୍ବତମାଳାର ପାଦଦେଶ ଠାରୁ ଆରମ୍ଭ କରି ଭାରତୀୟ ଉପଦ୍ୱୀପର ସମଗ୍ର ଅଞ୍ଚଳ ଓ ସିଂହଳରେ ଚିତଳ ହରିଣ ବାସ କରନ୍ତି । ଚରିବା ପାଇଁ ଘାସ, ବିଶ୍ରାମ ଓ ଆତ୍ମରକ୍ଷା ପାଇଁ ଜଙ୍ଗଲ ଏବଂ ତୃଷ୍ଣା ମେଣ୍ଟାଇବା ପାଇଁ ଯଥେଷ୍ଟ ଜଳ — ଏ ତିନୋଟି ସୁବିଧା ଥିବା ସ୍ଥାନ ଜିଆଦର ବାସ ଭୂମି । ଏଣୁ ସିନ୍ଧ ଓ ପଞ୍ଜାବର ଜଳହୀନ ଅଞ୍ଚଳ, ରାଜପୁତାନାର ବିସ୍ତୀର୍ଣ୍ଣ ମରୁଭୂମି ଅଞ୍ଚଳ ଏବଂ ବଙ୍ଗୋପସାଗରର ପୂର୍ବକୁ ଥିବା ଅଞ୍ଚଳରେ ସେମାନେ ଦେଖାଯାନ୍ତି ନାହିଁ । ଜିଆଦ ଆସାମର ଗୋଆଲପାଡା, କାମରୂପ ଓ ଡାର୍‌ରଙ୍ଗ ଜିଲ୍ଲାରେ ମଧ୍ୟ ବାସ କରନ୍ତି । ଓଡ଼ିଶାର ସବୁ ଜିଲ୍ଲାର ଜଙ୍ଗଲରେ ଏମାନେ ଦେଖାଯାନ୍ତି ।

ଚିତଳ ହରିଣ ସହିତ ସର୍ବଦା ମନୋରମ ଦୃଶ୍ୟର ସନ୍ନିବେଶ କରାଯାଇଥାଏ । ଜଙ୍ଗଲର ସବୁଜ-ଘାସ ପୂର୍ଣ୍ଣ-ପ୍ରାନ୍ତର ଓ କଳ-କଳ-ନାଦିନୀ

ତଟିନୀ କୂଳର ବର୍ଣ୍ଣନା ଦେଲାବେଳେ କବି ସାଧାରଣତଃ ଚିତ୍ରମୃଗ ଚରୁଥିବାର ବର୍ଣ୍ଣନା ଦିଅନ୍ତି । ଏମାନେ ଦଳ ଦଳ ହୋଇ ବାସ କରନ୍ତି । ଗୋଟିଏ ପଲରେ ଦଶଟିରୁ ତିରିଶଟି ଯାଏ ଜିଆଦ ଥାନ୍ତି । ସେଥିରୁ ଦୁଇ ତିନୋଟି



( ଚିତ୍ର ନଂ 136, ଚୌସିଂଗା ହରିଣର ବସତି )

ଅଣ୍ଡିରା ହରିଣ । ପୂର୍ବେ କୌଣସି କୌଣସି ସ୍ଥାନରେ ଗୋଟିଏ ଗୋଟିଏ ପଲରେ ଶହ ଶହ ଚିତଳ ଦେଖା ଯାଉଥିଲେ । ଏବେ ସେ ଚିତ୍ତହରଣକାରୀ ଦୃଶ୍ୟ ଆଉ ଦେଖିବାକୁ ମିଳେ ନାହିଁ । ଜିଆଦ ଗ୍ରାମ ନିକଟରେ ବାସ କରିବାକୁ ଭୟ କରନ୍ତି ନାହିଁ ଓ ସମୟ ସମୟରେ ଶସ୍ୟ ଜମିରେ ପଶି ଫସଲ ନଷ୍ଟ କରନ୍ତି । ଜଙ୍ଗଲର କେତେକ ପ୍ରାଣୀଙ୍କ ସହିତ ଏମାନଙ୍କର ବନ୍ଧୁତା

ଥିବାର ଦେଖଯାଏ । ବିଶେଷତଃ ମାଙ୍କଡ ଓ ଜିଆଦ ଏକ ସ୍ଥାନରେ ରହନ୍ତି । ଗଛ ଡାଳରେ ମାଙ୍କଡ ଥାନ୍ତି, ତଳେ ଚିତଳ ଚରୁଥାନ୍ତି । ସମ୍ବର ପରି ଜିଆଦ ରତ୍ରିଚର ନୁହେଁ । ସକାଳେ ବେଶ ଖରା ପଡ଼ିଲାଯାଏ ଓ ଅପରବେଳା ଏମାନେ ଚରନ୍ତି ; ମଧ୍ୟାହ୍ନ ସମୟରେ ବୃକ୍ଷ ଛାଇରେ ବିଶ୍ରାମ ନିଅନ୍ତି ।

ସ୍ଥାନ ଭେଦରେ ବର୍ଷର ବିଭିନ୍ନ ସମୟରେ ଜିଆଦର ଶିଙ୍ଗ ଝଡ଼େ । ମଧ୍ୟପ୍ରଦେଶରେ ସାଧାରଣତଃ ଅଗଷ୍ଟ—ସେପ୍ଟେମ୍ବର ମାସରେ ଶିଙ୍ଗ ଖସି-ପଡେ ଓ ଡିସେମ୍ବର ଶେଷ ବେଳକୁ ନୂଆ ଶିଙ୍ଗ ଟାଣ ହୋଇଯାଏ । ମାତ୍ର ବର୍ଷର ବିଭିନ୍ନ ସମୟରେ ମୁଣ୍ଡରେ ବିଭିନ୍ନ ଅବସ୍ଥାରେ ଥିବା ଶିଙ୍ଗ ସହ ଅଣ୍ଡିରା ହରିଣ ଦେଖାଯାନ୍ତି । ମଧ୍ୟପ୍ରଦେଶରେ ମେଁ ମାସ ଚିତଳ ହରିଣର ମୁଖ୍ୟ ପ୍ରଜନନ ଋତୁ । ଏ ସମୟରେ ଅଣ୍ଡିରା ହରିଣ ଉଚ୍ଚ ଓ କର୍କଶ ସ୍ୱରରେ ଏକ ପ୍ରକାର ବୋବାଳି କରେ । ଏବେବେଳେ ମାଈ ଉପରେ ଅଧିକାର ସାବ୍ୟସ୍ତ ନେଇ ଅଣ୍ଡିରାଙ୍କ ମଧ୍ୟରେ ଘନ ଘନ ଓ ଘମାଘୋଟ ଲଢ଼େଇ ହୁଏ । ଉତ୍ତର ଭରତରେ ଚିତଳ ହରିଣଙ୍କର ଶୀତଋତୁରେ ଯୌନମିଳନ ଘଟେ । ମାତ୍ର ବର୍ଷର ବିଭିନ୍ନ ସମୟରେ ବିଭିନ୍ନ ବୟସର ଶାବକ ସହିତ ହରିଣୀ ଦେଖିବାକୁ ମିଳିଥାନ୍ତି । ସାଧାରଣତଃ ଥରକେ ଗୋଟିଏ ଶାବକ ଜନ୍ମ ହୁଏ । ପ୍ରତି ଛଅମାସରେ ହରିଣୀ ଛୁଆ କରେ । ଏଣୁ ଦ୍ରୁତଗତିରେ ଚିତଳ ହରିଣର ବଂଶବୃଦ୍ଧି ଘଟି ଥାଏ ।

ବିଭିନ୍ନ ଭଷାରେ ଜିଆଦର ନାମ— ହିନ୍ଦି—ଚିତଲ୍, ଚିତ୍ରା, ଝାଙ୍କ ; ମାରଠି—ଚିତଲ ; ତାମିଲ ଓ ମାଲୟାଲୀ—ପୁ (ଭ) ଲୀ ମାର୍‌ନ୍ ; କାନାଡ଼ି—ସାରଙ୍ଗା ଜିଙ୍କେ ; ଓଡ଼ିଆ—ଚିତଳ, ଜିଆଦ, ଶିଙ୍ଗାଳ (ଅଣ୍ଡିରା), ନାଣ୍ଡି (ମାଈ) ; ଇଂରଜୀ—Chital (ଚିତଳ), Spotted deer (ଫୁଟିଫୁଟିଆ ଚିହ୍ନିତ ହରିଣ) । ବୈଜ୍ଞାନିକ ନାମ Axis axis (Erxleben) ।

# କୁଟୁରା

କୁଟୁରା ବା କୁଟ୍ରା ଏକ ଛୋଟ ହରିଣ । ଗୋଟିଏ ପୂର୍ଣ୍ଣ ବୟଃପ୍ରାପ୍ତ ଅଣ୍ଡିରା କୁଟୁରାର କାନ୍ଧଠାରେ ଉଚ୍ଚତା 50 ରୁ 75 ସେଣ୍ଟିମିଟାର (20 ରୁ 30 ଇଞ୍ଚ) ; ଓଜନ 22 ରୁ 23 କିଲୋଗ୍ରାମ (48 ରୁ 50 ପାଉଣ୍ଡ) । ଏମାନଙ୍କର ଶିଙ୍ଗବୃନ୍ତ (Pedicel) ବେଶ୍ ଲମ୍ବ ଏବଂ 8 ରୁ 10 ସେଣ୍ଟି-ମିଟାର (3-4 ଇଞ୍ଚ) ଏବଂ ଶିଙ୍ଗର ଲମ୍ବ ପ୍ରାୟ 13 ସେଣ୍ଟିମିଟାର (5 ଇଞ୍ଚ) । ବର୍ମାରେ କୁଟୁରାମାନଙ୍କର ଶିଙ୍ଗ ସବୁଠାରୁ ବଡ଼ ହୋଇଥାଏ ଓ ଲମ୍ବରେ 17.8 ସେଣ୍ଟିମିଟାର ଯାଏ (7 ଇଞ୍ଚ) ହୁଏ । ଭାରତର କୁଟୁରାଙ୍କ ଶିଙ୍ଗ ସାଧାରଣତଃ 8 ରୁ 10 ସେଣ୍ଟିମିଟାର (3-4 ଇଞ୍ଚ) ଲମ୍ବ ହୋଇଥାଏ । ପୂର୍ବର ମଧ୍ୟ-ପ୍ରଦେଶର ଜଙ୍ଗଲରେ ଥରେ ଗୋଟିଏ କୁଟରା ମରା ହୋଇଥିଲା, ତା' ଶିଙ୍ଗର ଲମ୍ବ ଥିଲା 17.8 ସେଣ୍ଟିମିଟାର (7 ଇଞ୍ଚ) ଓ ଦକ୍ଷିଣ ଭାରତରେ ମରା-ଯାଇଥିବା ଗୋଟିଏ କୁଟୁରା ଶିଙ୍ଗର ଲମ୍ବ ଥିଲା 17.1 ସେଣ୍ଟିମିଟାର ($6\frac{3}{4}$ ଇଞ୍ଚ) ।



(ଚିତ୍ର ନଂ 137 କୁଟୁରା)

କୁଟୁରାର ଶିଙ୍ଗ କ୍ଷୁଦ୍ର । ଶିଙ୍ଗର ଭ୍ରୂଶାଖା (brow-tine) କ୍ଷୁଦ୍ର ଓ କାଣ୍ଡିଶାଖା(beam) ଶାଖିତ ନୁହେଁ । ଶିଙ୍ଗର ବୃନ୍ତ (pedicel) ବା ମୂଳ ମୁଖର ଦୁଇ କଡରେ ଗିରିମାଳା ପରି ବିସ୍ତୃତ । ଅବଶ୍ୟ ହାଡ଼ ଦେଖା ଯାଏ

ନାହିଁ; କାରଣ ତାହା ଲୋମାଚ୍ଛାଦିତ ରହିଥାଏ । ମୁଖର ଏହି ବିଶେଷତ୍ୱ ହେତୁ କୁଟୁରାକୁ ଇଂରାଜୀରେ "ହିଡ଼ ମୁହାଁ ହରିଣ" (Ribfaced deer)' ବୋଲି ମଧ୍ୟ କୁହାଯାଏ । ମାଈ କୁଟୁରାର ଶିଙ୍ଗ ନାହିଁ । ସେ ସ୍ଥାନରେ ଶକ୍ତ ଲୋମ ଥାଏ । ଅଧିକ ବୟସର ଅଣ୍ଡିରା କୁଟୁରାର ସାଧାରଣ ବର୍ଣ୍ଣ ଅନ୍ୟମାନଙ୍କ ତୁଳନାରେ ଅଧିକ ବାଦାମୀ । ଅଣ୍ଡିରାର ଉପର ପାଟିର ଶ୍ୱଦନ୍ତ (Canine) ଉତ୍ତମ ବର୍ଦ୍ଧିତ । ଆତ୍ମ-ରକ୍ଷା କରିବା ପାଇଁ ସେ ଏହା ବ୍ୟବହାର କରେ ଅର୍ଥାତ୍ ଶ୍ୱଦନ୍ତ ଦ୍ୱାରା କାମୁଡ଼େ ।



(ଚିତ୍ର ନଂ 138 କୁଟୁରାର ବିସ୍ତୃତି)

କୁଟୁରା ଭାରତ–ମାଳୟ ଦେଶ ସମୂହର (Indo-Malayan countries) ବିସ୍ତୀର୍ଣ୍ଣ ଅଞ୍ଚଳରେ ଦେଖାଯାନ୍ତି । ଭାରତ, ବର୍ମା, ମାଲୟ, ଚୀନ, ଫର୍ମୋଜା ଓ ଜାପାନ ଏମାନଙ୍କର ବାସଭୂମି । ଏହି ବିସ୍ତୀର୍ଣ୍ଣ ଅଞ୍ଚଳରେ ଭୌଗଳିକ ପରିସ୍ଥିତି ଅନୁସାରେ ବିଭିନ୍ନ କିସମ (variety)ର କୁଟୁରା ଦେଖିବାକୁ ମିଳନ୍ତି । ଉତ୍ତର ଭାରତର କୁଟୁରର ବର୍ଣ୍ଣ ଉଜ୍ଜ୍ୱଳ ବାଦାମୀ । ଏହାର ବୈଜ୍ଞାନିକ ନାମ Muntiacus muntjak vaginalis । ଦକ୍ଷିଣ ଭାରତର କୁଟୁରର ନାମ M. m. malabaricus । ଏହା ସିଂହଳରେ ମଧ୍ୟ ବାସ କରେ । ବର୍ମାରେ ଦେଖା ଯାଉଥିବା କୁଟୁର ଉଜ୍ଜ୍ୱଳ ଲାଲ । ଟେନାସେରିମ ଅଞ୍ଚଳରେ ବାସ କରୁଥିବା କୁଟୁର ଏକ ସ୍ୱତନ୍ତ୍ର ଜାତିର, ବୈଜ୍ଞାନିକ ନାମ M-feae । ଓଡ଼ିଶାର ସବୁ ଜିଲ୍ଲାର ଜଙ୍ଗଲରେ କୁଟୁର ଦେଖାଯାନ୍ତି ।

କୁଟୁରା ଘନ ଜଙ୍ଗଲାବୃତ ପାହାଡ଼ିଆ ଅଞ୍ଚଳରେ ବାସ କରେ । ହିମାଳୟ ଅଞ୍ଚଳ ଓ ଦକ୍ଷିଣ ଭାରତରେ କୁଟୁରା 1500 ରୁ 2450 ମିଟର (5000-8000 ଫୁଟ ) ଯାଏ ଉଚ୍ଚ ସ୍ଥାନରେ ରହନ୍ତି । ବେଳେବେଳେ ଯା' ଠାରୁ ଅଧିକ ଉଚ୍ଚ ସ୍ଥାନରେ ମଧ୍ୟ ଦେଖାଯାନ୍ତି । ଏମାନେ ଏକାକୀ ବା ଯୋଡ଼ି ଯୋଡ଼ି ହୋଇ ବାସ କରନ୍ତି, ସମୟ ସମୟରେ ଗୋଟିଏ ପରିବାର ଶାବକମାନଙ୍କ ସହିତ ଏକ ଦଳ ଗଠନ କରି ବୁଲିବାର ଦେଖାଯାଏ । କୁଟୁରା ଘଞ୍ଚ ଜଙ୍ଗଲ ଭିତରେ ରହନ୍ତି । ଚରିବା ପାଇଁ ଜଙ୍ଗଲ ଭିତରେ ରହିଥିବା ଖୋଲା ପଡ଼ିଆ ଓ ଜଂଗଲର ପ୍ରାନ୍ତକୁ ଆସନ୍ତି । ପ୍ରାୟଶଃ ଦିନବେଳେ ଚରାବୁଲା କରନ୍ତି । ବିଭିନ୍ନ ଜାତିର ଘାସ ପତ୍ର ଓ ଫଳ ସେମାନଙ୍କର ଆହାର ।

କୁଟୁରାର ବୋବାଳି ଦୂରକୁ କୁକୁର ଭୁକୁଛି ବୋଲି ଭ୍ରମ ହୁଏ । ଏଥିପାଇଁ ଏହାର ଇଂରାଜୀ ନାମ Barking deer (ଭୁକା ହରିଣ) । ମଧ୍ୟେ ମଧ୍ୟେ ଏମାନେ ବୋବାନ୍ତି, ବିଶେଷକରି ଉଷା ଓ ପ୍ରଦୋଷରେ ଏବଂ ବେଳେବେଳେ ସନ୍ଧ୍ୟା ପରେ ବୋବାନ୍ତି । ଏମାନେ ଡରକି ଦୌଡ଼ି ପଳାଇବା ସମୟରେ ଏକ ପ୍ରକାର ଫଟ୍ ଫଟ୍ ବା ଚଡ୍ ଚଡ୍ ଶବ୍ଦ ହୁଏ । ପୂର୍ବେ ପ୍ରକୃତିତତ୍ତ୍ୱବିତ୍‌ମାନେ ବିଶ୍ୱାସ କରୁଥିଲେ, ଖୁରାରେ ଖୁରା ଘଷି ହେବା ଫଳରେ ଏପରି ଶବ୍ଦ ଜାତ ହୁଏ । ଏ ଧାରଣା ଠିକ୍ ନୁହେଁ । ପାଟି ଦ୍ୱାରା ସେମାନେ ଏପରି ଶବ୍ଦ କରନ୍ତି ।

ଏମାନଙ୍କ ଯୌନ ମିଳନ ପାଇଁ କୌଣସି ନିର୍ଦ୍ଦିଷ୍ଟ ଋତୁ ନାହିଁ। ବର୍ଷର ଯେ କୌଣସି ସମୟରେ ସଙ୍ଗମ ହୋଇପାରେ । ସାଧାରଣତଃ ଶୀତ ଋତୁରେ ମାଈ କୁଟୁରା ବେଶୀ ସଂଖ୍ୟାରେ ଗର୍ଭ ଧାରଣ କରନ୍ତି । ଥରକେ ଗୋଟିଏ ଶାବକ ଜନ୍ମ ହୁଏ । କେତେ କେତେବେଳେ ଦୁଇଟି ଛୁଆ ଜନ୍ମ ହୋଇଥାନ୍ତି । ବର୍ଷାର ଆରମ୍ଭ ସମୟକୁ ଶାବକ ଜନ୍ମ ହୁଅନ୍ତି । ଛଅ ମାସର ହେବାଯାଏ ଶାବକ ଦେହରେ ଧଳା ଟିପି ଟିପିଆ ଚିହ୍ନ ଥାଏ; ତା'ପରେ ଲିଭିଯାଏ ।

ମେ'–ଜୁନ୍ ମାସରେ କୁଟୁରାମାନଙ୍କର ଶିଙ୍ଗ ଖସିପଡ଼େ ଓ ନୂଆ ଶିଙ୍ଗ ଉଠେ । ଓଡ଼ିଶାର ସବୁ ଜଙ୍ଗଲରେ କୁଟ୍ରା ବାସ କରନ୍ତି ।

କୁଟୁରା, କୁଟରା ବା କୁଟ୍ରାର ବିଭିନ୍ନ ଭାଷାରେ ନାମ.–ହିନ୍ଦି କାକର; ମାରାଠୀ–ଭେକର; ତାମିଲ–କାଟ୍ ଆରଡୁ; କାନାଡ଼ି–ଜାର୍ଡ କୁ (ଉ) ରି; ବର୍ମିଜ–ଜୀ; ଇଂରାଜୀ;–Muntjal , Barking deer ଓ Rib–faced deer । ବୈଜ୍ଞାନିକ ନାମ Muntiacus muntjak (Zimmermann) ।

# କସ୍ତୂରୀ ମୃଗ

କସ୍ତୂରୀ ମୃଗ ଗୋଟିଏ କ୍ଷୁଦ୍ର ହରିଣ । କାନ୍ଧଠାରେ ଏହାର ଉଚ୍ଚତା ପ୍ରାୟ 50 ସେଣ୍ଟିମିଟର (20 ଇଞ୍ଚ ); ନିତମ୍ବଠାରେ ଉଚ୍ଚତା ସାମାନ୍ୟ ଅଧିକ ।

ଲକ୍ଷଣ ଦୃଷ୍ଟିରୁ ବିଚାର କଲେ କସ୍ତୂରୀ ମୃଗ, ମୃଗ ନୁହେଁ କି ଏଣ୍ଟିଲୋପ ନୁହେଁ ; ଦୁଇ ପ୍ରାଣୀର ମଝିମଝିଆ । ମୃଗ ହେଲେ ମଧ୍ୟ ମୃଗ ମାନଙ୍କର ସମସ୍ତ ଲକ୍ଷଣ ଏହାଠାରେ ଦେଖାଯାଏ ନାହିଁ । ଏହା ଶିଙ୍ଗ ହୀନ ଓ ଏହାର ଆନନ ଗ୍ରନ୍ଥି ( face gland ) ନ ଥାଏ । ସାଧାରଣତଃ ହରିଣ ମାନଙ୍କଠାରେ ଏ ଦୁଇଟି ଥାଏ । ତା' ଛଡ଼ା ହରିଣଙ୍କର ପିତାଶୟ ( gall bladder ) ନ ଥାଏ ; ମାତ୍ର କସ୍ତୂରୀ ମୃଗଙ୍କଠାରେ ତାହା ଦେଖିବାକୁ ମିଳେ । କେବଳ ସେତିକି ନୁହେଁ, ଏମାନଙ୍କର ପୁଚ୍ଛ-ଗ୍ରନ୍ଥି

( Candal gland ) ଓ କସ୍ତୂରୀ ଗ୍ରନ୍ଥି ( musk gland ) ଥାଏ, ଯାହା ହରିଣଙ୍କର ନାହିଁ । କସ୍ତୂରୀ ମୃଗର ଲାଞ୍ଜରେ ମଧ୍ୟ ସ୍ୱତନ୍ତ୍ରତା ରହିଛି । ପାଯୁ ଅଞ୍ଚଳର ଲମ୍ବା ଲୋମ ଭିତରେ ଲାଞ୍ଜ ପ୍ରାୟ ଲୁଚି ରହିଥାଏ । ଲାଞ୍ଜର ବେଶୀଭାଗ ଲୋମହୀନ; କେବଳ ଅଗ୍ରଭାଗରେ ଗୋଛାଏ ଲୋମଥାଏ ଏବଂ



( ଚିତ୍ର ନଂ 139 କସ୍ତୂରୀ ମୃଗ )

ମୂଳ ଅଂଶରେ ଗୋଛାଏ ଲୋମ ଉପର ଭାଗ ଓ କଡ଼କୁ ଆଚ୍ଛାଦନ କରି ରହିଥାଏ । ଲାଞ୍ଜର ପାର୍ଶ୍ୱ ଅଂଶର ଚର୍ମଢିଲା ଓ ସେଥିରେ ଲମ୍ବା ବାଗରେ ଏକ ସରୁ ଛିଦ୍ର ରହିଥାଏ । ଏହା ତା'ର ପୁଚ୍ଛ-ଗ୍ରନ୍ଥିର ମୁଖ । ପୁରୁଷ କସ୍ତୂରୀ ମୃଗର ନାଭିର ଅଗ୍ରଭାଗରେ ଚମ ତଳେ କସ୍ତୂରୀ–ଗ୍ରନ୍ଥି ( preputial follicle ) ଅବସ୍ଥିତ । ଏଥିରୁ ସଦ୍ୟ ନିର୍ଗତ ରସର ଗନ୍ଧ ଅପ୍ରୀତିକର, ଉଗ୍ର ଓ କେତେକ ପରିମାଣରେ ମୂତ୍ର ଗନ୍ଧ ପରି । ଶୁଖିଗଲେ ଏଥିରୁ ପ୍ରୀତିକର, ମଧୁର, କସ୍ତୂରୀ ବାସ ବାହାରେ । ଅତର ଓ ସୁଗନ୍ଧ ଦ୍ରବ୍ୟରେ ଏହାର ବ୍ୟବହାର ଥିବାରୁ, ବହୁ ସଂଖ୍ୟାରେ ଅର୍ଣ୍ଣିଗ କସ୍ତୂରୀ ମୃଗ ବଧ ହୋଇଥାନ୍ତି । ଅର୍ଣ୍ଣିଗ ମୃଗର ପୁଚ୍ଛ ଗ୍ରନ୍ଥି ଓ କସ୍ତୂରୀ ଗ୍ରନ୍ଥି ଉତ୍ତମ ରୂପେ ବୃଦ୍ଧି ପ୍ରାପ୍ତ ହୋଇଥିବାର ଅନୁମିତ, ପ୍ରଜନନ ହୁଏ । ଋତୁରେ ମାଈ ମୃଗ ଅର୍ଣ୍ଣିଗ ମୃଗ ନିକଟକୁ ଆକୃଷ୍ଟ ହୋଇ ଆସେ । ଉଚ୍ଚ ପାର୍ବତ୍ୟ ବରଫାବୃତ ଅଞ୍ଚଳ ଓ ଖସଡ଼ା ପଥର ଉପରେ ବିଚରଣ କରି ପାରିବା ପାଇଁ ଏହାର ପାଦ ଉପଯୋଗୀ । ପାଦର ମଧ୍ୟମ ଖୁର ଲମ୍ବ ଓ ଗୋଜିଆ ଏବଂ କଡର

ଖୁର ଅପେକ୍ଷାକୃତ ବଡ଼ । ଏମାନଙ୍କର ଶ୍ୱଦନ୍ତ ( Canine ) ଉତ୍ତମ ବୃଦ୍ଧି ପ୍ରାପ୍ତ; ବିଶେଷ କରି ଅଣ୍ଡିରର ଶ୍ୱଦନ୍ତ ବଡ ।

କସ୍ତୂରୀ ମୃଗର ଦେହ ଘନ ଲୋମାଚ୍ଛାଦିତ; ଲୋମ ଟାଆଁଶା । ଏହାର ବର୍ଣ୍ଣ ଘନ ବାଦାମୀ, ମଧ୍ୟେ ମଧ୍ୟେ ଧୂସର ବର୍ଣ୍ଣର ଛିଟାଥାଏ ।

କେନ୍ଦ୍ର ଓ ଉତ୍ତର ପୂର୍ବ ଏସିଆର ବିସ୍ତୀର୍ଣ୍ଣ ଅଞ୍ଚଳରେ କସ୍ତୂରୀ ମୃଗ 2222-3650 ମିଟାର ( 8000-12000 ଫୁଟ ) ଉଚ୍ଚତାରେ ବାସ କରନ୍ତି । କାଶ୍ମୀର, ନେପାଳ ଓ ସିକିମ୍‌ରେ ଏମାନେ ଦେଖାଯାନ୍ତି । ଏମାନେ ଏକାକୀ ବା ଯୋଡି ଯୋଡ଼ି ହୋଇ ବୁଲନ୍ତି । ଯେଉଁ ଉଚ୍ଚତାରେ ପାଇନ୍ ବା ଦେବଦାରୁ ଜାତୀୟ ବୃକ୍ଷ ଦେଖାଯାଏ, ତା' ଠାରୁ ଉଚ୍ଚ ସ୍ତରରେ ଭୁର୍ଜ ବା ବାର୍ଚ (birch) ବୃକ୍ଷ ଜନ୍ମେ । ଭୁର୍ଜ ବୃକ୍ଷର ଜଙ୍ଗଲରେ କସ୍ତୂରୀ ମୃଗ ରହନ୍ତି । ବେଳେ ବେଳେ ନିମ୍ନ ଅଞ୍ଚଳକୁ ଆସିଲେ ମଧ୍ୟ ଜଙ୍ଗଲରୁ ବାହାରନ୍ତି ନାହିଁ । ଜଙ୍ଗଲ ଭିତରେ ନିଭୃତ ସ୍ଥାନ ଦେଖି ଭୂମିକୁ ଉଖାରି ଛୋଟଖାତ ପରି କରି ସେଠାରେ ବିଶ୍ରାମ ନିଅନ୍ତି, ସକାଳେ ଓ ଅପରାହ୍ନ ବେଳା ଚରବୁଲ କରିବାକୁ ବାହାରନ୍ତି । ଘାସ, ଫୁରୁଫୁରୀ (lichen), ପତ୍ର ଓ ଫୁଲ ଏମାନଙ୍କର ଆହାର ।

ଲୋକ ବିଶ୍ୱାସ, ଜାନୁଆରୀ ମାସରେ ଏମାନଙ୍କର ପ୍ରଜନନ ହୁଏ ଏବଂ ଜୁନ୍ ମାସରେ ଶାବକ ଜାତ ହୁଅନ୍ତି ।

କସ୍ତୂରୀର ସୁଗନ୍ଧ ଦ୍ରବ୍ୟ ପ୍ରସ୍ତୁତିରେ ବ୍ୟବହାର ଥିବାରୁ, ଗୋଟିଏ ହିସାବ ଅନୁସାରେ ବାର୍ଷିକ 60,000 ଯାଏ କସ୍ତୂରୀ ମୃଗକୁ ବଧ କରଯାଏ ଓ 2000 କିଲୋଗ୍ରାମ କସ୍ତୂରୀ ( Muscone, $C_{16}H_{30}^{o}$ ) ସଂଗୃହୀତ ହୁଏ । କସ୍ତୂରୀ ମୃଗଠାରୁ ସଂଗ୍ରହ କରଯାଉଥିବା ପ୍ରାକୃତିକ କସ୍ତୂରୀର ବିକ୍ରୟ ମୂଲ୍ୟ ଗ୍ରାମକୁ ଏଗାର ଟଙ୍କାରୁ (ପାଉଣ୍ଡ 5000 ଟଙ୍କା) ଅଧିକ ହୁଏ । ତିବ୍ବତ୍‌ର ଟନକୁଇନ୍ ଅଞ୍ଚଳର କସ୍ତୂରୀ ମୃଗମାନଙ୍କର କସ୍ତୂରୀ ସବୁଠାରୁ ମୂଲ୍ୟବାନ ।

ବିଭିନ୍ନ ଭାଷାରେ କସ୍ତୂରୀ ମୃଗର ନାମ:—ହିନ୍ଦି—କସ୍ତୂରୀ, ମାସକ୍ଷ, କାଶ୍ମିରୀ—ରଓସ, ରନସ; ଇଂରାଜି—Musk deer । ବୈଜ୍ଞାନିକ ନାମ Moschus moschiferus Linnaeus ।

# ଖୁରାଣ୍ଡ

ଖୁରଣ୍ଡ ଗୋଟିଏ କ୍ଷୁଦ୍ର କୌତୁକିଆ ହରିଣ । କାନ୍ଧଠାରେ ଏହାର ଉଚ୍ଚତା 25ରୁ 30 ସେଣ୍ଟିମିଟାର ( 10-13 ଇଞ୍ଚ ) ଯାଏ ହୋଇଥାଏ ।

ପୂର୍ବେ କୁହାଯାଇଅଛି, ସମସ୍ତ ସମ-ଖୁରିକ ପ୍ରାଣୀ ( Cloven-hoofed animals ) ଯଥା–ଶୂକର, ଜଳହସ୍ତୀ ( hippopotamus ), ଓଟ (Camel) ମୃଗ, ଜିରାଫ, ଗୟଳ ଏବଂ ଗୋମହିଷାଦି ପ୍ରାଣୀ ଆର୍ଟିଓଡ଼େକ୍‌ଟାଇଲା ( Artiodactyla ) ବର୍ଗ ଅନ୍ତର୍ଭୁକ୍ତ । ଏମାନଙ୍କ ମଧ୍ୟସ୍ଥ ରୋମନ୍ଥକ ପ୍ରାଣୀ ( ruminants ) , ଯଥା–ଓଟ, ମୃଗ, ଜିରାଫ୍, ଗୟଳ ଓ ଗୋମହିଷାଦି ପ୍ରାଣୀ ରୁମିନାନ୍‌ସିଆ ( Ruminantia ) ଉପବର୍ଗ ( Suborder ) ଅଧୀନ । ଏହି ଉପବର୍ଗ କେତୋଟି ଅଧୋବର୍ତ୍ତୀ–ବର୍ଗ ( infra order ) ବିଭକ୍ତ । ଏ ପର୍ଯ୍ୟନ୍ତ ଉପରେ ଆମେ ଯେଉଁସବୁ ସମଖୁରିକ ପ୍ରାଣୀମାନଙ୍କ ସମ୍ବନ୍ଧରେ, ଯଥା- ଗୋମହିଷାଦି ପ୍ରାଣୀ ଓ ମୃଗ ବଂଶ, ଆଲୋଚନା କରିଅଛୁଁ, ସେ ସବୁ ରୁମିନାନସିଆ ଉପବର୍ଗର ପେକୋରା ( Pecora) ଅଧୋବର୍ତ୍ତୀ ବର୍ଗ-ଅନ୍ତର୍ଭୁକ୍ତ । ଖୁରାଣ୍ଡ ରୁମିନାନସିଆ ଉପବର୍ଗର ଟ୍ରାଗୁଲିନା (Tragulina) ଅଧୋବର୍ତ୍ତୀ-ବର୍ଗ ଓ ଟ୍ରାଗୁଲିଡ଼ି (Tragulidae) ବଂଶ ( family ) ଅଧୀନ । ଏହାର କାରଣ ଏହି ଯେ ଖୁରାଣ୍ଡଠାରେ କେତେକ ଲକ୍ଷଣ ଦେଖିବାକୁ ମିଳେ ଯାହା ଅନ୍ୟ ରୋମନ୍ଥକ ପ୍ରାଣୀମାନଙ୍କଠାରୁ ଭିନ୍ନ । ଖୁରାଣ୍ଡର ପାକସ୍ଥଳୀ ତିନୋଟି କୋଠରୀରେ ବିଭକ୍ତ ; ମାତ୍ର ରୋମନ୍ଥକ ପ୍ରାଣୀମାନଙ୍କର ପାକସ୍ଥଳୀ ଚାରିଗୋଟି କୋଠରୀରେ ବିଭକ୍ତ । ସେମାନଙ୍କର ପ୍ରତ୍ୟେକ ପାଦରେ ପଦାଙ୍ଗୁଳି ଚାରିଟି ଏବଂ କଡ଼ର ଅଙ୍ଗୁଳିରେ ଥିବା ଅସ୍ଥି ପୂର୍ଣ୍ଣରୂପେ ଗଠିତ । ଅନ୍ୟ ରୋମନ୍ଥକ ପ୍ରାଣୀମାନଙ୍କର ପଦାଙ୍ଗୁଳିର ଅସ୍ଥି ସମ୍ପୂର୍ଣ୍ଣ ରୂପେ ଗଠିତ ନୁହେଁ, କେତେକ କ୍ଷେତ୍ରରେ ଅସମ୍ପୂର୍ଣ୍ଣ ବା ଉଭେଇ ଯାଇଛି । ଖୁରଣ୍ଡମାନଙ୍କର ଶିଙ୍ଗ ନଥାଏ । କସ୍ତୁରୀ ମୃଗଙ୍କ ପରି ଉପର ପାଟିରେ ଶ୍ୱଦନ୍ତ ଉତ୍ତମ ବର୍ଦ୍ଧିତ ଓ ଅଣ୍ଟିରଙ୍କ


( ଚିତ୍ର ନଂ 140 ଖୁରଣ୍ଡ )

ପାଟିରେ ପଦାକୁ ବାହାରି ରହିଥାଏ । ଅବଶ୍ୟ ଏହି କ୍ଷୁଦ୍ର ମୃଗମାନଙ୍କର ଅନ୍ୟ ରୋମନ୍ଥକ ପ୍ରାଣୀମାନଙ୍କ ପରି ଉପର ପାଟିରେ ଛାମୁ ଦାନ୍ତ ନ ଥାଏ । କେତେକ ଲକ୍ଷଣ ଦୃଷ୍ଟିରୁ ବିଗ୍ୱର କରି ଖୁରଣ୍ଡ, ଶୂକର ଓ ମୃଗମାନଙ୍କ ମଧ୍ୟରେ ଏକ ମଧ୍ୟବର୍ତ୍ତୀ ପ୍ରାଣୀ ବୋଲି କେହି କେହି ମନେ କରନ୍ତି ।

ସେ ଯାହା ହେଉ, ଯେତେ ରୋମନ୍ଥକ ପ୍ରାଣୀ ଅଛନ୍ତି ଖୁରଣ୍ଡ ସେମାନଙ୍କ ମଧ୍ୟରେ କ୍ଷୁଦ୍ରତମ । ଗ୍ୱରିଜାତି ଖୁରଣ୍ଡ ଦେଖିବାକୁ ମିଳନ୍ତି । ଯଥା–ଭାରତୀୟ ଖୁରଣ୍ଡ ( Indian chevrotian ), Tragulus meminna ( Erxleben ); ମାଲୟ ଖୁରଣ୍ଡ ( Malay chevrotain ), T. napu ( F. cuvier ) ଓ T. jareanicus ( osbeck ), ଏବଂ ଆଫ୍ରିକୀୟ ଖୁରଣ୍ଡ ( Africen water chevrotain ), Hyemoschus aquaticus । ଆଫ୍ରିକାର ଖୁରଣ୍ଡ ନଦୀ ବନ୍ଧରେ ବାସ କରେ ଓ ଜଳଜ ଉଦ୍ଭିଦ ଖାଏ । ଏସିଆର ଖୁରଣ୍ଡମାନଙ୍କର 'କମାଣ ଅସ୍ଥି'' ( 'Canon bones' ) ଥାଏ ; ମାତ୍ର ଆଫ୍ରିକୀୟ ଖୁରଣ୍ଡର ପାଦରେ ତାହା ନଥାଏ ।

କ୍ଷୁଦ୍ର କୌତୁକିଆ ଖୁରଣ୍ଡର ଗୋଡ ନହକା ଓ ଦେହର ପଛ ଅଂଶ ସମ୍ମୁଖ ଭାଗ ତୁଳନାରେ ଅଧିକ ଉଚ୍ଚ । ଦେହର ବର୍ଣ୍ଣ ସବୁଜ-ବାଦାମୀ ଓ ତା' ଉପରେ ହଳଦିଆ ଛିଟା ଥାଏ । କଡରେ ଫିକା ହଳଦିଆ ବା ଧଳା ରଙ୍ଗର ଚିହ୍ନ ଧାଡ଼ି ଧାଡ଼ି ହୋଇ ରହିଥାଏ ଓ ସେସବୁ ମିଶି ରେଖାରେ ପରିଣତ ହୋଇଥାନ୍ତି । ପେଟ ପାଖ ଧଳା ଗଳାରେ ତିନୋଟି ଧଳା ଗାର ଥାଏ । ଖୁରଣ୍ଡ ଗୋଟିଏ କ୍ଷୁଦ୍ର ପ୍ରାଣୀ, ତା'ର ଦେହର ବର୍ଣ୍ଣ ପରିପାର୍ଶ୍ୱର ବର୍ଣ୍ଣ ସହିତ ମିଶିଯାଏ ଓ ସେ ଅତି ତରକା—ଏସବୁ କାରଣରୁ ତାହା ସହଜରେ ଲୋକଙ୍କ ଆଖିରେ ପଡ଼େ ନାହିଁ ।

ଖୁରଣ୍ଡ ଦକ୍ଷିଣ ଭାରତ ଓ ଶ୍ରୀଲଙ୍କାର ଜଙ୍ଗଲମାନଙ୍କରେ 1850 ମିଟାର ( 6000 ଫୁଟ ) ଉଚ୍ଚତା ଯାଏ ସ୍ଥାନରେ ବାସ କରନ୍ତି । ଉତ୍ତରରେ 240 ଅକ୍ଷାଂଶ ଯାଏ ସେମାନେ ଦେଖାଯାନ୍ତି ।

ପାହାଡ଼ିଆ ଘାସ ଜମି ଓ ଜଙ୍ଗଲ, ଖୁରାଣ୍ଟମାନଙ୍କର ବାସ । ବଡ ବଡ଼ ପଥର ବା ବେଢ଼ ବଡ କାଠ ଗଣ୍ଡି ସନ୍ଧିରେ ଏମାନେ ଆଶ୍ରୟ ନେଇଥାନ୍ତି । ଆଶ୍ରୟସ୍ଥଳୀଠାରୁ ଦୂରକୁ ଖୁରାଣ୍ଟ ଚରିବାକୁ ଯାନ୍ତି ନାହିଁ । ଟିକିଏ ଚମକିଲେ ପଳାଇ ଆସି ଲୁଚନ୍ତି । ପ୍ରଦୋଷ ଓ ଗୋଧୂଳି ସମୟରେ ଚରିବା ପାଇଁ ଏମାନେ ପଦାକୁ ବାହାରିଥାନ୍ତି । କୁକୁର ଏମାନଙ୍କର ପ୍ରଧାନ ଶତ୍ରୁ । କୁକୁର ଯାଙ୍କୁ ଘଉଡ଼ାଇଲେ, ଏମାନେ ଶୁଖିଲ ଗଛର ଖୋଲ ଭିତରେ ପଶିଯାଇ ଭିତରେ ଭିତରେ ଉପରକୁ ଉଠିଯାଇ ପାରନ୍ତି ।

ପଥର ସନ୍ଧି ବା କାଠ ଗଢ଼ର ଖୋଲ ଭିତରେ ମାଈ ଖୁରାଣ୍ଟ ଛୁଆ କରେ । ଥରକେ ସାଧାରଣତଃ ଦୁଇଟି ଶାବକ ଜନ୍ମ ହୁଅନ୍ତି । ବର୍ଷା ଶେଷକୁ ବା ଶୀତ ଋତୁର ଆରମ୍ଭ ସମୟକୁ ଛୁଆ ଜନ୍ମ ହୁଅନ୍ତି । ପ୍ରଜନନ ଋତୁ ବ୍ୟତୀତ ଅନ୍ୟ ସମୟରେ ଅଣ୍ଡିରା ଏକାକୀ ବାସ କରେ ।

ଖୁରାଣ୍ଟ ଏକ ଭୟାଳୁ ଓ ଧୀର ପ୍ରାଣୀ; କିନ୍ତୁ ସହଜରେ ପୋଷମାନେ । ଓଡ଼ିଶାର ସବୁ ଜଙ୍ଗଲରେ ଖୁରାଣ୍ଟ ଅଛନ୍ତି । ଏହାର ମାଂସ ସୁସ୍ୱାଦୁ ହୋଇଥିବାରୁ ଓଡ଼ିଶାରେ ଅନେକ ସ୍ଥାନରେ ଏମାନଙ୍କୁ ଜାଲରେ ଧରି ମାରନ୍ତି । ଏଣୁ ଏମାନଙ୍କର ସଂଖ୍ୟା ଆସ୍ତେ ଆସ୍ତେ କମିଯାଉଅଛି ।

ବିଭିନ୍ନ ଭାଷାରେ ଖୁରାଣ୍ଟର ନାମ :–ଓଡ଼ିଆ–ଖୁରାଣ୍ଟ, ଖୁରାଣ୍ଡି, ଗୁରଣ୍ଡ, ଗୁରାଣ୍ଡି; ହିନ୍ଦି–ପିସୁରା, ପିସୋରା; ମାରାଠୀ-ପିସୋରୀ, ଆହେଦା; ବର୍ମିଜ–ୟୁନ; କାନାଡ଼ି–କୁ (ଉ)ର ଆଣ୍ଡି, କୂ (ଉ)ରେ ; ତାମିଲ–ସାରୁଣ୍ଣୁ (ଉ) ମାରନ, କୁର, କୁ (ଉ) ରନ୍ ପାନ୍ନି ; ଇଂରାଜି–Indian chevrotain Mouse-deer ( ମୂଷିକ ହରିଣ ) । ବୈଜ୍ଞାନିକ ନାମ Tragulus meminna ( Erxleben ) ।



# ଦ୍ୱାତ୍ରିଂଶ ଅଧ୍ୟାୟ

# ଶୂକର ବଂଶ

ଶୂକର ମାନେ ସମକ୍ଷୁରିକ ପ୍ରାଣୀ । ହେଲେହେଁ ଆଟଓ ଡେକ୍‌ଟାଇଲା (Artiodactyla) ବର୍ଗ ଅଧୀନରେ ରୋମନ୍ଥକ ପ୍ରାଣୀ ଏକ ସ୍ୱତନ୍ତ୍ର ଉପବର୍ଗ (ରୁମିନାନସିଆ, Ruminantia) ଗଠନ କଲା ପରି, ଶୂକର ମାନେ ଏକ ସ୍ୱତନ୍ତ୍ର ଉପବର୍ଗ–ସୁଇଫରମିସ (Suiformes) ଅନ୍ତର୍ଭୁକ୍ତ । ଶୂକର, ପେକାରୀ (Peccary- ନବ ଗୋଲାର୍ଦ୍ଧ ଶୂକର) ଓ ଜଳହସ୍ତୀ (hipppopotamus) ଏହି ଉପବର୍ଗର ଅଧୀନ ; ମାତ୍ର ଭିନ୍ନ ଭିନ୍ନ ବଂଶ ଗଠନ କରନ୍ତି । ଖୁରାଣ୍ଡମାନଙ୍କ ପରି ଏହି ପ୍ରାଣୀମାନଙ୍କର ପାଦରେ ଗ୍ରହିଟି କରି ଅଙ୍ଗୁଳି ଏବଂ ତା' ଭିତରର ଅସ୍ଥି ପୂର୍ଣ୍ଣ ବର୍ଦ୍ଧିତ । ଏମାନଙ୍କର ଉପର ପାଟିରେ କର୍ତ୍ତନ ଦନ୍ତ (incisor teeth) ଥାଏ । ପେଷଣ ଦନ୍ତ ବପ୍ରଦନ୍ତ (bunodont) ଅଟେ ଅର୍ଥାତ୍ ଦନ୍ତ ଶିଖର (crown) ର କୂଟକ (tubercle) ବର୍ତ୍ତୁଳ । ଶ୍ୱଦନ୍ତ ଦୀର୍ଘ । ବାର୍‌ହା ଓ ଜଳହସ୍ତୀର ଦନ୍ତ ସୂତ୍ର ତଳେ ସୂଚିତ ହେଲା ।

ବାର୍‌ହା କ(I) $\frac{3}{3}$ ଶ୍ୱ (c) $\frac{1}{1}$ ଚ (Pm) $\frac{4}{4}$ ପେ (M) $\frac{3}{3}$ ମୋଟ 44

ଜଳହସ୍ତୀ କ(I) $\frac{2}{2}$ ଶ୍ୱ (c) $\frac{1}{1}$ ଚ (Pm) $\frac{4}{4}$ ପେ (M) $\frac{3}{3}$ ମୋଟ 40

ଶୂକରମାନେ ଖାଦ୍ୟ ରୋମନ୍ଥନ କରୁ ନଥିବାରୁ ଏମାନଙ୍କର ପାକସ୍ଥଳୀ ଜଟିଳ ନୁହେଁ । ଏମାନଙ୍କର ପାକସ୍ଥଳୀ ଏକକୋଠରୀ ବିଶିଷ୍ଟ । ଆହୁରି ମଧ୍ୟ, ଏହି ପ୍ରାଣୀମାନଙ୍କର ପୁରାତତ୍ତ୍ୱ ରୋମନ୍ଥକ ପ୍ରାଣୀମାନଙ୍କର ପୁରାତତ୍ତ୍ୱଠାରୁ ଅଧିକ ପ୍ରାଚୀନ ।

ପେକାରୀ କେବଳ କେନ୍ଦ୍ର ଓ ଦକ୍ଷିଣ ଆମେରିକାରେ ଦେଖାଯାନ୍ତି । ଜଳହସ୍ତୀ ଆଫ୍ରିକା ଭିନ୍ନ ଅନ୍ୟତ୍ର ମିଳନ୍ତି ନାହିଁ । ଅବଶ୍ୟ ଅତୀତ କାଳରେ, ପ୍ରସ୍ତର ଯୁଗରେ, ସେମାନେ ଭାରତରେ ବାସ କରୁଥିବାର ପ୍ରମାଣ ମିଳେ ।

ଶୂକରମାନଙ୍କୁ ସୁଇଡ଼ି (Suidae) ବଂଶଭୁକ୍ତ କରାଯାଏ । ଭାରତରେ ଦୁଇଟି ବିଭିନ୍ନ ଜାତି (gunus)ର ବନ୍ୟ ଶୂକର ଦେଖାଯାନ୍ତି । ଯଥା– ବାର୍ହା ଓ ବାମନ ଶୂକର (Pygmy hog) ।



(ଚିତ୍ର ନଂ 141 ବାର୍ହାର ବିସ୍ତୃତି)

ଶୂକରମାନଙ୍କୁ କେତେକ ବିଶେଷ ଲକ୍ଷଣଦ୍ୱାରା ଅନ୍ୟ ପ୍ରାଣୀମାନଙ୍କ ଠାରୁ ପୃଥକ କରାଯାଇ ପାରେ । ଏମାନଙ୍କର ଦେହ ଦୃଢ଼ ରୋମଦ୍ୱାରା ଆବୃତ । ମୁଣ୍ଡ ପ୍ରସାରିତ; ତାହା ହଠାତ୍ ଶେଷ ହୋଇଛି ଓ କର୍ତ୍ତିତ ହୋଇଥିଲା ପରି

ମନେ ହୁଏ; ଏବଂ ଅଗ୍ରଭାଗରେ ଚଳନଶୀଳ ନାସାଗ୍ର ଅବସ୍ଥିତ । ନାସାଗ୍ର ଚେପ୍‌ଟା ଚକ୍‌ତି ପରି ଓ ସେଥିରେ ନାସାଦ୍ୱାର ରହିଥାଏ । ଶୂକରମାନଙ୍କର ପଦ ସଂକୀର୍ଣ୍ଣ । ଉପର ପାଟିର ଶ୍ୱଦନ୍ତ ଉପର ଆଡ଼କୁ ଓ ବାହାର ଆଡ଼କୁ ବଢ଼େ । ଏମାନେ ଛକରେ, ସର୍ବଭୁକ୍ । ମାଈ ଶୂକର ଥରକେ ବହୁତ ସନ୍ତାନ ଜନ୍ମ କରନ୍ତି ଓ ସେମାନଙ୍କୁ ସ୍ତନ୍ୟ ଦାନ ପାଇଁ ଅନେକ ଗୁଡ଼ିଏ ଚୂଚୂକ ଥାଏ । ଶୂକରମାନଙ୍କୁ ସର୍ପବିଷ କାଟୁ କଲପରି ମନେ ହୁଏ ନାହିଁ ।

ବନ୍ୟ ଶୂକର ୟୁରୋପ, ଦକ୍ଷିଣ ଏସିଆ ଓ ଉତ୍ତର ଆଫ୍ରିକାରେ ବାସ କରନ୍ତି । ୟୁରୋପର ବନ୍ୟ ଶୂକର ଭାରତର ବନ୍ୟ ଶୂକର ବା ବାରହା ଠାରୁ ଭିନ୍ନ କିସମର । ୟୁରୋପୀୟ ବନ୍ୟ ଶୂକରର ବୈଜ୍ଞାନିକ ନାମ Sus scrofa scrofa Linnaeus; ଭାରତୀୟ ବାର୍‌ହା – Sus scrofa cristatus Wagner । ଏବେ ଭାରତରେ କେବଳ ଗୋଟିଏ ଜାତି ବାର୍‌ହା ଦେଖା ଯାଉଥିଲେ ମଧ୍ୟ ଆଦି ନୂତନ କଳ୍ପ (eocene period) ରେ ଛଅ ସାତ ଜାତି ବାର୍‌ହା ବାସ କରୁଥିଲେ ଓ ତନ୍ମଧ୍ୟରୁ ଗୋଟିଏ ଅତିକାୟ ଥିଲା ।

ୟୁରୋପୀୟ ଗୃହ ପାଳିତ ଶୂକର ୟୁରୋପୀୟ ବନ୍ୟ ଶୂକରଠାରୁ ଉଦ୍ଭୂତ ଓ ଭାରତୀୟ ଗୃହ ପାଳିତ ଶୂକର ବାରହା ଠାରୁ ଜାତ । ଗୃହପାଳିତ ଶୂକରର ପ୍ରକୃତି ବନ୍ୟ ଶୂକର ପରି ପ୍ରଚଣ୍ଡ ନୁହେଁ ଓ ଥୋମଣି ବନ୍ୟ ଶୂକରର ଥୋମଣି ତୁଳନାରେ କମ୍ ଲମ୍ବା । ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ ୟୁଗୋସ୍ଲାଭିଆ, ହାଙ୍ଗେରୀ, ଜର୍ମାନୀ ଓ ଡେନମାର୍କ ଆଦି ଦେଶ ଶୂକର ପାଳନ ପାଇଁ ପ୍ରସିଦ୍ଧ । ୟୁରୋପୀୟ ଗୃହ ପାଳିତ ଘୁଷୁରିର ଗର୍ଭ ଧାରଣ–କାଳ 115ଦିନ ଏବଂ ମା' ଶୂକର ଛଅ ସପ୍ତାହରୁ ଦୁଇମାସ ପର୍ଯ୍ୟନ୍ତ ଶାବକମାନଙ୍କୁ ସ୍ତନ୍ୟ ଦାନ କରେ । ଗୋଟିଏ ମାଈ ଶୂକର ଯଦି ଦଶ ବର୍ଷ କାଳ ବର୍ଷକୁ ଦୁଇରୁ ତିନି ଥର ଛୁଆ କରେ ଓ ଥରକେ ଛଅଟି ଶାବକ ଜନ୍ମ ହୁଅନ୍ତି ଏବଂ ତା'ର ମାଈ ଶାବକ ମାନେ ବୟଃ ପ୍ରାପ୍ତ ହୋଇ ସେହିଭଳି ଶାବକ ପ୍ରସବ କରନ୍ତି । ତେବେ ଦଶ ବର୍ଷରେ ସବୁ ଶୂକରଙ୍କ ସଂଖ୍ୟା ହେବ ପ୍ରାୟ ସତୁରି ଲକ୍ଷ । ଗୃହ ପାଳିତ ଧଳା ୟର୍କସାୟାର ଶୂକର ଶାବକ ଜନ୍ମ ବେଳେ ପ୍ରାୟ ଏକ କିଲୋଗ୍ରାମ ($2\frac{1}{2}$ ପାଉଣ୍ଡ) ଓଜନର ହୋଇଥାଏ, 15 ଦିନ ପରେ ତା'ର ଓଜନ ହୁଏ 4 କିଲୋଗ୍ରାମ (9 ପାଉଣ୍ଡ), ଦୁଇ ମାସରେ 15 କିଲୋଗ୍ରାମରୁ ଅଧିକ

(35 ପାଉଣ୍ଡ), ଛଅ ମାସରେ 68 କିଲୋଗ୍ରାମ (150 ପାଉଣ୍ଡ), ବର୍ଷକରେ ପ୍ରାୟ 118 କିଲୋଗ୍ରାମ (260 ପାଉଣ୍ଡ), ଓ ଶେଷରେ 272 କିଲୋଗ୍ରାମ (600 ପାଉଣ୍ଡ) ।

## ବାର୍‌ହା

ବାର୍‌ହା ଅନେକ ପରିମାଣରେ ଗୃହପାଳିତ ଶୂକର ପରି । ଏହାର ବର୍ଣ୍ଣ କଳା ମିଶା ଧୂସର; କଳଙ୍କିଆ ବାଦାମୀ ଓ ଧଳା ଲୋମ ମଧ୍ୟ ତା' ଭିତରେ ଥାଏ । ବୁଢା ବାର୍‌ହା ଅଧିକ ଧୂସର ଓ ଅଳ୍ପ ବୟସର ବନ୍ୟ ଶୂକର ବେଶୀ ବାଦାମୀ । ନବଜାତ ବାରହା ଶାବକ ଦେହରେ କଳା ବା ହାଲୁକା ରଙ୍ଗର ଡୋରା ପଡ଼ିଥାଏ । ଅଣ୍ଡିରା ମାନଙ୍କର ଶ୍ୱଦନ୍ତ ବେଶ୍ ବଡ଼ । ଉପର ଓ ତଳ ପାଟିର ଶ୍ୱଦନ୍ତ ବାହାର ଆଡ଼କୁ ବଙ୍କାଇ ପାଟିରୁ ବାହାରି ରହିଥାଏ । ଗ୍ରୀବାଠାରୁ ପିଠି ଉପରେ ଶେଷ ଯାଏ ଟାଆଁଶା କଳା ଲୋମର ଚୂଳ ବା କେଶର ଥାଏ । ଭାରତୀୟ ବାରହାର ଏହା ବିଶେଷତ୍ୱ । ୟୁରୋପୀୟ ବରାହ ପିଠିରେ କେଶର ନାହିଁ । ଭାରତୀୟ ବର୍‌ହା ଦେହରେ ଲୋମ ଅପେକ୍ଷାକୃତ ଅଳ୍ପ ।

ଗୋଟିଏ ପୂର୍ଣ୍ଣ ବୟଃପ୍ରାପ୍ତ ଅଣ୍ଡିରା ବରାହର କାନ୍ଧଠାରେ ଉଚ୍ଚତା 90 ସେଣ୍ଟିମିଟାର (36 ଇଞ୍ଚ) ଓ ଓଜନ 230 କିଲୋଗ୍ରାମ (500 ପାଉଣ୍ଡ) ରୁ ଅଧିକ । ବକ୍ରରେଖାର ବାହାର ପଟୁ ମାପିଲେ ତଳ ପାଟିର ଶ୍ୱଦନ୍ତ 32.1 ସେଣ୍ଟିମିଟାର ($12\frac{5}{8}$ ଇଞ୍ଚ) ଯାଏ ହେବାର ଦେଖାଯାଇଅଛି ।

ଭାରତୀୟ ବରାହ ସମଗ୍ର ଭାରତ, ବର୍ମା, ଟେନାସେରିମ, ଶ୍ୟାମ ଓ ମାଲୟ ଉପଦ୍ୱୀପର ଆଂଶିକ ଅଞ୍ଚଳରେ ବାସ କରନ୍ତି । ଶ୍ରୀଲଙ୍କାରେ ଏମାନେ ପ୍ରଭୂତ ।

ଭାରତରେ ବାର୍‌ହା ଘାସ, ବୁଦାଳିଆ ଜଙ୍ଗଲ ଓ ସମୟ ସମୟରେ ଅରଣ୍ୟରେ ବାସ କରେ । ବର୍ଷାପରେ ଏମାନେ କ୍ଷେତରେ ଆସି ପଡ଼ନ୍ତି ଓ ବିସ୍ତର କ୍ଷତି କରନ୍ତି । ଏମାନେ ସର୍ବଭୁକ୍ । ଖେତର ଫସଲ, ମୂଳ, କନ୍ଦ, କୀଟପତଙ୍ଗ, ସାପ; ନିହତ ଜନ୍ତୁ ବା ଅନ୍ୟପ୍ରାଣୀ ଖାଇଗଲା ପରେ ମୃତ ଜନ୍ତୁର ଯାହା ବଳି ପଡ଼ିଥାଏ; ଏପରିକି ମୃତ ପ୍ରାଣୀର ସଢ଼ା ମାଂସ ମଧ୍ୟ, ବାଘର

ଆହାର । ସେମାନେ ସାଧାରଣତଃ ଭୋରରେ ଓ ସନ୍ଧ୍ୟା ପରେ ଖାଦ୍ୟ ଅନ୍ୱେଷଣରେ ବାହାରନ୍ତି । ଯେଉଁଠି ଶାନ୍ତିରେ ବୁଲଚଲ କରିବା ସୁବିଧା ନୁହେଁ, ସେପରି ସ୍ଥାନରେ ସେମାନେ ଗର୍ତ୍ତଚର ।

ହିନ୍ଦୁ ପୁରାଣରେ ବିଷ୍ଣୁଙ୍କ ଦଶାବତାର ଭିତରେ ବରାହ ତୃତୀୟ ଅବତାର । ପ୍ରକୃତରେ ସବୁ ବନ୍ୟ ପ୍ରାଣୀଙ୍କ ଭିତରେ ଏମାନଙ୍କର ବୁଦ୍ଧି ପ୍ରଖର । ସାହାସ ଅଦମ୍ୟ ଓ ପ୍ରତିଜ୍ଞା ଦୃଢ଼ । ଖୁବ ଅଳ୍ପ ବନ୍ୟ ଜନ୍ତୁ ଅଛନ୍ତି ଯେଉଁମାନଙ୍କଠାରେ ଏ ସମସ୍ତ ଗୁଣ ଏକାଠି ଦେଖାଯାଏ । ବରାହର ଘ୍ରାଣ ଶକ୍ତି ପ୍ରବଳ ଏବଂ ଶ୍ରବଣ ଓ ଦୃଷ୍ଟି ଶକ୍ତି ମଧ୍ୟମ ଧରଣର । ଏମାନେ ଅତି କ୍ଷିପ୍ର



(ଚିତ୍ର ନଂ 142, ବାର୍ହା)

ଗତିରେ ବଂଶ ବୃଦ୍ଧି କରନ୍ତି । ବାର୍ହା ବର୍ଷର ସବୁ ସମୟରେ ଛୁଆ ଜନ୍ମ କରନ୍ତି । କେନ୍ଦ୍ର ଭାରତରେ ବନ୍ୟ ଶୂକର ବର୍ଷରେ ଦୁଇଥର, ବାର୍ଷାପୂର୍ବରୁ ଓ ବର୍ଷା ପରେ ସନ୍ତାନ ପ୍ରସବ କରନ୍ତି । ପ୍ରଜନନ ସମୟରେ ଅର୍ଣ୍ଣିଗ ଓ ମାଈ ବାର୍ହା ବହୁ ସଂଖ୍ୟାରେ ଏକାଠି ହୁଅନ୍ତି । ପ୍ରକୃତିତତ୍ତ୍ୱବିତ୍ ଡାନବାର ବ୍ରେନ୍ଡାର (Dunbar Brander) ଲିପି ବଦ୍ଧ କରି ଅଛନ୍ତି ଯେ ଗୋଟିଏ ଦଳରେ 170ରୁ ଅଧିକ ବରାହ ସେ ଦେଖିଥିଲେ । ସେମାନେ ବୃତ୍ତାକାରରେ ରହିଥିଲେ । ଦୁଇଟି ଅର୍ଣ୍ଣିଗ ଲଢ଼େଇ କରୁଥିଲେ । ଦୁଇଙ୍କ ଭିତରେ ଆଗରୁ ଯୁଦ୍ଧ ସରିଥିଲା । ବାକି ସମସ୍ତେ ଥିଲେ ଲଢ଼େଇର ଦର୍ଶକ ମାତ୍ର ।

ମାଈ ବନ୍ୟ ଶୂକର ଗର୍ଭ ଧାରଣର ଚାରି ମାସ ପରେ ଶାବକ ପ୍ରସବ କରେ ବୋଲି ବିଶ୍ୱାସ । ଛୁଆ ଜନ୍ମ ପୂର୍ବରୁ ମାଈ ବାର୍‌ହା ଘାସ ଓ ଡାଳପତ୍ର ଜମାକରି ସେଠି ଛୁଆ ଦିଏ ।

ପ୍ରଜନନ ପରେ ଅଣ୍ଡିରା ବାର୍‌ହା ଏକାକୀ ବା ତା' ଆକାରର ଆଉ ଏକ ଅଣ୍ଡିରାସହିତ ସାଥୀ ହୋଇ ବାସ କରେ । କେତେ କେତେ ବେଳେ ଗୋଟାଏ ଅଣ୍ଡିରା ଗୋଟିଏ ବା ଦୁଇଟି ମାଈସହିତ ବୁଲୁଥିବାର ମଧ୍ୟ ଦେଖିବାକୁ ମିଳେ ।



ବାର୍‌ହା



ଘୁଷୁରି

ସିଂହ, ବାଘ ଓ କଲରା ପତ୍ରିଆ ବାର୍‌ହାର ଶତ୍ରୁ । କାରଣ ବରାହ ଏମାନଙ୍କର ଖାଦ୍ୟ । ମାତ୍ର ଗୋଟିଏ ବଡ଼ ବାର୍‌ହା ଏଭଳି ସାହସୀ ଓ

ପରାକ୍ରମୀ ଯେ ସିଂହ ମଧ୍ୟ ତା ସହିତ ସରି ନୁହେଁ । ଆହତ ଅଣ୍ଡିରା ବାର୍‌ହା ଦୃଢ଼-ସଙ୍କଳ୍ପ ସହକାରେ ଆକ୍ରମଣ କରେ, କିଛି ମାନେ ନାହିଁ । ବାର୍‌ହା କ୍ଷତ ବିକ୍ଷତ ହେଲେ, ବଣରେ କୌଣସି ଗଛକୁ ଦାନ୍ତରେ ବିଦାରି, ସେଥିରୁ ନିଃସୃତ ରସକୁ କ୍ଷତ ସ୍ଥାନରେ ଲଗାଇ ଦିଏ ଓ ସେହି ଉଷଧରେ ତା'ର ଘା ସବୁ ଭଲ ହୋଇଯାଏ ବୋଲି ଲୋକ ବିଶ୍ୱାସ ରହିଛି ।

ବିଭିନ୍ନ ଭାଷାରେ ବାର୍‌ହାର ନାମ :-ହିନ୍ଦି-ସୁଅର, ବାର୍‌ବା, ବଦ୍ ଜାନ୍‌ଓ୍ୟାର, ବୁରା ଜାନ୍‌ଓ୍ୟାର; ମରଠୀ-ରାନ ଡୁକ୍କର; ତାମିଲ-ପୂର୍ନି; କାନାଡ଼ି-ହୁଣ୍ଡି; ମାଲୟାଲୀ-କାରଟ୍ଟୁ ପୂର୍ନି; ବର୍ମିଜ-ଓ୍ୟେଟ; ଇଂରାଜି – Indian wild boar (ଭାରତୀୟ ବନ୍ୟଶୂକର) । ବୈଜ୍ଞାନିକ ନାମ Sus scrofa Linnaeus cristatus Wagner ।

## ବାମନ ଶୂକର

ବାମନ ଶୂକର କାନ୍ଧଠାରେ ଉଚ୍ଚତାରେ 25 ସେଣ୍ଟିମିଟାର (10ଇଞ୍ଚ) ରୁ ଅଧିକ ହୁଏ ନାହିଁ । ଏହା ଶୂକର ପରି; ମାତ୍ର ଶୂକର ମାନଙ୍କର ଚାରି ଯୋଡ଼ା ଚୁଚୁକ ଥିବା ସ୍ଥଳେ, ବାମନ ଶୂକରର ସ୍ତନବେଣ୍ଟ ତିନି ଯୋଡା । ଏଥିପାଇଁ ଏହାକୁ ଏକ ଭିନ୍ନ ଉପ-ପ୍ରଜାତି ( sub-genus ) ପରକୁଲ (Porcula) ଭୁକ୍ତକରଯାଏ । ଏହାର ଲାଞ୍ଜ ଛୋଟ । ଏମାନଙ୍କର ଆଚରଣ ଓ ଅଭ୍ୟାସ ବାର୍‌ହା ପରି । ବାମନ ଶୂକର ପାଞ୍ଚଟିରୁ କୋଡ଼ିଏଟି ଯାଏ ଏକତ୍ର ଦଳବାନ୍ଧି ବାସ କରନ୍ତି ବୋଲି କେତେକ ପ୍ରକୃତିତତ୍ତ୍ୱବିତ୍ କହନ୍ତି । ଏମାନେ ରାତ୍ରୀରେ ଓ କ୍ୱଚିତ ଆଖିରେ ପଡ଼ନ୍ତି ।

**ବାମନ ଶୂକର** ହିମାଳୟ ପର୍ବତମାଳାର ପାଦଦେଶରେ ସିକିମ, ନେପାଳ, ଭୁଟାନ ଓ ଆସାମରେ ବାସ କରନ୍ତି । ଏମାନଙ୍କ ସମ୍ବନ୍ଧରେ ଆମର ଜ୍ଞାନ ଅତ୍ୟନ୍ତ ସୀମିତ । ଏମାନେ ଅବଲୁପ୍ତ ହୋଇ ଗଲେଣି ବୋଲି କେହି କେହି ପ୍ରକୃତିବିତ୍ ମତ ପ୍ରକାଶ କରନ୍ତି ।



( ଚିତ୍ର ନମ୍ବର 144 ବାମନ ଶୂକର )

ବାମନ ଶୂକରର ଇଂରାଜି ନାମ Pygmy hog । ବୈଜ୍ଞାନିକ ନାମ Sus salreanicus ( Hodgson ) ।



# ତ୍ରୟୋବିଂଶ ଅଧ୍ୟାୟ

# ବଜ୍ରକାପ୍ତା ବଂଶ

ବଜ୍ରକାପ୍ତା ପୁରାତନ ଗୋଲାର୍ଦ୍ଧ ( Old world ) ର ପ୍ରାଣୀ । ଏମାନେ ଆଫ୍ରିକା, ଭାରତ, ମାଲୟ ଓ ଚୀନ ଆଦି ଦେଶରେ ବାସ କରନ୍ତି । ବଜ୍ରକାପ୍ତା ଏକ ସ୍ୱତନ୍ତ୍ର ବର୍ଗ-ଭୁକ୍ତ; ତା'ର ନାମ ଫୋଲିଡୋଟା (pholidota) ଏମାନଙ୍କର ଦେହ କାତି ଦ୍ୱାରା ଆଚ୍ଛାଦିତ । ଲୋମ କାତିରେ ପରିବର୍ତ୍ତିତ ହୋଇ ଗୋଟିକ ପରେ ଗୋଟିଏ ଟାଇଲ ସଜା ହେଲାପରି ଦେହର ସମ୍ମୁଖ ଭାଗରୁ ପଛ ଆଡ଼କୁ ସଜ୍ଜିତ । ମୁଣ୍ଡର ଉପର ଅଂଶ, ପିଠି, କଡ, ଗୋଡ଼ର ବାହାର ପାଖ ଓ ଲାଞ୍ଜର ଦୁଇପାଖ ସମ୍ପୂର୍ଣ୍ଣ ରୂପେ କାତି ଦ୍ୱାରା ଆଚ୍ଛାଦିତ । ସେ ସବୁ ଅନୁଦୈର୍ଘ୍ୟିକ ଓ ଅନୁପ୍ରସ୍ଥ ଭାବେ ଏପରି ସଜ୍ଜିତ ହୋଇଥାଏ ଯେ ଗୋଟିକର ପ୍ରାନ୍ତ ଅନ୍ୟ ଉପରେ ପଡିଥାଏ । କାତି ଗୁଡ଼ିକର ପ୍ରାନ୍ତ ତୀକ୍ଷ୍ଣ । ପୁଣି ସେ ଗୁଡ଼ିକ ଏପରି ସଜ୍ଜିତ ଯେ ବିପଦ ବେଳେ ବଜ୍ରକାପ୍ତା ପେଣ୍ଡୁପରି ବର୍ତ୍ତୁଳାକାରରେ ଦେହକୁ ଗୁଡ଼ାଇ ପକାଏ । ଶତ୍ରୁ ହସ୍ତରୁ ରକ୍ଷା ପାଇବା ପାଇଁ ଏହା ଏକ ଅଭିନବ ପନ୍ଥା । ନାସାଗ୍ର ମୁଖର କଡ ଓ ଦେହର ତଳ ପାଖରେ କାତି ନ ଥାଏ । ସେଥିପାଇଁ ବିପଦ ବେଳେ ଦେହକୁ ବଲ୍ ପରି ଗୁଡ଼ାଇ ଦେବାକୁ ଆବଶ୍ୟକ ପଡ଼େ । ଦେହ ଲମ୍ବା ଏବଂ ଆଗ ଓ ପଛ ପଟକୁ କ୍ରମଶଃ ସରୁଆ ହୋଇଥିବାରୁ ଗୁଡ଼ାଇ ହେବା ସୁବିଧା-ଜନକ ।

ବଜ୍ରକାପ୍ତା ପାଦଚର । ପ୍ରତ୍ୟେକ ଗୋଡରେ ପାଞ୍ଚଟି କରି ଆଙ୍ଗୁଳି ଓ ଅଙ୍ଗୁଳି ଶେଷରେ ଶକ୍ତିଶାଳି ନଖର ରହିଥାଏ । ଆଗ ଗୋଡ଼ର ମଝି ଅଙ୍ଗୁଳିର ନଖର ବେଶ ବଡ଼ । ଏହା ସାହାଯ୍ୟରେ ବଜ୍ରକାପ୍ତା ଗାତ ଖୋଳେ ଓ ଉଇ ଖାଇବା ପାଇଁ ହୁଙ୍କା ଭାଙ୍ଗେ । ନଖର ବଡ଼ ହୋଇଥିବାରୁ ଏମାନଙ୍କର ଗତି ଶିଥିଳ । ବଜ୍ରକାପ୍ତା ପଛଗୋଡର ତଳିପା ଉପରେ ଠିଆ ହୋଇ

ପାରେ ସିନା, ସାମନା ଗୋଡ଼ର ଅଙ୍ଗୁଳିର ନଖର ତଳ ଆଡ଼କୁ ବକ୍ର ହୋଇଥିବାରୁ, ତଳିପାର ବହିଃପ୍ରାନ୍ତ ଉପରେ କେବଳ ଭର ଦେଇ ଠିଆ ହୋଇପାରେ ।

ବଜ୍ରକାପ୍ତା ମାନଙ୍କର ମସ୍ତକ ସଙ୍କୀର୍ଣ୍ଣ ଓ ଛୁଞ୍ଚିଭୁଳାକାର । ମୁଖ କ୍ଷୁଦ୍ର । ଜିଭ ଲମ୍ବା, କୃମିରୂପୀ ଓ ପ୍ରସାରଣ ଶୀଳ । ପିମ୍ପୁଡ଼ି ଓ ଉଇ ଏମାନଙ୍କର ପ୍ରଧାନ ଖାଦ୍ୟ । ଅଠାଳିଆ ଜିଭକୁ ଗାତ ଭିତରେ ଭର୍ତ୍ତି କରିଦେଲେ ସେଥିରେ ଉଇ ପିମ୍ପୁଡ଼ି ଲାଗିଯାନ୍ତି । ଜିଭକୁ ହଠାତ୍ ପାଟି ଭିତରକୁ ପ୍ରତ୍ୟାକର୍ଷଣ କରିବା ଫଳରେ କୀଟ ପାଟି ଭିତରକୁ ଚାଲି ଆସନ୍ତି ବଜ୍ରକାପ୍ତା ସେ ସବୁକୁ ଗିଳିଦିଏ । ସେଥିପାଇଁ ସେମାନେ ସମ୍ପୂର୍ଣ୍ଣ ରୂପେ ଦନ୍ତ ହୀନ । ସେମାନଙ୍କର ପାକସ୍ଥଳୀର ନିମ୍ନାଂଶ ଅର୍ଥାତ୍ ଜଠର–ନିର୍ଗମ ଅଂଶ (pyloric region ) ପକ୍ଷୀମାନଙ୍କର ଗିଜାର୍ଡ଼ (gizzard) ସଦୃଶ କାର୍ଯ୍ୟ କରେ । ପକ୍ଷୀମାନେ ସାନ ସାନ ପଥର ଟୁଙ୍କନ୍ତି । ସେ ସବୁ ଗିଜାର୍ଡରେ ଶସ୍ୟ ପେଷିବାରେ ସାହାଯ୍ୟ କରେ । ବଜ୍ରକାପ୍ତା ମଧ୍ୟ ସାନ ସାନ ପଥର ଗିଳନ୍ତି ଓ ସେ ସବୁ ଜଠର ନିର୍ଗମ ଅଂଶରେ ସେ ଖାଇଥିବା କୀଟ-ମାନଙ୍କୁ ପେଷଣ କରେ । ଖାଦ୍ୟସଂଗ୍ରହ ପାଇଁ ଜିଭ ପ୍ରଧାନ ଭୂମିକା ଗ୍ରହଣ କରେ







ସାଧାରଣ ସ୍ତନ୍ୟପାୟୀର ଲୋମ

( ଚିତ୍ର ନଂ 145 ବଜ୍ରକାପ୍ତାର କାତି ଓ ସାଧାରଣ ସ୍ତନ୍ୟ ପାୟୀର ଲୋମର ସୂକ୍ଷ୍ମ ଗଠନ । )

ବୋଲି ଏମାନଙ୍କର ଜିଭ ବଳିଷ୍ଠ ମାଂସ ପେଶୀ ଦ୍ୱାରା ନିୟନ୍ତ୍ରିତ । ଏହି ମାଂସପେଶୀର ମୂଳ ଛାତି ଦେଇ ଶ୍ରୋଣି ( pelris ) ସହିତ ଯାଇ ଲାଗିଥାଏ । କାଳେ ଉଇ ପିମ୍ପୁଡ଼ି କାନରେ ପଶିଯିବେ ଏଥିପାଇଁ ବଜ୍ରକାପ୍ତାଙ୍କର ବାହ୍ୟ କର୍ଣ୍ଣ ନାହିଁ ଓ ସେମାନେ ଇଚ୍ଛାମତେ ନାସାଦ୍ୱାର ରୁଦ୍ଧ କରିଦେଇ

ପାରନ୍ତି । ଆଖିକୁ କାମୁଡ଼ାରୁ ରକ୍ଷା କରିବା ପାଇଁ ଆଖି ପତା ମୋଟା । ଭଇ ପିମ୍ପୁଡ଼ି ଜାତି ସର୍ଷରେ ପଶିଗଲେ ବଜ୍ରକାପ୍ତା ଦେହ ଝାଡ଼ି ଦିଏ ଓ ସେମାନେ ଖସି ପଡନ୍ତି । ସେମାନଙ୍କର ଲାଳ ଗ୍ରନ୍ଥି ବେଶ ବଡ ଓ ଛାତି ଭିତରଯାଏ ବିସ୍ତୃତ । ଏଥିରୁ ଯଥେଷ୍ଟ ଲାଳ କ୍ଷରିତ ହୋଇ ଜିଭକୁ ସବୁବେଳେ ଅଠାଳିଆ ରଖେ । ଲାଞ୍ଜ ଲମ୍ବା ଓ କାତି ଦ୍ୱାରା ଆବୃତ ହୋଇଥିଲେ ମଧ୍ୟ ଖୁବ ସଚଳ । ଆଫ୍ରିକାର ବୃକ୍ଷବାସୀ ବଜ୍ରକାପ୍ତା ଲାଞ୍ଜକୁ ବୃକ୍ଷଶାଖାରେ ଅଙ୍କୁଡ଼ି ପରି ରଖି ଝୁଲି ପାରନ୍ତି ।

ବଜ୍ରକାପ୍ତା ମେନିଡ଼ି ( Manidae ) ବଂଶ ଅନ୍ତର୍ଭୁକ୍ତ । ସାତ ଜାତି ବଜ୍ରକାପ୍ତା ଅଛନ୍ତି । ଚାରିଜାତି ଆଫ୍ରିକାରେ (Manis gigantea, M. longicaudata , M. tricuspis ଓ M. bemminckii ), ଦୁଇ ଜାତି ଭାରତରେ (M crassicaudata ଓ M. pentadactyla) ଓ ଏକ ଜାତି ମାଲୟରେ ( M. jaranica ) ଦେଖାଯାନ୍ତି । ଆଫ୍ରିକାର "ବିପୁଳକାୟ ବଜ୍ରକାପ୍ତା" ( Giant pangolin. M. gigantea) ବଜ୍ର-କାପ୍ତାମାନଙ୍କ ମଧ୍ୟରେ ବୃହତ୍ତମ ଓ ତା'ର ଦୈର୍ଘ୍ୟ 1.53 ମିଟାର (5 ଫୁଟ) । ଏହା ଭାରତୀୟ ବଜ୍ରକାପ୍ତା (M. Crassicandata) ଓ ପୂର୍ବ ଆଫ୍ରିକାର "ଅନ୍ତରୀପ ବଜ୍ରକାପ୍ତା" (Cape pangolin, M. temminckii) ପରି ଭୂମିବାସୀ । ଆଫ୍ରିକାର "କ୍ଷୁଦ୍ର କାତି ବଜ୍ରକାପ୍ତା" (Small-scaled pangolin, M tricuspis), "କଳାପେଟ ବଜ୍ରକାପ୍ତା" (Black-bellied pangolin M. longicaudata), ଦକ୍ଷିଣ-ପୂର୍ବ ଏସିଆର "ଚୀନା ବଜ୍ରକାପ୍ତା" (Chinese pangolin, M. pentadactyla) ଓ "ମାଲୟ ବଜ୍ରକାପ୍ତା" ( Malay pangolin M. jaranicus) ବୃକ୍ଷବାସୀ । ଜନ୍ମ ସମୟରେ ବଜ୍ରକାପ୍ତା ଶାବକର କାତି ଟାଣ ହୋଇ ନ ଥାଏ, କେତେ ସପ୍ତାହ ପରେ ଟାଣ ହୋଇ ଯାଏ । ଭୂମିବାସୀ ଓ ବୃକ୍ଷବାସୀ ବଜ୍ରକାପ୍ତାମାନଙ୍କର ଶାବକ ନଖର ସାହାଯ୍ୟରେ ମା'ର ଲାଞ୍ଜକୁ ଜାବୁଡ଼ି ଧରି ରହିଥାଏ ।

ପୂର୍ବେ ବଜ୍ରକାପ୍ତା ଏବଂ ଆମେରିକାର ସ୍ଲଥ ( Sloth ) ଓ ଆର୍ମାଡ଼ିଲୋ ( Armadillo ) କୁ ଇଡେଣ୍ଟାଟା ( Edentata ) ବର୍ଗ-ଭୁକ୍ତ କରାଯାଉଥିଲା । ଇଡେଣ୍ଟାଟା ଅର୍ଥ ଦନ୍ତହୀନ । ବଜ୍ରକାପ୍ତା ଦନ୍ତହୀନ ।

ସ୍ଲଥ ଓ ଆର୍ମାଡ଼ିଲୋଙ୍କର ଜଙ୍ଗଦନ୍ତ ଥିଲେ ସେ ସବୁର ମୂଳ ନଥାଏ, ଏନାମେଲ ନାହିଁ ଓ ସବୁ ଦାନ୍ତ ଏକା ପ୍ରକାରର । ସ୍ଲଥ ଉଦ୍ଭିଦଭୋଜୀ; ଆର୍ମାଡ଼ିଲୋ ପିପୀଲିକା ବ୍ୟତୀତ ଛିଆ, ଗେଣ୍ଡା ଆଦି ଖାନ୍ତି । ବଜ୍ରକାପ୍ତା ଉପରୋକ୍ତ ପ୍ରାଣୀମାନଙ୍କଠାରୁ ବହୁ ଲକ୍ଷଣରେ ଭିନ୍ନ ହୋଇ ଥିବାରୁ ସ୍ଲଥ ଓ ଆର୍ମାଡ଼ିଲୋକୁ ଇଡେନ୍‌ଟାଟା ବର୍ଗଭୁକ୍ତ ଏବଂ ବଜ୍ରକାପ୍ତାକୁ ଫୋଲିଡୋଟା ବର୍ଗଭୁକ୍ତ କରଯାଇଅଛି ।

## ଭାରତୀୟ ବଜ୍ରକାପ୍ତା

ଚତୁଷ୍ପଦୀ ଓ ସ୍ତନ୍ୟପାୟୀ ବଜ୍ରକାପ୍ତାର ପ୍ରଧାନ ବୈଶିଷ୍ଟ୍ୟ ଏହି ଯେ, ଏହାର ଦେହ ଶକ୍ତ କାତିଦ୍ୱାର ଆଚ୍ଛାଦିତ । ଲୋମ କଣ୍ଟକରେ ପରିଣତ ହୋଇ ଚଟାଳିଆ ହୋଇଯିବା ଫଳରେ କାତି ଗଠିତ ହୋଇ ଅଛି । ଏହାର କୁକ୍ଷୀୟ ଭାଗରେ କାତି ନ ଥାଏ । ସେଠାରେ ଓ ପୃଷ୍ଠ ଭାଗରେ କାତିର ମଧ୍ୟେ ମଧ୍ୟେ ରକ୍ଷ କଣ୍ଟକବତ୍ ଲୋମ ଅଳ୍ପ ପରିମାଣରେ ରହିଥାଏ ।

ଭାରତୀୟ ବଜ୍ରକାପ୍ତାର ମୁଣ୍ଡ ଓ ଦେହର ଲମ୍ବ 60—75 ସେଣ୍ଟି ମିଟର (2 ଫୁଟରୁ 2½ ଫୁଟ); ଲାଞ୍ଜ 45 ସେଣ୍ଟିମିଟର ( 1½ ଫୁଟ) । ଏହାର ଦେହ ଘେରିପଟେ 11 ରୁ 31 ଧାଡ଼ିରେ କାତି ରହିଥାଏ । ବଜ୍ରକାପ୍ତାର ବର୍ଣ୍ଣ ହାଲୁକା ହଳଦିଆ–ବାଦାମୀ ।

ହିମାଳୟର ଦକ୍ଷିଣକୁ ଭାରତ ଓ ଶ୍ରୀଲଙ୍କାର ସମତଳ ଭୂମି ଓ ପାହାଡ଼ର ନିମ୍ନ ଗଡ଼ାଣିଆ ଭୂମିରେ ବଜ୍ରକାପ୍ତା ବାସ କରନ୍ତି । ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରେ ଏମାନେ ଦେଖାଯାନ୍ତି ।

ବଜ୍ରକାପ୍ତା ଅନେକ ପରିମାଣରେ ଏକ ସାଧାରଣ ସ୍ତନ୍ୟପାୟୀ ପ୍ରାଣୀ ହୋଇଥିଲେ ମଧ୍ୟ ସାଧାରଣତଃ ଆଖିରେ ପଡ଼େ ନାହିଁ । କାରଣ ଏହା ଗର୍ତ୍ତଚର । ଏହା ନିଜେ ଗାତଖୋଳି ତା' ଭିତରେ ରହେ; ଉଚ୍ଛୁଙ୍କା ବା ଅନ୍ୟ ପ୍ରାଣୀର ଗାତକୁ ବ୍ୟବହାର କରେ ନାହିଁ । ଗାତ ଖୋଳିଲା ବେଳେ ଅଗଳେ ଗୋଟିଏ ଅଗ ଗୋଡ଼ ନିୟୋଜିତ କରେ, ଦୁଇଟି ଗୋଡ଼ର ଦୀର୍ଘ

ନଖର ବ୍ୟବହାର କରେ ନାହିଁ । ଗାତ ଖୋଳିଲା ବେଳେ ମଧ୍ୟେ ମଧ୍ୟେ ଖୋଳା ବନ୍ଦ କରି ଦୁଇ ପଛ ଗୋଡ଼ ବାଟେ ଖୋଳା ମାଟିକୁ କାଢ଼ି ଦିଏ ଓ ଜୋରରେ ଲଥିମାରି ପଛକୁ ହଟାଇ ଦିଏ । ଦିନବେଳେ ବଜ୍ରକାପ୍ତା



( ଚିତ୍ର ନଂ 146 ଭାରତୀୟ ବଜ୍ରକାପ୍ତାର ବିସ୍ତୃତି )

ମୁଣ୍ଡାକୃତି ଧରି ତା' ଗାତ ଭିତରେ ନଚେତ୍ ପଥର ସନ୍ଧିରେ ରହେ । ଏତେବେଳେ ତା'ର ମୁଣ୍ଡ ଆଗ ଦୁଇଗୋଡ଼ ସନ୍ଧିରେ ଥାଏ, ଆଉ ତା' ଉପରେ ଦୃଢ଼ ଭାବେ ଗୁଡ଼ାଇ ହୋଇ ରହିଥାଏ ତାର ଲାଞ୍ଜ । ଫଳରେ ଏହାକୁ ଫିଟାଇବା ବା ମାରିବା ସହଜ ନୁହେଁ । ବୋଧହୁଏ ଏହି କାରଣରୁ ଏମାନଙ୍କ ନାମରେ 'ବଜ୍ର' ଶବ୍ଦ ଲଗା ଯାଇଅଛି । ମଧ୍ୟ ପ୍ରଦେଶର ଏକ ଜଙ୍ଗଲରେ

ବଜ୍ରକାପ୍ତାର ଗାତ ପରୀକ୍ଷା କରିବାରେ ଦେଖା ଯାଇଥିଲା ତାର ଲମ୍ବ 240 ସେଣ୍ଟିମିଟାର (8 ଫୁଟ) ଓ ଗଭୀରତା 120 ସେଣ୍ଟିମିଟାର (4 ଫୁଟ) । 120 ସେଣ୍ଟିମିଟାର ନିମ୍ନରେ ଗୋଟିଏ ଗୋଲକାର କୋଠରୀ ଥିଲା, ତା'ର ବ୍ୟାସ 60 ସେଣ୍ଟିମିଟାର (2 ଫୁଟ) । ବଜ୍ରକାପ୍ତା ଗହ୍ୱରର ଗଭୀରତା ସ୍ଥାନବିଶେଷରେ ମାଟିର ପ୍ରକୃତିଉପରେ ନିର୍ଭର କରେ । ଟାଣ ପଥୁରିଆ ଭୂମିରେ ତା'ର ଗର୍ତ୍ତର ଗଭୀରତା 150—180 ସେଣ୍ଟିମିଟାର (5—6 ଫୁଟ) ହୋଇଥାଏ । ମାତ୍ର ବାଲୁକା ମାଟି ହୋଇଥିଲେ ତା'ର ଗାତ ପ୍ରାୟ 600 ସେଣ୍ଟିମିଟାର ( 20 ଫୁଟ ) ଯାଏ ଗଭୀର ହୁଏ । ବଜ୍ରକାପ୍ତା ଗାତଭିତରେ ଥିଲାବେଳେ ଗାତ ଦୁଆର ମୁହଁ ବନ୍ଦ କରି ଦେଇଥାଏ । ଏଥିଲାଗି ସେମାନଙ୍କୁ ସହଜରେ ଆବିଷ୍କାର କରି ହୁଏ ନାହିଁ । ମାତ୍ର ଯେଉଁମାନେ ସେମାନଙ୍କର ଗତିବିଧି ସହିତ ଅଭ୍ୟସ୍ତ, ସେମାନେ ଗାତ ପାଖରେ ତା'ର ପଦଚିହ୍ନ ଓ ଖୋଳା ମାଟିରୁ ତା'ର ଅବସ୍ଥିତି ଠଉରାଇ ପାରନ୍ତି ।

ପୂର୍ବେ କୁହାଯାଇ ଅଛି, ବଜ୍ରକାପ୍ତା ଚାଲିଲା ବେଳେ ସାମନା ଗୋଡର ନଖର ପାଦତଳ ଆଡ଼କୁ ବଙ୍କାଇ ହୋଇ ରହେ, ଏଣୁ ପୁରା ପାଦ ଭୂମିରେ ଲାଗେ ନାହିଁ । ଅବଶ୍ୟ ପଛ ଗୋଡର ପାଦତଳ ଭୂମିରେ ପୁରା ଲାଗେ । ବଜ୍ରକାପ୍ତା ଚାଲିଲା ବେଳେ ପୃଷ୍ଠ ଖିଲାଣ ପରି ବଙ୍କାଇ ଯାଏ ଓ ଲାଞ୍ଜ ଅଣ୍ଟଠି ରହିବାରୁ ଭୂମିରେ ଲାଗେ ନାହିଁ । ସେ ବେଳେ ବେଳେ ପଛ ଗୋଡ଼ ଉପରେ ଠିଆ ହୋଇ ଯାଇ ଚାରି ଆଡ଼କୁ ଦେଖିନିଏ । ଯେଉଁ ପ୍ରାଣୀମାନଙ୍କର ଚାଲିଲା ବେଳେ ଦେହ ଭୂମିର ଖୁବ ଉପରକୁ ରହେନାହିଁ, ସେମାନେ ପଛ ଗୋଡ଼ ଉପରେ ଠିଆ ହୋଇ ଚାରିଆଡ଼କୁ ନଜର କରି ଦେଖନ୍ତି ।

ଭୂମିରେ ଗାତ ଖୋଳି ରହିଲେ ମଧ୍ୟ ବଜ୍ରକାପ୍ତା ଭଲ ଗଛ ଚଢ଼ି ପାରନ୍ତି । ଅନେକ ସମୟରେ ସେମାନଙ୍କୁ ଗଛରେ ଚଢ଼ିଥିବାର ଦେଖିବାକୁ ମିଳେ । ସମ୍ଭବତଃ ଗଛରେ ବାସ କରୁଥିବା ପିମ୍ପୁଡ଼ି ଖାଇବାକୁ ସେମାନେ ଗଛରେ ଚଢ଼ିଥାନ୍ତି । ସେମାନେ ଅନେକ ପରିମାଣରେ ଭାଲୁ ପରି ଗଛ ଚଢ଼ନ୍ତି । ତାଳକୁ ସାମନା ଗୋଡ଼ର ପଦାଙ୍ଗୁଳି ଓ ନଖର ଦ୍ୱାରା ଦୃଢ଼ ଭାବେ ମୁଠାଇ ଧରନ୍ତି । ଆବଶ୍ୟକ ହେଲେ, ଲାଞ୍ଜକୁ ଡାଳରେ ଆଙ୍କୁଡ଼ି ପରି ଧରି ରଖନ୍ତି । ଡାଳକୁ ବଜ୍ରକାପ୍ତା ଏପରି ଜାବୁଡ଼ି ଥାଏ ଯେ ତାକୁ

ଖସାଇବା ଅତି କଷ୍ଟ । ଭାରତରେ ଯେତେ ସ୍ତନ୍ୟପାୟୀ ପ୍ରାଣୀ ଦେଖାଯାନ୍ତି, ସେମାନଙ୍କ ମଧ୍ୟରେ ଭାଲୁକମାର୍ଜାର ( Bear-cat ) ଓ ବଜ୍ରକାପ୍ତା, କେବଳ ଏ ଦୁଇ ପ୍ରାଣୀଙ୍କର ଲାଞ୍ଜ ପରିଗ୍ରାହୀ, ଅର୍ଥାତ ତାହାକୁ ଲାଞ୍ଜ ଦ୍ୱାରା ଜାବୁଡ଼ି ଧରି ପାରିବାର କ୍ଷମତା ଅଛି ।



( ଚିତ୍ର ନଂ 147 ଭାରତୀୟ ବଜ୍ରକାପ୍ତା )

ଖାଦ୍ୟ ସଂଗ୍ରହ କଲାବେଳେ ବଜ୍ରକାପ୍ତା, ମୁଖ୍ୟତଃ ଘ୍ରାଣ ଦ୍ୱାରା ପରିଚାଳିତ ହୋଇଥାଏ । ପୂର୍ବେ କୁହାଯାଇ ଅଛି ଏମାନଙ୍କର ବାହ୍ୟକର୍ଣ୍ଣ ନାହିଁ । ଆଖି ଛୋଟ । ଏମାନଙ୍କର ଉଭୟ ଦୃଷ୍ଟି ଓ ଶ୍ରବଣଶକ୍ତି କ୍ଷୀଣ । ଉଈ ଖାଇବାପାଇଁ ହୁଙ୍କା ଖୋଳିବା ପୂର୍ବରୁ ବଜ୍ରକାପ୍ତା ଶୀଘ୍ର ଶୀଘ୍ର ବିଭିନ୍ନ ଅଂଶ ଶୁଙ୍ଘି ଖୋଳିବା ପାଇଁ ଉପଯୁକ୍ତ ସ୍ଥାନ ନିର୍ଣ୍ଣୟ କରେ । ଖୋଳିଲା ବେଳେ ମଧ୍ୟ ସେ ଶୁଙ୍ଘି ଦେଖେ ଠିକ୍ ବାଟରେ ଖୋଳା ଚାଲିଛି କି ନାହିଁ । ଆବଶ୍ୟକ ହେଲେ, ସେ ଖୋଳିବା ଦିଗ ପରିବର୍ତ୍ତନ କରେ ।

ଉଈ ଓ ପିମ୍ପୁଡ଼ି ଏବଂ ସେମାନଙ୍କର ଅଣ୍ଡା ଓ ଛୁଆ ବଜ୍ରକାପ୍ତାର ପ୍ରଧାନ ଆହାର । ଉଈ ସେମାନଙ୍କର ଖାଦ୍ୟ ଉତ୍ପାଦନ ପାଇଁ ହୁଙ୍କା ଭିତରେ କବକଉଦ୍ୟାନ ( Fungus garden ) କରିଥାନ୍ତି । ହୁଙ୍କା ଭାଙ୍ଗିଲେ ଏଗୁଡ଼ିକ ଟେଲା ଟେଲା ହୋଇ ଦେଖାଯାଏ । ବଜ୍ରକାପ୍ତା ହୁଙ୍କା ଭାଙ୍ଗି ତା' ସରୁଆ ମୁଣ୍ଡ ଭର୍ତ୍ତି କରି କବକ ଟେଲାର ସନ୍ଧାନ କରେ । ଲମ୍ବା, ଲାଳୁଆ ଜିଭ ବଢ଼ାଇ ଉଈ, ଅଣ୍ଡା ଓ ଛୁଆ ଗୁଡ଼ି ଖାଏ । କବକ ଟେଲାଟିଏ ପାଇଗଲେ ତା'ର ଖୋଳା ବନ୍ଦ ହୁଏ । ସେଥିରେ ଥିବା ଉଈ ଗୁଡ଼ି ସାରିଲେ,

ସେଥିରେ ବିଷ୍ଠରିଟା ବଳକା ରହିଯାଉଥିଲେ ସେଥିପାଇଁ ଭୋଜନ କରି ମାଟିସହିତ ତାକୁ ବାହାରକୁ କାଢ଼ି ପକାଇ ପୁଣି ଖୋଳେ । ଗୋଟିଏ ବଜ୍ରକାପ୍ଟାକୁ ଅର୍ଦ୍ଧପୋଷ୍ୟ ଭାବେ ପାଳନ କରଯାଉଥିଲା । ସେ ଫୁଲ କୁଣ୍ଡ ଓ ଫିମ୍ପା ଆଦି କଡ଼ରେ ଭଇ ଖାଉଥିଲା, କଳା ପିମ୍ପୁଡ଼ି ପାଇଲେ ଘଟୁଥିଲା, ମାତ୍ର ବଗିଚାରେ ଦେଖାଯାଉଥିବା ସାଧାରଣ ଛୋଟ ଲାଲ ପିମ୍ପୁଡ଼ିକୁ ଛୁଇଁ ନ ଥିଲା ଏବଂ କାଠଗଣ୍ଡ ଓ ପଥର ତଳେ ରହୁଥିବା ଉଇମାନଙ୍କୁ ଖାଉ ନ ଥିଲା । ଏଭଳି ବିଶେଷ ଆଚରଣର କାରଣ ଜଣାପଡେ ନାହିଁ । ବୃକ୍ଷବାସୀ ବଡ ଲାଲ ପିମ୍ପୁଡ଼ି ଓ ସେମାନଙ୍କର ଅଣ୍ଡା ଓ ଛୁଆ ପ୍ରତି ସେ ବିଶେଷ ଆକୃଷ୍ଟ ହେଉଥିଲା ।

ମରୁଭୂମି ଅଞ୍ଚଳରେ ବାସ କରୁଥିବା ବଜ୍ରକାପ୍ଟା ସହଜରେ ପାଣି ପାନ୍ତି ନାହିଁ । ମାତ୍ର ଯେଉଁଠି ପାଣିର ଅଭାବ ନାହିଁ ସେଠି ବେଶ୍ ପାଣି ପିଅନ୍ତି । ଦ୍ରୁତ ଗତିରେ ଜିଭକୁ ବାହାରକୁ ଏବଂ ଭିତରକୁ ଟାଣି ସେମାନେ ପାଣିକୁ ଲେହନ କରନ୍ତି ।

ଉତ୍ତେଜିତ ହେଲେ ବଜ୍ରକାପ୍ଟା ଜୋରରେ ସିତ୍କାର ଶବ୍ଦ କରନ୍ତି ।

ବଜ୍ରକାପ୍ଟା ମାନଙ୍କର ପ୍ରଜନନ ଋତୁ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଭାବେ କିଛି ଜଣା ନାହିଁ । ବର୍ଷର ବିଭିନ୍ନ ସମୟରେ ସନ୍ତାନ ଉତ୍ପାଦିତ ହେଉଥିଲା ପରି ମନେ ହୁଏ । ଦାକ୍ଷିଣାତ୍ୟରେ ଜାନୁଆରୀରୁ ମାର୍ଚ୍ଚ ମାସ ମଧ୍ୟରେ ଛୁଆ ଜନ୍ମ ହୁଏ ବୋଲି କହନ୍ତି । ଦକ୍ଷିଣ ଭାରତରେ ଜୁଲାଇ ମାସରେ ଶାବକ ଜାତ ହେବାର ଦେଖାଯାଇଛି । ଶ୍ରୀଲଙ୍କାରେ ଥରେ ଜୁଲାଇ ମାସର ପ୍ରଥମ ଭାଗରେ ଗୋଟିଏ ବଜ୍ରକାପ୍ଟା ମରି ଯାଇଥିଲା । ତା' ପେଟ ଭିତରେ ମଧ୍ୟମ ଆକାରର ଭ୍ରୂଣଟିଏ ଥିଲା । ଥରକେ ଗୋଟିଏ ବା ଖୁବ୍ କ୍ୱଚିତ୍ ଦୁଇଟି ଶାବକ ଜନ୍ମ ହୁଅନ୍ତି । ଜନ୍ମବେଳେ ଶାବକର ମୋଟ ଲମ୍ବ ପ୍ରାୟ 45 ସେଣ୍ଟିମିଟାର ( 18 ଇଞ୍ଚ ) ହୋଇଥାଏ । ଜନ୍ମବେଳେ କାତି ନରମ ଥାଏ । ଜନ୍ମ ପରେ ଗୋଟିଏ ବଜ୍ରକାପ୍ଟା ଶାବକକୁ କ୍ଷୀର ପିଆଇ ପାଳନ କରିବାରେ ସେ ଚାରି ମାସରେ ପ୍ରାୟ ଦୁଇଗୁଣା ଓଜନ ହୋଇ ଯାଇଥିଲା ।

ମା' ବଜ୍ରକାପ୍ଟା ଛୁଆକୁ ତା' ଲାଞ୍ଜ ଉପରେ ବସାଇ ବୁଲାଚଲା କରେ । ଛୁଆ, ମା ଲାଞ୍ଜକୁ ଶକ୍ତ ଭାବେ ଜାବୁଡ଼ି ଧରି ଆଡ ବାଗରେ

ବସିଥାଏ । ବଜ୍ରକାପ୍ତା ଗୁଡ଼ିଲା ବେଳେ ଭୂଇଁରେ ଲାଞ୍ଜ ଲାଗେ ନାହିଁ । ଭୟର କାରଣ ମାତ୍ରେ ମା' ବଜ୍ରକାପ୍ତା ତା' ପିଲାକୁ ପେଟକୁ ନେଇ ଆସି ଲାଞ୍ଜରେ ଗୁଡ଼ାଇ ପକାଏ ।

ବଜ୍ରକାପ୍ତାର ଗାତ ଘରେ ଅର୍ଣ୍ଣିଗ, ମାଇ ଓ ପିଲା ଏକତ୍ର ବାସ କରିବାର ଦେଖାଯାନ୍ତି । ହୁଏତ ସେମାନଙ୍କ ମଧ୍ୟରେ ପରିବାର ଜୀବନ ବିଦ୍ୟମାନ ।

ବନ୍ଦୀ ଅବସ୍ଥାରେ ବଜ୍ରକାପ୍ତା ଦୁଇବର୍ଷ ଯାଏ ବଞ୍ଚିବାର ଦେଖାଯାଇ ଅଛି । ଏତେବେଳେ ତାହା କ୍ଷୀର, କାଷ୍ଟାର୍ଡ ( custard ), ସାଗୁ, ଟିପିଓକା ପୁଡ଼ିଙ୍ଗ୍, କଞ୍ଚା ଅଣ୍ଡା ଆଦି ନାନା ପ୍ରକାର ଖାଦ୍ୟଖାନ୍ତି ।

ବଜ୍ରକାପ୍ତା ସମ୍ବନ୍ଧରେ ବହୁ ପୁରାଣ କଥା ଓ ବିଶ୍ୱାସ ରହିଛି । ଏହାର କାତିରେ ଲୋକେ ମୁଦି ତିଆର କରି ପିନ୍ଧନ୍ତି । କେତେକ ଜାତି ପାହାଡ଼ିଆ ଲୋକ ବଜ୍ରକାପ୍ତା ମାଂସ ଖାନ୍ତି ।

ବିଭିନ୍ନ ଭାଷାରେ ବଜ୍ରକାପ୍ତାର ନାମ :--ହିନ୍ଦି-ବଜ୍ରା କିଟ୍, ବଜ୍ର କାପ୍ତା, ସୂରଜ୍ ମୁଖୀ, ସିଲୁ, ସାଲ ସାଲା; ମାରାଠୀ–ଥିରଯା, ଖାଭଲୀ ମା(ହ), ଖାଓ୍ୱାଲା ମନ୍ଜର, କାସୋଲି ମନ୍ଜର, ତେଲୁଗୁ–ଆଲାଓ୍ୱା; ତାମିଲ ଓ ମାଲଓ୍ୱାଲୀ–ଆଲାଙ୍ଗୁ ; ଇଂରାଜି–Indian pangolin । ବୈଜ୍ଞାନିକ ନାମ Manis crassicaudata Gray ।

# ଚୀନା ବଜ୍ରକାପ୍ତା

ଚୀନା ବଜ୍ରକାପ୍ତା ବୃକ୍ଷବାସୀ । ଏହା ଆସାମ, ପୂର୍ବ ହିମାଳୟ, ନେପାଳ, ବର୍ମା ଓ ଦକ୍ଷିଣ ଚୀନରେ ଦେଖିବାକୁ ମିଳେ । ଏହାର ମୁଣ୍ଡ ଓ ଦେହର ଦୈର୍ଘ୍ୟ 48-58 ସେଣ୍ଟିମିଟାର ( 19-23 ଇଞ୍ଚ ) ; ଲାଞ୍ଜ 33-38

ସେଣ୍ଟିମିଟାର ( 13-15 ଇଞ୍ଚ ) । ଚୀନା ବଜ୍ରକାପ୍ତାର ଦେହ ଚାରିପଟେ 15 ରୁ 18 ଧାଡିରେ କାତି ସଜ୍ଜିତ ହୋଇଥାଏ । ଏହାର ବର୍ଣ୍ଣ ଘନ ବାଦାମୀ ।



( ଚିତ୍ର ନଂ 148 ଚୀନା ବଜ୍ରକାପ୍ତା )

ବର୍ମିଜ ଭାଷାରେ ଏହାକୁ 'ଥିଙ୍ଗ ଓ୍ୱେୟାଗ୍‌ୟାଟ' ଓ ଖାସି ଭାଷାରେ "ସାଲକ" କହନ୍ତି । ଇଂରାଜି ନାମ Chinese pangolin । ବୈଜ୍ଞାନିକ ନାମ Manis pentadactyla Linnaeus ।



# ଚତୁର୍ବିଂଶ ଅଧ୍ୟାୟ

# ସାମୁଦ୍ରିକ ସ୍ତନ୍ୟପାୟୀ ପ୍ରାଣୀ

ସମୁଦ୍ରରେ ଯେଉଁ ସବୁ ସ୍ତନ୍ୟ-ପାୟୀ ପ୍ରାଣୀ ବାସ କରନ୍ତି, ସେମାନେ ମୁଖ୍ୟତଃ ତିନୋଟି ବର୍ଗର । ଯଥା—ସିଟାସିଆ ( Cetacea ), ସାଇରେନିଆ ( Sirenia ) ଓ ପିନି୍ପେଡ଼ିଆ ( Pinnipedia ) । ସୀଲ ( Seal ), ଜଳସିଂହ (Sea lion) ଓ ଓ୍ୟାଲରସ ( walrus ) ଶେଷୋକ୍ତ ବର୍ଗର ଅନ୍ତର୍ଭୁକ୍ତ । ଏମାନେ ଉଷ୍ଣତର ସାଗରମାନଙ୍କରେ ଦେଖାଯାନ୍ତି ନାହିଁ; ମେରୁପ୍ରଦେଶର ସମୁଦ୍ର ଏମାନଙ୍କର ବାସ । ତିମି ( whale ), ଶିଶୁମାର ( dolphin ) ଓ ପରପଏଜ୍ (Porpoise) ସିଟାସିଆ ବର୍ଗ ଏବଂ ସିନ୍ଧୁ-ଗାଭୀ ( sea-cow ) ସାଇରେନିଆ ବର୍ଗର ଅନ୍ତର୍ଭୁକ୍ତ । ଉଷ୍ଣତର ସାଗରରେ ଏ ଦୁଇ ବର୍ଗର ପ୍ରାଣୀ ଦେଖାଯାନ୍ତି । ସାମୁଦ୍ରିକ ସ୍ତନ୍ୟପାୟୀ ପ୍ରାଣୀମାନେ ଅନେକ ପରିମାଣରେ ମାଛ ଆକାରର ଓ ମାଛପରି ଜଳରେ ବାସ କରନ୍ତି । ସେଥିପାଇଁ କେତେକଙ୍କ ନାମ ଶେଷରେ ମାଛ ଶବ୍ଦ ଯୋଡ଼ା ହୁଏ, ଯଥା—ତିମି ମାଛ, ଶୁଆଶୁଣ୍ଢ ମାଛ (dolphin) ଓ ସୀଲ ମାଛ । ମାତ୍ର ମାଛପରି ସାମୁଦ୍ରିକ ସ୍ତନ୍ୟ-ପାୟୀ ପ୍ରାଣୀମାନେ ଗାଲିସି ସାହାଯ୍ୟରେ ଶ୍ୱାସକ୍ରିୟା କରନ୍ତି ନାହିଁ । ସ୍ଥଳବାସୀ ମେରୁଦଣ୍ଡୀ ପ୍ରାଣୀମାନଙ୍କ ପରି ସେମାନଙ୍କର ଫୁସ୍‌ଫୁସ୍ ଥିବାରୁ ସେମାନେ ମଧ୍ୟେ ମଧ୍ୟେ ଜଳ ଉପରକୁ ନାସିକା ଉତ୍ତୋଳନ କରି ବାୟୁ ଗ୍ରହଣ କରନ୍ତି ଓ ଦୂଷିତ ବାୟୁ ପରିତ୍ୟାଗ କରନ୍ତି । ଗଭୀର ସମୁଦ୍ରବାସୀ ତିମିମାନଙ୍କୁ ମଧ୍ୟ ତାହା କରିବାକୁ ପଡ଼େ । ଏମାନଙ୍କର ପୁରାତତ୍ତ୍ୱ ପ୍ରାଚୀନ ଏବଂ ଏବର ଯେଉଁ ସ୍ଥଳବାସୀ ପ୍ରାଣୀମାନଙ୍କ ସହିତ ସେମାନଙ୍କର ଘନିଷ୍ଠ ବା ଦୂର ସମ୍ପର୍କ ଅଛି ସେ ସମ୍ବନ୍ଧରେ ପ୍ରାଣୀବିଜ୍ଞାନବିତ୍‌ମାନଙ୍କ ମଧ୍ୟରେ ବିଭିନ୍ନ ମତ ପରି-ଲକ୍ଷିତ ହୁଏ । ସେ ଯାହାହେଉ, ଉପରୋକ୍ତ ତିନିବର୍ଗର ପ୍ରାଣୀମାନଙ୍କର

ପ୍ରାଚୀନ ବଂଶଧର ସ୍ଥଳବାସୀ ଥିଲେ ଏବଂ ପ୍ରତ୍ୟେକ ବର୍ଗର ପ୍ରାଣୀ ସ୍ୱତନ୍ତ୍ର ଭାବେ ଜଳକୁ ବାସରୂପେ ଗ୍ରହଣ କରି ବିବର୍ତ୍ତିତ ହେବା ଫଳରେ ଆଜିର ରୂପ ପାଇ ଅଛନ୍ତି । ଜଳକୁ ଆଶ୍ରୟ କରିବା ଫଳରେ ଏହି ସମସ୍ତ ବର୍ଗର ପ୍ରାଣୀମାନଙ୍କଠାରେ ଦେହର ଆକାର, ଗଠନ, ଖାଦ୍ୟ, ଖାଦ୍ୟ–ଗ୍ରହଣ ଓ ଅନ୍ୟାନ୍ୟ ଶରୀର–କ୍ରିୟାରେ ବହୁ ସାମଞ୍ଜସ୍ୟ ଦେଖାଯାଏ । ଏଭଳି ବିବର୍ତ୍ତନକୁ ଅଭିସାରୀ ବିବର୍ତ୍ତନ (Convergent evolution) କହନ୍ତି । ପ୍ରାଣୀ ବିଜ୍ଞାନୀମାନଙ୍କର ବିଶ୍ୱାସ, ଭୂ–ଜଳଚରୀ ପିନିପେଡ଼ିଆମାନେ ପ୍ରାଚୀନ କାରନିଭୋର (Carnivora) ମାନଙ୍କଠାରୁ ଉଦ୍ଭୂତ । ସାଇରେନିଆ ବର୍ଗର ପ୍ରାଣୀମାନଙ୍କର ଆଙ୍ଗୁଲଟା (Ungulata – ଖୁରାଳ ପ୍ରାଣୀ) ମାନଙ୍କସହିତ ସାମଞ୍ଜସ୍ୟ ସର୍ବାଧିକ । ସିଟାସିଆ ବର୍ଗର ପ୍ରାଣୀ ସର୍ବ ପ୍ରାଚୀନ ସ୍ତନ୍ୟପାୟୀ ପ୍ରାଣୀମାନଙ୍କଠାରୁ ଉଦ୍ଭୂତ ବୋଲି ବିଶେଷଜ୍ଞ ମାନଙ୍କର ମତ ।

## (କ) ସିଟାସିଆ

ସିଟାସିଆ ବର୍ଗର ପ୍ରାଣୀ ଜଳବାସପାଇଁ ପ୍ରାୟ ସମ୍ପୂର୍ଣ୍ଣରୂପେ ଉପଯୋଗୀ ହୋଇ ଅଛନ୍ତି କହିଲେ ଠିକ୍ ହେବ । ଏମାନଙ୍କର ଆକାର ମତ୍ସ୍ୟ ପରି; ହେଲେ ହିଁ ପେରିସୋଡାକଟାଇଲ (Perissodactyla – ବିଷମ ଖୁରିକ ପ୍ରାଣୀବର୍ଗ; ଅଶ୍ୱ, ଗଣ୍ଡା ଆଦି ପ୍ରାଣୀ) ପ୍ରାଣୀବର୍ଗସହିତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । କେତେକ ପ୍ରାଣୀତତ୍ତ୍ୱବିତ୍ ମତ ପ୍ରକାଶ କରନ୍ତି, ସିଟାସିଆ କ୍ରିଓଡଣ୍ଟ (Creodonta) ନାମକ ପ୍ରାଚୀନ ମାଂସଭୋଜୀ ପ୍ରାଣୀମାନଙ୍କଠାରୁ କ୍ରମଶଃ ଉଦ୍ଭବ ହୋଇ ଅଛନ୍ତି ଓ 120—130 ଲକ୍ଷ ବର୍ଷ ପୂର୍ବେ ଏମାନଙ୍କର ଉଦ୍ଭବ ହୋଇଥିଲା ।

ସିଟାସିଆମାନଙ୍କର ଆକାର ଅନେକ ପରିମାଣରେ ଟର୍ପେଡ଼ୋ ପରି ଓ ଧାରାଭେଦୀ (Streamlined) । ଦେହ ଆଗରୁ ପଛ ଆଡ଼କୁ କ୍ରମଶଃ ସରୁ । ମୁଣ୍ଡ ଦେହସହିତ ମିଶିଯିବା ଫଳରେ ସ୍ୱତନ୍ତ୍ର ବେକ ନାହିଁ । ଶିରଙ୍କର ଲମ୍ବା ବେକରେ ଥିବା ସାତଗୋଟି ଗ୍ରୈବ କଶେରୁ (Cerrical vertebrae) ପ୍ରାୟ 1.8 ମିଟାର (ଛଅ ଫୁଟ) ଯାଏ ଅଧିକାର କରିଥିଲା ବେଳେ ତିମିଙ୍କ

ତିମିର ଗ୍ରୀବା କଶେରୁକା ସଙ୍କୁଚିତ ହୋଇ ମାତ୍ର ଗୋଟିଏ ଛକଟି ରୂପେ ସାମାନ୍ୟ କେତେ ସେଣ୍ଟିମିଟାର ସ୍ଥାନ ମଧ୍ୟରେ ରହିଥାଏ ।

ଫଳରେ ଜଳରେ ଗତି କଲାବେଳେ ମୁଣ୍ଡ ଲଡବଡ଼ ହୋଇ ଗତିରେ ବାଧା ଦିଏ ନାହିଁ । ଲାଞ୍ଜ ଚଟାଳିଆ ଓ ତ୍ରିକୋଣାକାର । ଏମାନଙ୍କର ବାହ୍ୟ କର୍ଣ୍ଣ ନାହିଁ । କର୍ଣ୍ଣ ପଟ୍ଟର (ear drum) ରନ୍ଧ୍ରବହଳ ମହମଦ୍ୱାରା ବନ୍ଦ ହୋଇ ରହିଥାଏ । ଅଗ୍ରପଦ ଦୁଇଟି ମାଛର ଡେଣାପରି ଆବୃଲରେ ପରିବର୍ତ୍ତିତ ହୋଇଅଛି ଓ ପଶ୍ଚାତ୍ ପଦ ଲୋପ ପାଇଅଛି । ଦେହ ସମ୍ପୂର୍ଣ୍ଣ ରୂପେ ଲୋମହୀନ; କେବଳ ଥୋମଣିରେ କେତୋଟି ଟାଆଁସା ଲୋମ ଥାଏ । ଏମାନଙ୍କର ତୈଳ ଗ୍ରନ୍ଥି (Sebacious gland) ଓ ସ୍ୱେଦ ଗ୍ରନ୍ଥି (Sweat gland) ନାହିଁ । ଜଳବାସୀ ପ୍ରାଣୀମାନଙ୍କ ପାଇଁ ଏହା ଅନାବଶ୍ୟକ ।

ଜଳବାସୀ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଅନ୍ତଶ୍ଚର୍ମ (dermis) ରେ ବହଳ କରି ହୋଇ ସ୍ନେହ ପଦାର୍ଥ ରହିଥାଏ । ତିମିର ଏହି ଚର୍ବି–ଆସ୍ତରଣକୁ ତିମି–ପ୍ରଚର୍ବି (blubbr) କହନ୍ତି । ଏହି ଚର୍ବି ଅବଶ୍ୟ ତା'ର ସଞ୍ଚିତ ଖାଦ୍ୟ ଭଣ୍ଡାର ରୂପେ କାର୍ଯ୍ୟ କରୁଥିବ । ଚର୍ବିର ଆସ୍ତରଣ ଦେହକୁ ଉଷୁମ ରଖେ । ଚର୍ବି ତାପ ଅପରିବାହୀ (non-conductor) ହୋଇ ଥିବାରୁ ତାହା ଏପରି ସୁନ୍ଦର ଭାବେ ତାପ–ରୋଧୀରୂପେ କାର୍ଯ୍ୟ କରେ ଯେ, ମୃତ ତିମିରେ, ଅପଘଟନ (decomposition) ସମୟରେ ଉତ୍ପାଦିତ ତାପ ମାଂସ ପେଶୀ ସ୍ତରକୁ ବହୁତ ଗଭୀର ଯାଏ କେବଳ ଯେ ସିଝାଇ ଦିଏ ତା' ନୁହେଁ ଜାଳି ଅଙ୍ଗାର କରି ଦେଇଥାଏ । ଆହୁରି ମଧ୍ୟ, ଚର୍ବି ପ୍ରାଣୀର ପ୍ଲବତା (buoyancy) ରେ ସହାୟକ ଏବଂ ଚର୍ବିର ସ୍ଥିତି ସ୍ଥାପକତା (Elasticity) ଗୁଣ ଯୋଗୁ, ଗଭୀର ସମୁଦ୍ରରେ ବିଚରଣ କଲାବେଳେ ତିମିର ଆୟତନ (volume)ରେ ଆବଶ୍ୟକୀୟ ପରିବର୍ତ୍ତନ ଆଣୁଥିବ ବୋଲି ବିଶ୍ୱାସ କରାଯାଏ ।

ସିଟାସିଆ ଓ ସାଇରେନିଆ ମାନଙ୍କର ପ୍ରକୃତ ଗ୍ରନ୍ଥନାଙ୍ଗ ହେଲା ଲାଞ୍ଜ । ଏମାନଙ୍କ ଲାଞ୍ଜ ଦୁଇଟି ଆନୁଭୂମିକ ଫାଳଦ୍ୱାରା ଗଠିତ ଏବଂ ଗୋଟିଏ ଉପର ଆଡ଼କୁ ଓ ଅପରଟି ତଳ ଆଡ଼କୁ ପ୍ରସାରିତ ହୋଇ ରହିଥାଏ । ଏଣୁ ସାମୁଦ୍ରିକ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଲାଞ୍ଜ ମାଛର ଉଲମ୍ବ ଲାଞ୍ଜଠାରୁ ସମ୍ପୂର୍ଣ୍ଣ

ଭିନ୍ନ । ପ୍ରଥମୋକ୍ତ ପ୍ରାଣୀ ଜଳରେ ଲାଞ୍ଜର ଉପର—ତଳ ସଞ୍ଚାଳନଦ୍ୱାରା ଗତି କରନ୍ତି । ଏହା ଲାଞ୍ଜକୁ ପରିଚାଳନା କରୁଥିବା ଶକ୍ତିଶାଳୀ ମାଂସପେଶୀଦ୍ୱାରା ସମ୍ଭବ ହୋଇଥାଏ । ଲାଞ୍ଜର ଦୁଇ ଫାଳ ଚାଳକ (Propellor) ଓ ଆନୁଭୂମିକ ମଙ୍ଗଧର ଦଣ୍ଡରୂପେ କାର୍ଯ୍ୟ କରେ । ଅଧିକାଂଶ ସିଟାସିଆଙ୍କର ପୃଷ୍ଠାଂଶରେ ଏକ କ୍ଷୁଦ୍ର ପକ୍ଷ (ପୃଷ୍ଠ ପକ୍ଷ) ଥାଏ ଏବଂ ତାହା ମାର୍ଗରେ ଗତିକୁ ସ୍ଥିର ରଖିବାରେ ସାହାଯ୍ୟ କରେ । ସିଟାସିଆ ଓ ସାଇରେନିଆ ମାନଙ୍କର "ଲାଞ୍ଜ ଚାଳନ ଗତି" ("tail propulsion") ଯୋଗୁ ସେମାନଙ୍କର ପଶ୍ଚ ପଦ ଅନାବଶ୍ୟକ ହୋଇ ଲୋପ ପାଇଛି । ଅବଶ୍ୟ ଦେହ ଭିତରେ ଶ୍ରୋଣି (pelvis) ର ଅବଶେଷ ଏବଂ କେବେ କେବେ ଊର୍ବସ୍ଥି (femur) ଓ ଅନ୍ତଃ ଅନୁଜଂଘାସ୍ଥି (tibia) ର ଅବଶେଷ ରହିଥାଏ । ସାମୁଦ୍ରିକ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଗତି ବେଶ୍ ପ୍ରଖର । ଅନେକ ସିଟାସିଆ ଘଣ୍ଟାରେ 15 ନଟ୍ (knot)(1 ନଟ = 1853 ମିଟାର) ଯାତ୍ରା କରି ପାରନ୍ତି । ନୀଳ ତିମି (Blue whale) ର ଗତି ଘଣ୍ଟାରେ 20 ନଟ ଯାଏ ହୋଇ ପାରେ ଓ ଓ କେତେ ମିନିଟ୍ ଯାଏ ଏହି ବେଗରେ ସେ ଗତି କରିପାରେ । ତିରିଶ ନଟ ବେଗରେ ଗତି କରୁଥିବା ଜାହାଜ କଡ଼ରେ ଶିଶୁମାର ସନ୍ତରଣ କରି ଚାଲି ଥିବାର ଦେଖା ଯାଇଅଛି ।

ସିଟାସିଆ ବର୍ଗର ପ୍ରାଣୀମାନେ ଭୂମି ଉପରେ ଆଦୌ ଗତି କରି ପାରନ୍ତି ନାହିଁ । ସେମାନଙ୍କର ଛାତି ହାଡ ନାହିଁ । କୌଣସି କାରଣରୁ ଢେଉରେ ଆସି କୂଳରେ ପଡ଼ିଗଲେ, ଛାତି ହାଡ଼ ନଥିବାରୁ ଫୁସଫୁସ ଉପରେ ଚାପ ପଡ଼େ ଏବଂ ଅଧିକାଂଶ ଅଳ୍ପ ସମୟ ମଧ୍ୟରେ ମରିଯାନ୍ତି ।

ଜଳବାସୀ ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ଜଳରେ ଆହାର ଖାଇବାକୁ ପଡ଼ୁଥିବାରୁ ସେମାନଙ୍କର ସବୁଦାନ୍ତ ଏକା ପ୍ରକାରର । ଶିଶୁମାର ଓ ପରପଏଜ୍‌ଙ୍କର ଦାନ୍ତର ସଂଖ୍ୟା 100 ରୁ 200 ଏବଂ ସେଗୁଡ଼ିକ ଶଙ୍କ୍ୱାକାର ( conical ) । ଏମାନେ ମତ୍ସ୍ୟଭୋଜୀ । ଖାଦ୍ୟ ପ୍ରାଣୀ ପାଟିରୁ ଖସି ନ ଯିବା ପାଇଁ ଦାନ୍ତ ବିଶେଷ ସାହାଯ୍ୟ କରିଥାଏ । ଅର୍ଥାତ୍ ଦାନ୍ତ ଖାଦ୍ୟକୁ ଧରି ରଖିବାରେ ସାହାଯ୍ୟ କରେ, କର୍ତ୍ତନ, ଚର୍ବଣ ବା ପେଷଣ ଲାଗି ଉପଯୋଗୀ ନୁହେଁ । ଦାନ୍ତର ଉପସ୍ଥିତି ଓ

ଅନୁପସ୍ଥିତି ଅନୁସାରେ ସିଟାସିଆ ବର୍ଗ ଦୁଇଟି ଉପବର୍ଗରେ ବିଭକ୍ତ ଯଥା– ଓଡୋନଟୋସେଟି ( Odontoceti ) ଓ ମିସଟିସେଟି ( Mysticeti )।



ଚିତ୍ର ସଂ 149 ତିମି ବଂଶ

ଦାନ୍ତଥିବା ତିମି ( Toothed whales ) ପ୍ରଥମୋକ୍ତ ଉପବର୍ଗର ଓ ଦନ୍ତହୀନ ତିମି ( Whalebone whales ) ଦ୍ୱିତୀୟ ଉପବର୍ଗର ଅନ୍ତର୍ଭୁକ୍ତ । ଶିଶୁମାର, ପରପଏଜ୍, ତୈଳତିମି ( Sperm whale ), ଶ୍ୱେତ ତିମି ( White whale ) ମାରକ ତିମି (Killer whale) ଓ ନରହ୍ୱାଲ ( Narwhal ) ଦନ୍ତଯୁକ୍ତ ତିମି ଅଟନ୍ତି । ନୀଳ ତିମି, ବ୍ରିଡ଼େ(ଡ) ତିମି ( Bryde's whale ) ପକ୍ଷ ତିମି ( Fin whale ) ଗ୍ରୀନ୍‌ଲାଣ୍ଡର ଜାତିଆ ତିମି ( Greenland right whale ) ଓ କୁଜାପିଠି ତିମି Humpback whale ) ଦନ୍ତହୀନ । ଦନ୍ତଯୁକ୍ତ ତିମିଙ୍କର ମୁଖ ବଡ଼; ମାତ୍ର ଦନ୍ତହୀନ ତିମିଙ୍କର ମୁଖ ବିଶାଳ । ଦନ୍ତହୀନ ତିମିଙ୍କ ଉପର ପାଟିରେ ଅନେକ ଗୁଡ଼ିଏ ତ୍ରିକୋଣାକାର ଶୃଙ୍ଗିତ ପ୍ଲେଟ ( horny plate ) ଥାଏ ଓ ସେଥିରେ ପରସ୍ପର ଯୋଡ଼ି ହୋଇ ରହିଥିବା ଲୋମ ( agglutinated hairs ) ଥାଏ । ମିସଟିସେଟିମାନଙ୍କର ଏପରି ଶୃଙ୍ଗିତ ପ୍ଲେଟକୁ ବେଲିନ୍ ( baleen ) ବା 'ତିମ୍ୟସ୍ଥି' (whale bone ) କହନ୍ତି । ପ୍ରକୃତ ପକ୍ଷେ, ଏହା ଅସ୍ଥି ନିର୍ମିତ ନୁହେଁ, ଲୋମର ରୂପାନ୍ତର ମାତ୍ର । କ୍ଷୁଦ୍ର ସାମୁଦ୍ରିକ ପ୍ରାଣୀଙ୍କୁ ଛାଣି ଖାଇବାରେ ବେଲିନ୍ ବ୍ୟବହୃତ ହୁଏ । ବ୍ୟବହାର ନ ହେଉଥିବା ସମୟରେ, ଅର୍ଥାତ୍ ତିମି ଖାଦ୍ୟ ଖାଉ ନ ଥିବା ସମୟରେ, ବେଲିନ୍ ତଳ ଓଠ ଦ୍ୱାରା ଢ଼ାଙ୍କି ହୋଇ ରହିଥାଏ ଏବଂ ତଳ ଓଠ ନିମ୍ନ ହନୂ ଉପରକୁ ବାହାରି ରହିଥାଏ । ଖାଦ୍ୟ ସଂଗ୍ରହ କଲାବେଳେ ତିମି ପାଟିକୁ ମେଲା କରି ଯେଉଁ ସ୍ଥାନରେ ବହୁ ସଂଖ୍ୟାରେ ଏକ ଜାତୀୟ କବଚୀ ( Crustacean ) ପ୍ରାଣୀ ଭସୁଥାନ୍ତି ସେଠାଂକୁ ଯାଇ ଯଥେଷ୍ଟ ପରିମାଣରେ ସେମାନଙ୍କୁ ପାଟିରେ ଧରିନିଏ । ପାଟିରେ ପାଟିଏ ହୋଇଗଲେ, ସେ ପାଟି ବନ୍ଦ କରିଦିଏ । ପାଣି ବେଲିନ୍ ପଟ୍‌ଟ ଦେଇ ବାହାରି ଯାଏ । ଏବେ ଜିଭର ସଂଚଳନ ଦ୍ୱାରା ସେ ଖାଦ୍ୟ ପ୍ରାଣୀଙ୍କୁ ଗିଳିଦିଏ । ଏହିପରି ବାରମ୍ବାର କରି ପେଟେ ଖାଏ । ଦଶ ମେଟ୍ରିକ୍‌ଟନ୍ ( ୧°.୧୬° କିଲୋଗ୍ରାମ ) ଓଜନର ଚିଙ୍ଗୁଡ଼ି ଜାତୀୟ କବଚୀ ପ୍ରାଣୀ ସେ ଏକ ସମୟରେ ଖାଇପାରେ । ତିମିର ଏହି ଖାଦ୍ୟ–ପ୍ରାଣୀଙ୍କୁ "କ୍ରିଲ" ( 'Krill' ) ବୋଲି କହନ୍ତି ଓ ଏହା

ମୁଖ୍ୟତଃ "ଇଉଫାଉସିଆ" (Euphausia) ପ୍ରଜାତି ( genus ) ର କବଚୀ ପ୍ରାଣୀକୁ ବୁଝାଏ ।

ଦନ୍ତ ଯୁକ୍ତ ତିମି ବା ଓଡୋନ୍‌ଟୋସେଟି ବିଭିନ୍ନ ପ୍ରକାରର ଓ ବହୁ ସଂଖ୍ୟାରେ ଦେଖାଯାନ୍ତି । ଏହି ପ୍ରାଣୀମାନେ ମୁଖ୍ୟତଃ ମତ୍ସ୍ୟଭୋଜୀ । ମାରକ ତିମିଙ୍କ ହନୁ ଓ ଦନ୍ତ ବଳିଷ୍ଠ ଏବଂ ଅନ୍ୟ ତିମି ଓ ସୀଲ ସେମାନଙ୍କର ଆହାର । କେତେକ ଦନ୍ତଯୁକ୍ତ ତିମି ଗଭୀର ସମୁଦ୍ରବାସୀ ବଡ ବଡ



ଚିତ୍ର ନଂ 150 ଦନ୍ତଯୁକ୍ତ ତୈଳତିମି ( ଉପର ଚିତ୍ର ) ଓ ଦନ୍ତହୀନ ଗ୍ରୀନ୍‌ଲଣ୍ଡ କାତିଆ ତିମି ( ତଳ ଚିତ୍ର ) ମଧ୍ୟରେ ପାର୍ଥକ୍ୟ ।

ଅକ୍‌ଟୋପାସ ଜାତୀୟ ପ୍ରାଣୀଙ୍କୁ ( cephalopods ) ମଧ୍ୟ ଆହାର କରନ୍ତି । ଏପରି ତିମିଙ୍କ ଦାନ୍ତ ବଳିଷ୍ଠ ନୁହଁ ଓ କେବଳ ତଳ ପାଟିରେ ଥାଏ, ଉପର ପାଟିରେ ନ ଥାଏ । ତୈଳତିମି (Sperm whale) ତା'ର ଏକ ଉଦାହରଣ । ତିମିମାନଙ୍କୁ ଆହାର ଧରିବା ବେଳେ ବଡ ଅକ୍ଟୋପସ ଓ ଅନ୍ୟ ମସ୍ତକପଦୀ ଜନ୍ତୁ ( Cephalopods ) ମାନଙ୍କ ସହିତ ଧସ୍ତାଧସ୍ତି ହେବାକୁ ପଡ଼େ ଏବଂ ସେମାନଙ୍କ ମୁଣ୍ଡରେ ଖାଦ୍ୟ ପ୍ରାଣୀର ଚୋଷକ ( sucker ) ଦ୍ୱାରା ହୋଇଥିବା କ୍ଷତ ଚିହ୍ନ ଦେଖିବାକୁ ମିଳେ ।

ସେମାନଙ୍କ ପେଟରେ ବହୁ ପରିମାଣ ସମୁଦ୍ର-ଜିଭ (cuttlebone) ମିଳିଥାଏ । ମସ୍ତକ-ପଦୀ କଙ୍କୋଳ ଖାଇବା ଫଳରେ ଏମାନଙ୍କ ଅନ୍ତ୍ରରେ ଏକ ପ୍ରକାର ଧୂସର ବର୍ଣ୍ଣର କଠିନ ପଦାର୍ଥ ଗଠିତ ହୁଏ । ଏହାକୁ 'ଏମବାରଗ୍ରିସ' ( ambergris ) ବୋଲଯାଏ । ଏମବାରଗ୍ରିସ ଦୁର୍ଗନ୍ଧ କରେ; ମାତ୍ର ଅତି ମୂଲ୍ୟବାନ ଅତର ତିଆରୀରେ ବ୍ୟବହୃତ ହେଉଥିବାରୁ ଏହା ବହୁତ ଦାମରେ ବିକ୍ରୀ ହୁଏ । ଏମବାରଗ୍ରିସ ସମୁଦ୍ର ଜଳରେ ଭସୁଥାଏ ବା ଢେଉରେ ଭସି ଆସି କୂଳରେ ପଡ଼ିଥାଏ । ଏଜୋରସ (Azores) ଅଞ୍ଚଳରେ ଗୋଟିଏ ତିମି ମରି ହୋଇଥିଲ । ତା' ପେଟରୁ 272 କିଲୋଗ୍ରାମ (600 ପାଉଣ୍ଡ ) ଓଜନର ଏମବାରଗ୍ରିସ ମିଳିଥିଲ । ତିମିମାନଙ୍କୁ ଲକ୍ଷଣ-ଭେଦରେ ଦନ୍ତ ଯୁକ୍ତ ( Odontoceti ) ଓ ଦନ୍ତହୀନ (Mysticeti) ଏପରି ଦୁଇଭାଗରେ ବିଭକ୍ତ କରାଗଲେ ମଧ୍ୟ ଖାଦ୍ୟ ଦୃଷ୍ଟିରୁ ତିନୋଟି ଶ୍ରେଣୀରେ ବିଭକ୍ତ କରା ଯାଇପାରେ , ଯଥା :—ପ୍ଲାଙ୍କଟନ୍‌ଭୋଜୀ ( Planktonophagous ), (ଯେଉଁ ତିମି କ୍ରିଲ ଖାନ୍ତି ), ମତ୍ସ୍ୟଭୋଜୀ ( ichthyophagous ) ଓ ମସ୍ତକପଦୀ କଙ୍କୋଳ ଭୋଜୀ ( teuthophagous ) । ସେ ଯାହାହେଉ, ଉଭୟ ଦନ୍ତଯୁକ୍ତ ଓ ଦନ୍ତହୀନ ତିମିଙ୍କର ଭ୍ରୂଣାବସ୍ଥାରେ ଦୁଗ୍ଧଦନ୍ତ ( milk teeth ) ଥାଏ, ମାତ୍ର ଜନ୍ମ ହେବା ପୂର୍ବରୁ ମିଳାଇଯାଏ ।

ତିମିମାନଙ୍କର ପାକସ୍ଥଳୀ ( stomach ) ଦୁଇଟି ଭାଗରେ ବିଭକ୍ତ । ପ୍ରଥମ କୋଠରୀ ଖାଦ୍ୟ ପେଷଣୀ ( gizzard ) ରୂପେ କାର୍ଯ୍ୟ କରେ ଓ ଦ୍ୱିତୀୟ ପ୍ରକୋଷ୍ଠରେ ପାଚକ ରସ (gastric juice) କ୍ଷରିତ ହୋଇ ଖାଦ୍ୟସହିତ ମିଶିଥାଏ ।

ଜଳବାସ ଫଳରେ ତିମିମାନଙ୍କର ଶ୍ୱାସତନ୍ତ୍ର ଓ ସଂବହନ ତନ୍ତ୍ର (vascular system ) ରେ ପ୍ରଭୂତ ପରିବର୍ତ୍ତନ ଘଟିଅଛି । କେତେକ ତିମି ଅତି ଗଭୀରକୁ ବୁଡ଼ି ପାରନ୍ତି । ଆଠଶହ ଫେଦମ ( fathom ) ଅର୍ଥାତ୍ 1500 ମିଟାର ଗଭୀର ପର୍ଯ୍ୟନ୍ତ ତିମି ବୁଡ଼ିବାର ଜଣା ଅଛି । ତିମି ପାଣି ତଳେ ଏକାଦିକ୍ରମେ କୋଡ଼ିଏ ମିନିଟ୍‌ରୁ ଏକଘଣ୍ଟା ପର୍ଯ୍ୟନ୍ତ ବୁଡ଼ି

ରହିପାରେ । ତେଲିତିମି ( Cachalot or Sperm whale ) ସବୁଠାରୁ ଅଧିକ ସମୟ ପାଣିରେ ବୁଡ଼ି ରହି ପାରନ୍ତି । ହାରପୁନ୍ ( harpoon ତିମିକୁ ବିଦ୍ଧ କରିବାର ବର୍ଚ୍ଛା ) ବିଦ୍ଧ ତିମି ଦୁଇଘଣ୍ଟା ଯାଏ ଜଳରେ ବୁଡ଼ି ରହିବାର ଜଣାଅଛି । ଜଳରେ ବୁଡ଼ିବା ପୂର୍ବରୁ ତିମି ତା'ର ଫୁସ୍‌ଫୁସକୁ ବାୟୁରେ ପୂର୍ଣ୍ଣ କରିଦିଏ । ଏମାନଙ୍କର ଫୁସଫୁସ ବଡ଼ ଓ ଉଦର ଭିତରକୁ ବିସ୍ତୃତ । ଫୁସ୍‌ଫୁସରେ 2.8 ରୁ 4.0 ଘନ ମିଟାର (100 ରୁ 140 ଘନ ଫୁଟ) ବାୟୁ ଧରି ପାରେ; ଅର୍ଥାତ୍ 0.73 ଘନ ମିଟାର (28 ଘନ ଫୁଟ) ବିଶୁଦ୍ଧ ଅମ୍ଳଜାନ ରହିପାରେ । ଆମ ଫୁସଫୁସ୍ ତୁଳନାରେ ତିମିଙ୍କ ଫୁସଫୁସ୍‌ରେ କୋଟରିକା (alveoli) ସଂଖ୍ୟା ଅଧିକ । ଉଦାହରଣ ସ୍ୱରୂପ ମନୁଷ୍ୟ ତୁଳନାରେ ଶିଶୁମାରର ଫୁସ୍‌ଫୁସ୍‌ରେ ତିନିଗୁଣ କୋଟରିକା ଥାଏ । ଏହାର ତାତ୍ପର୍ଯ୍ୟ ଏହି ଯେ, ଅଧିକ କୋଟରିକା ଥିବାଯୋଗୁ ତିମିର ସବାହୀ କ୍ଷେତ୍ରଫଳ (vascular surface) ଅଧିକ ଓ ଫଳରେ ମନୁଷ୍ୟ ତୁଳନାରେ ତିମିଙ୍କ ରକ୍ତରେ ଅଧିକ ଅକସିଜେନ ଥାଏ । ତିମିର ନାସାରନ୍ଧ୍ର, କଣ୍ଠ ଦ୍ୱାର (glottis ଓ ପ୍ରତ୍ୟେକ ଶ୍ୱାସନଳିକା ପଥ (bronchial) ରେ ଅବରୋଧିକା (sphincter) ରହିଥିବାରୁ ସେ ଇଚ୍ଛାମତେ ସେ ସବୁ ଦ୍ୱାରକୁ ବନ୍ଦ କରି ଦେଇ ପାରେ ।

ତିମିର ହୃତ୍‌ପିଣ୍ଡର ଦୁଇ ପାଖ ଏକ ଆରେକ ଠାରୁ ଅନେକ ପରିମାଣରେ ସ୍ୱାଧୀନ ଭାବେ କାର୍ଯ୍ୟ କରିଥାନ୍ତି । ଡାହାଣ ପାଖ ଧୀରେ ଧୀରେ ସ୍ପନ୍ଦିତ ହେବା ଫଳରେ ଅଳ୍ପ ପରିମାଣରେ ଦୂଷିତ ରକ୍ତ ଫୁସଫୁସକୁ ଫେରିଯାଏ; ଅପର ପକ୍ଷରେ ବାମ ପାଖ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଯଥା – ପ୍ରମସ୍ତିଷ୍କ (cerebrum), ଅନୁମସ୍ତିଷ୍କ (cerebellum) ଓ ସୁଷୁମ୍ନା ଶୀର୍ଷକ (medulla oblongata) କୁ ଅଧିକ ସମୟ ଯାଏ ବିଶୁଦ୍ଧ ରକ୍ତ ଯୋଗାଇ ଥାଏ । ରକ୍ତରେ କାର୍ବନିକ୍ ଅମ୍ଳ (carbonic acid) ର ଆଧିକ୍ୟ ହେଲେ, ମନୁଷ୍ୟ ତାହା ସମ୍ଭରଣ କରି ପାରେ ନାହିଁ । କାରଣ, ତାହା ମସ୍ତିଷ୍କ ମଧ୍ୟାଂଶ (medulla) ଉପରେ ପ୍ରଭାବ ପକାଏ; ଫଳରେ ଶ୍ୱାସରୁଦ୍ଧ ହୁଏ ଓ ଲୋକ ମୂର୍ଚ୍ଛା ଯାଏ । ମାତ୍ର ତିମିଙ୍କ ରକ୍ତରେ କାରବନିକ୍ ଅମ୍ଳର ଆଧିକ୍ୟ ଘଟିଲେ ତାହା ମସ୍ତିଷ୍କ ଉପରେ କୌଣସି ପ୍ରଭାବ ପକାଇ ପାରେ ନାହିଁ; ଏଣୁ ସେମାନ-

ଙ୍କର ଶ୍ୱାସରୋଧ ହୁଏ ନାହିଁ । ତିମି ଯେତେ ଯେତେ ତଳକୁ ଯାଏ ତାର ଚୟାପଚୟ ହାର (metabolic rate) କମିଯାଏ ଓ ଧୀରେ ଧୀରେ ହୃତ୍‌ସ୍ପନ୍ଦନ ହୁଏ । ଏହିପରି ବିଭିନ୍ନ ଉପାୟରେ ତିମି ଅମ୍ଳଜାନ ସଂରକ୍ଷଣ କରିଥାଏ ।

ଜଣେ ବୁଡ଼ାଳି ପକ୍ଷରେ ସମୁଦ୍ର ଗହୀରକୁ ବୁଡ଼ିଯିବା ଯେତେ ସହଜ, ଉପରକୁ ଉଠି ଆସିବା ସେତିକି ବିପଜ୍ଜନକ । ତଳକୁ ତଳକୁ ଯିବା କାଳରେ ଅଧିକ ଚାପ ଫଳରେ ଶରୀରସ୍ଥ ନାଇଟ୍ରୋଜେନ୍ ଦ୍ରବୀଭୂତ ହୋଇ ରକ୍ତରେ ଅବସ୍ଥାନ କରେ । ହଠାତ୍ ଉପରକୁ ଉଠି ଆସିଲେ ଦ୍ରବୀଭୂତ ନାଇଟ୍ରୋଜେନ୍ ରକ୍ତରେ ବୁଦ୍‌ବୁଦ୍ ଗଠନ କରେ ଓ ଦେହର ଟିସୁକୁ ଫେରି ଆସେ । ଏହା ଫଳରେ ଗଣ୍ଠିମାନଙ୍କରେ ଦାରୁଣ ଯନ୍ତ୍ରଣା ହୁଏ, ଶ୍ୱାସ କ୍ରିୟାରେ କଷ୍ଟ ଅନୁଭୂତ ହୁଏ, ପକ୍ଷାଘାତ (paralysis) ହୁଏ ଏବଂ ସମୟ ସମୟରେ ମନୁଷ୍ୟର ମୃତ୍ୟୁ ଘଟେ । ଏହାକୁ 'ମୋଡ଼ା' ରୋଗ (bends, caisson disease) ବୋଲଯାଏ । ଏଥିପାଇଁ ବୁଡ଼ାଳିକୁ "ସମ୍ପୀଡ଼ନ ପ୍ରକୋଷ୍ଠ" ( compress chamber) ରେ ଆବଦ୍ଧ ରଖି ଧୀରେ ଧୀରେ ବି–ସମ୍ପୀଡ଼ନ(decompression) କରାଯାଏ ।

ତିମି କ୍ଷେତ୍ରରେ 'ମୋଡା' ନ ଘଟିବା ପାଇଁ ତା ଶରୀରରେ ନାନାବିଧ ଜଟିଳ ବ୍ୟବସ୍ଥା ଅଛି । ତିମି ତଳକୁ ତଳକୁ ଯିବା ସଙ୍ଗେ ସଙ୍ଗେ ଓ ଜଳ ଚାପ ଅଧିକ ହେବା ସଙ୍ଗେ ସଙ୍ଗେ ଫୁସ୍‌ଫୁସ୍‌ର କୋଟରିକା (alveolus) ର ଅବସାଦ ଘଟେ (collapse); ଫୁସ୍‌ଫୁସ୍‌ରୁ ବାୟୁ ବାହାରି ଯାଇ ଚିକ୍କଣନାଳୀ (bronchial tube), ଶ୍ୱାସନାଳୀ (trachea) ଏବଂ ନାସାପଥ (nasal passage) ରେ ଅବସ୍ଥାନ କରେ । ଫଳରେ ଖୁବ ଅଳ୍ପ ପରିମାଣରେ ନାଇଟ୍ରୋଜେନ ତା ରକ୍ତରେ ମିଶେ । ଆହୁରି ମଧ୍ୟ, ତିମି ଶରୀରର ବିଭିନ୍ନ ଅଂଶରେ ଧମନୀ ଓ ଶିରା ଦ୍ୱାରା ଜଟିଳ ଜାଲକ (retia mirabilia) ଗଠିତ ହୋଇଥିବାରୁ ନାଇଟ୍ରୋଜେନ୍ ମିଶ୍ରିତ ରକ୍ତ ତ୍ୱରିତ ଗତିରେ ମାଂସପେଶୀ ମଧ୍ୟକୁ ଯାଇ ପାରେ ନାହିଁ । ସେହିପରି ଉପରକୁ ଉଠିଲା ବେଳେ ତିମିର ହୃତ୍‌ସ୍ପନ୍ଦନର ବେଗ ତ୍ୱରିତ ହେବା ଫଳରେ ଦ୍ରବୀଭୂତ ନାଇଟ୍ରୋଜେନ ଅପସାରଣର ବେଗ ତ୍ୱରାନ୍ୱିତ ହୁଏ ଏବଂ ମୋଡ଼ା ରୋଗ ହୁଏ ନାହିଁ ।

ତିମି ଯେତେବେଳେ ଭାସି ଉଠେ, ସେତେବେଳେ ସର୍ବ ପ୍ରଥମେ ମସ୍ତକର ଯେଉଁ ଅଂଶରେ ନାସାଦ୍ୱାର ଅବସ୍ଥିତ ତାହା ଜଳ ଉପରକୁ ଉଠେ । ନଳ ମୁହଁ ଦେଇ ସବେଗରେ ପ୍ରଚୁର ଜଳ ନିର୍ଗତ କରାଇଲେ ଯେପରି ଦେଖାଯିବ, ତିମି ନାସାରନ୍ଧ୍ର ଦେଇ ବାହାରୁଥିବା ବାୟୁ ସେପରି ଦେଖାଯାଏ । ପୂର୍ବେ ଜଳ ଉପରକୁ ଉଠୁଥିବା ଏହି ଜଳୋଚ୍ଛ୍ୱାସକୁ ଦେଖି ଲୋକେ ଏହା ସମ୍ପୂର୍ଣ୍ଣ ଜଳ ବୋଲି ବିଶ୍ୱାସ କରୁଥିଲେ । ବୈଜ୍ଞାନିକମାନଙ୍କର ଧାରଣା, ନାସାରନ୍ଧ୍ର ଦେଇ ବାହାରୁଥିବା ସିକ୍ତ ଉଷ୍ଣ ବାୟୁ ସାଗର ଜଳ ଉପରର ଶୀତଳ ବାୟୁ ସଂସ୍ପର୍ଶରେ ଆସିବା ଫଳରେ ସେପରି ଜଳସ୍ତମ୍ଭ ଉଠିଲା ପରି ମନେ ହୁଏ । ଏଥିରେ ଶ୍ଳେଷ୍ମା ମଧ୍ୟ ମିଶି ରହିଥାଏ । କେତେକ ବୈଜ୍ଞାନିକଙ୍କର ବିଶ୍ୱାସ, ତିମି ତାର ନାସାରନ୍ଧ୍ର ଦେଇ ଦୂଷିତ ବାୟୁ ସହିତ ନାଇଟ୍ରୋଜେନ ମଧ୍ୟ ବାହାର କରି ଦିଏ । ତିମିର ନାସାରନ୍ଧ୍ରକୁ ବାତଛିଦ୍ର (blowhole) ବୋଲାଯାଏ । ଦନ୍ତଯୁକ୍ତ ତିମିଙ୍କ ବାତଛିଦ୍ର ଗୋଟିଏ; ଦନ୍ତହୀନ ତିମିଙ୍କର ଦୁଇଟି । ଜଳ ତଳେ ଥିଲାବେଳେ ତାକୁ ବୁଜି ରଖିବାକୁ ଓ ଜଳ ଉପରକୁ ଉଠିଲେ ଖୋଲିବାକୁ ସ୍ୱତନ୍ତ୍ର କପାଟିକା (valve) ଥାଏ । ତିମିର ବାତଛିଦ୍ର ଦେଇ "ଜଳ ସ୍ତମ୍ଭ" 3.6 ମିଟର (ବାର ଫୁଟ) ଉପରକୁ ଉଠିପାରେ ଓ ଏହା ପ୍ରାୟ 1.6 କିଲୋମିଟର (ଏକ ମାଇଲ) ଦୂର ପର୍ଯ୍ୟନ୍ତ ଦେଖାଯାଏ ।

ତିମିର ଶ୍ୱାସଯନ୍ତ୍ର ଅନ୍ୟ ପ୍ରାଣୀମାନଙ୍କଠାରୁ ଭିନ୍ନ । ଅନ୍ୟ ପ୍ରାଣୀମାନଙ୍କ ପରି ଏହାର ସ୍ୱରପେଟିକା (larynx) ମୁଖ ଗହ୍ୱରର ପଶ୍ଚାତ୍ ଭାଗରେ ଉନ୍ମୁକ୍ତ ନ ହୋଇ ସିଧା ନାସା ଖାତ ( nasal fossal ) ମଧ୍ୟକୁ ଉନ୍ମୁକ୍ତ । ଏଥିରେ ସୁବିଧା ଏହି ଯେ ତିମି ପହଁରୁଥିବା ସମୟରେ ପାଟି ମେଲା କଲେ ଓ ଖାଦ୍ୟ ଗିଳିଲେ, ଖାଦ୍ୟ ବା ଜଳ ଶ୍ୱାସନଳୀ ( wind pipe ) ଭିତରେ ପଶି ପାରେ ନାହିଁ ।

ଆକାରତୁଳନାରେ ତିମିର ମସ୍ତିଷ୍କ (brain) କ୍ଷୁଦ୍ର; ମାତ୍ର ତା ମସ୍ତିଷ୍କରେ ଅନେକ ଜଟିଳ ଅନୁବଳନ ( convolutions ) ରହିଥାଏ । ନାସା ଖାତ କେବଳ ଶ୍ୱସନ ବେଳେ ବାୟୁ ପଥ ରୂପେ ବ୍ୟବହୃତ ହୁଏ; ଏବଂ ଏହା ଘ୍ରାଣେନ୍ଦ୍ରିୟ ଭାବେ କାର୍ଯ୍ୟ କରେ ନାହିଁ । ପୂର୍ବେ କୁହା ଯାଇଅଛି, ଏମାନଙ୍କର କର୍ଣ୍ଣପକ୍ଷ

ନଥାଏ । ଶ୍ରବଣମାର୍ଗ ( auditory passage ) ଅତ୍ୟନ୍ତ ସଙ୍କୀର୍ଣ୍ଣ ଓ ଚକ୍ଷୁର ଠିକ ପଛକୁ ଅବସ୍ଥିତ ।

ପୂର୍ବେ ବୈଜ୍ଞାନିକମାନଙ୍କର ଧାରଣା ଥିଲା, ଜଳରେ ହେଉଥିବା ଶବ୍ଦ ତିମି ଶୁଣି ପାରନ୍ତି; ମାତ୍ର ବାୟୁରେ ହେଉଥିବା ଶବ୍ଦ ଶୁଣି ପାରନ୍ତି ନାହିଁ । ଯଥା—ପ୍ରୋପେଲରର ଶବ୍ଦ ସେମାନେ ଶୁଣି ପାରନ୍ତି, କିନ୍ତୁ ବନ୍ଧୁକର ଆବାଜ୍ ଶୁଣି ପାରନ୍ତି ନାହିଁ । ଏ ସବୁର ସତ୍ୟାସତ୍ୟ ସମ୍ବନ୍ଧରେ ଏବେ ମଧ୍ୟ ଗବେଷଣା ଚାଲିଛି । ସେ ଯାହାହେଉ, ମନୁଷ୍ୟ କେତେକ ଶବ୍ଦ ଶୁଣିପାରେ ନାହିଁ, ଯାହା ତିମି ଶୁଣି ପାରନ୍ତି । ବାଦୁଡ଼ି ଯେପରି ଦୂରରେ କଅଣ ଅଛି ନ ଦେଖି ମଧ୍ୟ ତା'ର ଅବସ୍ଥିତି ଜାଣିପାରେ, ସେହିପରି ତିମି ଓ ପର୍ପଏଜ୍ ପ୍ରତିଧ୍ୱନିକ ଅବସ୍ଥାନ-ନିର୍ଦ୍ଧାରଣ ( echo-location ) ଦ୍ୱାରା ଦୂରସ୍ଥ ପଦାର୍ଥର ଅବସ୍ଥିତି ଜାଣି ପାରନ୍ତି ଏବଂ ଶରୀରସ୍ଥ 'ସୋନାର' (sonar) ପଦ୍ଧତି ଦ୍ୱାରା ଖାଦ୍ୟ ପ୍ରାଣୀକୁ ଠାବ କରନ୍ତି । ତିମି ମାନଙ୍କର ଏଭଳି ଶୁଣିବା ଶକ୍ତି ଅଛି ବୋଲି ପୂର୍ବେ ଜଣା ନଥିଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଆମେରିକାର ନୌବାହିନୀ ଶତ୍ରୁପକ୍ଷର ବୁଡ଼ାଜାହାଜର ଅବସ୍ଥିତି ନିରୂପଣ କରିବା ପାଇଁ ଜଳ-ଫୋନ ( hydrophone ) ବ୍ୟବହାର କରିବାରେ ଜଣା ପଡ଼ିଲା । ତିମି ଓ ପର୍ପଏଜ୍ ଜଳରେ ନାନାପ୍ରକାର ଶବ୍ଦ କରନ୍ତି ।

ଦେହର ଆକାର ତୁଳନାରେ ତିମି ଆଖିର ଆକାର କ୍ଷୁଦ୍ର ବୋଲିବାକୁ ହେବ । ମୁଣ୍ଡର ପଛ ଆଡ଼କୁ ପାଟିର କୋଣ ଅଂଶରେ ଅବସ୍ଥିତ ହୋଇଥିବାରୁ ଏମାନଙ୍କ ପକ୍ଷରେ ଦ୍ୱିନେତ୍ରିକ ଦୃଷ୍ଟି ( binocular vision) ସମ୍ଭବ ନୁହେଁ । ମାଛଙ୍କ ପରି ତିମି ଆଖିର ସ୍ଫଟିକାଭ ଲେନ୍ସ ( crystalline lens ) ଗୋଲକାକାର ( spherical ) ଏବଂ ଜଳର ପ୍ରତିସାରଣାଙ୍କ ( refractive index of water ) ସହିତ ଅନୁରୂପଭାବେ ଉପଯୋଜିତ । ଚକ୍ଷୁପତା କ୍ଷୁଦ୍ର ଓ ପ୍ରାୟ ସଞ୍ଚାଳିତ ହୁଏ ନାହିଁ । ଲୋତକ ଗ୍ରନ୍ଥି ( lachrymal gland ) ରୁ ଏକ ପ୍ରକାର ତୈଳପରି ପଦାର୍ଥ କ୍ଷରିତ ହୁଏ । ତାହା କଳା ଡୋଳା ( cornem ) ଓ ନେତ୍ରବର୍ତ୍ମକଳା ( conjunctiva ) କୁ ଧୌତ କରି ସମୁଦ୍ର ଜଳର କ୍ଷୟକାରୀ ପ୍ରଭାବରୁ ରକ୍ଷା କରେ ।

ଅର୍କିଗ ତିମିଙ୍କ ବୃଷଣ ( testis ) ଶରୀର ମଧ୍ୟରେ ଥାଏ ଏବଂ ଶିଶ୍ନ ( penis ) ଏକ କୁକ୍ଷୀୟ ପ୍ରସାଚା ( ventral groove ) ରେ ଅବସ୍ଥାନ କରେ । ଘୋଟକୀ ପରି ମାଈ ତିମିର ଜରାୟୁ ( uterus ) ଦ୍ୱିଶୃଙ୍ଗୀ (bicorned) ଏବଂ ଭ୍ରୂଣବନ୍ଧ (placenta) ବିସରିତ (diffuse)। ସ୍ତନବେଣ୍ଟ ( teat ) ଜଂଘ ମଧ୍ୟରେ ଯୋନିରନ୍ଧ୍ର ( vulva ) ର ଦୁଇପଟେ ଅବସ୍ଥିତ । ଥରକେ ଗୋଟିଏ, କ୍ୱଚିତ୍ ଦୁଇଟି ଶାବକ ଜନ୍ମ ହୁଅନ୍ତି । ଗର୍ଭଧାରଣ କାଳ ଛଅ ମାସରୁ ଏକ ବର୍ଷ ବା ଅଧିକ। ଶାବକ ଛଅ ମାସରୁ ଏକ ବର୍ଷର ହେଲଯାଏ ମା’ଠାରୁ କ୍ଷୀରଖାଏ । ଶିଶୁମାର ଶାବକ ଜନ୍ମର ଦଶ ସେକେଣ୍ଡ ଭିତରେ ପାଣି ଉପରକୁ ଉଠି ଶ୍ୱସନ ପାଇଁ ବାୟୁ ଗ୍ରହଣ କରିବାର ଜଣା ଅଛି ଏବଂ ଘଣ୍ଟାଏ 15 ମିନିଟ ପରେ ମା’ଠାରୁ ସ୍ତନ ପାନ କରେ ।

ଗୋଦୁଗ୍ଧରେ ପ୍ରତି ଲିଟରରେ ପଚିଶ ଗ୍ରାମ ସ୍ନେହ ପଦାର୍ଥ ଓ ପ୍ରାୟ ସେତିକି ପରିମାଣ ପ୍ରୋଟିନ ଥାଏ । ତିମି ଦୁଗ୍ଧରେ ପ୍ରତି ଲିଟରରେ 200 ଗ୍ରାମ ଲହୁଣୀ ଓ ପ୍ରାୟ 100 ଗ୍ରାମ ପ୍ରୋଟିନ୍ ଥାଏ ( ଟେବୁଲ ଦେଖ ) ତିମି କ୍ଷୀରରେ ପ୍ରଭୂତ ପରିମାଣରେ କେଲରୀ ( callories ) ଥିବାରୁ ସେମାନଙ୍କର ଶାବକ ଦ୍ରୁତ ଗତିରେ ବୃଦ୍ଧି ପାନ୍ତି ଓ ଚର୍ମତଳେ ବହଳ ପ୍ରଚବି ( biubber ) ଗଠିତ ହେବା ପର୍ଯ୍ୟନ୍ତ ସମୁଦ୍ର ଜଳର ଶୀତଳତା ସହ୍ୟ କରି ପାରନ୍ତି ।

ତିମିର ଚୂଚୁକ ପଛକୁ ଏକ ଭଣ୍ଡାର ( reservoir ) ଥାଏ । କ୍ଷୀର କ୍ଷରିତ ହୋଇ ସେଥିରେ ସଞ୍ଚିତ ରହେ । ଏହି ଭଣ୍ଡାର ମାଂସପେଶୀ-ଦ୍ୱାରା ନିୟନ୍ତ୍ରିତ । ଶାବକ ଆସି ସ୍ତନବେଣ୍ଟରେ ମୁହଁ ଲଗାଇଲେ ଦ୍ରୁତ ବେଗରେ ସେ ଯଥେଷ୍ଟ ପରିମାଣରେ କ୍ଷୀର ପାଇ ପାରେ । ଚୂଚୁକର ଚାରିପଟେ ଚର୍ମର ଏକ ଭଙ୍ଗ ଥାଇ ଭଲଭର କାମ କରେ । ଫଳରେ ଶାବକ ପାଟିରେ ପାଣି ପଶିଯାଏ ନାହିଁ ।

# ଟେବୁଲ୍

## ବିଭିନ୍ନ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର କ୍ଷୀରର ଗଠନ

( ଗୋଟିଏ ଲିଟର ଦୁଗ୍ଧରେ ବିଭିନ୍ନ ପଦାର୍ଥ କେତେ ଗ୍ରାମଥାଏ ତା'ର ବିବରଣୀ )

| ପ୍ରାଣୀ | ଶର୍କରା | ପ୍ରୋଟିନ୍ | ସ୍ନେହ | ଲବଣ |
|---|---|---|---|---|
| ଗର୍ଦ୍ଦଭୀ | 66 | 17 | 11 | 4 |
| ମହିଷ | 38 | 62 | 125 | 8 |
| ଓଟ | 33 | 30 | 55 | 7 |
| ବିଲେଇ | 50 | 92 | 35 | 11 |
| ଗାଈ | 45 | 35 | 40 | 9 |
| କୁକୁରୀ | 40 | 70 | 85 | 11 |
| ହସ୍ତିନୀ | 72 | 32 | 190 | 6 |
| ମେଣ୍ଢୀ | 50 | 67 | 70 | 8 |
| ଛାଗଳ | 47 | 33 | 40 | 6 |
| ଘୋଡ଼ି | 60 | 20 | 12 | 4 |
| ଶିଶୁମାର | 13 | 110 | 460 | 6 |
| ବଲ୍ଗା ହରିଣ ( rein deer ) | 29 | 100 | 175 | 10 |
| ଘୁଷୁରି | 32 | 75 | 45 | 10 |
| ତିମି | 4 | 95 | 200 | 10 |
| ମନୁଷ୍ୟ | 75 | 11 | 35 | 3 |

ତିମି ଓ ଶିଶୁମାର ଅତ୍ୟନ୍ତ ବୁଦ୍ଧିମାନ ପ୍ରାଣୀ । ଶିଶୁମାରମାନଙ୍କର ବୁଦ୍ଧି ସମ୍ପର୍କରେ ନାନା ଗବେଷଣା ଚାଲିଅଛି । ତିମିଠାରେ ଉଚ୍ଚକୋଟୀର ବାତ୍ସଲ୍ୟ ଦେଖିବାକୁ ମିଳେ । କୌଣସି ବିପଦ ଆପଦରେ ତିମିମାନେ

ପରସ୍ପରକୁ ସାହାଯ୍ୟ କରନ୍ତି । ତିମିଛୁଆଟିଏ ଜଖମ ହେଲେ ତାକୁ ସାହା ହେବାକୁ ଅନ୍ୟମାନେ ତା' ପାଖକୁ ଚାଲି ଆସନ୍ତି । ତିମି ଦଳବଦ୍ଧ ଭାବେ ଶିକାର କରନ୍ତି । ଗୋଟିଏ ଶିଶୁମାର ଜଖମ ହେଲେ, ତାକୁ ଦୁଇଟି ଶିଶୁମାର ନିଜର ନିରାପତ୍ତାକୁ ବିପନ୍ନ କରି ଡେଣା ସାହାଯ୍ୟରେ ସାହା ହେବାର ଦେଖାଯାଏ । ଶିଶୁମାର ବୁଡ଼ି ଯାଉଥିବା ବା ବୁଡ଼ି ମରିଥିବା ମନୁଷ୍ୟକୁ କୂଳକୁ ଠେଲି ଠେଲି ଅଣିବାର ମଧ୍ୟ ଜଣାଅଛି ।

ତିମି ଜନ୍ମବେଳେ ବେଶ୍ ବଡ଼ ଆକାର ହୋଇଥାନ୍ତି । ଏତେବେଳେ ସେମାନଙ୍କର ଲମ୍ବ ବୟଃପ୍ରାପ୍ତ ତିମିର ପ୍ରାୟ 1/3 ହୋଇଥାଏ । ତିମି ଛୁଆ ଖୁବ୍ ଦ୍ରୁତ ବେଗରେ ବୃଦ୍ଧିପାଏ । ଶିଶୁ ନୀଳ ତିମି ( Blue whale ) ଦିନକୁ 0.3 ମିଟାର ( 1 ଫୁଟ ) ହିସାବରେ ବଢ଼େ ଏବଂ ଓଜନ 90 କିଲୋଗ୍ରାମ ( 200 ପାଉଣ୍ଡ ) ହିସାବରେ ବୃଦ୍ଧିପାଏ । ସାତ ମାସରେ ମା'ଠୁ କ୍ଷୀର ଛାଡ଼ିବା ବେଳକୁ ତା'ର ଲମ୍ବ ହୋଇଥାଏ 15.8 ମିଟାର (52 ଫୁଟ) । ପ୍ରାୟ ତିନିବର୍ଷ ବୟସରେ ନୀଳତିମି ବୟଃପ୍ରାପ୍ତ ହୁଏ । ଏତେବେଳେ ମାଈ ତିମିର ଲମ୍ବା 24.38 ମିଟାର ( 80 ଫୁଟ ) ଓ ଅଣ୍ଡିରାର ଲମ୍ବ 22.86 ମିଟାର ( 75 ଫୁଟ ) ହୋଇଥାଏ । 10ରୁ 15 ବର୍ଷ ଏମାନଙ୍କର ପୂର୍ଣ୍ଣ ଯୌବନକାଳ । ନୀଳ ତିମି ପ୍ରାୟ ପଚାଶ ବର୍ଷ ବଞ୍ଚେ । ଗୋଟିଏ ମାରକ ତିମି ( Killer whale ) 80 ବର୍ଷ ଯାଏ ବଞ୍ଚିଥିଲା ବୋଲି ବିଶ୍ୱାସ କରାଯାଏ ।

ମାଈ ନୀଳ ତିମି ସର୍ବାଧିକ ଲମ୍ବରେ 34 ମିଟାର ( 113 ଫୁଟ ) ହେବାର ଦେଖା ଯାଇଅଛି । କ୍ଷୁଦ୍ରତମ ସିଟାସିଆ ପ୍ରାଣୀର ଲମ୍ବ $1\frac{1}{2}$ ମିଟାର ($4\frac{1}{2}$ ଫୁଟ ) ହୋଇଥାଏ ।

ଋତୁ ଅନୁସାରେ ତିମି ଏକ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଗମନ କରିଥାନ୍ତି । ଉଦାହରଣ ସ୍ୱରୂପ, ଦକ୍ଷିଣ ଗୋଲାର୍ଦ୍ଧର କୁଜା ପିଠି ତିମି (Hump backs) ଗ୍ରୀଷ୍ମକାଳରେ କୁମେରୁ ( Antarctic ) ଅଞ୍ଚଳରେ ଦେଖାଯାନ୍ତି; ମାତ୍ର ଶୀତକାଳରେ ଅଷ୍ଟ୍ରେଲିଆ ଓ ମାଲାଗାସେ ( ମାଡାଗାସ୍କର) ଅଞ୍ଚଳରେ ସମୁଦ୍ରରେ ବିଚରଣ କରନ୍ତି ।

# ତିମି ଶିକାର ଓ ସଂରକ୍ଷଣ

ତିମିର ଶିକାର ଏକ ଅତି ପୁରାତନ ଶିଳ୍ପ । ପ୍ରାୟ ହଜାରେ ବର୍ଷ ତଳେ ମଧ୍ୟ ଲୋକେ ତିମି ଶିକାର କରୁଥିଲେ । ସେତେବେଳେ ସେମାନେ ଛୋଟ ଛୋଟ ଜାହାଜରେ ଯାଇ ହାତରେ ବର୍ଚ୍ଛା ବା ତିମି–ତେଣ୍ଟା (harpoon) ପୋପାଡ଼ି ସେମାନଙ୍କୁ ଘାଏଲ କରି ମାରୁଥିଲେ । ତିମି ଶିକାର ପାଇଁ ସ୍ୱତନ୍ତ୍ର ଜାହାଜ ବ୍ୟବହାର ହେଉଥିଲେ ମଧ୍ୟ ସେତେବେଳର ଶିକାର ଅତି ଦୁଃସାହସିକ ଓ ବିପଜ୍ଜନକ ଥିଲା । ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ଏହି ଶିକାର ଅତି ସୁସ୍ୱୁରୂପେ ସମ୍ପାଦିତ ହେଉଅଛି ଓ ଫଳରେ ତିମିମାନଙ୍କର କାଳ ହୋଇଅଛି । ଏବର ତିମିଶିକାରରେ, 16,0 0 ରୁ 20,000 ବା ଅଧିକ ଗ୍ରସଟନ (gross ton) ର ଗୋଟିଏ କାରଖାନା ଜାହାଜ ( factory ship ) ଏବଂ 11ଟିରୁ 20ଟି ପର୍ଯ୍ୟନ୍ତ 500-900 ଟନ୍ ବିଶିଷ୍ଟ ତିମିଧରା ଜାହାଜ ଶିକାର ଅଞ୍ଚଳକୁ ଯାଏ । 160 କିଲୋମିଟାର ( 100 ମାଇଲ ) ଅଞ୍ଚଳରେ ବାଷ୍ପ ଓ ଡ଼ିଜେଲଚାଳିତ ତିମିଧରା ଜାହାଜ ବୁଲି ତିମିଙ୍କୁ ଠାବ କରନ୍ତି । ତିମିଙ୍କୁ ଖୋଜିବାରେ ହେଲିକପ୍ଟର ମଧ୍ୟ ବ୍ୟବହୃତ ହୁଏ । ଜାହାଜରେ ଖଞ୍ଜା ହୋଇଥିବା ସ୍ୱତନ୍ତ୍ର ବନ୍ଧୁକରୁ ବାରୁଦ ଥିବା ତିମି-ତେଣ୍ଟା ( grenade harpoon ) ତିମିକୁ ଲକ୍ଷ୍ୟ କରି ମରାହୁଏ । ତେଣ୍ଟା ତିମି ଦେହରେ ବାଜିବା ସଙ୍ଗେ ସଙ୍ଗେ ବାରୁଦର ବିସ୍ଫୋରଣ ଘଟେ । ଦ୍ୱିତୀୟ ଯୁଦ୍ଧ ପରେ ପ୍ରତିଧ୍ୱନିକ ତିମିସନ୍ଧାନୀ ( echo whale finder ବା asdic ବା sonar device) ସାହାଯ୍ୟରେ ତିମି ସନ୍ଧାନ କରାଯାଉଅଛି । ଆଜି ପ୍ରକାରେ 'ସୋନାର' ଯନ୍ତ୍ର ସାହାଯ୍ୟରେ ପାରସ୍ୱନିକ କମ୍ପନ ( ultra-sonic vibrations ) ଦ୍ୱାରା ତିମିଙ୍କୁ ଭୟଭୀତ କରାଯାଏ । ତିମି ଭୟଭୀତ ହୋଇ ବୁଲି ବୁଲି କ୍ଳାନ୍ତ ହୋଇଯାଏ ଓ ଶେଷରେ ଶିକାର ହୁଏ ।

ମୃତ ତିମିକୁ କାରଖାନା–ଜାହାଜ ବା କୂଳରେ ଥିବା କାରଖାନାକୁ ଅଣାଯାଏ । ସେଠାରେ, କଦଳୀରୁ ଚୋପା ଛଡ଼ାଇଲା ପରି, ତା' ଦେହରୁ ତିନି ପରସ୍ତ ଚର୍ବି କଢ଼ା ଯାଏ । ଏହି ତିମି ଚର୍ବି (blubber), ହାଡ଼ ଓ ମାଂସକୁ ବାଷ୍ପ ଚାପରେ (steam pressure) ରନ୍ଧନ କରାଯାଏ । କେବଳ

ଅନ୍ତ ଓ ପାକସ୍ଥଳୀ କୁ ଫୋପାଡ଼ି ଦିଆଯାଏ, ବାକି ସମସ୍ତ ପଦାର୍ଥରୁ ବିଭିନ୍ନ ପ୍ରକାର ବାଣିଜ୍ୟିକ ଦ୍ରବ୍ୟ ସଂଗ୍ରହ କରାଯାଏ । ତିମି ପରି ବିରାଟ ପ୍ରାଣୀର ଶବକୁ ଯାନ୍ତ୍ରିକ ଉପାୟରେ କଟା ଛଟା କରି ତା' ଦେହର ବିଭିନ୍ନ ଅଂଶକୁ ସଂଗ୍ରହ କରା ଯାଇଥାଏ । ତିମିର ଚର୍ବିରୁ ମାର୍ଗାରିନ୍, ମାଂସକୁ ବରଫରେ ରଖି ମନୁଷ୍ୟ ଓ ଠେକୁଆ ପାଇଁ ମାଂସ ଖାଦ୍ୟ, ମାଂସ ଟୁକୁରାରୁ ଗୋଖାଦ୍ୟ (meat meal), ହାଡ଼ ଟୁକୁରା ଓ ମଳରୁ କ୍ଷେତ ପାଇଁ ସାର, ମାଂସ ଓ ଯକୃତ୍‌ରୁ ନିର୍ଯ୍ୟାସ (extract), ଯକୃତ୍‌ରୁ ପ୍ରଚୁର ଭିଟାମିନ୍ 'ଏ' ଥିବା ଯକୃତ ତେଲ (lever oil), ଅନ୍ତଃସ୍ରାବୀ ଗ୍ରନ୍ଥି (endocrine gland) ରୁ ହରମୋନ, ତେଲତିମି (sperm whale) ର ତେଲରୁ ଇସ୍ପାତ୍ ତିଆରି ପାଇଁ ମସୃଣ ତେଲ (lubricant) ଅନ୍ୟ ତିମି ମାନଙ୍କର ଚର୍ବିରୁ ବିଭିନ୍ନ ପ୍ରକାର ମସୃଣ ତେଲ ଏବଂ ଚର୍ବିରୁ ସ୍ନେହାମ୍ଳ ସୁରାସାର (fatty alcohols of oil) (ଏହା ଅତର, କେଶ ପାଇଁ ବ୍ୟବହୃତ ନାନା ଦ୍ରବ୍ୟ, ଜୋତା କାଳି, ଓଷ୍ଠ ପାଇଁ ଲିପ୍‌ଷ୍ଟିକ୍, ପରିଷ୍କାରକ ପଦାର୍ଥ ବା ଡିଟାରଜେଣ୍ଟ ଆଦି ନାନା ପ୍ରକାର ଦ୍ରବ୍ୟ ପ୍ରସ୍ତୁତ କରାଯାଏ ।

ନୀଳ ତିମି (Blue whale) ଲମ୍ବରେ 24—30 ମିଟର (80—100 ଫୁଟ) ଯାଏ ହୁଏ । ଦୀର୍ଘତମ ନୀଳ ତିମିର ଦୈର୍ଘ୍ୟ 33.5 ମିଟାର (110 ଫୁଟ) ଓ ଓଜନ 133 ମେଟ୍ରିକ୍ ଟନ୍ (294,000 ପାଉଣ୍ଡ) ହେବାର ଦେଖାଯାଇ ଅଛି । ଗୋଟିଏ ନୀଳ ତିମିର ଦେହର ବଭିନ୍ନ ଅଂଶର ଓଜନ ଏହିପରି:—ମାଂସ 50 ଟନ୍, ରକ୍ତ 8 ଟନ୍ ଫୁସଫୁସ 1 ଟନ୍, ଚର୍ମ, ଅସ୍ଥି ଓ ଓ ଅନ୍ତ ଇତ୍ୟାଦି 60 ଟନ୍; ହୃତ୍‌ପିଣ୍ଡ ଲମ୍ବ ଓ ଓସାରରେ 0.9 ମିଟାର (3 ଫୁଟ) କରି ଓ ଓଜନ 590 କିଲୋଗ୍ରାମ (1300 ପାଉଣ୍ଡ) । ଗୋଟିଏ ନୀଳତିମି ଦେହରୁ 38,000 ଲିଟାର ତେଲ ଏବଂ ଗୋଟିଏ ଡାଡ଼ିଆ ତିମି ଯଥା, ଧନୁମୁଣ୍ଡ ତିମି (Bowhead whale, Balaena) ର ଦେହରୁ 9,500 ଲିଟାର ତେଲ ମିଳିଥାଏ । ଗୋଟିଏ କାରଖାନା—ଜାହାଜ ତିମିଶିକାର ରତୁରେ 1500 ଟି ଯାଏ ତିମିକୁ କଟା ଛଟା କରି ତା'ର ବିଭିନ୍ନ ଅଂଶ ସଗ୍ରହ କରିଥାଏ ।

1960 ମସିହାରେ ସର୍ବମୋଟ 55,000 ତିମି ମରା ହୋଇଥିଲେ । ସେମାନଙ୍କ ଦେହରୁ 508,000 ମେଟ୍ରିକ ଟନ୍ ଓଜନର ତେଲ୍ ଓ 142,240 ମେଟ୍ରିକ୍ ଟନ୍ ଓଜନର ଅନ୍ୟାନ୍ୟ ଦ୍ରବ୍ୟ ସଂଗ୍ରହ କରା ଯାଇଥିଲା । 20 ଟି କାରଖାନା–ଜାହାଜ ଓ 50 ଟି ଉପକୂଳ–କାରଖାନାରେ ତିମିଙ୍କୁ କଟା ଛଟା କରା ଯାଇଥିଲା । 360 ଟି ତିମି ମାରିବା ଜାହାଜ (whale catchers) ବ୍ୟବହୃତ ହୋଇଥିଲା । ଯେତେ ତିମି ଶିକାର କରା ଯାଇଥିଲା ସେଥିରୁ ପ୍ରାୟ ଶତକଡ଼ା 80 ଭାଗ କୁମେରୁ (Antarctic) ଅଞ୍ଚଳର ସମୁଦ୍ରରେ ମରା ଯାଇଥିଲେ, ବାକୀ ମାନେ ସୁମେରୁ (Arctic) ଓ ଅନ୍ୟାନ୍ୟ ସାଗରରୁ ।

ବର୍ଷ ବର୍ଷ ଧରି ତିମିଶିକାର ଚାଲିଥିବାରୁ ଏବେ ସେମାନଙ୍କର ବଂଶ ଲୋପ ହେବାକୁ ବସିଲାଣି । ନଅଟି ଜାତି ବଡ଼ ବଡ଼ ତିମିଙ୍କ ମଧ୍ୟରୁ ମାତ୍ର ଚାରି ଜାତି ଏବେ ଅତି ଅଳ୍ପ ସଂଖ୍ୟାରେ ଦେଖିବାକୁ ମିଳନ୍ତି । ସେମାନେ ହେଲେ, ତୈଳତିମି (sperm whale), ପକ୍ଷ–ତିମି (fir whale-ପୃଥିବୀର ଦ୍ୱିତୀୟ ବୃହତ୍ତମ ତିମି, ଲମ୍ବରେ 25 ମିଟାର, ଓଜନରେ 70 ଟନ୍ ହୁଏ । ବୃହତ୍ତମ ତିମି ନୀଳ ତିମି ଅଟେ;Balaenoptera physalus), ସାଇ-ତିମି (sei whale, Balaenoptera borealis, ଦୈର୍ଘ୍ୟ 18 ମିଟାର ) ଓ ବ୍ରିଡ଼େ (ହ) ତିମି (Bryde's whale, ଦୈର୍ଘ୍ୟ 15 ମିଟାର) । ଏମାନଙ୍କ ମଧ୍ୟରେ ତୈଳ-ତିମି (sperm whale, physeter catodon, ଦୈର୍ଘ୍ୟ 18 ମିଟାର, ଓଜନ 33 ଟନ୍, ପୃଥିବୀର ବୃହତ୍ତମ ମାଂସଭୋଜୀ ପ୍ରାଣୀ) ଭିନ୍ନ ଅନ୍ୟ ସମସ୍ତ ତିମି ଦନ୍ତହୀନ (baleen whale) । ଦ୍ୱିତୀୟ ମହାଯୁଦ୍ଧ ପରେ ତୈଳ-ତିମିଙ୍କୁ ବହୁ ସଂଖ୍ୟାରେ ଶିକାର କରାଯିବା ଫଳରେ ସେମାନଙ୍କୁ ଏବେ ଅବଲୁପ୍ତ–ପ୍ରାୟ ତିମିଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇ ଅଛି ।

ଆନ୍ତର୍ଜାତିକ କ୍ଷେତ୍ରରେ ତିମିଶିକାର ନିୟନ୍ତ୍ରଣ କରି ତିମିମାନଙ୍କର ବଂଶଲୋପ ବନ୍ଦ କରିବାପାଇଁ ବହୁ ବର୍ଷ ହେଲା ଉଦ୍ୟମ ଚାଲି ଅଛି; ମାତ୍ର ବିଶେଷ ଲାଭ ହୋଇ ନାହିଁ । କୁମେରୁଅଞ୍ଚଳରେ ତିମିବଧ ନିୟନ୍ତ୍ରଣ ଲାଗି 1931 ସାଲରେ ଜେନିଭା ଠାରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ହୋଇଥିଲା । 1935 ସାଲରେ ତିମି-ଶିକାର ନିୟନ୍ତ୍ରଣ ଲାଗି ଏକ ଆନ୍ତର୍ଜାତିକ ଚୁକ୍ତି

ସ୍ୱାକ୍ଷରିତ ହୋଇ (International convention for Regulation of whaling) ଧନୁମୁଣ୍ଡ ତିମି (Bowhead whale or Grienland right whale, Balaena mysticetus, ଦୈର୍ଘ୍ୟ 15 ରୁ 18 ମିଟାର ବା 50 ରୁ 60 ଫୁଟ) ର ପୂର୍ଣ୍ଣ ସଂରକ୍ଷଣ କରଯାଇଥିଲା ଏବଂ ଶାବକ ସହିତ ଥିବା ମା' ତିମି ଶିକାର ବାରଣ କରଗଲା । ଅବଶ୍ୟ 1611ରୁ1913 ପର୍ଯ୍ୟନ୍ତ ଦୀର୍ଘ୍ୟ ତିନି ଶତାବ୍ଦୀ ଧରି ଧନୁମୁଣ୍ଡ ତିମି ଶିକାର ଫଳରେ ସେତେବେଳକୁ ସେମାନଙ୍କର ବଂଶ ପ୍ରାୟ ଲୋପ ପାଇ ସାରିଥିଲା କହିଲେ ଚଳେ । 1946 ସାଲରେ ନୂଆ କରି ଆଉ ଏକ ସଂଗଠନ ଗଠିତ ହେଲା । ଏହାର ନାମ "ଆନ୍ତର୍ଜାତିକ ତିମିଶିକାର କମିଶନ" ( International whaling commission ବା IWC ) । 1949 ରେ ଏହାର ପ୍ରଥମ ଅଧିବେଶନ ବସି ସମସ୍ତ ପ୍ରକାର ତିମି ବଂଶ ସଂରକ୍ଷଣ ଲାଗି ଉଦ୍ୟମ କରଯାଇଥିଲା ।



(ଚିତ୍ର ନଂ 152, ଧନୁମୁଣ୍ଡ ତିମି)

ତିମି–ଶିକାର ଆଉ ଲାଭଜନକ ନୁହେଁ ବୋଲି 1968 ସୁଦ୍ଧା ଯାପାନ ଓ ରୁଷିଆ ଭିନ୍ନ ଅନ୍ୟ ସବୁ ବଡ଼ ବଡ଼ ଦେଶ ଆଉ କୁମେରୁ ଅଞ୍ଚଳରେ ତିମି ଶିକାର କରୁ ନ ଥିଲେ । ସେ ଯାହା ହେଉ, ଜଳର ଏହି ଅତିକାୟ ପ୍ରାଣୀ ମାନଙ୍କର ବଂଶ ଲୋପ ହେବାରେ ଲାଗିଅଛି ।

# ନୀଳ ତିମି

ନୀଳ ତିମି ପୃଥିବିର ବୃହତ୍ତମ ପ୍ରାଣୀ । ମୋଟ ହାରାହାରି ଲମ୍ବ (ଥୋମଣି ଅଗ୍ରଠାରୁ ଲାଞ୍ଜର ବିଭାଜିଆ ଅଂଶ ପର୍ଯ୍ୟନ୍ତ) ଅଣ୍ଡିରା 22.5 ମିଟାର (74 ଫୁଟ); ମାଈ 23.5 ମିଟାର (77 ଫୁଟ), ଓଜନ ଯଥ କ୍ରମେ ଅଣ୍ଡିରା 81 ଟନେସ (80 ଟନ୍) ଓ ମାଈ 86 ଟନେସ (85 ଟନ) । ସବୁଠାରୁ ବଡ଼ ତିମି ଲମ୍ବରେ 34 ମିଟାର (113 ଫୁଟ) ଓ ଓଜନରେ 152 ଟନେସ (150 ଟନ୍) ହେବାର ଦେଖା ଯାଇଅଛି ।

ନୀଳ ତିମି ଭାରତର ସମୁଦ୍ରରେ ଦେଖାଯାନ୍ତି । ଗ୍ରୀଷ୍ମ କାଳରେ ଏମାନେ ଦୁଇ ମେରୁ ଅଞ୍ଚଳରେ ବାସ କରନ୍ତି; ମାତ୍ର ଶୀତ କାଳରେ ସୁମେରୁ (arctic), ସମ ଶୀତୋଷ୍ଣ (temprate) ଓ କେତେକ ସଂଖ୍ୟାରେ ଗ୍ରୀଷ୍ମ ମଣ୍ଡଳୀୟ ସମୁଦ୍ରରେ ବିଚରଣ କରିବାର ଦେଖାଯାନ୍ତି ।

ଦେହ ପ୍ରାୟ ଲୋମହୀନ; କେବଳ ଓଠ ଅଂଶରେ ଅଳ୍ପ ଲୋମ ଥାଏ । ସାଧାରଣ ବର୍ଣ୍ଣ ଶିଲଟିଆ-ନୀଳ, ମଝିରେ ମଝିରେ ନୀଳ-ଧୂସର ଚିହ୍ନ ଥାଏ । ପକ୍ଷତଳ ଧଳା । କେତେକ ନୀଳତିମିର ପେଟପାଖ ହଳଦିଆ । ଏକ ଜାତୀୟ ହଳଦିଆ ଶୈବାଳ (diatom) ଲାଗି ଥିବାରୁ ଏପରି ବର୍ଣ୍ଣ ହୋଇ ଥାଏ । ସେଥିପାଇଁ ଏହି ତିମିର ଅନ୍ୟ ନାମ "ଗନ୍ଧକ ପେଟିଆ ତିମି" (Sulphurbottomed whale) । ମୁଣ୍ଡ ଖୁବ୍ ଲମ୍ବା । ପକ୍ଷ ଲମ୍ବା; ଦେହର ମୋଟ ଲମ୍ବର ସାତ ଭାଗରୁ ଭାଗେ ହୁଏ ଓ କ୍ରମଶଃ ସରୁ । ପାଟି ତଳ ଅଂଶରେ 80 ରୁ 100ଟି ଯାଏ ପ୍ରସୀତ (ventral groove) ଥାଏ । ପ୍ରସୀତା ଥିବାରୁ ସେ କ୍ରିଲ (Krill) ଥିବା ଅଞ୍ଚଳରେ ତଣ୍ଟିକୁ ପ୍ରସାରିତ କରି, ପାଟି ମେଲି କରି ପହଁରି ଖାଦ୍ୟ ସଂଗ୍ରହ କରେ । ବେଲିନ୍ ପତ୍ର (bailen plates) କଳା ।

ନୀଳ ତିମି ଅନ୍ୟ ତିମି ମାନଙ୍କ ପରି ଖୋଲା ସମୁଦ୍ରରେ ବାସ କରେ । ଏମାନେ ସାଧାରଣତଃ ଦୁଇଟି ବା ଅଧିକ ସଂଖ୍ୟାରେ ବିଚରଣ କରନ୍ତି । ଶୀତ ଋତୁରେ ଚିଙ୍ଗୁଡ଼ିଆ ପ୍ଲାଙ୍କଟନ ପ୍ରଚୁର ପରିମାଣରେ ସୁମେରୁ

ଓ କୁମେରୁ ଅଞ୍ଚଳରେ ମିଳନ୍ତି । ତାକୁ ଖାଇବାକୁ ନୀଳ ତିମି ସେ ଅଞ୍ଚଳର ସମୁଦ୍ରରେ ରୁଣ୍ଡ ହୁଅନ୍ତି । ଗ୍ରୀଷ୍ମ କାଳରେ ସେମାନେ ସମଶୀତୋଷ୍ଣ ଅଞ୍ଚଳରେ ପ୍ରଜନନ ଓ ଶାବକ ଉତ୍ପାଦନ କରନ୍ତି । ସୁମେରୁ ଅଞ୍ଚଳର ସାଗରରେ ଏମାନଙ୍କର ମୁଖ୍ୟ ଖାଦ୍ୟ ଏକ ଜାତୀୟ ସାମୁଦ୍ରିକ ଚିଙ୍ଗୁଡ଼ି (Meganyctiphanes norvegica) । ସେହିପରି କୁମେରୁ ଅଞ୍ଚଳ ସାଗରରେ ନୀଳ ତିମିର ମୁଖ୍ୟ ଖାଦ୍ୟ ଆଉ ଏକ ଜାତୀୟ କ୍ଷୁଦ୍ର ଚିଙ୍ଗୁଡ଼ି (Euphausia superea) ।



(ଚିତ୍ର ନଂ 126 ନୀଳତିମି–ପୃଥିବୀର ବିଶାଳକାୟ ପ୍ରାଣୀ)

ନୀଳତିମି ସାଧାରଣତଃ 4/5 ବର୍ଷରେ ବୟଃପ୍ରାପ୍ତ ହୁଅନ୍ତି । ଗର୍ଭ ଧାରଣ କାଳ 10—11ମାସ । ପ୍ରତି ଦୁଇ-ତିନି ବର୍ଷ ଅନ୍ତରରେ ମାଈ ତିମି ଗର୍ଭ ଧାରଣ କରେ ।

ସାଗର କୂଳର ବାଲିରେ ଆସି ଥରେ ପଡ଼ିଗଲେ ନିଳତିମି ପ୍ରାଣ ହରାଏ । କାରଣ, ଦେହର ଓଜନ ଫୁସଫୁସକୁ ଚିପି ଦିଏ ଓ ସେ ଆଉ ସ୍ୱଚ୍ଛନ୍ଦରେ ଶ୍ୱାସକ୍ରିୟା ସମ୍ପାଦନ କରି ପାରେ ନାହିଁ ।

ନୀଳତିମି ମାନଙ୍କର ସଂଖ୍ୟା ଆଜି ଅତ୍ୟନ୍ତ କମ । ବିଭିନ୍ନ ଭାଷାରେ ଏହାର ନାମ – ହିନ୍ଦି ମଗର ମାଛ, ହୁଟ୍; ଗଗବ୍ୟା; ମରଠୀ – ଦେବମାସ; ତାମିଲ୍, ତେଲୁଗୁ – ତିମିଙ୍ଗିଳମ୍; ସଂସ୍କୃତ – ତିମି; ଇଂରାଜି– Blue whale, Sulphur-boltom, Sibbald's rergual । ବୈଜ୍ଞାନିକ ନାମ – Balaenoptera musculus (Linnaeus) ।

ଭାରତର ସମୁଦ୍ରରେ ଆଉ କେତେକ ତିମି ଦେଖାଯାନ୍ତି । ସେମାନଙ୍କର ନାମ ଉଲ୍ଲେଖ କରଗଲା –

1 । ପକ୍ଷତିମି (Fin whale, Finner whale, common rorgual — Balaenoptera physalus (Linn) । ଦ୍ୱିତୀୟ ବୃହତ୍ତମ ତିମି । ସାଧାରଣ ଲମ୍ବ 20 ମିଟାର (65 ଫୁଟ) । 26 ମିଟାର (85 ଫୁଟ) ଯାଏ ଲମ୍ବ ହୋଇ ପାରନ୍ତି । ପକ୍ଷର ଲମ୍ବ ଦେହର ମୋଟ ଲମ୍ବର ପ୍ରାୟ $\frac{1}{9}$ ଭାଗ । ପାଟି ତଳ ପ୍ରସୀତାର ସଂଖ୍ୟା 60 ରୁ 90 ।

। ସାଇ–ତିମି (Sai whale, Rudolphi's rorgual)— Balaenoptəra Lorealis Lesson । ସବୁଠାରୁ ଅଧିକ ଲମ୍ବ 18 ମିଟାର (60 ଫୁଟ); ସାଧାରଣ ଲମ୍ବ, ଅଣ୍ଡିରା 13.5 ମିଟାର ( 44 ଫୁଟ), ମାଈ 14.5 ମିଟାର (48 ଫୁଟ) । ଉପରିଭାଗର ବର୍ଣ୍ଣ ନୀଳାଭିଆ କଳା; କଡ଼ ପକ୍ଷ ଓ ଲାଞ୍ଜ ଘନ ଧୂସର । ପେଟ ପାଖ ଚିବୁକ ଠାରୁ ଲାଞ୍ଜ ପର୍ଯ୍ୟନ୍ତ ଧଳା । ପକ୍ଷ ମୋଟା ଲମ୍ବର $\frac{1}{10}$ ରୁ $\frac{1}{12}$ ଭାଗ । ପାଟି ତଳର ପ୍ରସୀତା ସଂଖ୍ୟା 30 ରୁ 60 ।



(ଚିତ୍ର ନଂ 127, କୁଜାପିଠି ତିମି)

3 । ଧଳାପକ୍ଷ ତିମି – ( Pjked rorgual, Lesser rorgual )—Balaenoptera acntoro gtrata Laceipide । ଏହା ଲମ୍ବରେ 11.5 ମିଟାର (37 ଫୁଟ) ହୁଏ । ପିଠି ପାଖ ନିଳାଭିଆ ଧୂସର । ପେଟ ପାଖ ଧଳା । ପକ୍ଷର ଉପର ପାଖରେ ଧଳା ପଟିବା ଚିହ୍ନ ଥାଏ । ପକ୍ଷ ଦେହର ମୋଟ ଲମ୍ବର $\frac{1}{8}$ ଭାଗ । ବେଲିନ୍ ପଟ୍ଟ ହଳଦିଆ–ଧଳା ।

। କୁଜାପିଠି ତିମି (Hump backed whale) — Megaptera novaeangliae (Borowski) । ମୁଣ୍ଡ ବଡ଼ । ଲଞ୍ଜ ବଡ଼ । ପୃଷ୍ଠାଂଶରେ କ୍ଷୁଦ୍ର ପକ୍ଷ ଥାଏ । କଡ଼ର ପକ୍ଷ ଖୁବ୍ ଲମ୍ବା । ଦେହର ଲମ୍ବ 15 ମିଟାର (50 ଫୁଟ)ରୁ ଅଧିକ ହୁଏ ନାହିଁ ।

# ତୈଳ-ତିମି

ତୈଳ ତିମି ଭରତର ସାଗରରେ ଦେଖିବାକୁ ମିଳେ । ଏହା ସୁମେରୁ ଅଞ୍ଚଳ, ସମଶୀତୋଷ୍ଣ (temperate) ଓ ଗ୍ରୀଷ୍ମ ମଣ୍ଡଳୀୟ ସାଗରରେ ବାସ କରେ । ଅଣ୍ଡିରା ତୈଳତିମି 18.5 ମିଟାର (60 ଫୁଟ) ଯାଏ ଦୀର୍ଘ ହୁଅନ୍ତି । ମାଈ ତିମି ଅଣ୍ଡିରାର ଅଧା ଲମ୍ବ ହୁଏ ।

ତୈଳତିମିକୁ ଚାର ଗ୍ରିକୋଣିଆ ମୁଣ୍ଡ ଦ୍ୱାରା ଚିହ୍ନିବା ସହଜ । ମୁଣ୍ଡ ସମଗ୍ର ଦେହର ପ୍ରାୟ ଏକ-ତୃତୀୟାଂଶ ସ୍ଥାନ ଅଧିକାର କରିଥାଏ । ଏହାର କରୋଟି (skull) ର ଉପର ଅଂଶରେ ଏକ ମାଂସଳ ଭଣ୍ଡାରରେ ମହମ (spermaceti) ରହିଥାଏ । ନିମ୍ନ ଓଷ୍ଠ ଅଣଓସାରିଆ ଓ ସେଥିରେ ପ୍ରତ୍ୟେକ ଅର୍ଦ୍ଧାଂଶରେ 25ରୁ30 ଟି ବଡ଼ ଦାନ୍ତ । ଉପର ପାଟିରେ ଦାନ୍ତ ନାହିଁ । ପ୍ରତ୍ୟେକ ଦାନ୍ତର ଲମ୍ବ ପ୍ରାୟ 20 ସେଣ୍ଟିମିଟାର (8 ଇଞ୍ଚ) ଓ ଓଜନ 2.7 କିଲୋଗ୍ରାମ (6ପାଉଣ୍ଡ) । ସେ ସବୁ କୋଟର (socket) ଭିତରେ ରହିଥାଏ । ମୁଣ୍ଡରେ ବାତଛିଦ୍ର (blowhole) ଗୋଟିଏ । ପୃଷ୍ଠ—ପକ୍ଷ ନାହିଁ । କଡ଼ର ପକ୍ଷ କ୍ଷୁଦ୍ର, ମାତ୍ର ଓସାରିଆ । ଲଞ୍ଜ ଓସାରିଆ ଓ ଅଧିକ ଚିପାଚିପା । ପିଠି ଉପର ପାଖ କଳା, ପେଟ ପାଖ ହାଲୁକା । ଚର୍ମ ଚିକ୍କଣ ।

ତୈଳତିମି ଦନ୍ତଯୁକ୍ତ (odontoceti) ମାନଙ୍କ ମଧ୍ୟରେ ବୃହତ୍ତମ । ଏମାନଙ୍କର ମୁଖ୍ୟ ଖାଦ୍ୟ ସମୁଦ୍ରଜାତ ପ୍ରାଣୀ (cuttle fish) । ଏମାନେ ସାଧାରଣତଃ କ୍ଷୁଦ୍ର କ୍ଷୁଦ୍ର ଦଳ ଗଠନ କରି ସମୁଦ୍ରରେ ବିଚରଣ କରନ୍ତି ।

ବେଳେବେଳେ ବଡ଼ ବଡ଼ ଦଳ ମଧ୍ୟ ଗଠନ କରିଥାନ୍ତି । ଗ୍ରୀଷ୍ମ କାଳରେ କୁମେରୁ ଓ ସୁମେରୁ ଅଞ୍ଚଳର ସମୁଦ୍ରରେ ଅଧିକ ବୟସର ଅଣ୍ଡିରା ଦେଖିବାକୁ ମିଳନ୍ତି; ମାତ୍ର ଅଳ୍ପ ବୟସର ଅଣ୍ଡିରା ଓ ମାଈ ସମଶୀତୋଷ୍ଣ ଓ ଗ୍ରୀଷ୍ମ ମଣ୍ଡଳୀୟ ସମୁଦ୍ରରେ ବିଚରଣ କରନ୍ତି । ତେଲତିମି ଭଳି ବୁଡ଼ାଳୀ ଓ ଏକାଦି କ୍ରମେ ଘଣ୍ଟାକରୁ ଅଧିକ କାଳ ପାଣିତଳେ ରହି ପାରେ । ଏମାନେ 490 ସେଣ୍ଟିମିଟାର (13 ଫୁଟ) ଲମ୍ବର ସମୁଦ୍ର ଜିଭ ଜାତୀୟ କମ୍ବୋଜ (squid) ଖାଇବାର ଜଣାଅଛି । କମ୍ବୋଜ (mollusc) ସାଙ୍ଗକୁ ଏମାନେ ବେଳେ ବେଳେ ବଡ଼ ବଡ଼ ମାଛ ମଧ୍ୟ ଖାନ୍ତି ।


(ଚିତ୍ର ସଂ 155, ପୃଷ୍ଠା ଚିତ୍ର)
ତେଲତିମି

ତେଲତିମି ବହୁ ପତ୍ନୀକ ବୋଲି ବିଶ୍ୱାସ କରାଯାଏ । ଉତ୍ତର ଗୋଲାର୍ଦ୍ଧରେ ମାର୍ଚ୍ଚ ଠାରୁ ମେ ମାସ ମଧ୍ୟରେ ଓ ଦକ୍ଷିଣ ଗୋଲାର୍ଦ୍ଧରେ ସେପ୍‌ଟେମ୍ବର ଠାରୁ ଡିସେମ୍ବର ମଧ୍ୟରେ ପ୍ରଜନନ ହୁଏ । ଗର୍ଭାଧାରଣ କାଳ 15—16 ମାସ । ଥରକେ ଗୋଟିଏ ଶାବକ, କ୍ୱଚିତ୍ ଦୁଇଟି ଜାତ ହୁଅନ୍ତି । ଜନ୍ମ ସମୟରେ ଶାବକ ପ୍ରାୟ 430 ସେଣ୍ଟିମିଟାର (14 ଫୁଟ) ଲମ୍ବ ହୋଇଥାଏ । ଶାବକ ବର୍ଷକର ହେଲଯାଏ ମା' ଠାରୁ କ୍ଷୀର ପାନ କରେ ।

ତେଲତିମିଠାରୁ ମିଳୁଥିବା ତେଲର ପରିମାଣ ଅଧିକ ହୋଇ ଥିବାରୁ ଅଷ୍ଟାଦଶ ଶତାବ୍ଦୀରେ ଏମାନଙ୍କୁ ବହୁ ସଂଖ୍ୟାରେ ଶିକାର କରା ଯାଇ ଥିଲା । ସେମାନଙ୍କ ସଂଖ୍ୟା ଏବେ ଅନେକ କମି ଗଲଣି ।

ତୈଳତିମି ଅତ୍ୟନ୍ତ ହିଂସ୍ର । ଚେଣ୍ଡା ବିଦ୍ଧ ହେଲେ ଏହା ଶିକାର କରୁଥିବା ନୌକା ଉପରକୁ ଡେଇଁ ତରୀକୁ ଭାଙ୍ଗିପକାଏ ଓ ବୁଡ଼ାଇ ଦିଏ ।

ଅକ୍ଟୋପାସକୁ ଶିକାର କଲାବେଳେ ଏମାନଙ୍କ ସହିତ ତୈଳତିମିର ବେଶ୍ ଧସ୍ତାଧସ୍ତି ହୁଏ ଓ ଲଢ଼ାଇର ଖଣ୍ଡିଆ ଚିହ୍ନ ତୈଳତିମିର ଦେହରେ ଦେଖିବାକୁ ମିଳେ ।

ଏହି ତିମିକୁ ଇଂରାଜୀରେ Sperm whale, ଓ cachalot କହନ୍ତି । ବୈଜ୍ଞାନିକ ନାମ Physeter catodon Linnaeus ।

ଭାରତ ମହାସାଗରରେ ଆଉ ଜାତିଏ ଖର୍ବକାୟ ତୈଳ ତିମି (Pygmy sperm whale) ଦେଖାଯାନ୍ତି । ଏହା 3.50 ମିଟାର (12 ଫୁଟ) ରୁ ଅଧିକ ଲମ୍ବ ହୁଏ ନାହିଁ । ତଳ ପାଟିର ପ୍ରତି ପାଖରେ 9ଟିରୁ 13 ଟି ଯାଏ ଦାନ୍ତ ଥାଏ । ଉପର ପାଟିରେ ଛୋଟ ଛୋଟ ଦୁଇଟି ଦାନ୍ତ ମାଢ଼ି ଭିତରେ ବେଳେ ବେଳେ ରହିଥାଏ । ଏହାର ପିଠିପାଖ କଳା ଓ ପେଟପାଖ ଫିକା ଧୂସର । ଜନ୍ମ ବେଳେ ଶାବକ ପ୍ରାୟ 1.75 ମିଟାର ଅର୍ଥାତ୍ ବୟସ୍କ ତିମିର ଅଧା ଲମ୍ବା ହୋଇଥାଏ । ଏହି ତିମିମାନେ ମଧ୍ୟ ଅକ୍ଟୋପାସ ଖାନ୍ତି । ଖର୍ବକାୟ ତୈଳତିମିର ବୈଜ୍ଞାନିକ ନାମ Kogia breviceps (Bialnville) ।

## ଶିଶୁମାର

ଶିଶୁମାର ଓ ମାରଳ ତିମି ଡେଲଫିନିଡ଼ି ( Delphinidae ) ନାମକ ଏକ ସ୍ୱତନ୍ତ୍ର ବଂଶର ଅନ୍ତର୍ଭୁକ୍ତ । ପଢ଼ପଏକ୍ ଅନ୍ୟ ଏକ ବଂଶ ଫୋକେଇନିଡ଼ି ( Phocaenidae ) ଭୁକ୍ତ । ଶିଶୁମାରର ଅନ୍ୟ ନାମ ଭୁଆସୁଣୀ ମାଛ । ଏମାନେ ବୁଦ୍ଧିମାନ ଓ ଏମାନଙ୍କର ଆଚରଣରେ ମନୁଷ୍ୟର ଆଚରଣ ସହିତ ଅନେକ ମେଳ ଦେଖିବାକୁ ମିଳେ । ଏମାନଙ୍କର ବହିଃକର୍ଣ୍ଣ

ଓ ବାହ୍ୟ କାନନାଳୀ ନାହିଁ । ଜଳରେ ବାସ ହେତୁ କାଳକ୍ରମେ ସେ ସବୁ ଲୋପ ପାଇଅଛି । ଶିଶୁମାରମାନଙ୍କର ଦାନ୍ତ ଶଙ୍କାକାର ( cone-shaped ), ପାଟିରେ ପ୍ରାୟ 160-200 ଯାଏ ଦାନ୍ତ ଥାଏ ଓ ପରପଏଢ ମାନଙ୍କଠାରୁ ସାଧାରଣତଃ ଆକାରରେ ବଡ ହୁଅନ୍ତି । ପରପଏଢମାନଙ୍କର ଦାନ୍ତ ଫାଉଡା ପରି (Spade-shaped) ସଂଖ୍ୟାରେ 60-100 । ଶିଶୁମାର ମାନଙ୍କର ପ୍ରସାରିତ, ଥୋମଣି ଚେପ୍‌ଟା ।

ଶିଶୁମାର ସଂଘବଦ୍ଧଭାବେ ମତ୍ସ୍ୟ ଶିକାର କରନ୍ତି । ପ୍ରାୟ 10ଟି ଶିଶୁମାର ମାଛ ପଲକୁ ଘେରିଯାନ୍ତି । ଥରକେ ଜଣେ ବୃତ୍ତ ଭିତରକୁ ପଶିଯାଇ ମାଛ ମାରି ଫେରି ଆସିଲେ ଅନ୍ୟ ଗୋଟିଏ ମାଛ ଖାଇବାକୁ ପଶେ । ଏମାନେ ଏକାଦି କ୍ରମେ 5-6 ମିନିଟ କାଳ ପାଣି ଭିତରେ ବୁଡ଼ି ରହି ପାରନ୍ତି, ତା'ପରେ ଶ୍ୱାସକ୍ରିୟାପାଇଁ ଥୋମଣିକୁ ପାଣି ଉପରକୁ ଟେକନ୍ତି । ଶିଶୁମାର 304 ମିଟାର ( 1000 ଫୁଟ ) ଗଭୀର ଯାଏ ବୁଡ଼ିପାରେ ଓ ପୁଣି ସାଙ୍ଗେ ସାଙ୍ଗେ ଉପରକୁ ଉଠିଆସେ । ଚାପରେ ତାରତମ୍ୟ ଯୋଗୁ ଏମାନଙ୍କର "ମୋଡା" ହୁଏ ନାହିଁ ।

ଶିଶୁମାର ଜଳ-ସମତଳ ତଳକୁ ଶରୀର ରଖି ନ ପହଁରି ନିଶ୍ଚଳ ଭାବେ ଭାସେ; ପ୍ରତି 15/30 ସେକେଣ୍ଡରେ ଥରେ ଆଖି ଫିଟାଏ ଓ ପ୍ରତି ଅଧ ମିନିଟରେ ଲଞ୍ଜ ପକ୍ଷଦ୍ୱାରା ଧୀରେ ଆହୁଲା ମାରେ । ଏହା ତା'ର ନିଦ୍ରା ।

ଶିଶୁମାର ଦ୍ରୁତବେଗରେ ପହଁରି ପାରନ୍ତି । ଲୋହିତ ସାଗରର ବୋତଲ-ନାକ ଶିଶୁମାର ( Red sea bottle nosed dolphin ) 22 ନଟ୍ ( knots ) ( ପ୍ରାୟ ଘଣ୍ଟାକୁ 40 କିଲୋମିଟାର ବା 25 ମାଇଲ ) ବେଗରେ ଗତି କରି ପାରେ ।

ଶିଶୁମାରମାନଙ୍କ ଦେହରେ ସୋନାର ( Sonar ) ବ୍ୟବସ୍ଥା ଥିବାରୁ ସେମାନେ ଧ୍ୱନି କରି 40 ମିଟାର ( 133) ଫୁଟ ) ଗଭୀରରେ କଅଣ ଅଛି ଜାଣି ପାରନ୍ତି । ଏତଦ୍ୱାରା ସେମାନେ ମତ୍ସ୍ୟ ଖାଦ୍ୟ ଠାବ କରନ୍ତି ଓ ଶତ୍ରୁର ଅବସ୍ଥିତି ଜାଣନ୍ତି ।

ଶାବକ ଶିଶୁମାର ଜନ୍ମ ହେଲା ପରେ ପରେ ଦେଖିପାରେ, ଶୁଣିପାରେ ଓ ବିନା ସାହାଯ୍ୟରେ ପହଁରି ପାରେ । ମାଇ ଶିଶୁମାର ପ୍ରସବ

କରିବା ପୂର୍ବରୁ ବୟସ୍ତ ମାଈମାନେ ତାକୁ ସାହାଯ୍ୟ କରିବା ପାଇଁ ତାକୁ ଢଗି ଢଗି ବୁଲନ୍ତି ଓ କେତେ ସପ୍ତାହ ପର୍ଯ୍ୟନ୍ତ ଧାତ୍ରୀ ପରି ଶାବକର ତତ୍ତ୍ୱ ନିଅନ୍ତି ।

ଶିଶୁମାରର ପଶ୍ଚାତ୍ ଭାଗରେ, ଜନନେନ୍ଦ୍ରିୟ ଓ ପାୟୁର ମୁଖ ନିକଟରେ, ଦୁଇ ପଟେ ସ୍ତନାଗ୍ର ଅବସ୍ଥିତ । ଶାବକ ଜନ୍ମପରେ ଦୁଇ ସପ୍ତାହ ଯାଏ ପ୍ରାୟ ପ୍ରତି 26 ମିନିଟରେ ମା'ଠାରୁ କ୍ଷୀରଖାଏ । ଶାବକ 4 ବର୍ଷରେ ବୟଃପ୍ରାପ୍ତ ହୁଅନ୍ତି; ମାତ୍ର ଛଅ ବର୍ଷର ନ ହେଲଯାଏ ପ୍ରଜନନ କରନ୍ତି ନାହିଁ । ଗର୍ଭଧାରଣ କାଳ 10-12 ମାସ । ଏମାନେ 15ରୁ 40 ବର୍ଷ ବଞ୍ଚନ୍ତି ।

ମା' ଶିଶୁମାର ଶାବକମାନଙ୍କୁ ଅନେକ କଥା ଶିଖାଏ ।

ସାଗରବାସୀ ଶିଶୁମାର ( Delphinidae, ଯଥା–ସାଧାରଣ ଶିଶୁମାର, ଲୋହିତ ସାଗର ବୋତଲ ନାକ ଶିଶୁମାର ) ମାନଙ୍କର ଗ୍ରୀବାରୁ ପାଞ୍ଚଯୋଡ଼ା ଦ୍ୱିମୁଣ୍ଡ ବିଶିଷ୍ଟ ପଞ୍ଜରା-ହାଡ଼ ( double headed ribs ) ଥାଏ; ମାତ୍ର ନଦୀ ଓ ନଦୀ ମୁହାଣବାସୀ ଶିଶୁମାର ( platanistidae , ଯଥା–ଗଙ୍ଗାନଦୀର ଶିଶୁମାର ) ମାନଙ୍କର ଆଠଯୋଡା ଦ୍ୱିମୁଣ୍ଡ ବିଶିଷ୍ଟ ପଞ୍ଜରା ହାଡ଼ ଥାଏ ।

# ସାଧାରଣ ଶିଶୁମାର

ସାଧାରଣ ଶିଶୁମାର 240 ସେଣ୍ଟିମିଟାର (8 ଫୁଟ) ପର୍ଯ୍ୟନ୍ତ ଲମ୍ବ ହୁଏ । ଏହା ପୃଥିବୀର ସମଶୀତୋଷ୍ଣ ଓ ଗ୍ରୀଷ୍ମମଣ୍ଡଳୀୟ ସମୁଦ୍ରରେ ବାସ କରେ । ଥୋମଣି ସମ୍ମୁଖକୁ ଗୋଜିଆ ଥଣ୍ଟ ପରି ପ୍ରସାରିତ । ଦୁଇ ପାଟିରେ ଦାନ୍ତ ଅଛି ଓ ପ୍ରତି ପାଟିରେ ତାର ସଂଖ୍ୟା 70 ରୁ ଅଧିକ । ଦନ୍ତଯୁକ୍ତ ତିମିଙ୍କ ପରି ଶିଶୁମାରର ବାତଛିଦ୍ର ଗୋଟିଏ । ବକ୍ଷ ପକ୍ଷ (pectoral fin) ଓ ପୃଷ୍ଠ ପକ୍ଷ ଦାଆ ପରି ବଙ୍କା । ଦେହ ପ୍ରାଚଳ । ଚର୍ମ ଲୋମହୀନ · ଓ

ଚିକ୍କଣ । ପିଠିପାଖ କଳା ବା ଘନ ଧୂସର, ପେଟପାଖ ଧଳା, କଡ଼ରେ ମଳିନ ହଳଦିଆ ବା ବାଦାମୀ ଆସିଆ ହଳଦିଆ ରଙ୍ଗର ଫିତା ପରି ରେଖା ଥାଏ । ଆଖି ଗ୍ଡରି ପଟେ କଳା ରଙ୍ଗର ମୁଦ୍ରିକା ଅଛି ।

ଶିଶୁମାର ଦଳ ଦଳ ହୋଇ ଦେଖାଯାନ୍ତି । ଏମାନେ ଦ୍ରୁତଗତିରେ ସନ୍ତରଣ କରନ୍ତି । ସାଧାରଣ ଶିଶୁମାର ଘଣ୍ଟାକେ 30 ନଟ (Knots) ବେଗରେ ଗତି କରିପାରେ । ମଣିଷ ଯେପରି ଲହଡ଼ି ଭଙ୍ଗେ ଏମାନେ ସେହିପରି ଜାହାଜର ବକ୍ର ଅଗ୍ରଭାଗ (bow) ଦ୍ୱାରା ଗଠିତ ତରଙ୍ଗ ଉପରେ ଚଢ଼ନ୍ତି । ଏମାନେ ନାନା ପ୍ରକାର ଶବ୍ଦ କରନ୍ତି ଓ ବିପଦ ଆପଦ ବେଳେ ପରସ୍ପରକୁ ସାହାଯ୍ୟ କରନ୍ତି ।

ଶିଶୁମାରମାନଙ୍କର ମୁଖ୍ୟ ଆହାର ମାଛ । ଗ୍ରୀଷ୍ମକାଳରେ ସାଧାରଣ ଶିଶୁମାର ସନ୍ତାନ ପ୍ରସବ କରନ୍ତି ।

ସାଧାରଣ ଶିଶୁମାରକୁ ତାମିଲ ଭଷାରେ ପୋମିଗ୍ରା ଓ ଇଂରାଜିରେ common dolphin କହନ୍ତି । ବୈଜ୍ଞାନିକ ନାମ Delphinus delphis Linnaeus ।

ଭାରତର ସାଗରରେ ଆଉ କେତେକ ଜାତିର ଶିଶୁମାର ଦେଖାଯାନ୍ତି । ସେମାନଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦିଆଗଲା—



(ଚିତ୍ର ନଂ 156, ସାଧାରଣ ଶିଶୁମାର)

1 । ସୀସକ ବର୍ଣ୍ଣ ଶିଶୁମାର (Plumbeous dolphin)—Sotalia plumbea Cuvier । ଥୋମଣି ବେଶ ଲମ୍ବା । ଅଗ୍ରଠାରୁ ଆଖି ପର୍ଯ୍ୟନ୍ତ ଲମ୍ବ ସମଗ୍ର ଦେହର ଲମ୍ବର ପ୍ରାୟ $\frac{1}{8}$ ଭାଗ । ପୃଷ୍ଠ–ପକ୍ଷ ଲମ୍ବ ମାତ୍ର ଉଚ୍ଚ ନୁହେଁ । ଦୁଇ ପାଟିରେ ଦାନ୍ତ ଅଛି । ପ୍ରତି ଅର୍ଦ୍ଧ ପାଟିରେ ଦାନ୍ତର ସଂଖ୍ୟା 34ରୁ37 । ଲମ୍ବରେ 240 ସେଣ୍ଟିମିଟାର (8 ଫୁଟ) ପର୍ଯ୍ୟନ୍ତ ହୋଇପାରେ ।

2 । ଲୋହିତସାଗର ବୋତଲନାକ ଶିଶୁମାର (Red sea bottle nosed dolphin)-Tursiops aduncus. (Ehrenberg) । ଭିଜାଗାପଟମ ଅଞ୍ଚଳରେ ସ୍ଥାନୀୟ ଲୋକେ ଏହାକୁ "ଗାଡ଼ାମୁ" କହନ୍ତି । ଲମ୍ବରେ 2 ମିଟାର (7ଫୁଟ) ଯାଏ ହୁଏ । ଥୋମଣି ସ୍ୱଳ୍ପ ଓ 15 ସେଣ୍ଟିମିଟାର (6ଇଞ୍ଚ) ଲମ୍ବ । ପ୍ରତି ଅର୍ଦ୍ଧ ପାଟିରେ ଦାନ୍ତ ସଂଖ୍ୟା 23 ରୁ 28 । ବକ୍ଷ ଓ' ପୃଷ୍ଠ ପକ୍ଷ ଦାଆ ପରି ବଙ୍କ । ବକ୍ଷ ପକ୍ଷ ଦେହର ମୋଟ ଲମ୍ବର $\frac{1}{5}$ ଅଂଶ ଲମ୍ବା । ପିଠି ପାଖର ବର୍ଣ୍ଣ ଘନ ଧୂସର, ପକ୍ଷର ବର୍ଣ୍ଣ ଅଧିକ ଘନ, ପେଟ ପାଖରେ ହାଲୁକା ଲଳ-ଆସିଆ ପାଉଁସିଆ ଧୂସର ବର୍ଣ୍ଣର ଅଙ୍କାବଙ୍କା ଚିହ୍ନ ଥାଏ ।

3 । ଭାରତୀୟ ଓସାରିଆ ଥଣ୍ଟ ଶିଶୁମାର (Indian Broad—beaked dolphin) — Lagenorhynchus electra Gray । ଥୋମଣି କ୍ଷୁଦ୍ର ।

ମାରକ ତିମି – ଅଣ୍ଡିରା 10ମିଟାର (30 ଫୁଟ) ଯାଏ ଲମ୍ବା ହୁଏ । ମାଈର ଲମ୍ବ ପ୍ରାୟ 5 ମିଟାର (15 ଫୁଟ) । ପାଟିରେ ପ୍ରତି ପାଖରେ 10—12ଟି ବଡ଼ ଦାନ୍ତ ଥାଏ, ଅର୍ଥାତ୍ ତଳ ଓ ଉପର ପାଟିରେ ମୋଟ 50 ଟି ଯାଏ ଦାନ୍ତ ଥାଏ । ଏମାନେ ପ୍ରାୟ ସବୁ ସମୁଦ୍ରରେ ଦେଖାଯାନ୍ତି ଏବଂ ସିଲ, ପରପଏଜ୍, ଶିଶୁମାର, ସବୁ ପ୍ରକାର ମାଛ ଓ ପେଙ୍ଗୁଇନ୍ ଆଦି ପକ୍ଷୀଙ୍କୁ ଆକ୍ରମଣ କରି ଆହାର କରନ୍ତି । ଏହି ତିମିର ପୃଷ୍ଠ ପକ୍ଷ ପ୍ରାୟ 180 ସେଣ୍ଟି-ମିଟାର (6 ଫୁଟ) ଲମ୍ବ ହୁଏ । ବୁଢ଼ା ଅଣ୍ଡିରା ମାନଙ୍କର ବକ୍ଷ–ପକ୍ଷ ବେଶ୍ ବଡ଼ ହୋଇଥିବାର ଦେଖାଯାଏ । ଥରକର ଗୋଟିଏ ମାରକ ତିମି ବରେଦାର ଆରମଦା ଠାରେ କୂଳରେ ପଡ଼ିଥିବାର ଦେଖାଯାଇ ଥିଲା । ଭାରତର ସମୁଦ୍ର କୂଳରେ ଏହିତିମି ପଡ଼ିବାର ଏହାହିଁ ଏକମାତ୍ର ପ୍ରାମାଣିକ ବିବରଣ । ମାରକ ତିମିକୁ ଇଂରାଜୀରେ Killer whale ଓ Grampus କହନ୍ତି । ବୈଜ୍ଞାନିକ ନାମ Orcinus orca (Linnaeus) ।

କ୍ଷୁଦ୍ର ଭାରତୀୟ ପରପଏଜ୍ :—

ଏହି ପରପଏଜର ପୃଷ୍ଠ ପକ୍ଷ ନ ଥାଏ । ଥୋମଣି ଗୋଳିଆ ନ ହୋଇ ବର୍ତ୍ତୁଳ । ଏହି ପରପଏଜ୍‌ର ବର୍ଣ୍ଣ କଳା । ଜୁଆର ବେଳେ ସମୁଦ୍ର ପାଣି

ପଶୁଥିବା ଖାଢ଼ି (creek) ମାନଙ୍କରେ କ୍ଷୁଦ୍ର ଭାରତୀୟ ପରପଏଜ ଦେଖିବାକୁ ମିଳେ । ଲମ୍ବ 120 ସେଣ୍ଟିମିଟାର (4 ଫୁଟ) । ଇଂରାଜୀ ନାମ Little Indian porpoise; ବୈଜ୍ଞାନିକ ନାମ Neomeris phocaenoides (cuvier) ।

# ଗଂଗା ଶିଶୁମାର

ଆମ ଭାରତର ଗଙ୍ଗା, ବ୍ରହ୍ମପୁତ୍ର ଓ ସିନ୍ଧୁ (Indus) ନଦୀରେ ଜାତିଏ ଶିଶୁମାର ବାସ କରନ୍ତି । ଏମାନେ ନଦୀରେ ନଦୀରେ ସମୁଦ୍ର ଜୁଆର ଯେଉଁ ପର୍ଯ୍ୟନ୍ତ ମାଡ଼ି ଆସେ, ସେ ପର୍ଯ୍ୟନ୍ତ ଚାଲିଯାନ୍ତି; ମାତ୍ର ସମୁଦ୍ର ଭିତରକୁ ଯାନ୍ତି ନାହିଁ ।

ଗଙ୍ଗା ଶିଶୁମାର ସାଧାରଣତଃ 2.3ରୁ 2.6 ମିଟାର ($7\frac{1}{2}$—$8\frac{1}{2}$ ଫୁଟ) ଲମ୍ବ ହୁଏ । ଗୋଟିଏ ଶିଶୁମାର 4 ମିଟାର (13 ଫୁଟ 2 ଇଞ୍ଚ) ଲମ୍ବ ହେବାର ବିବରଣୀ ଅଛି । ସାଧାରଣତଃ ମାଈମାନେ ଅଣ୍ଡିରାଙ୍କ ଅପେକ୍ଷା ବଡ଼ ହୁଅନ୍ତି ।

ଏହି ଶିଶୁମାରର ଦେହ ବୋମାକାର (fusiform) । ମୁଣ୍ଡ ସମ୍ମୁଖକୁ ପ୍ରସାରିତ ହୋଇ ଚେପ୍‌ଟା ଥଣ୍ଟ ଗଠନ କରିଥାଏ । ପାଟିର ପ୍ରତି ପାଖରେ 27ରୁ32ଟି ଦାନ୍ତ ଥାଏ; ଅର୍ଥାତ୍ ପାଟିରେ 108ରୁ128 ଟି ଦାନ୍ତ । ଉପର ପାଟି ତୁଳନାରେ ତଳ ପାଟିରେ ଦାନ୍ତ ସଂଖ୍ୟା ଅଧିକ । ପିଲା ଶିଶୁମାରର ଦାନ୍ତ ଶଙ୍କୁାକାର ଓ ସୂକ୍ଷ୍ମାଗ୍ର; ମାତ୍ର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାହା ମୁଣ୍ଡା ହୋଇଯାଏ । ଏହାର ଗ୍ରୀବା ବେଶୀ ଲମ୍ବ ନୁହେଁ । ଥୋମଣି ଅଂଶକୁ ଛାଡ଼ି ଦେଲେ, ଦେହର ପ୍ରାୟ ମଝି ଅଂଶରେ ଏକ କ୍ଷୁଦ୍ର ପୃଷ୍ଠ ପକ୍ଷ ଅବସ୍ଥିତ । ବକ୍ଷ ପକ୍ଷ ଭଣା ଅଧିକ ତ୍ରିକୋଣାକାର ଏବଂ ଦେହର ମୋଟ ଲମ୍ବର 1/6 ଅଂଶ ହୁଏ । ଆଖି ମଟର ବୀଜ ଆକାରର ।

ଏମାନଙ୍କର ଆଖିରେ ସ୍ଫଟିକାଭ ଲେନସ ( crystalline lens ) ନଥାଏ ଏଣୁ ଏମାନେ ଦେଖି ପାରନ୍ତି ନାହିଁ । ବାତଛିଦ୍ର ଏକ ଅନୁଦୈର୍ଘ୍ୟିକ ଛିଦ୍ର ମାତ୍ର । ଲାଞ୍ଜ ପକ୍ଷ ଆନୁଭୂମିକ ( horizontal ) ଭାବେ ରହିଥାଏ । ଦେହର ବର୍ଣ୍ଣ ଘନ ଧୂସର ବର୍ଣ୍ଣରୁ ହାଲ୍କା ପରି । ବୟସ୍କ ଶିଶୁମାର ମାନଙ୍କର ଦେହର ଅଂଶରେ କେତୋଟି ହାଲୁକା ଚିହ୍ନଥାଏ ।

କ୍ରାସ୍ଟେସିଆ ( Crustacea ) ଓ ମତ୍ସ୍ୟ ଏମାନଙ୍କର ମୁଖ୍ୟ ଖାଦ୍ୟ । ଯଦିଓ ବେଳେବେଳେ ଏକରୁ ଅଧିକ ଶିଶୁମାର ଏକା ସାଙ୍ଗରେ ଦେଖାଯାନ୍ତି, ଏମାନେ ସାଧାରଣତଃ ଏକାକୀ ବୁଲନ୍ତି । ଗ୍ରୀଷ୍ମ କାଳରେ ମୁହାଣର ଖାଡ଼ିମାନଙ୍କରେ ପାଣିରେ ଲବଣର ପରିମାଣ ବେଶୀ ହେବାରୁ ଏମାନେ ନଦୀର ଉପର ଅଂଶକୁ ଗ୍ଭଲିଯାନ୍ତି । ବର୍ଷା ଦିନେ ନଦୀ ମୁହାଣରେ ଜାଲରେ ଧରା ପଡିଥାନ୍ତି । ଥୋମଣି ଥଣ୍ଟ ପରି ହୋଇ ଥିବାରୁ କାଦୁଅରେ ପୁରାଇ ଚିଙ୍ଗୁଡ଼ି ଓ ମାଛ ଧରିବାକୁ ସୁବିଧା ହୁଏ । ପାଣିରେ ପ୍ରାୟ ମିନିଟିଏ ବୁଡ଼ି ରହିଲା ପରେ ଶ୍ୱାସକ୍ରିୟା ପାଇଁ ଉପରକୁ ଉଠିବାକୁ ପଡ଼େ । ବେଳେ ବେଳେ ଶିଶୁମାର ପାଣିରେ ଲମ୍ଫ ଦେଇ ଦେଇ ଗତି କରିବାର ଦେଖାଯାଏ ।



( ଚିତ୍ର ନଂ 157 ଗଙ୍ଗା ଶିଶୁମାର 1)

ଥରକେ ଗୋଟିଏ, କ୍ୱଚିତ୍ ଦୁଇଟି ଶାବକ ଜନ୍ମ ହୁଅନ୍ତି । ଏପ୍ରିଲ-ଜୁଲାଇ ମାସରେ ଶାବକ ଜାତ ହୁଅନ୍ତି । ଗର୍ଭଧାରଣ କାଳ 8।9 ମାସ ।

ବିଭିନ୍ନ ଭାଷାରେ ଶିଶୁମାରର ନାମ—ହିନ୍ଦି—ଶୁଷ୍, ଶୁଶୁ, ବଙ୍ଗଳା—ଶୁଶୁକ୍, ଶିଶୁକ; ସଂସ୍କୃତ—ଶିଶୁମାର; ଆସାମୀ—ହିହୋ, ସେହୋ, ହୁହ; ସିନ୍ଧି—ଭୁଲନ୍, ଶୁନ୍‌ଶର; ଇଂରାଜି Gangetic dolphin । ବୈଜ୍ଞାନିକ ନାମ Platanista gangetica ( Lebeck ) । ପୂର୍ବେ ସିନ୍ଧୁନଦୀର

ଶିଶୁମାର ( Indus dolphin ) ର ବୈଜ୍ଞାନିକ ନାମ ଥିଲ Platanista indi । ମାତ୍ର ପରେ ଜଣା ପଡ଼ିଲ ଦୁଇ ଶିଶୁମାର ପ୍ରାୟ ଏକା । ଏଣୁ ସିନ୍ଧୁ ଶିଶୁମାର ଏବେ P. gangetica ରୂପେ ପରିଚିତ ।

ପୃଥିବୀର ଅନ୍ୟତ୍ର, ମଧୁର ଜଳରେ, ନଦୀ ଓ ହ୍ରଦ ମାନଙ୍କରେ ମଧ୍ୟ ଶିଶୁମାର ଦେଖାଯାନ୍ତି । ଯଥା—ଆମେଜନ ଶିଶୁମାର ( Inia geo-ffroyensis ), ଚୀନା ହ୍ରଦ ଶିଶୁମାର ( Lipotes vexillifer ), ଲ ପ୍ଲାଟା ଶିଶୁମାର ( Pontoporia blainville ) ।

## ଭୁଆସୁଣୀ ମାଛ

ଚିଲିକା ହ୍ରଦରେ ଦେଖା ଯାଉଥିବା ଭୁଆସୁଣୀ ମାଛ ଏକ ଜାତି ସାମୁଦ୍ରିକ ଶିଶୁମାର । ଏହା ବର୍ମାର ଇରବତୀ ନଦୀରେ ମଧ୍ୟ ଦେଖାଯାଏ । ଭୁଆସଣୀ 'ମାଛ' ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମିତ । ଇଂରାଜି ନାମ Irrawadi dolphin , ବୈଜ୍ଞାନିକ ନାମ Orcaella brevirostris ।

## (ଖ) ସାଇରେନିଆ

ମାନାଟି ( manatee ) ଓ ସମୁଦ୍ର-ଗାଭୀ ( sea-cow ) ସାଇରେନିଆ ( Sirenia ) ବର୍ଗ ଅନ୍ତର୍ଭୁକ୍ତ । ଏହି ବର୍ଗର ପ୍ରାଣୀମାନେ ସିଟାସିଆ ବର୍ଗର ପ୍ରାଣୀମାନଙ୍କ ପରି ପ୍ରାୟ ସମ୍ପୂର୍ଣ୍ଣ ରୂପେ ଜଳବାସୀ । ଏଥିପାଇଁ ଦୁଇବର୍ଗର ପ୍ରାଣୀମାନଙ୍କଠାରେ ଅନେକ ଲକ୍ଷଣରେ ପ୍ରଭୂତ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଉଭୟ ବର୍ଗର ପ୍ରାଣୀଙ୍କର ଆକାର ମାଛ ପରି, ଦେହ ପ୍ରାୟ ଲୋମହୀନ, ସମ୍ମୁଖ ଅବୟବ ଜଳରେ ସନ୍ତରଣ ଲାଗି

ଆଙ୍ଗୁଳରେ ରୂପାନ୍ତରିତ ହୋଇଅଛି, ପଶ୍ଚାତ୍ ଅବୟବ ଲୋପ ପାଇଅଛି, କେବଳ ଶ୍ରୋଣୀ ( pelvis ) ର ଚିହ୍ନ ମାତ୍ର ଦେଖାଯାଏ, ଲାଞ୍ଜ ପକ୍ଷ ଆନୁଭୂମିକ ( horizontal ) ଭାବେ ଅବସ୍ଥିତ, ବହିଃକର୍ଣ୍ଣ ନାହିଁ ଓ ଅଣ୍ଡିରର ଅଣ୍ଡକୋଷ ଶରୀର ମଧ୍ୟରେ ଅବସ୍ଥିତ । ମାନାଟି ଓ ସମୁଦ୍ର-ଗାଭୀ ତୃଣଭୋଜି ଏବଂ କୂଳ ନିକଟରେ ଅଗଭୀର ଜଳରେ ବାସ କରନ୍ତି । ଏମାନଙ୍କର ଅସ୍ଥି ବେଶ ଓଜନିଆ ( କାରଣ, ସମୁଦ୍ର ତଳରେ ହୋଇଥିବା ଉଦ୍ଭିଦ ଚରନ୍ତି ) ଶ୍ୱଦନ୍ତ ( canine ) ନାହିଁ, ଅନ୍ତ୍ର ( intestine ) ବେଶ ଲମ୍ବା ଓ ଉଣ୍ଡୁକ ( caecum ) ବେଶ ବଡ । ଏମାନଙ୍କର ଚକ୍ଷୁ କ୍ଷୁଦ୍ର ଓ ଉପ-ପଲ୍ଲବ ( nictitating membrane ) ଦ୍ୱାରା ଆଚ୍ଛାଦିତ ରହିଥାଏ । ଏମାନେ କାହାରି କ୍ଷତି କରନ୍ତି ନାହିଁ ଓ ନିର୍ବୋଧ ।

ସାଇରେନିଆ ବର୍ଗ ଦୁଇଟି ବଂଶରେ ବିଭକ୍ତ ଯଥା—ଟ୍ରାଇଚେଚିଡ଼ି ( Trichechidae ) ଓ ଡ଼ିଉଗନଜିଡ଼ି ( Dugongidae ) । ମାନାଟି ପ୍ରଥମ ବଂଶ ଓ ସମୁଦ୍ର—ଗାଭୀ ଦ୍ୱିତୀୟ ବଂଶ ଅନ୍ତର୍ଭୁକ୍ତ । ମାନାଟି ଆଟଲାଣ୍ଟିକ ମହାସାଗର ଓ କାରିବିଆନ ସାଗରରେ ଏବଂ ସମୁଦ୍ର—ଗାଭୀ ଭାରତ ମହାସାଗରରେ ବାସ କରନ୍ତି । ଅବଶ୍ୟ ଏକଦା ସମୁଦ୍ର—ଗାଭୀ ପୃଥିବୀର ପ୍ରାୟ ସବୁ ସାଗରରେ ବାସ କରୁଥିଲେ; ଏବେ କେବଳ ଗ୍ରୀଷ୍ମ-ମଣ୍ଡଳୀୟ ସମୁଦ୍ରରେ ଦେଖାଯାନ୍ତି । ପ୍ରଶାନ୍ତ ମହାସାଗରରେ ଷ୍ଟେଲର ସମୁଦ୍ର ଗାଭୀ ( Steller's sea-cow, Rhytina stelleri=Hydrodamalis stelleri ) ପୂର୍ବେ ବାସ କରୁଥିଲେ । ଏମାନେ ଲମ୍ବରେ 8 ରୁ 10 ମିଟାର ( 26 ରୁ 33 ଫୁଟ ) ଯାଏ ହେଉଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ସେମାନଙ୍କ ବଂଶ ଲୋପ ପାଇଅଛି ।

ମାନାଟି ଓ ସମୁଦ୍ର -ଗାଭୀ ମଧ୍ୟରେ କେତେକ ପ୍ରଭେଦ ଅଛି । ସମୁଦ୍ର-ଗାଭୀ ତୁଳନାରେ ମାନାଟି ଜଳବାସ ସହିତ କମ୍ ଉପଯୋଜିତ ହୋଇ ଥିବାର ଦେଖିବାକୁ ମିଳେ । କାରଣ, ସେମାନଙ୍କ ଦେହରେ ବିକ୍ଷିପ୍ତ ଭାବେ ଅଳ୍ପ ଅଳ୍ପ ଲୋମ ଥାଏ ଓ ପକ୍ଷ ଶେଷରେ ନଖର ବିଦ୍ୟମାନ । ମାନାଟି ମାନଙ୍କର ଉଭୟ ଶ୍ୱଦନ୍ତ ଓ କର୍ତ୍ତନ (incisor) ଦନ୍ତ ନାହିଁ । ଲାଞ୍ଜ ବର୍ତ୍ତୁଳାକାର ।

ପେଷଣ ଦନ୍ତ (molar) ହାତୀର ପେଷଣ ଦନ୍ତ ପରି, ଗୋଟିଏ ଘୋରି ହୋଇଗଲେ, ଆଉ ଗୋଟିଏ ତାର ସ୍ଥାନ ପୂରଣ କରେ । ଅପର ପକ୍ଷରେ ସମୁଦ୍ର-ଗାଭୀ ଅନେକ ପରିମାଣରେ ସିଟାସିଆମାନଙ୍କ ପରି । ଏମାନଙ୍କ ଦେହରେ ପ୍ରାୟ ଲୋମ ନ ଥାଏ, ପକ୍ଷର ଅଗ୍ରଭାଗରେ ନଖର ନାହିଁ, ଲାଞ୍ଜ ପକ୍ଷ ମଧ୍ୟାଂଶରେ ଦିଫାଳିଆ ଏବଂ ଉପର ପାଟିରେ ଦୁଇଟି କର୍ତ୍ତନ ଦନ୍ତ ଥାଏ । ଅଣ୍ଡିରା ସମୁଦ୍ର-ଗାଭୀର ଏ ଦୁଇଟି ବେଶ ବଡ଼ ଓ ପ୍ରାୟ 25 ସେଣ୍ଟିମିଟାର (10 ଇଞ୍ଚ) ଯାଏଲମ୍ବ । ସମୁଦ୍ର-ଗାଭୀ ମାନଙ୍କର ପେଷଣ ଦନ୍ତ ସଂଖ୍ୟା ଅଳ୍ପ ଓ ସେଥିରେ ଏନାମେଲ ନ ଥାଏ । ମାନାଟି ମାନଙ୍କର ବକ୍ଷ ପକ୍ଷରେ ନଖର ଥିବାରୁ, ସନ୍ତରଣ ବ୍ୟତୀତ ତାହା ଖାଦ୍ୟ ସଂଗ୍ରହରେ କିଞ୍ଚିତ ପରିମାଣରେ ବ୍ୟବହୃତ ହେଉଥିଲା ବେଳେ, ସମୁଦ୍ର-ଗାଭୀ ମାନଙ୍କର ବକ୍ଷ-ପକ୍ଷ କେବଳ ସନ୍ତରଣ ପାଇଁ ବ୍ୟବହୃତ ହୁଏ ।

ମାନାଟି ଓ ସମୁଦ୍ର-ଗାଭୀ ଉଦ୍ଭିଦ ଚରୁ ଥିବାରୁ ସେମାନଙ୍କର ଓଷ୍ଠ ଉତ୍ତମ ଭାବେ ବର୍ଦ୍ଧିତ ।

ସର୍ବମୋଟ ତିନି ଜାତି ମାନାଟି ଓ ଏକ ଜାତି ସମୁଦ୍ର ଗାଭୀ ଦେଖାଯାନ୍ତି ।

## ସମୁଦ୍ର-ଗାଭୀ

ସମୁଦ୍ର-ଗାଭୀର ଆକାର କେତେକ ପରିମାଣରେ କର୍ଣ୍ଣଥିବା ସୀଲ ସଦୃଶ୍ୟ । ପେଟ ଭଣ୍ଡା ଅଧିକ ଚେପ୍ଟା, ପିଠି ପାଖ ଓ କଡ଼ ବର୍ତ୍ତୁଳାକାର । ବେକ ନାହିଁ । ମୁଣ୍ଡ ସ୍ଥୂଳ ଓ ଅଗ୍ରଭାଗ କ୍ରମଶଃ ସରୁ ନ ହୋଇ ହଠାତ୍ ଶେଷ ହୋଇ ଯାଇଥିଲା ପରି ମନେ ହୁଏ । ଦିଫାଳିଆ ଲାଞ୍ଜ ଆନୁଭୂମିକ ଭାବେ ଅବସ୍ଥିତ । ଲାଞ୍ଜ ଆରମ୍ଭରୁ ଶେଷ ଯାଏ ପୃଷ୍ଠ ଭାଗରେ ଏକ ପରସ୍ତ ମୋଟା ଚମଡ଼ା ଥାଏ । ବକ୍ଷ-ପକ୍ଷ ଆହୁଲା ସଦୃଶ ଓ ତା'ର ଠିକ୍ ପଛକୁ

ସ୍ତନ ଅବସ୍ଥିତ । ସମୁଦ୍ର-ଗାଭୀର ମୁହଁ ସାନ । ତଳ ଓଠ ତୁଳନାରେ ଉପର ଓଠ ବେଶ ବଡ଼ ଓ ମାଂସଳ ଗଦି ପରି ସାମନା ଅଂଶରେ ଓହଳି ରହିଥାଏ । ଉପର ଓଠର ଆକାର କେତେକ ପରିମାଣରେ ଘୋଡ଼ାନାଲ ପରି । ଏମାନଙ୍କର ଦେହରେ ତିନି ପ୍ରକାର ଲୋମ ଦେଖିବାକୁ ମିଳେ । ଦୁଇ ପ୍ରକାର ଲୋମ ଉପର ଓ ତଳ ଓଠରେ ଏବଂ ଅନ୍ୟ ଗୋଟିଏ ପ୍ରକାର ଦେହ, ବକ୍ଷ-ପକ୍ଷ ଓ ଲଞ୍ଜ-ପକ୍ଷରେ । ଚକତି ସଦୃଶ୍ୟ ଉପଓଷ୍ଠରେ ଯେଉଁ ଲୋମ ଥାଏ ତାହା ଲମ୍ବା, ସୂକ୍ଷ୍ମ ଓ ଦୃଢ଼ ଏବଂ ସମ୍ଭବତଃ ସଞ୍ଜାବହ ଅଟନ୍ତି । ଉପଓଷ୍ଠର ଦୁଇ କଡ଼ରେ ଯେଉଁ ଲୋମଥାଏ ସେ ସବୁ କ୍ଷୁଦ୍ର ଓ ଝିଙ୍କ କାଠି ଠାରୁ ଅଧିକ ମୁଣ୍ଡା । ଶାବକ ସମୁଦ୍ର ଗାଭୀର ଉପର ପାଟିରେ ଚାରିଟି କର୍ତ୍ତନ ଦନ୍ତ (incisors) ଓ ତଳ ପାଟିରେ ଆଠଟି କର୍ତ୍ତନ ଦନ୍ତ ଏବଂ ପ୍ରତି ପାଟିରେ ଦଶଟି କରି ପେଷଣ ଦନ୍ତ (molars) ଥାଏ । ବୟଃପ୍ରାପ୍ତ ସମୁଦ୍ର-ଗାଭୀର ଦାନ୍ତ ସଂଖ୍ୟା ଅଳ୍ପ; ଉପର ପାଟିରେ ଦୁଇଟି କର୍ତ୍ତନ ଦନ୍ତ ଓ ଚାରିଟିରୁ ଛଅଟି ପେଷଣ ଦନ୍ତ ଏବଂ ତଳ ପାଟିରେ କେବଳ ଚାରିଟିରୁ ଛଅଟି ପେଷଣ ଦନ୍ତ ବିଦ୍ୟମାନ । ଅଣ୍ଡିଗମାନଙ୍କର କର୍ତ୍ତନ ଦନ୍ତ ଦୀର୍ଘ ଓ ପଦାକୁ ବାହାରି ରହିଥାଏ । ମାଈଙ୍କର ସେହି ଦାନ୍ତ ସାଧାରଣତଃ ବାହାରକୁ ବାହାରି ନ ଥାଏ । ନାସାଦ୍ୱାର ବାଳଚନ୍ଦ୍ରାକାର ଓ ମୁଣ୍ଡର ଉପର ଅଂଶରେ ଅବସ୍ଥିତ ।



(ଚିତ୍ର ନଂ 158, ସମୁଦ୍ର ଗାଭୀ)

ଚକ୍ଷୁ କ୍ଷୁଦ୍ର ମାଛି ପରି ଓ ଗଭୀର ଭାବେ କୋଟର ଗତ । ଲୋତକ-ଗ୍ରନ୍ଥି ଉତ୍ତମ ଭାବରେ ବର୍ଦ୍ଧିତ । କର୍ଣ୍ଣ-ରନ୍ଧ୍ର ଗୋଲକାର ଓ ତାର ବ୍ୟାସ 10 ମିଲି ମିଟାର (0.4 ଇଞ୍ଚ) ହେବ । ସଦ୍ୟମୃତ ସମୁଦ୍ର-ଗାଭୀର ବର୍ଣ୍ଣ-ପିଠିପାଖ ଅନୁଜ୍ଜ୍ୱଳ ବାଦାମୀ-ଧୂସର, କଡ଼ ଧୂସର ଓ ପେଟପାଖ ମାଂସ ରଙ୍ଗର ।

ସମୁଦ୍ର–ଗାଭୀ ସାଧାରଣତଃ 2ରୁ2.6 ମିଟାର (6½ରୁ8½ ଫୁଟ) ଲମ୍ବ ହୁଅନ୍ତି । ଅବଶ୍ୟ 3.2 ମିଟାର (10½ ଫୁଟ), ଏପରିକି 3.6 ମିଟାର (12 ଫୁଟ) ଲମ୍ବର ସମୁଦ୍ର–ଗାଭୀ ମଧ୍ୟ ଦେଖାଯାନ୍ତି । 3.6 ମିଟାର ଲମ୍ବର ଗାଭୀର ଓଜନ 680 କିଲୋଗ୍ରାମ (1500 ପାଉଣ୍ଡ) ହୋଇଥାଏ । 3 ମିଟାର (11 ଫୁଟ) ଲମ୍ବର ଗାଭୀର ଦେହର ଘୋଲେଇ 2 ମିଟାର (6½ ଫୁଟ) ହୁଏ । ଅଣ୍ଡିରଙ୍କ ତୁଳନାରେ ମାଈ ସାଧାରଣତଃ ସାନ ହୁଅନ୍ତି ।

ପୂର୍ବ ଆଫ୍ରିକାର ଲୋହିତ ସାଗରଠାରୁ 22° 50 ଉତ୍ତର ଓ 18° ଦକ୍ଷିଣ ଅକ୍ଷାଂଶ ମଧ୍ୟରେ ଅବସ୍ଥିତ ଭାରତ ମହାସାଗରର କୂଳ ଦେଇ ଅଷ୍ଟ୍ରେଲିଆ ଓ ପ୍ରଶାନ୍ତ ମହାସାଗରର ଟାଇୱାନ୍ (ଫର୍ମୋଜା) ପର୍ଯ୍ୟନ୍ତ ବିସ୍ତୃତ ସମୁଦ୍ର କୂଳ ଅଞ୍ଚଳ ସମୁଦ୍ର–ଗାଭୀର ଚରଣ ଭୂମି । ଏମାନେ କଚ୍ଛ ଉପସାଗର, ମାଲବାର କୂଳର ସାଗର, ଶ୍ରୀଲଙ୍କାର ଉତ୍ତର ପଶ୍ଚିମ କୂଳର ସମୁଦ୍ର, ଆଣ୍ଡାମାନ ଦ୍ୱୀପପୁଞ୍ଜ ଚାରିପଟେ, ଏବଂ ବର୍ମାର ମେରଗୁଇ ଦ୍ୱୀପପୁଞ୍ଜ ବିକ୍ଷିପ୍ତ ସାଗରରେ ଦେଖାଯାନ୍ତି ଲୋହିତ ସାଗରର ସମୁଦ୍ର-ଗାଭୀଙ୍କର ବୈଜ୍ଞାନିକ ନାମ ପୂର୍ବେ ଥିଲା Halicore hemprichii (=H. tabernaculi) । ଅଷ୍ଟ୍ରେଲିଆ କୂଳର ସମୁଦ୍ର–ଗାଭୀଙ୍କର ବୈଜ୍ଞାନିକ ନାମ ପୂର୍ବେ ଥିଲା Halicore australis) ଏ ଦୁଇଟି ଓ ଭାରତ ଉପକୂଳରେ ବାସ କରୁଥିବା ସମୁଦ୍ର–ଗାଭୀ – ଏ ସମସ୍ତେ ଗୋଟିଏ ଜାତିର ବୋଲି ବୈଜ୍ଞାନିକମାନେ ସ୍ଥିର କରି ଅଛନ୍ତି ।

ମାନ୍ନାର ଉପସାଗରରେ ପୂର୍ବେ ବହୁ ସଂଖ୍ୟାରେ ସମୁଦ୍ର–ଗାଭୀ ଦେଖା ଯାଉଥିଲେ । ସ୍ଥାନୀୟ ଲୋକେ ଏମାନଙ୍କର ମାଂସ ଖାଉ ଥିବାରୁ ସ୍ୱତନ୍ତ୍ର ଜାଲ ସାହାଯ୍ୟରେ ସେମାନଙ୍କୁ ଧରା ଯାଉଥିଲା । ମାତ୍ର ଏବେ ସେମାନେ ବିରଳ ।

ସମୁଦ୍ର–ଗାଭୀ ଦେଖିବାକୁ ଆବୁରୁ ଜାବୁରୁ ଓ ତାର ଗତି ମନ୍ଥର । ବର୍ଷର ପ୍ରାୟ ସବୁ ସମୟରେ ମା' ସହିତ ଶାବକ ଦେଖିବାକୁ ମିଳେ । ଅଗଭୀର ଜଳରେ ଫେବୃୟାରୀ–ମାର୍ଚ୍ଚ ମାସରେ ଏମାନଙ୍କର ଯୌନ ମିଳନ ଘଟେ । ଗର୍ଭଧାରଣ କାଳ ପ୍ରାୟ ଏକ ବର୍ଷ ।

ପୂର୍ବେ ଲୋହିତ ସାଗରରେ ବହୁ ସଂଖ୍ୟାରେ ସମୁଦ୍ର—ଗାଭୀ ଦେଖା ଯାଉଥିଲେ । ଜାହାଜ ଗଲାବେଳେ ଅଗଭୀର ଜଳରେ ସେମାନେ ଠିଆ ହୋଇ, ବିଶେଷରେ ମା' ଗାଈ ତା'ର ଶିଶୁକୁ ସ୍ତନ୍ୟ ଦାନ କଲାବେଳେ ଅଳ୍ପ ଜଳରେ ଠିଆ ରହି କୌତୁହଳ ବଶତଃ ଜାହାଜକୁ ଅନାଇ ଦେଖୁଥିଲେ । ଶାବକକୁ ଗୁଳିକରି ମାରିଦେଲେ ତା' ମା' ଜଳରେ ଠିଆ ରହିଥିବା ବେଳେ ଆଖିରୁ ଲୋତକ ଧାର ବୋହି ଯାଉଥିଲା । କିଞ୍ଚ ଅଂଶ ପାଣି ଭିତରେ ଥିବାରୁ ଓ ଅଗଭୀର ଜଳରେ ଦେହର ଅଂଶ ରହିଥିବାରୁ ଦୂରରୁ ନାବିକମାନେ ଏସବୁ ଦେଖି, ଏମାନଙ୍କୁ ସାଗର-କନ୍ୟା ବୋଲି ଭ୍ରମ କରୁଥିଲେ । ଫଳରେ ଏମାନଙ୍କୁ ନେଇ ନାନାପ୍ରକାର କାହାଣୀ ଗଢ଼ି ଉଠିଥିଲା । ଲୋହିତ ସାଗରର ସମୁଦ୍ର—ଗାଭୀ ଜଳରେ ଠିଆ ହେବାର ଦେଖାଗଲେ ମଧ୍ୟ ମାନ୍ନାର ଉପ-ସାଗରରେ ବାସ କରୁଥିବା ସମୁଦ୍ର—ଗାଭୀ ଜଳରେ ଠିଆ ହେବାର ଦେଖାଯାଏ ନାହିଁ ।

ବିଭିନ୍ନ ଭାଷାରେ ସମୁଦ୍ର-ଗାଭୀର ନାମ—ତାମିଲ କାଡ଼ାଲପୁନ୍ନୁ, ଅଭିଲିହା, କାଡ଼ାଲପାନ୍ନୀ; ମାଲୟାଲୀ-କାଡ଼ଲ୍ପାନ୍ନୀ; ସିଂହଳୀ-ମୁଡ଼ା ଉରା, ତାଲ୍ଲା ମାଲା; ଇଂରାଜି Dugong sea cow । ବୈଜ୍ଞାନିକ ନାମ Dugong dugon (Muller )

# ପଞ୍ଚବିଂଶ ଅଧ୍ୟାୟ

# ବନ୍ୟ ଜନ୍ତୁ ସଂରକ୍ଷଣ

ସଭ୍ୟତାର ପ୍ରସାର ସଙ୍ଗେ ସଙ୍ଗେ ବନ୍ୟ ଜନ୍ତୁମାନଙ୍କର ସଂଖ୍ୟା ହ୍ରାସ ଓ ଅବଲୋପ ଦ୍ରୁତ ଗତିରେ ଆଗେଇ ଚାଲିଛି । ଫ୍ରାନ୍‌ସିସ ହାର୍ପାର ନାମକ ବିଶେଷଜ୍ଞ 1945 ସାଲରେ ଏହାର ଏକ ହିସାବ ପ୍ରକାଶ କରିଥିଲେ । ସେ ଦର୍ଶାଇଛନ୍ତି ଯେ ବିଗତ ଦୁଇହଜାର ବର୍ଷ ମଧ୍ୟରେ ସତସ୍ତରିଟି ଜାତୀୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଧରାପୃଷ୍ଠରୁ ବିଲୁପ୍ତି ଘଟିଲାଣି, ପୁଣି, ଗତ ଦେଢ଼ଶହ ବର୍ଷ ମଧ୍ୟରେ ବେଶୀ ଜାତିର ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ହିଁ ଏ ଦୁର୍ଦ୍ଦଶା ଘଟି ଚାଲିଛି । ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ, ବରଂ ଦୁଃଖିତ ଓ ଆତଙ୍କିତ ହେବାର କାରଣ ରହିଛି । ଜନସଂଖ୍ୟା ଦ୍ରୁତ ବେଗରେ ବଢ଼ି ଚାଲିଛି । ଖାଦ୍ୟ, ବସବାସ, ଯାତାୟତ ହେବାପାଇଁ ମାର୍ଗ, କଳ କାରଖାନା ସ୍ଥାପନ ଇତ୍ୟାଦି ପାଇଁ ଜଙ୍ଗଲ ଓ ପାହାଡ଼ କାଟିବାକୁ ହେଉଛି । ଏହା ସାଙ୍ଗକୁ ମାଂସ, ଶିଙ୍ଗ ଓ ଚମଡ଼ା ଲୋଭରେ ଆତତାୟୀମାନଙ୍କର ଗୁପ୍ତ ଅଭିଯାନଦ୍ୱାରା ପଶୁବଧ ଚାଲିଛି । ଫଳ ହେଉଛି, ଦିନୁଦିନ ବନ୍ୟଜନ୍ତୁମାନଙ୍କର ସଂଖ୍ୟାହ୍ରାସ ଓ ଶେଷରେ ଧରାପୃଷ୍ଠରୁ କ୍ରମେ ଗୋଟିଏ ଗୋଟିଏ ଜାତିର ଜୀବର ଚରମ ବିଦାୟ । ଉପଯୁକ୍ତ ଶିକ୍ଷା; ପ୍ରଚାର, କଡ଼ା ଆଇନ ଓ ତା'ର କାର୍ଯ୍ୟ କାରିତାଦ୍ୱାରା ଶିକାରୀମାନଙ୍କର ହତ୍ୟା-ବିଭୀଷିକା ଅନେକ ପରିମାଣରେ ବନ୍ଦ କରାଯାଇପାରେ । ମାତ୍ର ଏହା କାର୍ଯ୍ୟକାରୀ ହେଉ ହେଉ ମରଣ ପଥେ ଆଗେଇ ଚାଲିଥିବା କେତେକ ଜାତିର ପ୍ରାଣୀଙ୍କର ଲୋପ ଘଟି ସାରିଥିବ ବୋଲି ଆଶଙ୍କା ।

ବନ୍ୟ-ଜୀବନ-ସଂରକ୍ଷଣ କାହିଁକି ଆବଶ୍ୟକ ତାହା ଆମ ଦେଶରେ ଯେତେ ପ୍ରଚାରିତ ହେବା କଥା ସେତେ ହୋଇ ନାହିଁ । ଫରାସୀ ଭାଷାରେ

ଗୋଟିଏ କଥା ଅଛି; ତା'ର ଅର୍ଥ "ଜଙ୍ଗଲ, ସଭ୍ୟତାର ପୃଷ୍ଠଭୂମି ଓ ମରୁଭୂମି ହିଁ ତା'ର ଉତ୍ତରାଧିକାରୀ" ( Forests precede civilization and deserts succeed it") । ଏହାର ଭାବାର୍ଥ ଏଇ ଯେ; ଆଦିମ ମାନବ ଜଙ୍ଗଲ ସଫା କରି ସଭ୍ୟତା ଆରମ୍ଭ କରେ, ମାତ୍ର ଜଙ୍ଗଲର କ୍ରମାଗତ ଧ୍ୱଂସ ସାଧନ ଦ୍ୱାରା ସଭ୍ୟତା ଶେଷରେ ମରୁଭୂମିରେ ଠିଆହୁଏ ।

ଭାରତର ପ୍ରାକୃତିକ ଓ ଜୈବ ସମ୍ପଦର ବିସ୍ତୃତି, ପ୍ରକାର ଓ ଐଶ୍ୱର୍ଯ୍ୟ ସମଗ୍ର ପୃଥିବୀରେ ଅନନ୍ୟସାଧାରଣ । ଭାରତରେ ଚିନ୍ତାନାୟକମାନେ ପ୍ରକୃତିର ମନୁଷ୍ୟ ଆତ୍ମା ଉପରେ ଗଭୀର ପ୍ରଭାବ ଭାରତୀୟ ସଭ୍ୟତାର ଆଦିମ କାଳରୁ ବୁଝି ପାରିଥିଲେ । ଏ ଦେଶର ବରେଣ୍ୟ ତତ୍ତ୍ୱଦ୍ରଷ୍ଟାମାନେ ଶାନ୍ତିମୟ ଆଧ୍ୟାତ୍ମିକ ମନନପାଇଁ ଲୋକାଳୟ ପରିତ୍ୟାଗ କରି ଅରଣ୍ୟର ଆଶ୍ରୟ ନେଇ ଆସିଛନ୍ତି । ଦେଶର ରାଜା ଓ ସମ୍ରାଟମାନେ ରାଜଧାନୀ ପରିତ୍ୟାଗ କରି. ଗଭୀର ଅରଣ୍ୟର ସେହି ଋଷି ଆଶ୍ରମମାନଙ୍କୁ, ଉପଦେଶ ଓ ଆଶୀଷ ପାଇଁ, ବରାବର ଯାଉଥିଲେ । ନଗର ଓ ଅରଣ୍ୟ ଭିତରେ ଭାରତବର୍ଷ ଯେଉଁ କଲ୍ୟାଣକର ସ୍ୱର୍ଣ୍ଣମୟ ଯୋଗସୂତ୍ର ଗଢ଼ି ରଖିଥିଲା, ତାହା ସମଗ୍ର ବିଶ୍ୱ ସଭ୍ୟତାରେ ଅତୁଳନୀୟ ।

ଭାରତର ଲୋକ ସାହିତ୍ୟ, ଯାହାକୁ ବିଶ୍ୱ-ଲୋକ-ସାହିତ୍ୟର ଜନନୀ କୁହାଯାଏ, ଜଙ୍ଗଲ ଓ ଜଙ୍ଗଲର ପ୍ରାଣୀମାନଙ୍କ ଦ୍ୱାରାହିଁ ଗଠିତ । ଭାରତର ସେକାଳର ଲେଖକମାନେ ପ୍ରକୃତିର ଅଖଣ୍ଡ ସତ୍ତା ଉପଲବ୍ଧି କରୁଥିଲେ । ବୃକ୍ଷଲତା, ଜୀବଜନ୍ତୁ ଓ ମନୁଷ୍ୟ ଭିତରେ ଆତ୍ମିକ ଭାବଧାରାର ଆଦାନ ପ୍ରଦାନ ଚାଲିଥିଲା । ସେମାନେ ଗୋଟିଏ ପରିବାର ଭଳି ଚଳୁଥିଲେ । ମୂଷା, କଇଁଛ, ହରିଣ, ବିଲୁଆକୁ ନେଇ ବିଶ୍ୱବିଖ୍ୟାତ ହିତୋପଦେଶ ଓ ପଞ୍ଚତନ୍ତ୍ର ପୃଥିବୀର ଶ୍ରେଷ୍ଠ ନୈତିକ ଶିକ୍ଷା ଦେଇ ପାରିଛନ୍ତି । ଆନୁମାନିକ ଖ୍ରୀ ପୂ 600 ରେ ଏସିଆ ମାଇନରର ଗ୍ରୀକ୍ ଗାର୍ହିକ ଇସପ୍ (Aesop ) ରାଜା କ୍ରୋଇସାସଙ୍କୁ ପଶୁପକ୍ଷୀଙ୍କ ସମ୍ବନ୍ଧରେ ଯେଉଁ କାହାଣୀମାନ ଶୁଣାଇ ଥିଲେ, ତାହା ଲୋକ ମୁଖରେ ପ୍ରଚାରିତ ହୋଇ ପରବର୍ତ୍ତୀ କାଳରେ ଲିପିବଦ୍ଧ ହୋଇ ବିଶ୍ୱସାହିତ୍ୟରେ ଅମୂଲ୍ୟ ସମ୍ପଦ ରୂପେ ସ୍ଥାନ ପାଇଅଛି । ଆଧୁନିକ କାଳରେ ବିଶ୍ୱବିଖ୍ୟାତ ଇଂରେଜ ଲେଖକ କିପ୍ଲିଙ୍ଗ ଭାରତୀୟ ଜଙ୍ଗଲ ଓ

ତା'ର ପ୍ରାଣୀମାନଙ୍କୁ ନେଇ ବିଶ୍ୱସାହିତ୍ୟରେ ସଂପୂର୍ଣ୍ଣ ନୂତନ ଉପାଦାନ ଥୋଇ ଯାଇଛନ୍ତି ।

ଘରକୁ ଯେପରି ଘରଣୀ ସୁନ୍ଦର, ବଣକୁ ସେହିପରି ଜୀବଜନ୍ତୁ ସୁନ୍ଦର । ଆମ ଦେଶ ଏବେବି ବିଚିତ୍ର ବଣଜଙ୍ଗଲ ଓ ଅନ୍ୟ ଦେଶରେ ନଥିବା ବିଚିତ୍ର ଜୀବଜନ୍ତୁ-ଭରା ହୋଇଥିବାରୁ ଚିତ୍ତ-ବିନୋଦନ ପାଇଁ ବିଦେଶରୁ ଅନେକ ଭ୍ରମଣକାରୀ ଏଠାକୁ ପ୍ରତିବର୍ଷ ବୁଲି ଆସନ୍ତି । ସେମାନେ ବିଦେଶରୁ ଅର୍ଥ ଆଣି ଏ ଦେଶରେ ଖରଚ କରିବାରୁ ଆମ ଦେଶ ମୂଲ୍ୟବାନ ବିଦେଶୀ ମୁଦ୍ରା ଲାଭକରେ । କଳ କାରଖାନା, ସ୍କୁଲ କଲେଜ; ଗବେଷଣାଗାର ଆଦି ପାଇଁ ନାନା ସରଞ୍ଜାମ, ଦେଶରକ୍ଷା ପାଇଁ ଉଡ଼ୁଆ ବିମାନ, କଳ-ବନ୍ଧୁକ ଓ ଅନ୍ୟାନ୍ୟ ଯନ୍ତ୍ରପାତି, ବହିପତ୍ର ଏବଂ ଅନ୍ୟାନ୍ୟ ଅନେକ ପଦାର୍ଥ ବିଦେଶରୁ ଭାରତକୁ ଆମଦାନୀ ହୁଏ । ଏଥିପାଇଁ ପ୍ରଚୁର ବିଦେଶୀ ମୁଦ୍ରା ଆବଶ୍ୟକ । ଏହା ଲାଭ କରିବାର ଏକ ବଡ଼ ବାଟ—ବିଦେଶୀ ଭ୍ରମଣକାରୀ ବହୁ ସଂଖ୍ୟାରେ ଆସି ଏଠାରେ ସେମାନଙ୍କର ଟଙ୍କା ଖରଚ କରିବା । ଏଣୁ ଆମ ଦେଶକୁ ଯେତେ ଅଧିକ ସଂଖ୍ୟାରେ ଭ୍ରମଣକାରୀ ଆସିବେ ସେତେ ଆମ ପକ୍ଷରେ ମଙ୍ଗଳ । ମାତ୍ର ଆମେ ଯଦି ଜଙ୍ଗଲକାଟି ସଫା କରିଦେବା ଓ କେବଳ ଆମ ଦେଶରେ-ଥିବା ଜୀବଙ୍କୁ ମାରି ପଦା କରିଦେବା, ତେବେ ବିଦେଶୀ ଏଠାକୁ ଆସିବେ କାହିଁକି ?

ଯେଉଁ ବନ୍ୟ ଜନ୍ତୁମାନେ ଆମର ଅନିଷ୍ଟ କରନ୍ତି ବା ଯେଉଁ ଅଞ୍ଚଳରେ କେତେକ ଜନ୍ତୁ ଉତ୍ପାତ କରନ୍ତି, ସେମାନଙ୍କୁ ବା ସେହି ଅଞ୍ଚଳରେ ସେମାନଙ୍କୁ ମାରି ଦିଆଯିବା ଦରକାର । ମାତ୍ର କୌଣସି ଗୋଟିଏ ଅଞ୍ଚଳରେ ବାଘ ଉତ୍ପାତ କରି ମଣିଷ ବା ଗୃହପାଳିତ ପଶୁଙ୍କ ଜୀବନ ନେଉଛି ବୋଲି ଗୋଟିଏ ଦେଶ, ପ୍ରଦେଶ, ଜିଲ୍ଲା ବା ଜଙ୍ଗଲର ସବୁ ବାଘଙ୍କୁ ମାରି ଦିଆଯିବ, ଏହା ସପକ୍ଷରେ କୌଣସି ହେଲେ ଯଥାର୍ଥତା ଥାଇ ନ ପାରେ । କାରଣ, ବାଘର ମଧ୍ୟ ଜଙ୍ଗଲ-ସମାଜରେ ବିଶିଷ୍ଟ ଭୂମିକା ଅଛି ।

ପ୍ରକୃତି ତା'ର ବିଚିତ୍ର ନିୟମାନୁସାରେ ସବୁକ୍ଷେତ୍ରରେ ସମତା ରକ୍ଷା କରେ । ଜୀବଜନ୍ତୁ ମାନଙ୍କର ସଂଖ୍ୟାର ସ୍ୱାଭାବିକ ହ୍ରାସବୃଦ୍ଧି ଦ୍ୱାରା ପ୍ରକୃତି ତା'ର ସମତା ରଖେ । ଆମେ ହୁଏତ ଭାବୁଁ ଯେ ବଣର ହିଂସ୍ରଜନ୍ତୁଙ୍କୁ ନମାରି

ଦେଲେ, ନିରୀହ ଜନ୍ତୁ ଗୁଡ଼ିକ ନିପାତ ପାଇଯିବେ । କିନ୍ତୁ ଏହାର କୌଣସି ହେଲେ ଯଥାର୍ଥତା ନାହିଁ । ଆଫ୍ରିକା ଓ ଆମେରିକା ସଭ୍ୟମାନବ ଦ୍ୱାରା ପ୍ରଥମେ ଆବିଷ୍କୃତ ହେଲାବେଳେ ସେଠାରେ ପ୍ରାକୃତିକ ଅବସ୍ଥାରେ ଥିବା ସକଳ ଜୀବର ବିସ୍ମୟକର ସମତା ଦେଖା ଯାଇଥିଲା । ଏବେ ମନୁଷ୍ୟର ଅତ୍ୟାଚାରରେ ଜଙ୍ଗଲ ମହାଦେଶ ଆଫ୍ରିକାରୁ ମଧ୍ୟ କେତେକ ଦୁର୍ଲଭ ଜୀବ ଲୋପ ପାଇବା ଉପରେ; ପୁଣି ଦେଖା ଯାଉଛି ଯେ ସମୁଦ୍ରରେ ଜୀବ-ଗଜ ତିମିର ଅବସ୍ଥା ମଧ୍ୟ ସଙ୍କଟାପନ୍ନ ।

ପ୍ରକୃତି ସହିତ ଅବିଗ୍ଭର ଭବରେ ବ୍ୟବହାର କଲେ ଫଳ ଭୟାବହ ହୁଏ । ବ୍ରିଟୀଶ ଦ୍ୱୀପପୁଞ୍ଜ, ୟୁରୋପ, ଭରତ ଓ ଅନ୍ୟାନ୍ୟ ଦେଶରେ ଶଶା ଅଛନ୍ତି । ସେମାନେ ବିଶେଷ ଅନିଷ୍ଟକାରୀ ପ୍ରାଣୀ ରୂପେ ଗଣ୍ୟ ହୁଅନ୍ତି ନାହିଁ । କାରଣ ସେମାନଙ୍କର ସଂଖ୍ୟା ହ୍ରାସ ପାଇଁ ସେସବୁ ଅଞ୍ଚଳରେ ପ୍ରାକୃତିକ ଶତ୍ରୁ ଅଛନ୍ତି । ଅଷ୍ଟ୍ରେଲିଆରେ ପୂର୍ବେ ଶଶା ନ ଥିଲେ । ୟୁରୋପୀୟ ବସତି ସ୍ଥାପନକାରୀମାନେ ବିଦେଶରୁ ଶଶା ନେଇ ସେଠାରେ ଛାଡ଼ିଲେ । ତଦ୍ୱାରା ସେମାନେ ସେଠାରେ ପ୍ରକୃତିର ଭରସାମ୍ୟରେ ହସ୍ତକ୍ଷେପ କଲେ । ସେ ଦେଶରେ ଶଶକମାନଙ୍କର ସଂଖ୍ୟା ଏତେ ବଢ଼ିଗଲା ଯେ ସେମାନେ ମେଣ୍ଢାମାନଙ୍କ ସହିତ ଘାସ ଖାଇବାରେ ପ୍ରତିଦ୍ୱନ୍ଦ୍ୱିତା କଲେ । ଫଳରେ ମେଷ-ପାଳନର ବୃଦ୍ଧି ପାଇଁ ଅଷ୍ଟ୍ରେଲିଆରେ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା ଶଶକ-ନିପାତ କରିବାକୁ ଖରଚ ହୁଏ ।

ଆଣ୍ଡାମାନ ଦ୍ୱୀପ ପୁଞ୍ଜରେ ପୂର୍ବେ ହରିଣ ନ ଥିଲେ । ସେଠା ଜଙ୍ଗଲର ଶୋଭା ବୃଦ୍ଧିପାଇଁ ଭରତରୁ କେତୋଟି ଚିତଲ ହରିଣ ନେଇ ଛାଡ଼ି ଦିଆ ଯାଇଥିଲା । ଫଳରେ, କେତେ ବର୍ଷ ଗତ ହେବା ପରେ ଦେଖାଗଲା, ହରିଣଙ୍କ ସଂଖ୍ୟା ସେଠା ଜଙ୍ଗଲରେ ଏତେ ବଢ଼ି ଗଲାଯେ, ଶେଷରେ ସେମାନେ ଶସ୍ୟ କ୍ଷେତରେ ପଶି ବହୁ ପରିମାଣରେ ଫସଲ ନଷ୍ଟ କଲେ । ଅବସ୍ଥା ସୁଧାରିବା ପାଇଁ କେତୋଟି ବାଘ ଭରତରୁ ନେଇ ସେଠା ଜଙ୍ଗଲରେ ଛାଡ଼ିବାକୁ ପଡ଼ିଥିଲା । ଏବେ ମଧ୍ୟ ଚିତଲ ହରିଣ ଆଣ୍ଡାମାନରେ ଶସ୍ୟ କ୍ଷେତରେ ପଶି ଶସ୍ୟ ଖାଇଯାନ୍ତି ।

ଗୋଟିଏ ବାଘ ତାର ଖାଦ୍ୟ ପାଇଁ ସପ୍ତାହକୁ ଅନ୍ତତଃ ପକ୍ଷେ ଗୋଟିଏ ମାତ୍ର ହରିଣ ବା ସମ୍ବର ପରି ବଡ଼ ଜୀବ ଆବଶ୍ୟକ କରେ । ଏଥିରେ ଜଙ୍ଗଲ ଜୀବନର ବେଶୀ କ୍ଷତି ହେବାର ଆଶଙ୍କା ନାହିଁ । କିନ୍ତୁ ଆମ ଜଙ୍ଗଲରେ ଗତିରେ ଶିକାରୀ ବେଆଇନ୍ ଭାବରେ ପର୍ଣ୍ଣ ବହୁ ସଂଖ୍ୟକ ହରିଣ, ସମ୍ବର ଆଦି ମାରି ପକାଇବାରୁ ସେମାନଙ୍କର ସଂଖ୍ୟା ବହୁତ କମି ଗଲଣି । ଫଳରେ ବାଘ ତା'ର ଖାଦ୍ୟଜୀବ ନ ପାଇବାରୁ ନିକଟସ୍ଥ ଗାଁରୁ ଗୋରୁଗାଈ, ମେଣ୍ଢା ଛେଳି ଏପରିକି ମଣିଷକୁ ଉଠାଇବାକୁ ଆରମ୍ଭ କରୁଛି ବା ବହୁ ବର୍ଷରୁ ଆରମ୍ଭ କଲଣି । ଏଥିରେ ଆଶ୍ଚର୍ଯ୍ୟ କଅଣ ?

ନିମ୍ନଲିଖିତ କାରଣ ପାଇଁ ବଣର ଜୀବଜନ୍ତୁ ମାନଙ୍କର ସଂରକ୍ଷଣ ଏକାନ୍ତ ଆବଶ୍ୟକ ।

1 । ବଣର ଜିବଜନ୍ତୁହିଁ ଜଙ୍ଗଲର ପ୍ରକୃଷ୍ଟ ସୌନ୍ଦର୍ଯ୍ୟ ଓ ଆକର୍ଷଣ ।

2 । ଆମ ବଣରେ, ଆମ ଦେଶର ବିଶିଷ୍ଟ, ବିଭିନ୍ନ ଜୀବଜନ୍ତୁ ଅଧିକ ସଂଖ୍ୟାରେ ଥିଲେ, ବିଦେଶରୁ ଭ୍ରମଣକାରୀମାନେ ବେଶୀ ସଂଖ୍ୟାରେ ଆମ ଦେଶକୁ ବୁଲି ଆସିବେ । ତଦ୍ୱାରା ଆମକୁ ଅଧିକ ବିଦେଶୀ ମୁଦ୍ରା ମିଳିବ ଓ ଆମର ଜାତୀୟଆୟ ବଢ଼ିବ ।

3 । ବନ୍ୟଜନ୍ତୁମାନଙ୍କୁ ସମୁଚିତ ଭାବରେ ରକ୍ଷା କରିବାଦ୍ୱାରାହିଁ ମନୁଷ୍ୟ ସେମାନଙ୍କ ଦୌରାତ୍ମ୍ୟରୁ ନିଜକୁ ରକ୍ଷା କରିପାରେ ।

4 । ବିଜ୍ଞାନର ଅଗ୍ରଗତି ଯେତିକି ହେଉଛି, ବିସ୍ମୟକର ଉଦ୍ଭାବନର ସଂଖ୍ୟା ସେତିକି ବଢ଼ି ଚାଲିଛି । ଆଜି ଯେଉଁ ପ୍ରାଣୀଙ୍କୁ ଆମେ ହତ୍ୟା କରି ମୂଳପୋଛ କରି ଦେଉଛେ, ସେମାନେ ବଞ୍ଚି ରହିଲେ ଆମର ରୋଗର ଆରୋଗ୍ୟ ଲାଗି ବା ଅନ୍ୟ କାର୍ଯ୍ୟରେ କି ଭାବେ ଲାଗି ପାରନ୍ତେ ତା' କିଏ କହି ପାରିବ । ଘୋଡ଼ା ଦେହରେ ସର୍ପ ବିଷ ପ୍ରବେଶ କରାଇ ଯେପରି ସର୍ପ ବିଷହାରକ ଔଷଧ ପ୍ରସ୍ତୁତ ହୁଏ, ଆମେରିକାରେ ବଜ୍ରକାପ୍ତା ଦେହରେ କୁଷ୍ଠ ରୋଗର ବେସିଲସ ପ୍ରବେଶ କରାଇ ସେହି ରୋଗର ଆରୋଗ୍ୟ ପାଇଁ ଔଷଧ ପ୍ରସ୍ତୁତ କରାଯାଇ ପାରିବ ବୋଲି ଗବେଷଣା ଦ୍ୱାରା ଜଣା ପଡ଼ିଛି ।

ଭାରତରେ ବନ୍ୟ ଜନ୍ତୁମାନଙ୍କର ସଂରକ୍ଷଣ ନୂଆ କଥା ନୁହେଁ । ଜୀବଜନ୍ତୁମାନଙ୍କପ୍ରତି ଶ୍ରଦ୍ଧା ଓ ଅନସୂୟା ଭାବ ବଢ଼ାଇବା ଲାଗି

ଆର୍ଯ୍ୟ ଋଷିମାନେ ସେମାନଙ୍କୁ ଦେବଦେବୀ ମାନଙ୍କର ପ୍ରିୟବାହନରୂପେ ସମ୍ମାନିତ ଆସନ ଦେଇ ଅଛନ୍ତି । ହାତୀ ଇନ୍ଦ୍ରଙ୍କର, ସିଂହ ଦୁର୍ଗାଙ୍କର ଓ ମଇଁଷି ଯମଙ୍କ ବାହନ ଏବଂ ଅନ୍ୟ ଅନେକ ପଶୁପକ୍ଷୀ ମଧ୍ୟ ଦେବବାହାନ ରୂପେ ପ୍ରତିଷ୍ଠିତ । ଗୁଣ୍ଡୁଚିମୂଷା ଗମଙ୍କର ପ୍ରିୟ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଅଶୋକଙ୍କର ପଞ୍ଚମ ଶିଳାଲିପିରେ କେଉଁ ପ୍ରାଣୀଙ୍କର ସୁରକ୍ଷା ଆବଶ୍ୟକ ତା'ର ଏକ ତାଲିକା ଦିଆଯାଇ ଅଛି । ସେହି ପ୍ରାଣୀମାନଙ୍କ ମଧ୍ୟରେ, "ବାଦୁଡ଼ି, ମାଙ୍କଡ଼, ଗଣ୍ଡାର, ଝିଙ୍କ, ବୃକ୍ଷଗୁଣ୍ଡୁଚି ମୂଷା, ବାରଶିଙ୍ଗା ହରିଣ, ବ୍ରାହ୍ମଣୀ ଷଣ୍ଢ ଓ ସମସ୍ତ ପ୍ରକାର ଚତୁଷ୍ପଦୀ ପ୍ରାଣୀ ଯେଉଁମାନେ କି ଖାଦ୍ୟ ଓ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟବହୃତ ହୁଅନ୍ତି ନାହିଁ" ସେ ସମସ୍ତେ ଅନ୍ତର୍ଭୁକ୍ତ ।

ବନ୍ୟଜନ୍ତୁମାନେ, ଯେଉଁମାନେ ଶିକାରୀ ହାତରେ ପଡ଼ି ଧ୍ୱଂସପଥରେ ଆଗେଇ ଗଲେଣି ବା ପରିବର୍ତ୍ତିତ ପରିସ୍ଥିତିରେ ଜୀବନ ସଂଗ୍ରାମରେ ଆଉ ପାରିଉଠି ପାରୁ ନାହାନ୍ତି ସେମାନଙ୍କର ସଂରକ୍ଷଣ ଲାଗି ଜାତୀୟ ଉଦ୍ୟାନ (National Park) ଅଭୟାରଣ୍ୟ (Sanctuary) ଆଦି ସ୍ଥାପିତ ହୁଏ । ଜାତୀୟ ଉଦ୍ୟାନ ଏକ ବିସ୍ତୃତ ଅଞ୍ଚଳରେ (120 ରୁ 240 ବା ଅଧିକ ହେକଟାର) ଗଠିତ ହୁଏ ଓ ତନ୍ମଧ୍ୟରେ ବନ୍ୟଜୀବମାନେ ନିର୍ଭୟରେ ବାସ କରି ପାରନ୍ତି । ଅଭୟାରଣ୍ୟ ଅପେକ୍ଷାକୃତ ଅଳ୍ପ ସ୍ଥାନ (12 ରୁ 60 ହେକ୍‌ଟାର ବା ଅଧିକ) ବିଶିଷ୍ଟ । ଉକ୍ତ ଉଭୟ ପ୍ରକାର 'ପ୍ରାଣୀ ସଂରକ୍ଷିତ' ଅଞ୍ଚଳରେ ଦର୍ଶକର ବୁଲାଚଲା ନିୟନ୍ତ୍ରିତ । କେବଳ କେତେକ ନିର୍ଦ୍ଦିଷ୍ଟ ମାର୍ଗରେ ସେମାନେ ଯିବା ଆସିବା କରି ପାରନ୍ତି । ଫଳରେ ସେମାନେ ବନ୍ୟଜନ୍ତୁମାନଙ୍କୁ ଦେଖିବାର ସୁଯୋଗ ପାଇ ପାରନ୍ତି, ନ ପାଇ ପାରନ୍ତି । ଏଥିପାଇଁ ଚିଡ଼ିଆଖାନା ବା ଜୀବ—ଉଦ୍ୟାନ ସ୍ଥାପିତ ହୁଏ । ଏଥିରେ ଅଳ୍ପ ପରିସର ସ୍ଥାନ ମଧ୍ୟରେ ଦେଶ ବିଦେଶର ବହୁ ଜାତିର ପ୍ରାଣୀଙ୍କୁ ଆଣି ରଖା ଯାଇଥାଏ ।

କେବଳ ସାଧାରଣ ଲୋକ ନୁହେଁ, ବହୁ ଶିକ୍ଷିତ ଲୋକଙ୍କ ମନରେ ମଧ୍ୟ ଚିଡ଼ିଆଖାନା ସ୍ଥାପନସମ୍ବନ୍ଧରେ ଦ୍ୱନ୍ଦ ପରିଲକ୍ଷିତ ହୁଏ । ଏ ବିଷୟରେ ସେମାନଙ୍କର ଅଭିଯୋଗ ଗୁଡ଼ିକ ଏହିପରି, ଚିଡ଼ିଆଖାନାରେ ଅତି ଅଳ୍ପ ଜାଗାରେ ସେମାନଙ୍କୁ ରଖିବା ଫଳରେ ସେମାନଙ୍କର ସ୍ୱାଧୀନ ବିଚରଣରେ ବାଧା ହୁଏ; ବନ୍ଦୀ—ଜୀବନଯୋଗୁ ସେମାନଙ୍କର ଆୟୁଷ କମି ଯାଏ; ଚିଡ଼ିଆ-ଖାନାରେ ପ୍ରାଣୀମାନଙ୍କୁ ଦର୍ଶକମାନଙ୍କର ଚିତ୍ତବିନୋଦନ ପାଇଁ ନାନା ପ୍ରକାର

ଟ୍ରେନିଂ ଦେଲା ବେଳେ ସେମାନଙ୍କ ଉପରେ ଅତ୍ୟାଚାର କରାଯାଏ ଏବଂ ବିଭିନ୍ନ ଚିଡ଼ିଆଖାନା ଲାଗି ଜୀବ ଧରାହେବା ଫଳରେ ଜଙ୍ଗଲରେ ସେମାନଙ୍କର ସଂଖ୍ୟା ହ୍ରାସ ପାଏ ।

ଏବେ ଚିଡ଼ିଆଖାନା ଗୁଡ଼ିକୁ ପ୍ରାଣୀମାନଙ୍କର ଜେଲଖାନା ନ କରି, ଯଥା ସମ୍ଭବ ପ୍ରାକୃତିକ ସମାବେଶରେ ପ୍ରାଣୀମାନଙ୍କୁ ପାଳନ କରାଯାଏ । ସବୁ ପ୍ରାଣୀଙ୍କର ଚଳବୁଲ କରିବା ପାଇଁ ଯେ ଅଧିକ ସ୍ଥାନ ଆବଶ୍ୟକ ହୁଏ ତାହା ନୁହେଁ, ଜଙ୍ଗଲରେ ହାତୀ ସବୁଠାରୁ ବେଶୀ ଅଞ୍ଚଳରେ ବୁଲେ; ମାତ୍ର ଚିଡ଼ିଆଖାନାରେ ତା'ର ଖୁବ ଅଳ୍ପସ୍ଥାନ ହେଲେ ଚଳେ । ଆଉ ଦେଖାଯାଇଛି ଉତ୍ତମ ଖାଦ୍ୟ ଓ ହେପାଜତ ଯୋଗୁଁ ଏମାନେ ବନ୍ଦୀ ଅବସ୍ଥାରେ ବେଶୀଦିନ ବଞ୍ଚନ୍ତି । ଲଣ୍ଡନର ଚିଡ଼ିଆଖାନା ପୃଥିବୀର ଏକ ବିଖ୍ୟାତ ଚିଡ଼ିଆଖାନା । ସେଠାରେ ନାନା ପରୀକ୍ଷାଦ୍ୱାରା ଏସମ୍ପର୍କରେ ବହୁ ଅନୁସନ୍ଧାନ ହୋଇ ନାନା ତଥ୍ୟ ଆବିଷ୍କୃତ ହୋଇଅଛି । ସେଥିରୁ କେତୋଟି ତଳେ ବର୍ଣ୍ଣିତ ହେଲା ।

ବିସ୍ତୀର୍ଣ୍ଣ ଜଙ୍ଗଲରେ ପଶୁ ବାସ କଲେ ମଧ୍ୟ ଅନେକ ସୀମିତ ପରିସର ମଧ୍ୟରେ ବିଚରଣ କରନ୍ତି । କେତେକ ପ୍ରାଣୀ ଦଳବଦ୍ଧ ଜୀବନ ଯାପନ କରନ୍ତି । ପୁଣି କେତେକ ଏକାକୀ ଜୀବନ ଯାପନ କରନ୍ତି । ଜଙ୍ଗଲରେ ପ୍ରାଣୀମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ହେତୁହିଁ ଯେ ଯାହାର କ୍ଷୁଦ୍ର ଇଲାକା ମଧ୍ୟରେ ବାସ କରିବାକୁ ବାଧ୍ୟ ହୁଅନ୍ତି ।

ଲଣ୍ଡନର ଚିଡ଼ିଆଖାନାରେ ଦେଖାଯାଇଛି, ଫୁ-ଘରିଆ ବଡ଼ ପିଞ୍ଜରା ଅପେକ୍ଷା ସାନ ପିଞ୍ଜରାରେ ଅଧିକ ସୁଖୀ । ଆଫ୍ରିକାର ଲମ୍ବାଇ ଗାହେଳକୁ ବଡ଼ ଘେର ଭିତରେ ନ ରଖି ସାନ ଘେର ଭିତରେ ରଖିଲେ ସେମାନେ ନିୟମିତ ସନ୍ତାନ ଉତ୍ପାଦନ କରି ବଂଶବୃଦ୍ଧି କରନ୍ତି ।

ବ୍ରିଟେନ୍‌ର ଲମ୍ବାଲାଞ୍ଜିଆ ଚଢ଼ିଆମୂଷାର ଜୀବନକାଳ ମାତ୍ର ବର୍ଷଟିଏ । ଥରକର ଶୀତପରେ ଆଉ ଶୀତ ବେଳକୁ ତା'ର ଆୟୁଷ ପୂରିଥାଏ । ମାତ୍ର ଲଣ୍ଡନର ଚିଡ଼ିଆଖାନାରେ ହେପାଜତ୍ ଯୋଗୁ ତାହା ତିନିବର୍ଷରୁ ଚାରିବର୍ଷ ବଞ୍ଚେ ।

ଲଣ୍ଡନର ଚିଡ଼ିଆଖାନାକୁ ଦେଶବିଦେଶରୁ ଅଣା ଯାଉଥିବା ଜୀବଜନ୍ତୁ ମାନଙ୍କ ଦେହରେ ନାନା ଜାତିର ଉକୁଣୀ, ପେଟ ଭିତରେ ନାନା ଜାତି

ପରଶ୍ରୟୀ ପ୍ରାଣୀ ରହିଥାନ୍ତି । ଏସବୁ ଆଶ୍ରୟଦାତା ପ୍ରାଣୀମାନଙ୍କ ଦେହରେ ନାନା ରୋଗ ଉପୁଜାନ୍ତି । ଚିଡ଼ିଆଖାନାରେ ପ୍ରାଣୀମାନଙ୍କର ଉପଯୁକ୍ତ ଯତ୍ନ ନିଆଯିବା ଯୋଗୁଁ ସେମାନେ ରୋଗମୁକ୍ତ ଥିଲେ ଯେତେ ଦିନ ବଞ୍ଚନ୍ତେ ତା' ଠାରୁ ଅଧିକ କାଳ ବଞ୍ଚନ୍ତି ।

ପ୍ରାଣୀମାନେ ଧରାହୋଇ ଚିଡ଼ିଆଖାନାକୁ ଆସି ପ୍ରଥମେ ବଡ ବ୍ୟସ୍ତ ହୁଅନ୍ତି; ପିଞ୍ଜରା ଭିତରେ କୁଦାକୁଦି କରି ନିଜକୁ ଖଣ୍ଡିଆ ଖାବରା କରନ୍ତି । ବିଶେଷଜ୍ଞମାନେ ସ୍ଥିର କରି ଅଛନ୍ତି ଯେ ସେମାନଙ୍କୁ ବନ୍ଦୀ କରାହେବା ଦ୍ୱାରା ଯେ ସେମାନେ ଏପରି ପ୍ରତିକ୍ରିୟା ପ୍ରଦର୍ଶନ କରନ୍ତି ତାହା ନୁହେଁ; ମନୁଷ୍ୟ ପ୍ରତି ଭୀତି ହେତୁ ସେମାନେ ସେପରି ଭାବ ପ୍ରଦର୍ଶନ କରିଥାନ୍ତି ।

ଦର୍ଶକମାନଙ୍କର ଚିତ୍ତବିନୋଦନ ପାଇଁ ପ୍ରାଣୀମାନଙ୍କୁ ଟ୍ରେନିଂ ଦେବାର ବ୍ୟବସ୍ଥା କେତେକ ଚିଡ଼ିଆଖାନାରେ ଅଛି । ଆଧୁନିକ ଟ୍ରେନିଂ ଦେବା ପ୍ରଣାଳୀରେ ପ୍ରାଣୀମାନଙ୍କ ପ୍ରତି ଅତ୍ୟାଚାର ବା ନୃଶଂସତାର ସ୍ଥାନ ନାହିଁ ।

କୌଣସି ପ୍ରାଣୀର ସଂଖ୍ୟା ଯେଉଁଠି ଅତି କମ୍, ସେଠାରୁ ଚିଡ଼ିଆ-ଖାନାଲାଗି ଜୀବ ଧରିବା ଅନ୍ୟାୟ । ଏ ବିଷୟରେ ଚିଡ଼ିଆଖାନାମାନଙ୍କର ମଧ୍ୟ କର୍ତ୍ତବ୍ୟ ରହିଛି । କେତେ ବର୍ଷ ପୂର୍ବେ ଲଣ୍ଡନର ଚିଡ଼ିଆଖାନାରେ ପଶ୍ଚିମ ଚୀନର ବାଉଁଶ ଜଙ୍ଗଲରୁ ଧରା ହୋଇ ଆସିଥିବା ବୃହତ ପଣ୍ଡା (Giant Panda) କେତୋଟିଙ୍କର ମୃତ୍ୟୁ ହେଲା; ଏମାନେ କାହିଁକି ମଲେ ତାର କାରଣ ନିର୍ଣ୍ଣୟ ହୋଇ ପାରିଲା ନାହିଁ । ଫଳରେ ଚିଡ଼ିଆଖାନାର କର୍ତ୍ତୃପକ୍ଷ ସ୍ଥିର କଲେ, ଯେପର୍ଯ୍ୟନ୍ତ ଏହି ଜନ୍ତୁମାନଙ୍କ ସମ୍ବନ୍ଧରେ ଅଧିକ ଜ୍ଞାନ ଆହରଣ କରା ନ ଯାଇଛି, ସେ ଯାଏଁ ବୃହତ୍ ପଣ୍ଡାଙ୍କୁ ଆଉ ଚିଡ଼ିଆ ଖାନାରେ ଆଣି ରଖା ଯିବ ନାହିଁ । ଏହା ପରେ ପରେ ଚୀନ ସରକାର ବୃହତ୍ ପଣ୍ଡା ଚୀନ୍‌ରୁ ବିଦେଶକୁ ରପ୍ତାନୀ ହୋଇ ପାରିବ ନାହିଁ ବୋଲି ନିଷେଧାଜ୍ଞା ଜାରି କଲେ ।

କେତେକ ଜାତି ପ୍ରାଣୀ ପ୍ରକୃତିରାଜ୍ୟରେ ନିଶ୍ଚିହ୍ନ ହୋଇଗଲେ ମଧ୍ୟ ପ୍ରାଣୀଉଦ୍ୟାନ ମାନଙ୍କରେ କିପରି ଏବେବି ବଞ୍ଚି ରହି ପାରି ଅଛନ୍ତି ଓ ସେମାନଙ୍କ ବଂଶ ନିର୍ମୂଳ ହୋଇନାହିଁ, ତା'ର କେତୋଟି ଉଦାହରଣ ନିମ୍ନରେ ଦିଆଗଲା । ଏଥିରୁ ଜୀବଉଦ୍ୟାନର ଆବଶ୍ୟକତାସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଉପଲବ୍ଧି କରି ହେବ ।

ପେରେ ଡେଭିଡ ହରିଣ (Pere Devid's deer) ର ଆଦିମ ବାସଭୂମି ଚୀନର ହୋନାନ ଅଞ୍ଚଳର ଜଳାଭୂମି । ସେଠାରେ ସେମାନଙ୍କର ସଂଖ୍ୟା ହ୍ରାସ ପାଇ ଶେଷରେ ବିଲୁପ୍ତି ଘଟିଲା । ମାତ୍ର ପେକିଙ୍ଗର ରାଜ-ଉଦ୍ୟାନରେ ସେଥିରୁ କେତୋଟି ଥିଲେ । ଶେଷରେ ସେଠାରେ 1920 ସାଲରେ ଶେଷ ମାଈ ହରିଣଟିର ବୃଦ୍ଧାବସ୍ଥାରେ ମୃତ୍ୟୁ ହେଲା । ଚୀନରୁ ସେହି ହରିଣଙ୍କ ବଂଶ ଲୋପ ହେଲା । ମାତ୍ର 1897 ସାଲରେ ଏ ଜାତୀୟ କେତୋଟି ହରିଣ ଅଣାଯାଇ ବିଲାତର ବେଡ୍‌ଫୋର୍ଡର ଡ୍ୟୁକଙ୍କ ଉଡ୍‌ବର୍ଣ୍ଣ-ପାର୍କରେ ଛାଡ଼ି ଦିଆ ଯାଇଥିଲା । 1958 ସାଲର ଏକ ବିବରଣୀରୁ ଜଣାପଡ଼େ, ସେଠାରେ ସେମାନଙ୍କ ସଂଖ୍ୟା ଥିଲା ତିନି ଶତ । ଏଠାରୁ ଦେଶ ବିଦେଶର ପ୍ରାଣୀଉଦ୍ୟାନମାନଙ୍କୁ ପରେ ଡେଭିଡ୍ ହରିଣ ପଠାଯାଏ । ଅଥଚ ନିଜ ଭୂମି ଚୀନରେ ସେ ହରିଣ ଆଉ ନାହାନ୍ତି ।

ୟୁରୋପୀୟ ଗୟଳ ପ୍ରାକୃତିକ ଅବସ୍ଥାରେ ଏବେ ଦେଖାଯାନ୍ତି ନାହିଁ । ମାତ୍ର ପ୍ରାଣୀଉଦ୍ୟାନ ମାନଙ୍କରେ ଉତ୍ତମ ରକ୍ଷଣାବେକ୍ଷଣହେତୁ ଏବେବି ସେମାନଙ୍କର ବଂଶ ଲୋପ ପାଇ ଯାଇନାହିଁ ।

## (ଗ)

ପ୍ରାଣୀମାନଙ୍କର ବାସ ଓ ବିସ୍ତୃତି ବିଚାର କରି ସମଗ୍ର ପୃଥିବୀକୁ ଛଅଟି ପ୍ରାଣୀ ଭୌଗୋଳିକ ମଣ୍ଡଳ ( zoogeographical realm ) ରେ ବିଭକ୍ତ କରଯାଇ ଅଛି ; ଯଥା-ଅଷ୍ଟ୍ରେଲୀୟା ( Australian ), ପ୍ରାଚ୍ୟମଣ୍ଡଳ ( Oriental ), ଇଥିଓପୀୟ ( Ethiopian ), ନୂତନ ଉଷ୍ଣ ମଣ୍ଡଳ ( Neotropical ), ନୂତନ ସୁମେରୁ ମଣ୍ଡଳ ( Nearctic ) ଓ ପ୍ରାକ୍ ସୁମେରୁ ମଣ୍ଡଳ ( Palearctic ) । ହିମାଳୟ ପର୍ବତମାଳାର ଦକ୍ଷିଣକୁ ଥିବା ଏସିଆ ଅଞ୍ଚଳ ପ୍ରାଚ୍ୟମଣ୍ଡଳ ଅନ୍ତର୍ଭୁକ୍ତ । ପ୍ରାଚ୍ୟମଣ୍ଡଳ କହିଲେ ଭୌଗୋଳିକ ଭାରତ, ଶ୍ରୀଲଙ୍କା, ମାଲୟ ଉପଦ୍ୱୀପ, ସୁମାତ୍ରା, ବୋର୍ଣ୍ଣିଓ ଜାଭା, ସେଲିବିସ ଓ ଫିଲିପାଇନ୍ ଦ୍ୱୀପପୁଞ୍ଜର ପ୍ରାଣୀକୁଳକୁ ବୁଝାଏ ।

ଭୌଗୋଳିକ ଭାରତ ( ଭାରତ, ପାକିସ୍ଥାନ, ଶ୍ରୀଲଙ୍କା, ବାଙ୍ଗଲାଦେଶ, ନେପାଳ ଓ ବର୍ମା ) ରେ ମୋଟ 76,000 ବିଭିନ୍ନ ଜାତିର ପ୍ରାଣୀ ବାସ କରନ୍ତି

ବୋଲି ବିଶେଷଜ୍ଞମାନେ ନିରୂପଣ କରି ଅଛନ୍ତି । ସମଗ୍ର ପୃଥିବୀରେ ପ୍ରାଣୀମାନଙ୍କର ଜାତି ସଂଖ୍ୟା 1,076,000 ଧରିଲେ, ଭାରତରେ ଶତକଡ଼ା ସାତ ଭାଗ ପ୍ରାଣୀ ଦେଖାଯାନ୍ତି । ଭାରତର ପ୍ରାଣୀମାନଙ୍କ ମଧ୍ୟରେ କୀଟପତଙ୍ଗ 50,000 ଜାତି, ମତ୍ସ୍ୟ 1650 ଜାତି ସରୀସୃପ 710 ଜାତି, ପକ୍ଷୀ 1200 ଜାତି ଓ ସ୍ତନ୍ୟପାୟୀ ପ୍ରାଣୀ 458 ଜାତି । ଭାରତରେ 920 ଉପ ଜାତି ( Sub-species ) ସ୍ତନ୍ୟପାୟୀ ପ୍ରାଣୀ ଦେଖାଯାନ୍ତି ।

ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ହସ୍ତୀ, ଅରଣା ମଇଁଷି, ନୀଳଗାଈ, କୃଷ୍ଣସାର, ଗୋରଇ, କସ୍ତୁରୀ ମୃଗ, ହୁଲୁକ୍ ( Hoolock ), ହନୁ ମାଙ୍କଡ଼ ( Langur ), ଲଜ୍ଜ୍ୟାବତୀ ( Slow loris ), ମାଈ ମନୁଷ୍ୟ ( Slender loris ) କୁଙ୍ଗ ( Clouded leopard ) ଲାଲ ପାଣ୍ଡା ( Red panda ), ବଜ୍ରକାପ୍ତା, ଗୁଣ୍ଡୁଚି ମୂଷା, ଝାଟି ମୂଷା Bush rat ) ଓ ଧଳାପେଟ ବାଉଁଶ ମୂଷା ( Horay Bamboo rat ) ଆଦି ପ୍ରାଣୀ କେବଳ ପ୍ରାଚ୍ୟ ଭୌଗୋଳିକ ମଣ୍ଡଳରେ ଦେଖାଯାନ୍ତି ଓ ଭାରତରେ ମିଳନ୍ତି ।



( ଚିତ୍ର ନଂ 159 ପୃଥିବୀର ପ୍ରାଣୀ-ଭୌଗୋଳିକ ମଣ୍ଡଳ )

ଗତ ଶତାବ୍ଦୀ ମଧ୍ୟରେ ଚିତା ବାଘ ( Cheetah ) ଭାରତରୁ ଅବଲୁପ୍ତ ହୋଇଅଛି । ଅନେକ ସ୍ତନ୍ୟପାୟୀ ପ୍ରାଣୀ, ଯଥା ନୀଳଗିରି ହନୁ

( Nilgiri langur ), ଭାରତୀୟ ସିଂହ, ତୁଷାର କଲରାପତ୍ରିଆ ବାଘ ( Snow leopard ), ବଣ୍ୟ ଗର୍ଦ୍ଦଭ ( Indian Wild ass ), ଗଣ୍ଡାର, ଚମରୀ ଗାଈ ( Yak), ମାର୍ଖୋର ( Markhor ), ନୀଳଗିରି ଟେହେର ( Nelgiri tahr, ହାଙ୍ଗୁଲ ( Hangul ), ସୋଉ ( Shou ) ସାଙ୍ଗାଇ ହରିଣ ( Thamin ), କସ୍ତୁରୀ ମୃଗ, ବାମନ ଶୂକର ( Pygmy hog ) ଓ ବ୍ୟାଘ୍ର ଆଦି ପ୍ରାଣୀମାନଙ୍କ ସଂଖ୍ୟା ଦ୍ରୁତ ବେଗରେ ହ୍ରାସ ପାଉଅଛି ।

ଏସିଆର ସିଂହ ଦିନେ ଭାରତର ବିସ୍ତୀର୍ଣ୍ଣ ଅଞ୍ଚଳରେ ବିଚରଣ କରୁଥିଲ । ମନୁଷ୍ୟର ଅନୁକମ୍ପାରେ ଗୁଜରାଟର 140 ବର୍ଗ କିଲୋମିଟାର ପରିମିତ ଗୀର ଜାତୀୟ ଉଦ୍ୟାନ ଆଜି ତା'ର ଶେଷ ଆଶ୍ରୟ ହୋଇଅଛି । 1963 ସାଲରେ ସେଠାରେ ସେମାନଙ୍କର ସଂଖ୍ୟା ଥିଲ 285 । 1968 ଗଣନାରେ ସେମାନଙ୍କ ସଂଖ୍ୟା 177କୁ ହ୍ରାସ ପାଇଥିଲ । ସେମାନଙ୍କର ସଂରକ୍ଷଣ ଲଗି 45 ଲକ୍ଷ ଟଙ୍କାର ଏକ ଯୋଜନା 1972 ସାଲରୁ କାର୍ଯ୍ୟକାରୀ କରଯାଇଅଛି ।



( ଚିତ୍ର ନଂ 160 ବୃକ୍ )

ଉତ୍ତର ପଶ୍ଚିମ ଗୁଜରାଟର 2,600 ବର୍ଗ କିଲୋମିଟାର ଅଞ୍ଚଳ କଚ୍ଛର ରନ୍ ଅଞ୍ଚଳ ( Rann of Kutch ) ନାମରେ ପରିଚିତ । ଏହା ମରୁଭୂମି । ଏହି ଅଞ୍ଚଳବ୍ୟତୀତ ପୃଥିବୀର ଅନ୍ୟ କେଉଁଠି ହେଲେ ବନ୍ୟ ଗର୍ଦ୍ଦଭ ଦେଖାଯାନ୍ତି ନାହିଁ । 1946 ସାଲରେ ଏମାନଙ୍କ ସଂଖ୍ୟା ଥିଲ 3000 ରୁ 5000 । 1961-62 ଗଣନାରେ ଜଣା ପଡ଼ିଲ

ସେମାନଙ୍କ ସଂଖ୍ୟା 850 ରେ ପହଞ୍ଚିଛି 1969 ଗଣନାରେ ବନ୍ୟ ଗର୍ଦ୍ଦଭଙ୍କ ସଂଖ୍ୟା ଥିଲା 362 ।

ଗଣ୍ଡାରର ଶକ୍ତ ବର୍ମ ମଧ୍ୟ ତାକୁ ରକ୍ଷା କରି ପାରି ନାହିଁ । ଆସାମର କାଜିରଙ୍ଗା ଜାତୀୟ ଉଦ୍ୟାନ ( 37822 ହେକ୍‌ଟାର ) ରେ ସେମାନଙ୍କ ସଂଖ୍ୟା ପ୍ରାୟ 700 ରେ ପହଞ୍ଚିଛି ।

ଭାରତରେ ନଅ ଜାତି ହରିଣଙ୍କ ମଧ୍ୟରୁ କେତେକ ଆଜି ଜୀବନ-ରକ୍ଷା ଲାଗି ମନୁଷ୍ୟର ଦୟା ଉପରେ ନିର୍ଭର କରୁଅଛନ୍ତି । ମଣିପୁର ରାଜ୍ୟରେ ଇମ୍ଫାଲଠାରୁ ପ୍ରାୟ 50 କିଲୋମିଟାର ଦୂରରେ ଲଗଟକ୍ ହ୍ରଦ ଅବସ୍ଥିତ । ସେଠାରେ 26 ବର୍ଗ କିଲୋମିଟାର ଜଳାଭୂମି ସୁନ୍ଦର ସାଙ୍ଗାଇହରିଣର ବାସଭୂମି । ସେହି ପାର୍ବତ୍ୟ ଅଞ୍ଚଳ ମଧ୍ୟ ଶିକାରୀର ଲୋଲୁପ ଦୃଷ୍ଟିରୁ ତ୍ରାହି ପାଇ ପାରିନାହିଁ । 1960 ରେ ସାଙ୍ଗାଇହରିଣ ସଂଖ୍ୟା ଥିଲା 100; ଏବେ ମାତ୍ର 18 । କାଶ୍ମୀରର ହାଙ୍ଗଲ ହରିଣ ଉଚ୍ଚ ପାର୍ବତ୍ୟ ଭୂମିରେ 2750ରୁ



( ଚିତ୍ର ନଂ 161 ନୀଳଗିରି ହନୁ )

3650 ମିଟାର ଉଚ୍ଚତାରେ ବାସ କରେ । 1947 ସାଲରେ ସେମାନଙ୍କର ସଂଖ୍ୟା ପ୍ରାୟ 2000 ଥିଲା । ଭାରତ-ପାକିସ୍ଥାନ ଯୁଦ୍ଧବେଳେ ସେମାନେ ବହୁ ସଂଖ୍ୟାରେ ନିହତ ହେଲେ । ଶ୍ରୀନଗରଠାରୁ କୋଡ଼ିଏ କିଲୋମିଟାର ଦୂରରେ

ଅବସ୍ଥିତ 54 ବର୍ଗ କିଲୋମିଟାର ପରିମିତ ଡାଚିଗାମ ଅଭୟାରଣ୍ୟରେ ସେମାନଙ୍କର ସଂଖ୍ୟା ଏବେ ମାତ୍ର 150 । ବାରଶିଙ୍ଗା ହରିଣ ଉତ୍ତର ପ୍ରଦେଶ, ମଧ୍ୟ ପ୍ରଦେଶ ପଶ୍ଚିମ ବଙ୍ଗର ସୁନ୍ଦରବନ, ଆସାମ ଓ ଓଡ଼ିଶାର ଜଳାଭୂମିର ଉଚ୍ଚ ଘାସ ପଡ଼ିଆ ମାନଙ୍କରେ ପଲ ପଲ ହୋଇ ବୁଲୁଥିଲେ ଏବେ ସେମାନେ କେବଳ ମଧ୍ୟପ୍ରଦେଶର 250 ବର୍ଗ କିଲୋମିଟାର ପରିମିତ କାନହା ଜାତୀୟ-ଉଦ୍ୟାନରେ ଦେଖିବାକୁ ମିଳନ୍ତି । ସେଠାରେ 1958 ସାଲରେ ସେମାନଙ୍କ ସଂଖ୍ୟା ଥିଲା 600 । 1965 ଓ 1969 ସାଲରେ ବାରଶିଙ୍ଗା ସଂଖ୍ୟା ଯଥାକ୍ରମେ ହେଲା 200 ଓ 70 । 1973 ମସିହାରେ ସେମାନଙ୍କ ସଂଖ୍ୟା 133 କୁ ବୃଦ୍ଧି ପାଇଛି ବୋଲି ଜଣାପଡ଼େ । ଅନ୍ୟ ଜାତି ହରିଣ ମାନଙ୍କ ସଂଖ୍ୟା ମଧ୍ୟ ଗତ ତିରିଶ ବର୍ଷ ହେଲା କମିବାରେ ଲାଗିଛି ।

ନୀଳଗିରି ଟେହ୍ରେ ନୀଳଗିରିର ପାର୍ବତ୍ୟ ଉପତ୍ୟକାରେ 1220 ରୁ 1830 ମିଟାର ଉଚ୍ଚତାରେ ବାସ କରେ । 1963 ସାଲରେ ଏମାନଙ୍କର ସଂଖ୍ୟା ଥିଲା 400 । ଏମାନଙ୍କୁ ବଧ କରିବା ନିଷେଧ ଆଇନ ସତ୍ତ୍ୱେ, ଚୋର ଶିକାରୀଙ୍କ ଦାଉରେ ସେମାନଙ୍କ ସଂଖ୍ୟା ବହୁତ କମି ଯାଇଛି । ସେମାନେ ଅତି ଅଳ୍ପ ସଂଖ୍ୟାରେ କେରଳର ଇରଭିକୁଲମ୍ ଓ ଇଡୁକ୍କି–ଅଭୟାରଣ୍ୟ ଦୁଇଟିରେ ପ୍ରାଣବଞ୍ଚାଇ ରହି ଅଛନ୍ତି ବୋଲି ଅନୁମାନ ।

ବନ୍ୟ ମହିଷ ଏକଦା ବ୍ରହ୍ମପୁତ୍ର ଓ ଗଙ୍ଗାନଦୀଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ସମତଳ ଭୂମିରେ ଭ୍ରମଣ କରୁଥିଲା । 1966 ସାଲରେ ସେମାନଙ୍କର ସଂଖ୍ୟା 2000 ରୁ ଅଧିକ ଥିଲା ବୋଲି ନିରୂପଣ କରାଯାଇଥିଲା । ଏବେ ସେମାନଙ୍କର ସଂଖ୍ୟା କେତେ ତାହା ସ୍ଥିରୀକୃତ ହୋଇନାହିଁ । ସେ ଯାହା ହେଉ, ନିର୍ଦ୍ଦୟ ହତ୍ୟା ଫଳରେ ସେମାନଙ୍କ ସଂଖ୍ୟା ମଧ୍ୟ ବହୁ ପରିମାଣରେ ହ୍ରାସ ପାଇ ଗଲଣି, ଏଥିରେ ସନ୍ଦେହ ନାହିଁ ।

1758 ସାଲରେ କେରୋଲସ ଲିନିଆସ ବ୍ୟାଘ୍ରର ବୈଜ୍ଞାନିକ ନାମ କରଣ "ଫେଲିସ ଟାଇଗ୍ରିସ" (Felis tigris) କରି ସର୍ବ ପ୍ରଥମେ ଲୋକ ଲୋଚନକୁ ଆଣିଥିଲେ । ପ୍ରକୃତିତତ୍ତ୍ୱବିତ ଗି (Gee) ଭାରତରେ 1910 ସାଲରେ ଭାରତର ବ୍ୟାଘ୍ର ସଂଖ୍ୟା 40,000 ଥିଲା ବୋଲି ନିରୂପଣ କରିଥିଲେ । ପେରୀ (Perry) ନାମକ ବିଶେଷଜ୍ଞଙ୍କ ମତରେ ଗତ ଶହେ ବର୍ଷ ଭିତରେ

1,00,000 ବ୍ୟାଘ୍ର ଶିକାରୀମାନଙ୍କର ଗୁଳିରେ ପ୍ରାଣ ହରାଇ ଥିଲେ । ସେ ମତ ଦିଅନ୍ତି ଯେ 1960 ବେଳକୁ ସେମାନଙ୍କ ସଂଖ୍ୟା 400 କୁ ହ୍ରାସ ପାଇ ଯାଇଥିଲା । 1972 ସାଲରେ ଯେଉଁ ବ୍ୟାଘ୍ରସୁମାରୀ ହେଲା, ସେଥିରୁ ଜଣା



(ଚିତ୍ର ନଂ 162, ତୁଷାର କନ୍ଦର ପତ୍ରିଯା ବାଘ)

ପଡ଼ିଲା ସେମାନଙ୍କ ସଂଖ୍ୟା 258 ରେ ପହଞ୍ଚିଲାଣି । ଚାରି କୋଟି ଟଙ୍କାର ଏକ "ବ୍ୟାଘ୍ର ଯୋଜନା" ("Project Tiger") ଆଇ. ୟୁ. ସି. ଏନ୍. (International Union for Conservation of Nature) ସହାୟତାରେ 1973 ସାଲରୁ କାର୍ଯ୍ୟକାରୀ କରା ଯାଇଛି । ଭାରତର ଦଶଟି ବ୍ୟାଘ୍ରଅଞ୍ଚଳରେ ସେମାନଙ୍କର ସଂରକ୍ଷଣ ଲାଗି ବ୍ୟବସ୍ଥା କରା ଯାଇଅଛି । ଯଥା– ମାନସ (ଆସାମ), ସୁନ୍ଦରବନ (ପଶ୍ଚିମ ବଙ୍ଗ), ପାଲାମାଉ (ବିହାର), ସିମିଳି ପାଳ (ଓଡ଼ିଶା), କରବେଟ ଜାତୀୟ ଉଦ୍ୟାନ (ଉତ୍ତର ପ୍ରଦେଶ), ରନ୍ ଥନ ଭୋର (ରାଜସ୍ଥାନ), କାହ୍ନା (ମଧ୍ୟ ପ୍ରଦେଶ) ମେଲଘାଟ (ମହାରାଷ୍ଟ୍ର), ବାନ୍ଦିପୁର (କର୍ଣ୍ଣାଟକ ଓ ପେରିୟାର (କେରଳ) ।

ଭାରତ-ଭୁଟାନ ସୀମାର ସଙ୍କୋଷ ନଦୀର ପୂର୍ବ ଅଞ୍ଚଳର ସ୍ୱର୍ଣ୍ଣକେଶୀ ହନୁ (Golden Langur) ସଂଖ୍ୟା ବହୁତ କମି ଗଲାଣି । ଅଥଚ ଏହି ଅତି ସୁନ୍ଦର ହନୁ ମାଙ୍କଡ଼ ସମ୍ବନ୍ଧରେ ବୈଜ୍ଞାନିକ ବିବରଣୀ ବିରଳ ।

ଭାରତର ସବୁଠାରୁ ଦୁର୍ଲଭ ହନୁ ହେଲା ନୀଳଗିରି ହନୁ (Nilgiri Langur) । ଦକ୍ଷିଣ-ଭାରତର ପାର୍ବତ୍ୟ ଅଞ୍ଚଳରେ ଏମାନେ 915 ରୁ 2135 ମିଟାର ଉଚ୍ଚତାରେ ବାସ କରନ୍ତି । ଅନେକ ପରିମାଣରେ ନୀଳଗିରିହନୁ

ସାଧାରଣ ହନୁମାଙ୍କ ପରି । ଏମାନେ ଅତି ଉଚ୍ଚ ବୃକ୍ଷ ଡାଳରେ ରହନ୍ତି ଏବଂ ଖାଇଲା ବେଳେ "ହୁ—ହା—ହୁ—ହା—ହୁ" ଶବ୍ଦ କରନ୍ତି । ସୂକ୍ଷ୍ମ ଲୋମ ପାଇଁ ଏବଂ ମାଂସ, ରକ୍ତ ଓ ବିଭିନ୍ନ ଅଙ୍ଗର ନାନା ରୋଗ ଆରୋଗ୍ୟ ପାଇଁ ଉପଯୋଗୀ ବୋଲି ଲୋକଙ୍କ ବିଶ୍ୱାସ ରହିବାଯୋଗୁ ଏମାନଙ୍କୁ ସ୍ଥାନୀୟ ଲୋକେ ବଧ କରନ୍ତି । କେରଳର ଇରଭିକୁଲମ୍ ଓ ପେରିୟାର ଅଭୟାରଣ୍ୟ ଦୁଇଟିରେ ଏମାନେ ଅତି ଅଳ୍ପ ସଂଖ୍ୟାରେ ପ୍ରାଣ ବଞ୍ଚାଇ ରହି ଅଛନ୍ତି ବୋଲି ବିଶ୍ୱାସ କରଯାଏ ।



(ଚିତ୍ର ନଂ 163, ସ୍ୱର୍ଣ୍ଣକେଶୀ ହନୁ (Presbytis geei)

ଭାରତରେ ବନ୍ୟପ୍ରାଣୀ ମାନଙ୍କର ସଂଖ୍ୟା କ୍ରୁର ଶିକାରୀମାନଙ୍କ ହସ୍ତରେ ଦ୍ୱିତୀୟ ମହାଯୁଦ୍ଧ ପରଠାରୁ ଅତି ଦ୍ରୁତ ଗତିରେ ହ୍ରାସ ପାଇବାରେ ଲାଗିଛି ।

## (୪)

ଭାରତ ବହୁ ଧର୍ମର ଜନ୍ମଭୂମି । ସମସ୍ତ ଧର୍ମର ମୂଳମନ୍ତ୍ର ଅହିଂସା । ପ୍ରାଣୀ ସଂରକ୍ଷଣ ଭାରତ ପାଇଁ ନୂଆ କଥା ନୁହେଁ । ଖ୍ରୀ ପୂ 3000 ରେ ଅଶୋକଙ୍କ ଶିଳାଲିପିରେ ପ୍ରାଣୀସଂରକ୍ଷଣ ପାଇଁ ନିର୍ଦ୍ଦେଶ ଦିଆ ଯାଇଅଛି । ଖ୍ରୀ: ପୂ· 30୦ ରେ ଚାଣକ୍ୟଙ୍କ "ନୀତି ଶାସ୍ତ୍ର"ରେ ଜଙ୍ଗଲ ଓ ସେଥିରେ ବନ୍ୟ

ପ୍ରାଣୀମାନଙ୍କର ସଂରକ୍ଷଣ ବିଷୟ ଲେଖା ଅଛି । 1887 ସାଲରେ ଭାରତର ବ୍ରିଟିଶ ଶାସକମାନେ ପକ୍ଷୀ ଓ ଜନ୍ତୁ ସଂରକ୍ଷଣପାଇଁ ଆଇନ (Wild Birds and Animals Protection Act, 1887) ପ୍ରଚଳନ କରିଥିଲେ ।

ଭାରତରେ ବନ୍ୟଜନ୍ତୁ ମାନଙ୍କର ସଂଖ୍ୟା କ୍ରମଶଃ ହ୍ରାସ ପାଉ ଥିବାରୁ ଭାରତ ସରକାର ଦେଶରେ ସେମାନଙ୍କର ସଂରକ୍ଷଣ ପାଇଁ 1952 ସାଲ ଏପ୍ରିଲ 4 ତାରିଖରେ "ବନ୍ୟଜୀବନ ପାଇଁ ଭାରତର ସଂସ୍ଥା" (Indian Board for Wild Life) ନାମକ ଏକ ପରାମର୍ଶଦାତା ସଂସ୍ଥା ସଂଗଠନ କଲେ । ବିଭିନ୍ନ ପ୍ରାଦେଶିକ ସରକାରମାନେ ମଧ୍ୟ ପ୍ରାଣୀସଂରକ୍ଷଣପାଇଁ ଅନୁରୂପ ପରାମର୍ଶଦାତା ସଂସ୍ଥା ଗଠନ କରି ଅଛନ୍ତି । ବନ୍ୟଜୀବନପାଇଁ କେନ୍ଦ୍ର ବୋର୍ଡର ସୁପାରିଶକ୍ରମେ ଓ ଭାରତ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ପ୍ରତିବର୍ଷ ଅକ୍ଟୋବର ମାସର ପ୍ରଥମ ସପ୍ତାହରେ ଜନ ସାଧାରଣଙ୍କୁ ବନ୍ୟ ଜୀବନ ସଂରକ୍ଷଣ ପ୍ରତି ସଚେତନ କରାଇବା ପାଇଁ 'ବନ୍ୟ ଜନ୍ତୁ ସପ୍ତାହ' ପାଳିତ ହୁଏ ।

ବନ୍ୟଜନ୍ତୁ ସଂରକ୍ଷଣ ଲାଗି କେନ୍ଦ୍ର ସରକାରଙ୍କର ଅଧୁନାତନ ଆଇନ୍ "ବନ୍ୟ ଜନ୍ତୁ (ସଂରକ୍ଷଣ) ଆକ୍ଟ, 1972" [The Wild Life (Protecton) Act, 1972], ସଂବିଧାନର 252 ଧାରାର 1 ଉପଧାରା ଅନୁସାରେ ପାସ୍ ହୋଇଛି । ପ୍ରାଦେଶିକ ସରକାରମାନେ ତଦନୁସାରେ ଅନୁରୂପ ଆଇନ ପ୍ରଣୟନ କରି ଅଛନ୍ତି । ଉକ୍ତ ଆକ୍ଟ୍ ଅନୁସାରେ ବନ୍ୟପ୍ରାଣୀମାନଙ୍କୁ ପାଞ୍ଚଟି ତାଲିକାଭୁକ୍ତ କରା ଯାଇଅଛି । ପ୍ରଥମ ତାଲିକାଭୁକ୍ତ ପ୍ରାଣୀମାନଙ୍କୁ କେହି ଶିକାର କରି ପାରିବେ ନାହିଁ । ଏହି ତାଲିକାରେ 61 ଜାତି ସ୍ତନ୍ୟପାୟୀ, 22 ଜାତି ସରୀସୃପ ଓ 37 ଜାତି ପକ୍ଷୀ ଓ ଏକ ଜାତି କଙ୍କଡ଼ା ଅନ୍ତର୍ଭୁକ୍ତ । ତାଲିକା 2, 3 ଓ 4 ରେ ବିଶେଷ ଶିକାର, ବଡ଼ ଶିକାର ଓ ସାନ ଶିକାରରେ ନିହତ ହେଉଥିବା ପ୍ରାଣୀମାନଙ୍କ ନାମ ରହିଛି । ଏସବୁ ପ୍ରାଣୀଙ୍କୁ "ମୁଖ୍ୟ ବନ୍ୟ ଜନ୍ତୁ ଓ୍ୱାର୍ଡେନ" (Chief Wild Life Warden) ଙ୍କ ଦ୍ୱାରା ପ୍ରଦତ୍ତ ଲାଇସେନ୍ସ ବିନା କୌଣସି ବ୍ୟକ୍ତି ଶିକାର କରି ପାରିବେ ନାହିଁ । ଉକ୍ତ ଆଇନ ଅନୁସାରେ କୌଣସି ବନ୍ୟ ଜନ୍ତୁକୁ ଧରିଆଣି ପାଳନ କରିବା

ଶିକାର କରିବା, ଯନ୍ତା ବସାଇ ଧରିବା, ବା ସେମାନଙ୍କର ମାଂସ କୌଣସି ହୋଟେଲରେ ରନ୍ଧା ହୋଇ ପରିବେଷିତ ହେବା, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପରିବହନ କରାଯିବା, ବିଦେଶକୁ ରପ୍ତାନୀ ହେବା—ଏ ସମସ୍ତ "ମୁଖ୍ୟ ବନ୍ୟ ଜନ୍ତୁ ଓ୍ୱାର୍ଡେନ" ଙ୍କ ଦ୍ୱାରା ନିୟନ୍ତ୍ରିତ । ଅନିଷ୍ଟକର ପ୍ରାଣୀମାନଙ୍କୁ 5ମ ତାଲିକାଭୁକ୍ତ କରାଯାଇଅଛି । ସେମାନଙ୍କୁ ଶିକାର କରିବାରେ କୌଣସି ବାଧା ନାହିଁ ।

1952 ମସିହାରେ ଭାରତର ଜାତୀୟଜଙ୍ଗଲନୀତି ନିର୍ଦ୍ଧାରିତ ହୋଇ ଥିଲା । ତଦନୁସାରେ ସମଗ୍ର ସ୍ଥଳଭାଗର ଶତକଡ଼ା ଅନ୍ତତଃ 30 ଭାଗ ଜଙ୍ଗଲ ହେବା ବାଞ୍ଛନୀୟ । ବିଭିନ୍ନ ସ୍ଥାନରେ ଜଙ୍ଗଲ କାଟି ସଫା କରି ଦିଆଯିବା ଫଳରେ ଭାରତର ମୋଟ ସ୍ଥଳଭାଗର ଶତକଡ଼ା 22.7 ଜଙ୍ଗଲ । ବନ୍ୟଜନ୍ତୁ ସଂରକ୍ଷଣ ତଥା ମୌସୁମୀ ବର୍ଷା ଏ ଉଭୟ ପାଇଁ ଏହା ସର୍ବନିମ୍ନ ସ୍ତରଠାରୁ ନିମ୍ନରେ ।

ବନ୍ୟ ଜୀବନର ସଂରକ୍ଷଣ ଲାଗି ଭାରତରେ ବର୍ତ୍ତମାନ ଅନ୍ତତଃ ପକ୍ଷେ 15ଟି ଜାତୀୟ ଉଦ୍ୟାନ, 152ଟି ଅଭୟାରଣ୍ୟ ଓ 9ଟି ପକ୍ଷୀ ଅଭୟାରଣ୍ୟ ଅଛି । ଏସବୁର ମୋଟ କ୍ଷେତ୍ରଫଳ 3, 49, 000 ବର୍ଗ କିଲୋମିଟର ।

କେବଳ ଆଇନ୍, ଜାତୀୟ ଉଦ୍ୟାନ ବା ଅଭୟାରଣ୍ୟ ଗୁଡ଼ିକର ସଂସ୍ଥାପନଦ୍ୱାରା ବନ୍ୟଜନ୍ତୁସଂରକ୍ଷଣ ହୋଇ ନ ପାରେ । ସାଧାରଣ ଲୋକେ ଏ ଦିଗରେ ସଚେତନ ହୋଇ ବନ୍ୟ ସମ୍ପଦ ଯେ ସେମାନଙ୍କର ସମ୍ପଦ ଏହା ଉପଲବ୍ଧି ନ କଲେ ଯାଏଁ ଆମର ବନ୍ୟଜନ୍ତୁ ଅବଲୁପ୍ତି ପଥରେ ଆଗେଇ ଚାଲିଥିବେ । ରେଗରେ ବାଘ ଛାଲ ଗୋଟିଏ 10000 ଟଙ୍କାରେ, ଗଣ୍ଡାର "ଶିଙ୍ଗ" 30,000 ଟଙ୍କା ଓ ହାତୀଦାନ୍ତ କିଲୋଗ୍ରାମକୁ 500 ଟଙ୍କାରେ ବିକ୍ରୀ ହେଉଥିଲା ବେଳେ ଏହି ପ୍ରାଣୀମାନଙ୍କୁ ଧ୍ୱଂସ ମୁଖରୁ କେବଳ ଆଇନ ରକ୍ଷା କରି ନ ପାରେ ।


ଭାରତର ଜାତୀୟ ଉଦ୍ୟାନ
ଜାମ୍ମୁ କାଶ୍ମୀର
ଚୀନ
ହିମାଚଳ ପ୍ରଦେଶ
ପଞ୍ଜାବ
ତିବ୍ବତ
କରବେଟ
ନୂଆଦିଲ୍ଲୀ
ଦୁଧୱା
ନେପାଳ
ରାଜସ୍ଥାନ
ଉତ୍ତର ପ୍ରଦେଶ
ଅରୁଣାଚଳ ପ୍ରଦେଶ
ସିକିମ
ଭୁଟାନ
ଆସାମ
କାଜିରଙ୍ଗା
ନାଗାଲାଣ୍ଡ
ମେଘାଳୟ
ବିହାର
ହଜାରୀବାଗ
ମଣିପୁର
ବଙ୍ଗଳା ଦେଶ
ତ୍ରିପୁରା
ମିଜୋରାମ
ଗୁଜରାଟ
ଶିବପୁରୀ
ପାଲାମାଉ
ପ ବଙ୍ଗ
ସୁନ୍ଦରବନ
ବେଲାଭାଦର
ବାନ୍ଧବଗଡ଼
ମଧ୍ୟ ପ୍ରଦେଶ
ଗୀର
କାହ୍ନା
ସିମିଳିପାଳ
ବ୍ରହ୍ମଦେଶ
ତାଡୋବା
ମହାରାଷ୍ଟ୍ର
ଓଡ଼ିଶା
ବମ୍ବେ
ବଙ୍ଗୋପସାଗର
ଆନ୍ଧ୍ର ପ୍ରଦେଶ
ଆରବ ସାଗର
ପାକିସ୍ତାନ
କର୍ଣ୍ଣାଟକ
ନଗରହୋଲ
ବାନ୍ଦିପୁର
ମାଡ୍ରାସ
ତାମିଲ ନାଡୁ
ଭାରତ ମହାସାଗର

ଭାରତ ସରକାରଙ୍କ ବନ୍ୟ ଜନ୍ତୁ ( ସଂରକ୍ଷଣ ) ଆକ୍ଟ 1972,
ସଂଶୋଧିତ ସେପ୍ଟେମ୍ବର ଓ ଅକ୍ଟୋବର, 1977

# ତାଲିକା- ୧

( ଏ ତାଲିକାଭୁକ୍ତ ପ୍ରାଣୀଙ୍କୁ ବଧ କରିବା ନିଷେଧ )

ପ୍ରଥମ ଭାଗ : ସ୍ତନ୍ୟପାୟୀ

୧ । ଆଣ୍ଡାମାନ ବାରହା ( Andaman wild pig-sus scrofa andamanensis )

୨ । ଭଲ୍ଲୁକ ମାର୍ଜାର ( Binturong-Arctictis binturong )

୩ । କୃଷ୍ଣସାର ( Black buck-Antilope cervicapra )

୪ । ନୀଳତିମି ( Blue whale - Balaenoptera musculus )

୫ । ସାଙ୍ଗାଇ ହରିଣ ( Brow-antiered deer or Thamin -Cervus eldi )

୬ । ଟୋପିଧାରୀ ହନୁ ( Capped langur - Presbytis pileatus )

୭ । କାରକାଲ ( Caracal-Felis caracal )

୮ । ଚିତା ବାଘ ( Cheetah-Acinonyx jubatus )

୯ । ଚୀନା ବଜ୍ରକାପ୍ତା ( Chinese pangolin - Manis pentadactyla )

୧୦ । ଚିଙ୍କାର ( Chinkara or Indian Gazelle –Gazella gazella bennetti )

୧୧ । କୁଙ୍ଗ୍ (Clouded leopard—Neofelis nebulosa)

୧୨ । ମରୁଭୂମି ବିଲେଇ ( Desert cat—Felis libyca )

୧୩ । ସିନ୍ଧୁଗାଭୀ ( Dugong—Dugong dugon )

୧୪ । ମାଛଧରା ବିଲେଇ (Fishing cat—Felis viverrina )

୧୫ । ଘଉିଶିଙ୍ଗା ( Fourhorned antelope—Tetraceros quadricornis )

୧୬ । ଶିଶୁମାର ( Gangetic dolphin—Platanista gangetica; Common dolphin—Delphinus delphis )

୧୭ । ଉଡ଼ନ୍ତା ଗୁଣ୍ଡୁଚି ମୂଷା ( Hylopetes, Petaurista, Belomys ଓ Eupetaurus ଗଣର ସମସ୍ତ ଜାତି ଉଡ଼ନ୍ତା ଗୁଣ୍ଡୁଚି ମୂଷା )

୧୮ । ସ୍ୱର୍ଣ୍ଣକେଶୀ ବିଡ଼ାଳ ( Golden cat—Felis temminckii )

୧୯ । ସ୍ୱର୍ଣ୍ଣକେଶୀ ହନୁ ( Golden langur—Presbytis geei )

୨୦ । ହିମାଳୟ ଟେହେର୍ (Himalayan tahr—Hemitragus jemlahicus )

୨୧ । ଆସାମ ଶଶକ ( Hispid hare—Caprolagus hispidus )

୨୨ । ହୁଲୁକ ( Hoolock—Hylobates hoolock )

୨୩ । କୁଜା ପିଠି ତିମି ( Hump-backed whale-—Megaptera novaeangliae )

୨୪ । ହାତୀ ( Indian elephant—Elephus maximus )

୨୫ । ଭାରତୀୟ ସିଂହ ( Indian lion—Panthera leo persica )

୨୬ । ଭାରତୀୟ ବନ୍ୟ ଗର୍ଦ୍ଦଭ ( Indian wild Ass—Equus hemionus khur )

୨୭ । ଭାରତୀୟ ନେକେଡା ବାଘ ( Indian wolf—Canis lupus )

୨୮ । ହାଙ୍ଗୁଲ ( Kashmir stag—Cervus elephas hanglu )

୨୯ । କଲରା ପତ୍ରିଆ ବାଘ ( Leopard or panther —Panthera pardus )

୩୦ । ବାଘଟା ( Leopard cat—Felis bengalensis )

୩୧ । ଲାଲ ପଣ୍ଡା ( Lesser or Red Panda—Ailurus fulgens )

୩୨ । କେଶରୀ ପାତି ମାଙ୍କଡ଼ (Lion-tailed macaque—Macacasilenus )

୩୩ । ମାଙ୍କମନୁଷ୍ୟ ( Loris—Loris tardigradus )

୩୪ । ପାଟଷାଲନ୍ ( Lynx—Felis lynx isabellina )

୩୫ । ମାଲବାର ଗନ୍ଧ ମାର୍ଜାର ( Malabar civet—Viverra megaspila )

୩୬ । ମାଲୟ ଭାଲୁ ( Malay or Sun bear-Helarctes malayanus )

୩୭ । ମର୍ମର ବିଡାଳ (Marbled cat—Felis marmorata )

୩୮ । ମାର୍ଖୋର ( Markhor—Capra falconeri )

୩୯ । ଝୁଗଣ୍ଡ ( Mouse deer—Tragulus meminna )

୪୦ । କସ୍ତୁରୀ ମୃଗ ( Musk deer-Moschus moschiferus )

୪୧ । ନୀଳଗିରି ଟେହେର୍ ( Nilgiri tahr-Hemitragus hylocrius )

୪୨ । ନୟାନ ( Ovis ammon or Nayan—Ovis ammon hodgsoni )

୪୩ । ପେଲ୍ସ ମୁହାଁ ବିଲେଇ (Pallas's cat—Felis manul )

୪୪ । ବ୍ରଜକାପ୍ତା ( Pangolin—Manis crassicaudata )

୪୫ । କୁଣ୍ଡି ଘୁଷୁରି ( Pygmy hog—Sus salvinius )

୪୬ । ଗଣ୍ଡାର (Rhinoceros—Rhinoceros unicornis )

୪୭ । ବାଦାମୀ-ଟୋପିଆ ବିଲେଇ ( Rusty-spotted cat –Felis rubiginosa )

୪୮ । ସାରଉ ( Serow—Capricornis sumatraensis )

୪୯ । ଭାଲୁ ( Sloth bear—Melursus ursinus )

୫୦ । ଲଜ୍ୟାବତୀ (Slow loris—Nycticebus coucang )

୫୧ । ତୁଷାର ଜଳଗ ପଡ଼ିଆ ବାଘ ( Snow leopard— —Panthera uncia)

୫୨ । ବ୍ୟାଘ୍ର ଗନ୍ଧ ମାର୍ଜାର ( Spotted linsang Prionodon pardicolor )

୫୩ । ବାରଶିଙ୍ଗା ( Cervus duvauceli ର ସବୁ ଉପଜାତି )

୫୪ । ତାକିନ ( Takin or Mishmi Takin—Budorcas taxicolor )

୫୫ । ଚିରୁ ( Tibetan antelope — Pantholops hodgsoni )

୫୬ । ତିବ୍ବତୀୟ ଚିଙ୍କାର ( Tibetan gazelle—Procapra picticaudata )

୪୭ । ତିବ୍ବତୀୟ ବନ୍ୟ ଗର୍ଦ୍ଦଭ ( Tibetan wild ass –Equus hemionus kiang )

୪୮ । ବାଘ ( Tiger—Panthera tigris )

୪୯ । ଉରିଆଲ ( Urial or shapu—Ovis orientalis vignei )

୫୦ । ଅରଣା ମଇଁଷି (Wild buffalo—Bubalus bubalis)

୫୧ । ଚମରୀ ଗାଇ ( Wild yak—Bos grunniens )



# ଦ୍ୱିତୀୟ ଭାଗ : ଉଭୟଚର ଓ ସରୀସୃପ

୧ । ମରୁଭୂମି ଗୋଧି ( Agra monitor lizard, Desert monitor—Varanus griseus )

୨ । ଆଟଲାଣ୍ଟିକ କଚ୍ଛପ ( Atlantic ridley turtle, Kemp's ridley turtle—Lepidochelys kempii )

୩ । ସୋରିଷିଆ ଗୋଧି ( Barred, oval or yellow monitor lizard—Varanus flavescens )

୪ । କୁମ୍ଭୀର ( ବଉଳା Estuarine or Salt water crocodile, Crocodilus porosus; ଥଣ୍ଟିଆ– crocodilus palustris )

୫ । ଘଡ଼ିଆଳ ( Gharial—Garialis gangeticus

୬ । ଗଙ୍ଗାନଦୀ କୋମଳ କବଚୀ କଇଁଛ ( Ganges soft-shelled turtle—Trionyx gangeticus)

୭ । ସବୁଜ ସମୁଦ୍ର କଇଁଛ (Green sea turtle—Chelonia mydas )

୮ । ବାଜ ଥଣ୍ଟ କଚ୍ଛପ (Hawksbill turtle—Eretmochelys imbricata inlscata )

୯ । ହିମାଳୟ ସାଲାମାଣ୍ଡର ( Himalayan newt or salamander—Tylototriton verrucosus)

୧୦ । ଭାରତୀୟ ଅଣ୍ଡା ଖାଇ ସାପ ( Indian egg-eating snake—Elaschistodon westermanni)

୧୧ । ଭାରତୀୟ କୋମଳ-କବଚୀ କଚ୍ଛପ ( Indian soft-shelled turtle—Lissemys punctata punctata

୧୨ । ନଦୀ କଚ୍ଛପ ( Indian tent turtle— Kachuga tectatecta )

୧୩ । ଗୋଧି (Large Bengal monitor lizard—Varanus bengalensis )

୧୪ । କଚ୍ଛପ (Leathery turtle or Luth— Dermochelys coriacea )

୧୫ । କଚ୍ଛପ ( Loggerhead turtle—Caretta caretta)

୧୬ । କଚ୍ଛପ (Olive-back loggerhead turtle—Lepidochelys olivacea )

୧୭ । କଚ୍ଛପ ( Peacock-marked soft-shelled turtle—Trionyx hurum )

୧୮ । ଅଜଗର Genus Python )

୧୯ । କଚ୍ଛପ ( Three-keeled turtle—Geoemyda tricarinata )

୨୦ । କଚ୍ଛପ Tortoise—Testudinidae, Trionychidae )

୨୧ । ଶାବକ ପ୍ରସବୀ ଲୁଣିବେଙ୍ଗ ( Viviparous toads—Nectophyrynoides spp )

୨୨ । ଜଳ ଗୋଧି (·Water lizard—Varanus salvator )

# ତୃତୀୟ ଭାଗ : ପକ୍ଷୀ

୧ । ଆଣ୍ଡାମାନ ଟାଲିହଂସ (Andaman teal—Anas gibberifrons albogularis )

୨ । ଆସାମ ବାଉଁଶ ବୁଦା ତିତିର ( Assam bamboo partridge—Bambusicola fytechii )

୩ । ବାଜା ପକ୍ଷୀ ( Bazas—Aveceda jeordoni ଏବଂ Aveceda leuphotes )

୪ । ଫ୍ଲୋରିକାନ ( Bengal florican - Eupodotis bengalensis )

୫ । କଳା ବେକ ସାରସ ( Black necked crane—Grus nigricollis )

୬ । ଲାଲ ଫେଜାଣ୍ଟ ମୁରଗୀ ( Blood pheasants - Ithaginis cruentus tibetanus ଓ Ithaginis cruentus kuscri )

୭ । ବାଦାମୀ ମୁଣ୍ଡ ମାଛଖିଆ (Brown-headed gull—Larus brunnicephalus )

୮ । ଚେର ଫେଜାଣ୍ଟ ମୁରଗୀ ( Cheer pheasant-Catreus wallichii )

୯ । ଚୁଳିଆ ପାତିହଂସ ( Comb-duck—Sarkidiornis melanotos )

୧୦ । ଚିହ୍ନିତ ଜଙ୍ଗଲି ପେଚା ( Forest spotted owlet—Athene blewitti )

୧୧ । ହୁକୁନା ପକ୍ଷୀ ( Great Indian Bustard—Choriotis nigriceps )

୧୨ । ବଡ଼ କୋଚିଲ ଖାଇ ( Great Indian Hornbill —Buceros bicornis )

୧୩ । ଟୋପର ବିଶିଷ୍ଟ ସାରସ ପକ୍ଷୀ ( Hooded crane—Grus monacha )

୧୪ । କୋଚିଲଖାଇ ( Hornbills—Ptilolaemus tickelli austeni, Aceris nipalensis, Rhyticeros undulatus ticehursti )

୧୫ । ହୌବର ହୁକୁନା ପକ୍ଷୀ ( Houbara bustard—Chlamydotis undulata )

୧୬ । ହ୍ୟୁମ ଦାଗବେକ ଫେଜାଣ୍ଟ ମୁର୍ଗା ( Hume's bar backed pheasant—Syrmaticus humiae )

୧୭ । ଭାରତୀୟ କୋଚିଲଖାଇ ( Indian Pied Hornbill-Anthracoros malabaricus )

୧୮ । ଜାରଡ଼ନ୍ ଧାବକ ( Jerdon's courser—Cursorius bitorquatus )

୧୯ । ପର୍ବତିଆ ଶାଗୁଣା ( Lammer geier—Gypaetus barbatus )

୨୦ । ବଡ଼ ବାଜ ପକ୍ଷୀ ( Large falcons—Falco peregrinus, Falco biarmicus ଓ Falco chicquera )

୨୧ । ବଡ଼ହଂସଗଜା (Large whistling teal—Anatidae)

୨୨ । ମୋନାଲ ଫେଜାଣ୍ଟ ମୁର୍ଗା ( Monal pheasants —Lophophorus impeyanus, L. sclateri )

୨୩ । ପର୍ବତିଆ ପୁଣ୍ଡୁକି ଚଢେଇ (Mountain quail—Ophrysia superciliosa )

୨୪ । ନାରକୋନ୍‌ଡ଼ମ୍ କୋଚିଲ ଖାଇ ( Narcondom hornbill—Rhyliceros (undulatus) narcondami

୨୫ । ନିକୋବର ଥାରମୋମିଟାର ପକ୍ଷୀ ( Nicobar Mega pode—Megapodius freycinet )

୨୬ । ନିକୋବର ପାରବତ ( Nicobar pigeon—Caloenas nocobarica pelewensis )

୨୭ । ମୟୁର ଫେଜାଣ୍ଟ ମୁରଗା ( Peacock pheasant—Polyplectron bical caratum )

୨୮ । ମୟୁର ( Peafowl—Pavo cristatus )

୨୯ । ସିନ୍ଦୁର ମୁଣ୍ଡି ପାତିହଂସ ( Pinkheaded duck—Rhodonessa caryophyllacea )

୩୦ । ସ୍କେଟାର ମୋନାଲ ପକ୍ଷୀ (Sclater's Monal—Lophophorus sclateri )

୩୧ । ସାଇବେରିଆ ଧଳା ସାରସ ( Siberian white crane-Grus leucogeranus )

୩୨ । ଚିଡ଼ି ( Spurfowl—Galloperdix spp. )

୩୩ । ତିବ୍ବତୀୟ ତୁଷାର କୁକୁଡ଼ ( Tibetan snowcock—Tetragallus tibetanus )

୩୪ । ଟ୍ରାଗୋପାନ ଫେଜାଣ୍ଟ ମୁରଗା (Tragopan Pheasants-Tragopan melanocephalus, Tragopan blythii, Tragopan satyra ଓ Tragopan temmincki )

୩୫ । ଧଳାପେଟିଆ ସମୁଦ୍ର ଇଗଲ ( White-bellied Sea Eagle—Haliaetus leucogaster )

୩୬ । ଧଳାକାନ ଫେଜାଣ୍ଟ ମୁରଗା (White-eared Pheasant—Crossoptilon crossoptilon )

୩୭ । ଶ୍ୱେତ ଚାମଚଥୋଡ଼ ( White spoonbill—Platalea bucorodia )

୩୮ । ସୀନାହା ପାତି ହଂସ ( White-winged wood Duck—Cairina scutulata )



# ଚତୁର୍ଥ ଭାଗ : କ୍ରାଷ୍ଟେସିଆ ଓ ପତଙ୍ଗ

( Crustacea & Insects )

୧ । ନାରୀକେଳ କର୍କଟ ( Coconut or Robber crab—Bigrus latro )

# ତାଲିକା-୨

## ବିଶେଷ ଶିକାର

[ମୁଖ୍ୟ ବନ୍ୟ ଜୀବନ ରକ୍ଷକଙ୍କ ପ୍ରଦତ୍ତ ଲାଇସେନ୍‌ସ ବିନା ବଧ ହୋଇପାରିବେ ନାହିଁ]

### ପ୍ରଥମ ଭାଗ

୧ । ଆସାମୀ ମାଙ୍କଡ଼
(Assamise macaque—Macca assamensis)

୨ । ଆସାମୀ ଝିଙ୍କ
(Bengal porcupine—Atherurus macrourus assamensis)

୩ । ଗୟଳ
(Bison or Gaur—Bos gaurus)

୪ । ଲାଲ ମାଙ୍କଡ଼
(Bonnet macaque—Macaca radiata)

୫ । ହିମାଳୟ କଳା ଭାଲୁ
(Himalayan black bear—Selenarctos thibetanus)

୬ । ଟୋପିଧାରୀ ହନୁ
(Common Langur—Presbytis entellus)

୭ । କଙ୍କଡ଼ାଖିଆ ମାଙ୍କଡ଼
(Crab-eating Macaque—Macaca irus umbrosa)

୮ । ଫେରେଟ ବେଜାର
(Ferret Badgers—Melogale moschata & Melogale personata)

୯ । ହିମାଳୟ ଝିଙ୍କ
(Himalayan crestless porcupine—Hystrix hodgsoni)

୧୦ । ଘୁଷୁରିମୁହାଁ ଗାତ୍ରଭାଲୁ
(Hog-badger—Arctonyx collaris)

୧୧ । ଟୋପିଧାରୀ ହନୁ
(Leaf monkey—Presbytis phayrei)

୧୨ । ନାଗାପାହାଡ଼ ହନୁ
(Pigtailed macaque—Macaca nemestrina)

୧୩ । ପାତି
(Rhesus macaque—Macaca mulatta)

୧୪ । ଥୁଣ୍ଟା ଲଞ୍ଜ ହନୁ
(Stumptailed macaque—Macaca speciosa)

୧୫ । ବଣଆ କୁକୁର
(Wild dog or Dhole—Cuon alpinus)

୧୬ । ଗୋହଲା ଏଣ୍ଡୁଅ
(Chamaeleon—Chamaeleon calcaratus)

୧୭ । ୟୁରୋମାଷ୍ଟିକ୍ସ
(Spiny-tailed lizard or Sanda—Uromatix hardwicki

ଦ୍ୱିତୀୟ ଭାଗ

୧ । ନେପାଳି ମୂଷା
(Giant squirrels—Ratufa macroura, R indica & R. bicolor)

୨ । ହିମାଳୟ ବାଦାମୀ ଭାଲୁ
(Himalayan Brown Bear—Ursus arctos)

୩ । ନୀଳଗିରି ହନୁ
(Nilgiri langur—Presbytis johni)

୪ । ଓଧ
(Otters—Lutra lutra, L. perspicillata, Aonyx cinerea)

# ତାଲିକା-୩

[ମୁଖ୍ୟ ବନ୍ୟ ଜୀବନ ରକ୍ଷକଙ୍କ ଠାରୁ ଲାଇସେନ୍ସ ବିନା ଶିକାର କରିପାରିବେ ନାହିଁ]

ବଡ଼ ଶିକାର

୧ । କୁଟୁରା
(Barking deer or muntjac—Muntiacus muntjak)

୨ । ଭରଲ
(Bharal—Ovis nahura)

୩ । ଚିତଲ ହରିଣ
(Chital—Axis axis)

୪ । ଗୋରାଲ

(Gorals—Nemorhaedus goral & Nemorhaedus hodgsoni)

୫ । ଇବେକ୍ସ

(Himalayan Ibex—Capra ibex)

୬ । ପାରା ହରିଣ

(Hog deer—Axis porcinus)

୭ । ଗଧିଆ

(Hyaena—Hyaena hyaena)

୮ । ନୀଳଗାଇ

(Nilgai—Boselaphus trago-camelus)

୯ । ଗାଡ ଭାଲୁ

(Ratel—Mellivora capensis)

୧୦ । ସମ୍ବର

(Sambar—Cervus unicolar)

୧୧ । ତାଇବତୀୟ ନେକେଡ଼ା ବାଘ

(Tibetan wolf—Canis lupus)

୧୨ । ବାର୍‌ହା

(Wild pig—Sus scrofa)

# ତାଲିକା-୪

[ ତାଲିକା ଭୁକ୍ତ ପ୍ରାଣୀମାନଙ୍କୁ ମୁଖ୍ୟ ବନ୍ୟ ଜୀବନ ରକ୍ଷକଙ୍କ ପ୍ରଦତ୍ତ ଲାଇସେନ୍‌ସ ବିନା କେହି ବଧ କରିପାରିବେ ନାହିଁ ]

୧ । ଗନ୍ଧ ମାର୍ଜାର [ ମାଲବାର ଗନ୍ଧ ମାର୍ଜାର (Malabar Civet) ଭିନ୍ନ ଭିଭେରିଡ଼ି (Viverridae) ବଂଶର ସବୁ ଜାତି ଗନ୍ଧ ମାର୍ଜାର ]

୨ । କୋକି ଶିଆଳି

(Common fox)

୩ । ଏରମିନ ଭଇଜେଲ

(Ermine—Mustela erminea)

୪ । ଗୁଣ୍ଡୁଚି ମୂଷା

(Five-striped squirrel—Funambulus pennanti)

୫ । ଠେକୁଆ [ Hares : କଳା ଗ୍ରୀବା ଠେକୁଆ (Black-naped) ; ମରୁଭୂମି ଠେକୁଆ (Commn Indian desert hare) ; ହିମାଳୟ ମୂଷା–ଠେକୁଆ (Himalayan Mousehare).].

୬ । ଶଲ୍ଲକୀ ମୂଷିକ

(Hedgehog—Hemiechinus quritus)

୭ । ବଣଭୁଆ

(Jungle cat—Felis chaus)

୮ । ଶିଶୁମାର

(Little Indian perpoise—Neomeris phocaenoides)

୯ । ବିଲୁଆ

(Jackal)

୧୦ । ଝିଙ୍କ

(Indian porcupine—Hystrix indica)

୧୧ । ବିଳ ଗୁଣ୍ଡୁଚି ମୂଷା

(Marmots—Marmota bobak himalayan, Marmota caudata)

୧୨ । ଚିତ୍ରୋଳ

(Martens—Martes foina intermedia, Martes flavigula, Martes gwatkinsii)

୧୩ । ନେଉଳ

(Mongooses—Herpestes spp.)

୧୪ । ଭଉଁରେଲ (ବେଲୁଚିସ୍ଥାନ ଭଉଁରେଲ—Vormela peregusna; ତିବ୍ବତ ଭଉଁରେଲ—Mustela putorius)

୧୫ । ଲାଲ କୋକିଶିଆଳି

(Red fox—Vulpes vulpes, Vulpes vulpes montana, Vulpes vulpes pusilla)

୧୬ । ତିବ୍ବତୀୟ କୋକିଶିଆଳି

(Tibetan fox—Vulpes ferrilatus)

୧୭ । ଟ୍ରାଭନ୍‌କୋର କ୍ଷୁଦ୍ର ଉଡ଼ନ୍ତା ଗୁଣ୍ଡୁଚି ମୂଷା

(Small Travancore flying squirrel-Petinomys fuscocapillus)

୧୮ । ଉଇଜେଲ
(Weasels—Mustela sibirica, Mustela Kathiah & Mustela altaica)

୧୯ । ପକ୍ଷୀ (ତାଲିକା ୧ ବିଭାଗ ୩ ଓ ତାଲିକା ୫ ଭୁକ୍ତ ପକ୍ଷୀଙ୍କୁ ଛାଡ଼ି ନିମ୍ନ ପ୍ରଦତ୍ତ ପକ୍ଷୀ ବଂଶର ପକ୍ଷୀ )

୧) ଛୋଟ ସିନ୍ଦୁର ମୁଣ୍ଡି
(Barbets—Capitonidae)

୨) ଲମ୍ବୁା ପେଚା
(Barn owls—Tytoninae)

୩) ଏଭୋସେଟ୍
(Avocets—Recurvirostridae)

୪) ବିଟାରନ
(Bitterns—Ardeidae)

୫) ନୀଳପକ୍ଷୀ
(Blue birds—Irenidae)

୬) ଗାଣ୍ଡାମ ପକ୍ଷୀ
(Bunting—Emberizidae)

୭) ହୁକୁନା ପକ୍ଷୀ
(Bustards—Otididae)

୮) ହୁକୁନା-ପୁଣ୍ଡୁକି ଚଢ଼େଇ
(Bustard-quail—Turnicidae)

୯) ଶ୍ୱଫିନ୍‌ଚ
(Chaffinches—Fringillinae)

୧୦) କୁଟ
(Coots—Rallidae)

୧୧) କର୍ମୋରଣ୍ଟ
(Cormorants—Phalacrocoracidae)

୧୨) ସାରସ ପକ୍ଷୀ
(Cranes—Anatidae)

୧୩) କୋଇଲି
(Cuckoos—Cuculidae)

୧୪) ଗମା ଚଢ଼େଇ
(Curlew – Buthinidae)

୧୫) ପଣି କୁଆ
(Darters – Phalacrocoracidae)

୧୬) କଜ୍ଜଳ ପତୀ
(Drongos—Dicruridae)

୧୭) କପୋତ
(Doves—Columbridae)

୧୮) ପାତିହଂସ
(Ducks—Anatidae)

୧୯) ବଗ
(Egrets—Ardeidae)

୨୦) ଫୁଲଘୁଣି
(Flower pecker—Diacaedae)

୨୧) ସବୁଜ କପୋତ
(Emerald Dove—Columbidae)

୨୨) ବାଜ ପକ୍ଷୀ
(Falcons—Falconidae)

୨୩) ଫିନଚ ପକ୍ଷୀ
(Finches—Fringillidae)

୨୪) ଏଗ ପକ୍ଷୀ
(Flamingoes—Phoenicopteridae)

୨୫) କଜଜ ଚଢେଇ
(Flycatchers—Muscicapidae)

୨୬) ଗଜ ହଂସ
(Geese—Anatidae)

୨୭) ସ୍ୱର୍ଣ୍ଣ-ଫିନଚ ପକ୍ଷୀ ଓ ସେମାନଙ୍କର ଜ୍ଞାତି
(Gold-finches and their allies—Carduelinae

୨୮) ହଂସଗଳି
(Grebes—Podicipitidae)

୨୯) ଜାଂଥାମ

(Grouse—Pteroclididae)

୩୦) ବାଜ

**(Hawks—Accipitridae)**

୩୧) ବଗ

**(Herons—Ardeidac)**

୩୨) ବାଙ୍କେଣି

**(Ibis—Threskiornithidae)**

୩୩) କୋଚିଲ ଖାଇ

(Hornbills—Bucerotidae)

୩୪) ସୌଭଗା ଚଢ଼େଇ

**(Ioras—Irenidae)**

୩୫) ଜଳ ପିମ୍ପି

(Jacana—Jacanidae)

୩୬) ଜଙ୍ଗଲି କୁକୁଡା ଓ କଇନ୍ଦ୍ର

(Jungle fowl & Spur fowl —**Phasianidae)**

୩୭) ମାଛରଙ୍କା

(Kingfisher—Alcedinidae)

୩୮) ଭରତ ପକ୍ଷୀ

(**Larks—Ala**udidae)

୩୯) କୁଦ-ରଚକ ପକ୍ଷୀ

**(Megapodes—Megapodiidae)**

୪୦) ସୁନ୍ଦରୀ ପକ୍ଷୀ

(Minivets—**Campephagidae)**

୪୧) ବାରମାସୀ

**(Munias—Ploceidae)**

୪୨) ବଣି

(Mynas—**Sturnidae)**

୪୩) ଭୂଇଁ ଛାପୁଲି

(Nightjar—**Caprimulgidae)**

୪୪) ହଳଦୀ ବସନ୍ତ
(Orioles—Oriolidae)

୪୫) ପେଚା
(Owls—Strigidae)

୪୬) ଶୁକ୍ତି ଖାଦକ ପକ୍ଷୀ
(Oyster catchers—Haematopodidae)

୪୭) ଶୁଆ
(Parrots—Psittasidae)

୪୮) ତିତିର ପକ୍ଷୀ
(Partridges—Phasianidae)

୪୯) ଦଦରା ହଣା
(Pelicans—Pelecanidae)

୫୦) ଫେଜାଣ୍ଟ ମୁରଗା
(Pheasants—Phasianidae)

୫୧) ପାରା ( ଦେଶଜ ପାରାକୁ ଛାଡ଼ି )
(Pigeons-except Blue Rock pigeon—Columbidae)

୫୨) ନବରଙ୍ଗୀ ପକ୍ଷୀ
(Pittas—Pittidae)

୫୩) ପଣ୍ଡୁକି ଚଢ଼େଇ
(Quail—Phasianidae)

୫୪) ଭରଦ୍ୱାଜ ପକ୍ଷୀ
(Rollers—Coraciidae)

୫୫) ବେଣା ପୁଟୁକି
(Snipes—Charadriidae)

୫୬) ଫୁଲଚୁଷି
(Sunbirds—Nectariniidae)

୫୭) ଷାରଲିଙ୍ଗ
(Starling—Sturnidae)

୫୮) କ୍ରୌଞ୍ଚ
(Storks—Ciconiidae)

୫୯ । ଷ୍ଟିଲଟ

(Stilts—Recurvirostridae)

୬୦ । ରଜ ହଂସ

(Swans—Anatidae)

୬୧ । କସ୍ତୁର

(Thrushes—Muscicapidae)

୬୨ । କରକର ଚଢେଇ

(Treepies—Corvidae)

୬୩ । ଗଙ୍ଗା ଚଢେଇ

(Tits Paridae)

୬୪ । ଶାଗୁଣା

(Vultures Accipitridae)

୬୫ । ଟ୍ରୋଗୋନ

(Trogons—Trogonidae)

୬୬ । ବାୟା ଚଢେଇ

(Weaver birds—Polecidae)

୬୭ । ବାବୁନା

(White eye Zosteropidae)

୬୮ । କାଠହଣା

(Wood peckers Picidae)

୭୦ । ସାପ

(Typhlopidae, Glauconnidae, Uropeltidae, Ilysiidae, Xenopeltidae, Boidae, Amblycaphalidae, Viperidae, Colubridae, ବଂଶର ସାପ ସବୁ) ।

## ତାଲିକା-୫

### ଅନିଷ୍ଟକର ପ୍ରାଣୀ (Vermin)

( ପ୍ରାଦେଶିକ ସରକାର ଆବଶ୍ୟକତା ଅନୁସାରେ ତାଲିକା ୨ ରୁ ୪ ଅନ୍ତର୍ଗତ ପ୍ରାଣୀଙ୍କୁ ଆଦେଶନାମା ଦ୍ୱାରା ତାଲିକା ୧ ଭୁକ୍ତ କରିପାରିବେ ,

ତାଲିକା ୧ ଓ ତାଲିକା ୨ ଦ୍ୱିତୀୟଭାଗ ଭିନ୍ନ ଅନ୍ୟ ତାଲିକା ଅନ୍ତର୍ଭୁକ୍ତ ପ୍ରାଣୀଙ୍କୁ ସାମୟିକ ଭବେ ଅନ୍ୟ ଯେକୌଣସି ତାଲିକା ଏପରିକି ତାଲିକା ୫ ଭୁକ୍ତ କରି ପାରିବେ । ତାଲିକା ୫ ଭୁକ୍ତ ପ୍ରାଣୀ ଅନିଷ୍ଟକର ପର୍ଯ୍ୟାୟଭୁକ୍ତ ହୋଇଥିବାରୁ ଶୀକାର କରିବାରେ ବାଧା ନାହିଁ ।

୧ । କାଉ
(Common crow)

୨ । ଫଳଖିଆ ବାଦୁଡ଼ି
(Fruit bats)

୩ । ଚୁଟିଆ ମୂଷା
(Mice)

୪ । ମୂଷା
(Rats)

୫ । ଭୋଲ
(Voles)



# ଷଷ୍ଠତ୍ରିଂଶ ଅଧ୍ୟାୟ

# ପରିଶିଷ୍ଟ

## (କ) ଓଡ଼ିଶାର ଭୂଗୋଳ

ଓଡ଼ିଶାର ବନ୍ୟଜନ୍ତୁମାନଙ୍କ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିବା ପୂର୍ବରୁ ସେମାନେ କିପ୍ରକାର ଭୌଗୋଳିକ ପରିସ୍ଥିତିରେ ବାସ କରନ୍ତି ତାହା ଜାଣିବା ଆବଶ୍ୟକ । ଏହା ଜଣା କଥା ଯେ ମରୁଭୂମିରେ ଯେଉଁ ପ୍ରାଣୀ ରହନ୍ତି ସେମାନେ ଜଙ୍ଗଲରେ ମିଳିବେ ନାହିଁ, କି ଘନ ଜଙ୍ଗଲରେ ଯେଉଁ ଜନ୍ତୁ ବାସ କରନ୍ତି ସେମାନେ ଘାସ ଜମିରେ ରହନ୍ତି ନାହିଁ ।

ଓଡ଼ିଶା ପ୍ରଦେଶ 17° 48' ଓ 22° 34' ଉତ୍ତର ଅକ୍ଷାଂଶ ଏବଂ 81° 24' ଓ 87° 29' ପୂର୍ବ ଦ୍ରାଘିମା ମଧ୍ୟରେ ଅବସ୍ଥିତ । ଏହା ଭାରତର ଉତ୍ତର-ପୂର୍ବ ସମୁଦ୍ରର ଉପକୂଳ ଅଞ୍ଚଳ ଗଠନ କରେ । ଓଡ଼ିଶାର ସମୁଦ୍ର କୂଳ 482 କିଲୋମିଟାର ପର୍ଯ୍ୟନ୍ତ ବିସ୍ତୃତ । ଏହି ଭୂଖଣ୍ଡଭିତରେ ଉର୍ବର ଓ ପ୍ରଶସ୍ତ ସମତଳ ଅଧିତ୍ୟକା ଏବଂ ଘନଜଙ୍ଗଲପୂର୍ଣ୍ଣ ପାହାଡ଼ ପର୍ବତ ରହିଅଛି । ଆହୁରି ମଧ୍ୟ ତାହା ପ୍ରଚୁର ମୂଲ୍ୟବାନ ଖଣିଜ ସମ୍ପଦ, କୃଷିଭୂମି ଓ ବନଜାତ ପଦାର୍ଥରେ ପୂର୍ଣ୍ଣ । ଓଡ଼ିଶାର ଉତ୍ତର-ପୂର୍ବରେ ପଶ୍ଚିମବଙ୍ଗ, ଉତ୍ତରରେ ବିହାର, ପଶ୍ଚିମରେ ମଧ୍ୟପ୍ରଦେଶ ଏବଂ ଦକ୍ଷିଣରେ ଆନ୍ଧ୍ର ପ୍ରଦେଶ ଅବସ୍ଥିତ । ପ୍ରାକୃତିକ ଦୃଷ୍ଟିକୋଣରୁ ଓଡ଼ିଶାକୁ ଚାରିଟି ଭାଗରେ ବିଭକ୍ତ କରାଯାଇ ପାରେ । ଯଥା–ଉତ୍ତର ମାଳଭୂମି, କେନ୍ଦ୍ର ନଦୀମାତୃକ ଦେଶ, ପୂର୍ବରେ ମଧ୍ୟେ ମଧ୍ୟେ ଛିଡ଼ି ଯାଇଥିବା ଦୀର୍ଘ ପୂର୍ବଘାଟ ପର୍ବତମାଳା ଏବଂ ନଦୀ ମୁହାଣ

ପୂର୍ଣ୍ଣ ଉପକୂଳ ଅଞ୍ଚଳ । ଉତ୍ତର ମାଳଭୂମି ବା ପ୍ରଶସ୍ତ ସମତଳ ଅଧିତ୍ୟକା ବିହାରର ଛୋଟ ନାଗପୁର ମାଳଭୂମିର ଏକ ଅଂଶ ବିଶେଷ । ମୟୂରଭଞ୍ଜ, କେନ୍ଦୁଝର ଓ ସୁନ୍ଦରଗଡ଼ର ପୂର୍ବଭାଗ ଏହି ଅଞ୍ଚଳ ଭିତରେ ଯାଏ । ମଧ୍ୟ ନଦୀମାତୃକ ଅଞ୍ଚଳ ଦୁଇଟି ସମତଳ ନଦୀଉପତ୍ୟକାଦ୍ୱାରା ଗଠିତ । ଗୋଟିଏ ହେଲା ମହାନଦୀ ଓ ତା'ର ଅନେକ ଗୁଡ଼ିଏ ଶାଖା ପ୍ରଶାଖାଦ୍ୱାରା ପୁଷ୍ଟ ଅଞ୍ଚଳ; ଅନ୍ୟଟି ବ୍ରାହ୍ମଣୀ ଓ ବୈତରଣୀ ନଦୀ ଏବଂ ସେମାନଙ୍କର ଶାଖାପ୍ରଶାଖାପୂର୍ଣ୍ଣ ସ୍ଥାନ । ସମ୍ବଲପୁର, ବଲାଙ୍ଗୀର, ଢେଙ୍କାନାଳ ଏବଂ କଳାହାଣ୍ଡି, ସୁନ୍ଦରଗଡ଼ ଓ ଫୁଲବାଣୀ ଜିଲ୍ଲାର କେତେକ ଅଂଶ ଏହି ଦୁଇ ନଦୀର ଉପତ୍ୟକାଅଞ୍ଚଳର ଅନ୍ତର୍ଗତ । ପୂର୍ବରେ ଯେଉଁ ମନୋରମ ପୂର୍ବଘାଟ ପର୍ବତମାଳାର ଅଧିତ୍ୟକାଅଞ୍ଚଳ ପ୍ରାଚୀର ପରି ରହିଅଛି, ସେଥିଭିତରେ କୋରାପୁଟ ଏବଂ କଳାହାଣ୍ଡି, ଫୁଲବାଣି ଓ ଗଞ୍ଜାମ ଜିଲ୍ଲାର କେତେକ ଅଞ୍ଚଳ ଅନ୍ତର୍ଗତ । ବାଲେଶ୍ୱର, କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲାର କେତେକ ଅଞ୍ଚଳ ଖୋଲା ସମତଳ ଉପକୂଳ ଅଞ୍ଚଳର ଅନ୍ତର୍ଭୁକ୍ତ । ବଙ୍ଗୋପ-ସାଗର ଏହି ଜିଲ୍ଲାଗୁଡ଼ିକୁ ବେଢ଼ି ରହିଛି । ଓଡ଼ିଶାର କ୍ଷେତ୍ରଫଳ 155, 844.96 ବର୍ଗ କିଲୋମିଟାର ( 60,171.8 ବର୍ଗ ମାଇଲ । ଏହାର ଜଳବାୟୁ ମୌସୁମୀ ଜାତୀୟ; ଅର୍ଥାତ୍ ଜଳବାୟୁ ଉଷ୍ଣ ଏବଂ ବିଭିନ୍ନ ସ୍ଥାନରେ ମଧ୍ୟମରୁ ଘୋର ବର୍ଷା ହୁଏ । ହାରାହାରି ସର୍ବୋଚ୍ଚ ଉତ୍ତାପ 32.8° ସେଣ୍ଟିଗ୍ରେଡ୍ । ଏପ୍ରିଲ ଓ ମେ ମାସରେ 38.3° ସେଣ୍ଟିଗ୍ରେଡ୍-ପର୍ଯ୍ୟନ୍ତ ଉତ୍ତାପ ବଢ଼େ । ହାରାହାରି ସର୍ବନିମ୍ନ ଉତ୍ତାପ 22.8° ସେଣ୍ଟିଗ୍ରେଡ୍ । ଡିସେମ୍ବର ମାସରେ ସ୍ଥାନଭେଦରେ 15° ସେଣ୍ଟିଗ୍ରେଡ୍‌କୁ ଉତ୍ତାପ କମିଯାଏ । ବର୍ଷ ମଧ୍ୟରେ ମେ ମାସରେ ସବୁଠାରୁ ବେଶୀ ଗରମ ହୁଏ ଓ ଡିସେମ୍ବର ମାସରେ ସବୁଠାରୁ ବେଶୀ ଶୀତ ହୁଏ । ଓଡ଼ିଶାରେ ହାରାହାରି ବାର୍ଷିକ ବର୍ଷାର ପରିମାଣ 1498.8 ମିଲିମିଟାର ( 59 ଇଞ୍ଚ ) ଏବଂ ସ୍ଥାନ ଅନୁସାରେ 1346.2 ରୁ 1600.2 ମିଲିମିଟାର ( 53 ରୁ 63 ଇଞ୍ଚ ) ବର୍ଷା ହୁଏ । ଏହି ବର୍ଷାର ଶତକଡ଼ା 81 ଭାଗ ଜୁନ୍‌ଠାରୁ ସେପ୍‌ଟେମ୍ବରମାସ ମଧ୍ୟରେ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁର ଯେଉଁ ଶାଖା ବଙ୍ଗୋପସାଗର ଦେଇ ବହି ଆସେ ସେଥିରୁ ମିଳିଥାଏ ।

ଓଡ଼ିଶାର ଜଙ୍ଗଲରେ କେତେକ ଗଛରୁ ବର୍ଷସାରା ପତ୍ର ପାକଳ ହୋଇ ଝଡ଼ି ପଡୁଥିଲେ ମଧ୍ୟ ପ୍ରାୟ ସବୁ ସମୟରେ ସେଥିରେ ସବୁଜ ପତ୍ର ଥାଏ, କେତେକ ଗଛରୁ ଶୀତଦିନେ ପତ୍ର ଝଡ଼ିପଡ଼େ, ପୁଣି ଆଉ କେତେକରୁ ଖରାଦିନେ ପତ୍ର ଖସିପଡ଼େ । ଏ ପ୍ରକାର ଗଛ ଥିବା ଜଙ୍ଗଲକୁ ଅର୍ଦ୍ଧ ଚିର-ସବୁଜ, ଗ୍ରୀଷ୍ମମଣ୍ଡଳୀୟ ଶୁଷ୍କ ପତନଶୀଳ ଓ ଗ୍ରୀଷ୍ମମଣ୍ଡଳୀୟ ଜଳୀୟ ପତନଶୀଳ ଏହି ତିନିପ୍ରକାର ଜଙ୍ଗଲ ବୋଲାଯାଏ । ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ଏଭଳି ଜଙ୍ଗଲ ଦେଖିବାକୁ ମିଳେ ଓ ଓଡ଼ିଶା ସେହି ଅଞ୍ଚଳରେ ଅବସ୍ଥିତ ଥିବାରୁ ଜଙ୍ଗଲ ମଧ୍ୟ ତଦ୍ରୂପ । ଜଙ୍ଗଲର ଜୀବଜନ୍ତୁ ଗଛ, ପତ୍ର, ଫଳ, ମୂଳ ବା ସେଠାରେ ବାସ କରୁଥିବା ଜୀବଜନ୍ତୁଙ୍କ ମାଂସ ଖାଇ ବଞ୍ଚନ୍ତି । ଏଣୁ ଆମର ଜଙ୍ଗଲ ସମ୍ବନ୍ଧରେ ଅଳ୍ପ ଅଧିକ ଜ୍ଞାନ ଆବଶ୍ୟକ ।

ଓଡ଼ିଶାରେ ଜଙ୍ଗଲର ମୋଟ କ୍ଷେତ୍ରଫଳ 65,676 ବର୍ଗ କିଲୋମିଟାର (25,358 ବର୍ଗ ମାଇଲ) । ପ୍ରଦେଶର ମୋଟ କ୍ଷେତ୍ରଫଳର ଏହା ଶତକଡ଼ା 42 ଭାଗ ଓ ଭାରତର ମୋଟ ଅରଣ୍ୟାଞ୍ଚଳର ଶତକଡ଼ା 8 ଭାଗ । ମାତ୍ର ପ୍ରକୃତ ପକ୍ଷେ ଯେତେ ଜାଗା ଜଙ୍ଗଲପୂର୍ଣ୍ଣ ତାର ମୋଟ କ୍ଷେତ୍ରଫଳ ପ୍ରାୟ 38,850 ବର୍ଗ କିଲୋମିଟାର (15,000 ବର୍ଗ ମାଇଲ) ବା ଓଡ଼ିଶାର ମୋଟ କ୍ଷେତ୍ରଫଳର ଶତକଡ଼ା 25 ଭାଗ । ବାକୀ ଯେତିକି ସ୍ଥାନ ଜଙ୍ଗଲ-ଭିତରେ ହିସାବ କରଯାଇ ଅଛି ତାହା ପାହାଡ଼ିଆ ଟାଙ୍ଗର ଭୂମି । ଆମ ଜଙ୍ଗଲରେ ଯେଉଁ ସବୁ ବୃକ୍ଷଲତା ସାଧାରଣତଃ ଦେଖିବାକୁ ମିଳେ, ସେ ସବୁର ଉଲ୍ଲେଖ ନିମ୍ନରେ ଦିଆଗଲା ।

ଛୋଟ ବଡ଼ ଗଛମାନଙ୍କ ମଧ୍ୟରେ ଅର୍ଜ୍ଜୁନ, ଅଶନ, ଅଁଳା, ଅଶୋକ, ଆମ୍ବ, ଓସ୍ତ, ଓାଉ, କଇଥ, କଦମ୍ବ, କଙ୍ଗର, କରଡ଼ା, କେନ୍ଦୁ, କୁରୁମ, କୁସୁମ, ଖଇର, ଚମ୍ପା ଚନ୍ଦନ (କୋରାପୁଟରେ), ଛତିଆନା, ଜଳାଖାଇ, ଡିମ୍ବିରି, ତେନ୍ତୁଳି, ଦେବଦାରୁ, ନାଗେଶ୍ୱର, ପଳାଶ, ପଣସ, ଫାଶୀ, ବଡ଼ ବାଉଁଶ, ବର, ବାବୁଲ, ବେତ, ବୀଜଶାଳ (ବୀଜ), ଭଲି, ମକଚ—କେନ୍ଦୁ, ମନ୍ଦା, ମହୁଲ, ଶାଳ, ଶାଳିଆ ବାଉଁଶ, ଶିମିଳି, ଶିରିଷ, ଶିଶୁ, ସାଗୁଆନ, ସୁନାରି, ସୁନ୍ଦରୀ, ହରିଡ଼ା, ହିଞ୍ଜଳ ଓ ହେନ୍ତାଳ ପ୍ରଧାନ । ବୁଦାଗଛ ମଧ୍ୟରେ ନେଉଆ, ଫର୍ଶାକୋଳି, ବରକୋଳି, ଖିରକୋଳି, ବେଗୁନିଆ, କରଞ୍ଜ, ଅର୍କ,

କୁଜି ଡିମିରି, ମଞ୍ଜୁଆତି, ନାଗ ଅଇରୀ, ପିଟା କୋରୁଆ, ଗେଣ୍ଡୁଟି, ଗଙ୍ଗଶିଉଳି ଓ କମଳାଗୁଣ୍ଡି ସହିତ ଅନେକେ ପରିଚିତ । ଲତା ମଧ୍ୟରେ ଗୁଳୁଚି, ମାଧବୀଲତା, ହାଡ଼ଭଙ୍ଗା, ମଖମଲ, ବଦୟା, ହଂସଲତା ଓ କାଠକଲମ ସାଧାରଣ ।

ଓଡ଼ିଶା ପ୍ରଦେଶରେ ଯେତେ ଅଞ୍ଚଳରେ ନଦୀ ଓ ଶାଖା ନଦୀ ପ୍ରବାହିତ, ତାର ମୋଟ କ୍ଷେତ୍ରଫଳ 1554 ବର୍ଗ କିଲୋମିଟାର (600 ବର୍ଗ ମାଇଲ) । ଏହାଛଡ଼ା ପ୍ରାକୃତିକ ଅନୂପ (ଲେଗୁନ୍) ଚିଲିକା ହ୍ରଦ ଏବଂ ଦୁଇଟି ପ୍ରାକୃତିକ ମିଠା ପାଣି ହ୍ରଦ ଅଂଶୁପା ଓ ସାମଙ୍ଗ ରହିଅଛି । ଚିଲିକାର କ୍ଷେତ୍ରଫଳ 1,165 ବର୍ଗ କିଲୋମିଟାର (450 ବର୍ଗ ମାଇଲ) । ଏହାର ଲମ୍ବ 64 କିଲୋମିଟାର (40 ମାଇଲ) ଓ ହାରାହାରି ପ୍ରସ୍ଥ 16 କିଲୋମିଟାର (10 ମାଇଲ) । ଏହାଛଡ଼ା 737 ବର୍ଗ କିଲୋମିଟାର (288 ବର୍ଗ ମାଇଲ) ପରିମିତ ହୀରାକୁଦ ଜଳଭଣ୍ଡାର ଏକ ମଣିଷଗଢ଼ା ହ୍ରଦ ।

ଜଳବାୟୁ, ଖାଦ୍ୟ ପ୍ରଭୃତି ଦୃଷ୍ଟିରୁ ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରାଣୀ ବାସ କରନ୍ତି । ପ୍ରାଣୀମାନଙ୍କର ଏହି ବିସ୍ତୃତି ପ୍ରାଣୀ—ଭୂଗୋଳ ନାମରେ ସୁବିଦିତ । ଓଡ଼ିଶା ଭାରତୀୟ ଉପଦ୍ୱୀପ (Peninsula)ର ଏକ ଅଂଶ ଏବଂ ପ୍ରାଣୀ-ଭୂଗୋଳ ଦୃଷ୍ଟିକୋଣରୁ ବିଚାର କଲେ ଉପଦ୍ୱୀପର ସାଧାରଣ ବନ୍ୟଜନ୍ତୁ ଆମ ପ୍ରଦେଶର ଜଙ୍ଗଲରେ ମିଳନ୍ତି । ଏଥିରୁ କେହି ଯେପରି ଧାରଣା ନ କରନ୍ତି ଯେ ଦକ୍ଷିଣ ଭାରତରେ ଦେଖା ଯାଉଥିବା ସବୁ ପ୍ରକାର ବନ୍ୟଜନ୍ତୁ ଓଡ଼ିଶାର ଜଙ୍ଗଲରେ ମିଳିବେ । କଥାରେ ଅଛି, ନଈକେ ବାଙ୍କ, ଦେଶକେ ଫାଙ୍କ । ଏହା ବନ୍ୟ ପ୍ରାଣୀମାନଙ୍କର ବିସ୍ତୃତି ପ୍ରତି ମଧ୍ୟ ପ୍ରଯୁଜ୍ୟ । ଆମ ଓଡ଼ିଶାର ଜଙ୍ଗଲରେ ଯେଉଁ ଜୀବ ଅଛନ୍ତି, ସେମାନେ ସମସ୍ତେ ପ୍ରଦେଶର ତେରଟିଯାକ ଜିଲ୍ଲାର ଜଙ୍ଗଲରେ ମିଳନ୍ତି ନାହିଁ ଏବଂ ସମ ସଂଖ୍ୟାରେ ଦେଖାଯାନ୍ତି ନାହିଁ । କେଉଁ ଜଙ୍ଗଲରେ ଭାଲୁ ବେଶୀ ତ କେଉଁ ଜଙ୍ଗଲରେ ହରିଣ ବେଶୀ ରହନ୍ତି । ଏହା କେବଳ କଥା । ପୂର୍ବେ କୁହାଯାଇଅଛି, ଖାଦ୍ୟ, ରହିବା ପାଇଁ ସ୍ଥାନ, ଜଳବାୟୁ ଓ ଶତ୍ରୁ ସଂଖ୍ୟା ଇତ୍ୟାଦି ଏ ସବୁକୁ ପ୍ରଭାବିତ କରେ ।

ରାଜ୍ୟର ତେରଟିଯାକ ଜିଲ୍ଲାରେ ଅନ୍ତ ବହୁତ ଜଙ୍ଗଲ ଅଛି । ବିସ୍ତୃତ ଅରଣ୍ୟଭୂମିଯୋଗୁ ଓଡ଼ିଶା ଅନ୍ୟୂନ ପଗଶଟି ବିଭିନ୍ନ ଜାତିର ସ୍ତନ୍ୟପାୟୀ ବନ୍ୟଜୀବର ବାସସ୍ଥଳୀ । ବିଶେଷରେ ନାନା ଜାତି ହରିଣ ବହୁ ସଂଖ୍ୟାରେ ଦେଖାଯାଉଥିବାରୁ ଓଡ଼ିଶା "ଶିକାରୀଙ୍କ ଖେଳ ପଡ଼ିଆ" ବୋଲି ଖ୍ୟାତି ଲାଭ କରିଥିଲା ।

# (ଖ) ଓଡ଼ିଶାର ବନ୍ୟ ଜନ୍ତୁ

ଓଡ଼ିଶାର ତେରଟି ଜିଲ୍ଲାର ଜଙ୍ଗଲରେ ବିଭିନ୍ନ ଜାତିର ବନ୍ୟଜନ୍ତୁ ବାସ କରନ୍ତି । ବନ୍ୟଜନ୍ତୁ ପାଇଁ, ବିଶେଷ କରି ବିଭିନ୍ନ ଜାତି ହରିଣ ବହୁ ସଂଖ୍ୟାରେ ମିଳୁଥିବାରୁ ଏ ପ୍ରଦେଶ ଖ୍ୟାତ । ଆମ ଜଙ୍ଗଲର ସାଧାରଣ ବନ୍ୟପ୍ରାଣୀ ହେଲେ ବାଘ, କଲରପତ୍ରିଆ ବାଘ, ବଣ ବିରାଡ଼ି, ଶାଳିଆପତିନୀ, ଗଧିଆ, କୋକିଶିଆଳି, ବଣିଆ କୁକୁର, ଭାଲୁ, ବେଙ୍ଗ ମୂଷା, ଝିଙ୍କ, ଗୟଳ, ଶଶକ, ନୀଳଗାଇ, ସମ୍ବର, ଚିତଳ ହରିଣ, କୁଟୁରା, ଖୁରାଣ୍ଡ ବାର୍‌ହା ଓ ବଜ୍ରକାପ୍ତା । ଏ ସବୁ ଭଣା ଅଧିକ ପରିମାଣରେ ସବୁ ଜିଲ୍ଲାର ଜଙ୍ଗଲରେ ଦେଖାଯାନ୍ତି ।

ପ୍ରାଚୀନ କଳିଙ୍ଗ ହାତୀପାଇଁ ଇତିହାସପ୍ରସିଦ୍ଧ । ଏ ଦେଶର ସମ୍ରାଟ ନିଜକୁ 'ଗଜପତି' ବୋଲାଇ ଗର୍ବ ଅନୁଭବ କରୁଥିଲେ । 'ଗଜପତି' ଅର୍ଥ ହସ୍ତୀମାନଙ୍କର ପ୍ରଭୁ । ଏବେ ମଧ୍ୟ ପୁରୀରାଜା 'ଗଜପତି' ନାମରେ ଆଖ୍ୟାତ । ମହାଭାରତ ଯୁଦ୍ଧରେ କଳିଙ୍ଗସମ୍ରାଟ ତାଙ୍କର ହସ୍ତୀବାହିନୀ ପାଇଁ ବିଶେଷ ଭାବେ ଉଲ୍ଲିଖିତ ହୋଇଅଛନ୍ତି । ଗଜପତି କପିଳେନ୍ଦ୍ର ଦେବଙ୍କ ହସ୍ତୀବାହିନୀରେ ଦୁଇଲକ୍ଷ ହାତୀ ଥିଲେ । ଓଡ଼ିଶାର ଜଙ୍ଗଲରେ ହାତୀଙ୍କ ସଂଖ୍ୟା ଏବେ ବହୁତ କମିଗଲାଣି । 1977 ସାଲରେ ପ୍ରକାଶିତ ଏକ ବିବରଣୀରୁ ଜଣା ପଡ଼େ ଯେ ବିହାର, ପଶ୍ଚିମବଙ୍ଗ ଓ ଓଡ଼ିଶାରେ ହାତୀ ସଂଖ୍ୟା 400 ରୁ ୫00 ଭିତରେ । ମୟୂରଭଞ୍ଜ, କେଉଁଝର, ଢେଙ୍କାନାଳ, ଗଞ୍ଜାମ, ଫୁଲବାଣୀ, ପୁରୀ (ବାଲୁଗାଁ ନିକଟ ଜଙ୍ଗଲ) ଓ ସମ୍ବଲପୁର (ଦେଓଗଡ଼ ଓ ବାମଣ୍ଡା) ଜିଲ୍ଲାର ଅରଣ୍ୟରେ ହାତୀ ବାସ କରନ୍ତି । 1953 ସାଲରେ ଡାକ୍ତରେରର

ରଜା ଢେଙ୍କାନାଳର ଜଙ୍ଗଲରେ ଗୋଟିଏ ଦନ୍ତା ହାତୀ ମାରିଥିଲେ । ତାର ଉଚ୍ଚତା ଥିଲା 3.55 ମିଟାର (11 ଫୁଟ) । ପ୍ରତ୍ୟେକ ଦାନ୍ତ ଓଜନରେ ହୋଇଥିଲା 41.73 କିଲୋଗ୍ରାମ (92 ପାଉଣ୍ଡ) ଓ ଲମ୍ବରେ (ବକ୍ରତା ବାହାର ପଟରେ ମାପ) 2.59 ମିଟାର (8 ଫୁଟ 6 ଇଞ୍ଚ) ।

ପୂର୍ବେ ଅରଣା ମଇଁଷି ବାଲେଶ୍ୱରର ପଶ୍ଚିମକୁ ଘୃଦନାପାଳ ଜଙ୍ଗଲରେ ଏବଂ ସୁନ୍ଦରଗଡ଼ ଜିଲ୍ଲାରେ ବ୍ରାହ୍ମଣୀ ନଦୀର ମାଳଭୂମିରେ ଗାଙ୍ଗପୁର ଓ ବଣାଇର ଅରଣ୍ୟରେ ପଲ ପଲ ହୋଇ ବିଚରଣ କରୁଥିଲେ । ଏବେ କେବଳ ଦୁଇଟି କ୍ଷୁଦ୍ର ଦଳ ମଧ୍ୟରୁ ଗୋଟିଏ କଳାହାଣ୍ଡି ଜିଲ୍ଲା ସୁନାବେଡ଼ା ମାଳଭୂମିର ଝଡ଼ିଆଲ ଠାରେ ଓ ଅନ୍ୟଟି କୋରାପୁଟ ଜିଲ୍ଲାର ବାଲିମେଳା ଠାରେ ଅଛନ୍ତି ବୋଲି ଜଣାପଡ଼େ । ବିବରଣୀରୁ ଜଣାପଡେ, ଗାଙ୍ଗପୁରର କୁମାରକେଲ ଠାରେ ସେ ଅଞ୍ଚଳର ଶେଷ ଅଣ୍ଡିରା ଅରଣା ମଇଁଷିଟିକୁ 1906 ସାଲରେ ମାରି ଦିଆଯାଇଥିଲା ।

ସୁନ୍ଦର କୃଷ୍ଣସାରର ସଂଖ୍ୟା ଦିନକୁ ଦିନ ହ୍ରାସ ପାଇବାରେ ଲାଗିଛି । ପୂର୍ବେ ସମ୍ବଲପୁର ଓ ପୁରୀ ଜିଲ୍ଲାର ସବୁ ହ୍ରଦ ଅଞ୍ଚଳରେ ଏମାନେ ପଲ ପଲ ହୋଇ ଦେଖାଯାଉ ଥିଲେ ; ଏବେ ସେମାନେ ବିଲୁପ୍ତପ୍ରାୟ । କଳାହାଣ୍ଡି ଜିଲ୍ଲାରେ ସେମାନଙ୍କ ସଂଖ୍ୟା ଅତି ଅଳ୍ପ ; ହୁଏତ ଲୋପ ପାଇଗଲେଣି । ଅତି ଅଳ୍ପ ସଂଖ୍ୟାରେ ଚିଲିକା କୂଳର ବାଲୁକା ପ୍ରାନ୍ତରରେ, ଗଞ୍ଜାମର ଭେଟନଇ ଜଙ୍ଗଲରେ ଓ ବାଲେଶ୍ୱରର ସମୁଦ୍ରକୂଳରେ କୃଷ୍ଣସାର ଥିବାର ଜଣାଯାଏ ।

ପଶ୍ଚିମ ଓଡ଼ିଶାରେ ପୂର୍ବର ଗଡଜାତମାନଙ୍କର ଅରଣ୍ୟରେ ବହୁ ସଂଖ୍ୟାରେ ଚଉରିଶିଙ୍ଗା ଦେଖାଯାଉଥିଲା । ଅଧୁନା ଅତି ଅଳ୍ପ ସଂଖ୍ୟାରେ କଟକ, ପୁରୀ ଓ ସମ୍ବଲପୁର ଜିଲ୍ଲାମାନଙ୍କରେ ମିଳନ୍ତି ।

ନେଳେଢ଼ା ବାଘ ଏବେ ଅତ୍ୟନ୍ତ ବିରଳ । କ୍ୱଚିତ୍ କ୍ୱଚିତ୍ ମୟୂରଭଞ୍ଜ, ସୁନ୍ଦରଗଡର ବଣାଇ ଅଞ୍ଚଳ, ସମ୍ବଲପୁର ଓ କୋରାପୁଟ ଜିଲ୍ଲାରେ ଦେଖାଯାନ୍ତି ।

ଜାଗକାଳ ଭାରତରୁ ବିଲୁପ୍ତ ହୋଇ ଅଛନ୍ତି ବୋଲି ବିଶ୍ୱାସ କରଯାଏ । ଏହା ମୟୁରଭଞ୍ଜର ବୁଦିବୁଦିଆ ଜଙ୍ଗଲରେ ବାସ କରୁଥିଲା ବୋଲି ପ୍ରମାଣ ଅଛି ।

ଗାଡଭଲୁ କେବଳ ଗଞ୍ଜାମ ଜିଲ୍ଲାରେ ଅଛନ୍ତି ବୋଲି ଜଣାଯାଏ । ଏହି ଗର୍ତ୍ତଚର ପ୍ରାଣୀଟି ପୂର୍ବେ ପଶ୍ଚିମ-ଓଡ଼ିଶାର ଗଡଜାତ ଅଞ୍ଚଳରେ ବହୁ ସଂଖ୍ୟାରେ ଦେଖା ଯାଉଥିଲା ।

ପୂର୍ବେ ବାରଶିଙ୍ଗା ହରିଣ ସମ୍ବଲପୁର ଜିଲ୍ଲାରେ ବିଚରଣ କରୁଥିଲେ । ଓଡ଼ିଶାରୁ ସେମାନେ ଲୋପ ପାଇଛନ୍ତି ।




(ଚିତ୍ର ନଂ 165, ଓଡ଼ିଶାର କେତୋଟି ବନ୍ୟ ଜନ୍ତୁଙ୍କର ବିସ୍ତୃତି ଓ ସଂରକ୍ଷିତ ଅଞ୍ଚଳ—ଅଭୟାରଣ୍ୟ : 1. ବାଲୁଖଣ୍ଡ, 2. ଚନ୍ଦକା, 3. ଦେବ୍ରୀଗଡ, 4. ଖଲାଶୁଣୀ, 5. ମହାନଦୀ ଓ ବଣିପଲ୍ଲୀ, 6. ପଦ୍ମତୋଳା, 7. ଗଇଗତା, 8. ସିମିଳିପାଳ, 9. ଉଷାକୋଟି, 10. କପିଳାସ, 11. ସପ୍ତଶଯ୍ୟା, 12. କରଲପାଟ, 13. କୁଲଡ଼ିହା, 14. ଚିଲିକା, 15. ଭିତର କନିକା, 16. କୋଣ୍ଡା କାମେରୁ, 17. ସୁନାବେଡ଼ା, 18. ସାତକୋଶିଆ, 19. ନନ୍ଦନକାନନ ପ୍ରାଣୀଉଦ୍ୟାନ, ବାରଙ୍ଗ ।

ଚିତାବାଘ ଭାରତରୁ ଅବଲୁପ୍ତ । ଓଡ଼ିଶାର ଜଙ୍ଗଲରେ ଏକଦା ଏମାନେ ବାସ କରୁଥିଲେ ।

ଲାଲ ଉଡ଼ନ୍ତା ଗୁଣ୍ଡୁଚି ମୂଷା ଢେଙ୍କାନାଳ, ସୁନ୍ଦରଗଡ଼ର ବଣାଇ ଓ ସମ୍ବଲପୁରର ଜଙ୍ଗଲରେ ଦେଖାଯାନ୍ତି । ଏହି ପ୍ରାଣୀଟି ଗୁଣ୍ଡୁଚି ମୂଷା ପରି ହେଲେ ମଧ୍ୟ ଚର୍ମ-ପକ୍ଷ ମେଲାଇ ପବନରେ ପ୍ରବାହିତ ହୋଇ ଗୋଟିଏ ଗଛରୁ ଅନ୍ୟ ଗଛକୁ ଯାଇପାରେ ।

ଓଡ଼ିଶାରେ ନାନାଜାତି ବାଦୁଡ଼ି ଓ ଚମଚଟା ଦେଖାଯାନ୍ତି । ଏ ସମ୍ବନ୍ଧରେ ଯଥା ସ୍ଥାନରେ ଉଲ୍ଲେଖ କରା ଯାଇଅଛି ।

ଚିଲିକା ହ୍ରଦରେ "ଭୁଆସୁଣୀ ମାଛ" ଦେଖାଯାଏ । ଏହା ଗଙ୍ଗା ନଦୀର ଶିଶୁମାରଠାରୁ ଭିନ୍ନ । ଏହି ସ୍ତନ୍ୟପାୟୀ ଜଳବାସୀ ପ୍ରାଣୀଟିର ବୈଜ୍ଞାନିକ ନାମ Orcaella brevirostris (Owen) । କାହାଣୀଅନୁସାରେ ଭୁଆସୁଣୀ ଶାଶୁର ଗଞ୍ଜଣା ସହି ନ ପାରି ଗାଧୋଇବାକୁ ଯାଇ ଭଗବାନଙ୍କୁ ଦୁଃଖରୁ ମୁକ୍ତି ପାଇଁ ପ୍ରାର୍ଥନା କରିବାରୁ, ସେ ତାକୁ "ଭୁଆସୁଣୀ ମାଛ" କରି ଦେଲେ । ଏହି ପ୍ରାଣୀଟି ସମ୍ବନ୍ଧରେ ଆମର ଜ୍ଞାନ ଅତ୍ୟନ୍ତ ସୀମିତ ।

## (ଗ) ଓଡ଼ିଶାରେ ପ୍ରାଣୀ-ସଂରକ୍ଷଣ

ପୂର୍ବେ ରାଜାମାନଙ୍କ ଶାସନ ବେଳେ ଗଡ଼ଜାତର ଜଙ୍ଗଲମାନଙ୍କରେ ବନ୍ୟ ପ୍ରାଣୀମାନେ ବହୁ ସଂଖ୍ୟାରେ ଦେଖା ଯାଉଥିଲେ । କେବଳ ରାଜାମାନେ ପାରିଧି କରିବାକୁ ଯାଉଥିଲେ । ରାଜାନୁମତିବିନା ଅନ୍ୟ କେହି ଶିକାର କରି ପାରୁ ନ ଥିଲେ । ସ୍ୱାଧୀନତାପରେ ଗଡଜାତ--ମିଶ୍ରଣ ହେଲା । ତା'ପରେ ଚାଲିଲା ବନ୍ୟଜନ୍ତୁଙ୍କ ସଂହାରଲୀଳା ।

ପ୍ରାଦେଶିକ ସରକାର "ବନ୍ୟ ଜୀବନ (ସଂରକ୍ଷଣ) (ଓଡ଼ିଶା) ନିୟମାବଳୀ, 1974" [Wild life (Protection) (Orissa) Rules, 1974] ପ୍ରଣୟନ କରି "ମୁଖ୍ୟ-ବନ୍ୟ-ଜୀବନ-ରକ୍ଷକ" (Chief wild life warden) ନିଯୁକ୍ତ କରି ଅଛନ୍ତି ଏବଂ "ପ୍ରାଦେଶିକ ବନ୍ୟ-ଜୀବନ-ପରାମର୍ଶଦାତା-ସଭା" ( State wild life Advisory Board )

ଗଠନ କରି ଅଛନ୍ତି । ଓଡ଼ିଶାର ଅଭୟାରଣ୍ୟ ଓ ଜୀବ-ଉଦ୍ୟାନ (Biological park) ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

# ଅଭୟାରଣ୍ୟ

## 1. ବାଲୁଖଣ୍ଡ

ପୁରୀ ଜିଲ୍ଲାରେ 12.5 ବର୍ଗ କିଲୋମିଟାର ପରିମିତ ଏହି ଅଭୟାରଣ୍ୟଟି 1935 ସାଲରେ କୃଷ୍ଣସାର ଓ ଚିତଳ-ହରିଣମାନଙ୍କ ସଂରକ୍ଷଣ ଲାଗି ସ୍ଥାପିତ ହୋଇଥିଲା । ପୁରୀଠାରୁ ଏହା ଅଳ୍ପ ଦୂରରେ ଅବସ୍ଥିତ ।

## 2. ଚନ୍ଦକା

ଚନ୍ଦକା ଅଭୟାରଣ୍ୟ ପୁରୀ ଜିଲ୍ଲାରେ ଅବସ୍ଥିତ । ବାରଙ୍ଗ ନିକଟସ୍ଥ "ନନ୍ଦନ କାନନ ଜୀବଉଦ୍ୟାନ" ସଂଲଗ୍ନ ଜଙ୍ଗଲଅଞ୍ଚଳର 30 ବର୍ଗ କିଲୋମିଟାର ଅଞ୍ଚଳକୁ 1935 ସାଲରେ ଅଭୟାରଣ୍ୟ ଘୋଷଣା କରଯାଇଥିଲା । ଏହି ଜଙ୍ଗଲରେ ହାତୀ, ବାଘ, କଲରା ପତ୍ରିଆ ବାଘ, ସମ୍ବର, ଚିତଳ ହରିଣ, କୁଟୁରା ଓ ଭାଲୁ ଆଦି ପ୍ରାଣୀ ଅଛନ୍ତି । ଅଭୟାରଣ୍ୟଟି ଭୁବନେଶ୍ୱରର ପଶ୍ଚିମକୁ 19 କିଲୋମିଟାର ଦୂରରେ ଅବସ୍ଥିତ ।

## 3. ଦେବ୍ରୀଗଡ

ସମ୍ବଲପୁର ଜିଲ୍ଲାର ବଡ଼ପାହାଡ଼ ସବ୍‌ଡ଼ିଭିଜନରେ ଏହି ଅଭୟାରଣ୍ୟ ଅବସ୍ଥିତ । 1932 ସାଲରେ ସ୍ଥାପିତ । କ୍ଷେତ୍ରଫଳ 15 ବର୍ଗ କିଲୋମିଟାର । ବନ୍ୟ ପ୍ରାଣୀ—ବାଘ, କଲରା ପତ୍ରିଆ ବାଘ, ସମ୍ବର ଓ ଗୟଳ ।

## 4. ଖଲାସୁଣୀ

ସମ୍ବଲପୁର ଜିଲ୍ଲାର ରେଢ଼ାଖୋଲ ସବ୍‌ଡ଼ିଭିଜନ ଅନ୍ତର୍ଗତ । 1962ରେ ସ୍ଥାପିତ । କ୍ଷେତ୍ରଫଳ 115 ବର୍ଗ କିଲୋମିଟାର । ବନ୍ୟ ପ୍ରାଣୀ—ହାତୀ, ଗୟଳ, ଭାଲୁ, ସମ୍ବର ଓ ଚିତଳ ହରିଣ ।

## 5. ମହାନଦୀ ଓ ବଶିପଲ୍ଲୀ

ପୁରୀ ଜିଲ୍ଲାର ନୟାଗଡ଼ ସବଡ଼ିଭିଜନ ଅନ୍ତର୍ଗତ । 1962 ରେ ସ୍ଥାପିତ । କ୍ଷେତ୍ରଫଳ 260 ବର୍ଗ କିଲୋମିଟାର । ବାଘ, ହାତୀ, ଗୟଳ, ସମ୍ବର ଓ ଚିତଳ ହରିଣ ଏହି ଅଭୟାରଣ୍ୟର ବିଶେଷତ୍ୱ ।

## 6. ପଦ୍ମତୋଳା

ଫୁଲବାଣୀ ଜିଲ୍ଲା ଅନ୍ତର୍ଗତ । 1962 ସାଲରେ ସ୍ଥାପିତ । କ୍ଷେତ୍ରଫଳ 65 ବର୍ଗ କିଲୋମିଟାର । ବନ୍ୟପ୍ରାଣୀ—ବାଘ, ହାତୀ, ଗୟଳ, ସମ୍ବର ଓ ଚିତଳ ହରିଣ ।

## 7. ଲଇଗଡ଼ା

ଢେଙ୍କାନାଳ ଜିଲ୍ଲାର ଅନୁଗୋଳ ସବ୍‌ଡ଼ିଭିଜନର ଅନ୍ତର୍ଗତ । ସ୍ଥାପନ କାଳ 1938 । କ୍ଷେତ୍ରଫଳ 43ବର୍ଗ କିଲୋମିଟାର । ଅନୁଗୋଳ ସହରର ଦକ୍ଷିଣକୁ 37 କିଲୋମିଟାର ଦୂରରେ ଅବସ୍ଥିତ । ଏହି ଅଭୟାରଣ୍ୟରେ ବାଘ, ହାତୀ, ଗୟଳ, କଲରା ପତ୍ରିଆ ବାଘ, ସମ୍ବର, ଚିତଳ ହରିଣ, ଖୁରଣ୍ଟ ଆଦି ପ୍ରାଣୀ ବାସ କରନ୍ତି । ଅଭୟାରଣ୍ୟ ଭିତରେ ଗୋଟିଏ ଡ଼ାକବଙ୍ଗଳା ଅଛି । ଏଠାର ପ୍ରାକୃତିକ ଦୃଶ୍ୟ ଅତି ମନୋରମ । ସନ୍ଧ୍ୟାରେ ଡ଼ାକ ବଙ୍ଗଳାରେ ବସି ବିଭିନ୍ନ ବନ୍ୟ ଜନ୍ତୁମାନଙ୍କର ଡାକ ଶୁଣିବାକୁ ମିଳେ । ଅଭୟାରଣ୍ୟ ନିକଟରେ ଟୁଲ୍‌କା ଓ ପୁରୁଣାକୋଟଠାରେ ଡ଼ାକବଙ୍ଗଳା ଅଛି ।

## 8. ଶିମିଳି ପାଳ

ମୟୂର ଭଞ୍ଜର ଶିମିଳି ପାଳ ପାର୍ବତ୍ୟ ଅଞ୍ଚଳର ମୋଟ କ୍ଷେତ୍ରଫଳ 2750 ବର୍ଗ କିଲୋମିଟାର । ସେଥିର 303 ବର୍ଗ କିଲୋମିଟାର ଅଞ୍ଚଳକୁ 1969 ସାଲରେ ଅଭୟାରଣ୍ୟ ଗଠନ କରାଯାଇଥିଲା । ଏଠାର ଜଙ୍ଗଲରେ ବାଘ, କଲରା ପତ୍ରିଆ ବାଘ, ହାତୀ, ଗୟଳ, ଚିତଳ ହରିଣ, ଖୁରଣ୍ଟ, ସମ୍ବର, ବାର୍‌ହା, କୁଟ୍‌ରା, ଘୁରିଶିଙ୍ଗା, ଝିଙ୍କ, ଭାଲୁ, ଗଧିଆ, ଗାଡ଼ଭାଲୁ, ବଜ୍ରକାପ୍ଟା, ହାତୀଆ ଗନ୍ଧ ମାର୍ଜାର ( Large Indian civet ), କଟାଶ, ଉଡ଼ନ୍ତା ଗୁଣ୍ଡୁଚି ମୂଷା, ନେପାଳି ମୂଷା, ହେଟା ବାଘ ଓ ବାଘଟା ଆଦି ସ୍ତନ୍ୟପାୟୀ ପ୍ରାଣୀ; ମୟୂର, ଝାର କୁକୁଡ଼ା ( red jungle fowl ),

ତିତିର ( grey partridge ), ଘୁଣ୍ଟୁକି ଚଢ଼େଇ ( bush quail, rain quail, common quail ) ମଇନା ଓ କୋଚିଲ ଖାଇ ଆଦି ପକ୍ଷୀ ଏବଂ ଅହିଗଜ ଓ ଅଜଗର ଆଦି ବିଷାକ୍ତ ଓ ବିଷହୀନ ସର୍ପ ଦେଖାଯାନ୍ତି । ଖଇରୀ ଓ ବଙ୍ଗା ନଦୀରେ ଥଣ୍ଡିଆ କୁମ୍ଭୀର ( Mugger ) ବାସ କରନ୍ତି । 1973 ସାଲରେ ଭାରତର ନଅଟି ଅଞ୍ଚଳରେ ବ୍ୟାଘ୍ର ସଂରକ୍ଷଣ ( Project tiger ) ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ଶିମିଳିପାଳ ତନ୍ମଧ୍ୟରେ ଅନ୍ୟତମ । 1972 ସାଲରେ ଏହି ଜଙ୍ଗଲରେ ବ୍ୟାଘ୍ର ସଂଖ୍ୟା 17 ବୋଲି ଗଣନା କରାଯାଇଥିଲା । 1976, 1977 ଓ 1978 ରେ ସେମାନଙ୍କ ସଂଖ୍ୟା ଯଥାକ୍ରମେ 46, 61 ( 5 ଶାବକ ) ଓ ( 4 ଶାବକ) ବୋଲି ନିରୂପିତ ହୋଇଅଛି ।

## 9. ଉଷାକୋଠି

ସମ୍ବଲପୁର ଜିଲ୍ଲାର ବାମଣ୍ଡା ସବ୍‌ଡ଼ିଭିଜନ ଅନ୍ତର୍ଭୁକ୍ତ । ସ୍ଥାପନକାଳ 1962 । କ୍ଷେତ୍ରଫଳ 192 ବର୍ଗ କିଲୋମିଟାର । ଅଭୟାରଣ୍ୟଟିରେ ହାତୀ, ଗୟଳ, ବାଘ, କଲରାପତ୍ରିଆ, ସମ୍ବର, ଚିତଳ ହରିଣ, କୁଟୁରା, ବାର୍‌ହା ଆଦି ନାନାବିଧ ବନ୍ୟପ୍ରାଣୀ ଦେଖିବାକୁ ମିଳନ୍ତି । ସମ୍ବଲପୁର ସହର ଠାରୁ ଏହି ଅଭୟାରଣ୍ୟ 43 କିଲୋମିଟାର ଦୂରରେ ଅବସ୍ଥିତ । ରାତିରେ ବନ୍ୟ-ଜନ୍ତୁ ପାଣି ପିଇବାକୁ ଆସିଲେ ସେମାନଙ୍କୁ ଯେପରି ଦେଖିହେବ ସେଥିପାଇଁ ବୁରୁଜ ଅଛି । ବଡ଼ରମା ଠାରେ ଡାକବଙ୍ଗଳା ଅଛି । ଏଠାରୁ ଛଅ କିଲୋ-ମିଟାର ଦୂରରେ ଚିରିଗୁଣିଖୋଲ ଗ୍ରାମ ଠାରୁ ଅଭୟାରଣ୍ୟ ଆରମ୍ଭ ହୋଇଅଛି ।

## 10. କପିଳାସ

ଢେଙ୍କାନାଳ ଜିଲ୍ଲାରେ 1970 ସାଲରେ ସ୍ଥାପିତ । କ୍ଷେତ୍ରଫଳ 126.10 ବର୍ଗ କିଲୋମିଟାର । ହାତୀ, ଗୟଳ, କଲରାପତ୍ରିଆ ବାଘ, ସମ୍ବର ଓ ଚିତଳ ହରିଣ ଏହି ଅଭୟାରଣ୍ୟରେ ଦେଖାଯାନ୍ତି ।

## 11. ସପ୍ତଶଯ୍ୟା

ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ । ସ୍ଥାପନ ସମୟ 1970 । କ୍ଷେତ୍ରଫଳ 20.97 ବର୍ଗ କିଲୋମିଟାର । ଅଭୟାରଣ୍ୟରେ ହାତୀ, ଗୟଳ, କଲରାପତ୍ରିଆ ବାଘ, ସମ୍ବର ଓ ଚିତଳ ହରିଣ ବାସ କରନ୍ତି ।

## 12. କରଲାପାଟ

କଳାହାଣ୍ଡି ଜିଲ୍ଲାରେ ଅବସ୍ଥିତ । 1969 ସାଲରେ ସ୍ଥାପିତ । କ୍ଷେତ୍ରଫଳ 145 ବର୍ଗ କିଲୋମିଟାର । ବାଘ, କଲରପତ୍ରିଆ ବାଘ, ଗୟଳ, ଚିତଳ ହରିଣ ଓ ସମ୍ବର ଏହି ଅଭୟାରଣ୍ୟରେ ବାସ କରନ୍ତି ।

## 13. କୁଲଡ଼ିହା

ମୟୂରଭଞ୍ଜ ଜିଲ୍ଲାରେ ଅବସ୍ଥିତ । କ୍ଷେତ୍ରଫଳ 25 ବର୍ଗ କିଲୋମିଟାର । ଅଭୟାରଣ୍ୟଟି 1974 ମସିହାରେ ସ୍ଥାପିତ ହୋଇଥିଲା । ହାତୀ, ଗୟଳ, ସମ୍ବର ଓ ଚିତଳ ହରିଣ ଏହି ଜଙ୍ଗଲର ପ୍ରଧାନ ବନ୍ୟଜନ୍ତୁ ।

## 14. ଚିଲିକା ହ୍ରଦ

ସମଗ୍ର ଚିଲିକା ହ୍ରଦକୁ 1973 ଅକ୍ଟୋବର 15 ତାରିଖରେ ଅଭୟାରଣ୍ୟରୂପେ ଘୋଷଣା କରଯାଇଅଛି । ଚିଲିକା ହ୍ରଦ ପୁରୀ ଜିଲ୍ଲାରେ ଅବସ୍ଥିତ; ମାତ୍ର ଏହାର ଏକ କୋଣ ଗଞ୍ଜାମ ଜିଲ୍ଲା ଭିତରକୁ ପଶିଯାଇଛି । ଖରଦିନେ 906 ବର୍ଗ କିଲୋମିଟାର ଅଞ୍ଚଳରେ ପାଣି ଥାଏ ; ବର୍ଷାଦିନେ ଜଳ 1,165 ବର୍ଗ କିଲୋମିଟାର ଅଞ୍ଚଳରେ ମାଡ଼ିଯାଏ । ଖରଦିନେ ଜଳର ଗଭୀରତା 20 ସେଣ୍ଟିମିଟାରରୁ 3 ମିଟାର । ପାଣି ଖରଦିନେ ଲୁଣିଆ, ଶୀତଦିନେ ଅଳ୍ପ ଲୁଣିଆ ଓ ବର୍ଷାକାଳରେ ପ୍ରାୟ ମଧୁର । ଶୀତକାଳରେ ନାନା ଜାତି ପକ୍ଷୀ ହ୍ରଦକୁ ଆସନ୍ତି । ନଭେମ୍ବର ଠାରୁ ଫେବ୍ରୁୟାରୀମାସ ମଧ୍ୟରେ ଚିଲିକା ହ୍ରଦ ଏକ ପକ୍ଷୀ ବସତିରେ ପରିଣତ ହୁଏ । ହ୍ରଦରେ 'ଭୁଆସୁଣୀ ମାଛ' (ଇରବତୀ ଶିଶୁମାର) ଦେଖିବାକୁ ମିଳେ । ଏହା ଗଙ୍ଗା, ସିନ୍ଧୁ ଓ ବ୍ରହ୍ମପୁତ୍ର ନଦୀର ଚକ୍ଷୁହୀନ ଶିଶୁମାରଠାରୁ ଭିନ୍ନ ଜାତି । ଚିଲିକା ହ୍ରଦ ଚାରିପଟେ ବରକୂଳ, ବାଲୁଗାଁ, ଭୁଷଣ୍ଡପୁର, ଟାଙ୍ଗୀ, ହୁମା ଓ ରମ୍ଭା ଠାରେ ଡାକବଙ୍ଗଳା ଅଛି ।

## 15. ଭିତର କନିକା

ଭିତର କନିକା ଅଭୟାରଣ୍ୟ କଟକ ଜିଲ୍ଲାର ଆଠଗଡ଼ ସବ୍‌ଡିଭିଜନ ଅନ୍ତର୍ଭୁକ୍ତ । 16,176 ହେକ୍ଟାର ସମୁଦ୍ରକୂଳ ଅରଣ୍ୟାଞ୍ଚଳ ଦ୍ୱାରା ଏହା ଗଠିତ । ପୂର୍ବେ ଏହି ଅଞ୍ଚଳ କନିକାରାଜାଙ୍କ ଜମିଦାରୀଭୁକ୍ତ ଥିଲା ।

କଳାବାଣୀ, ଧଳାବାଣୀ, ହେନ୍ତାଳ, ଗଇ, ସୁନ୍ଦରୀ, ଗୁଆଁ ଓ ହରକଞ୍ଚି ଆଦି ଗଛ ଏହି ଜଳାଭୂମିର ବିଶେଷତ୍ୱ । ଜୁଆରବେଳେ ଗଳିଆ ଦେଇ ସମୁଦ୍ର ପାଣି ମାଡ଼ି ଆସେ, ଭଟ୍ଟା ପଡ଼ିଲେ ପାଣି ଖସିଯାଏ । ଅଭୟାରଣ୍ୟରେ ବଉଳା କୁମ୍ଭୀର (Estuarine crocodile—Crocodylus porosus), ପାଣି ଗୋଧି (Water monitor, Varanus salvator), ସମୁଦ୍ର କଇଞ୍ଛ (The Pacific or Olive Ridley sea turtle—Lepidochelys Olivacea) ଓ ଅହିରାଜ (King cobra, Naja hannah) ଏହି ଅଞ୍ଚଳରେ ବାସ କରନ୍ତି । ଯେଉଁ ପ୍ରାଣୀମାନେ ଅବଲୁପ୍ତପ୍ରାୟ ସେମାନଙ୍କ ସମ୍ବନ୍ଧରେ "ପ୍ରକୃତି-ସଂରକ୍ଷଣ ପାଇଁ ଆନ୍ତର୍ଜାତିକ ସଂଘ" (International Union for Conservation of Nature, IUCN) ଦ୍ୱାରା ପ୍ରକାଶିତ "ଲାଲ ତଥ୍ୟ ପୁସ୍ତକ" (Red Data Book) ବିବରଣୀ ଦିଆଯାଏ । ଉପରୋକ୍ତ ସମୁଦ୍ରକଇଞ୍ଛର ନାମ ଉକ୍ତ ପୁସ୍ତକରେ ସ୍ଥାନ ପାଇଅଛି । ମାତ୍ର ଭିତର କନିକା ସମୁଦ୍ରପ୍ରାନ୍ତରରେ ଏମାନେ ଜାନୁୟାରୀ-ମାର୍ଚ୍ଚ ମାସ ମଧ୍ୟରେ ହଜାର ହଜାର ସଂଖ୍ୟାରେ ଆସି ଅଣ୍ଡା ଦିଅନ୍ତି । 1976 ସାଲ ଫେବୃୟାରୀ ମାସରେ 158,171 ଟି ମାଈ କଇଞ୍ଛ ଜଳରୁ ଉଠି ଆସି ବାଲିରେ ଅଣ୍ଡା ଦେଇଥିଲେ ବୋଲି ଗଣନା କରାଯାଇଥିଲା । ଭିତରକନିକା ଜଙ୍ଗଲରେ କଲରପତ୍ରିଆ ବାଘ, ଗଧିଆ, ବଣଭୁଆ, ବାର୍ହା, ଚିତଳ ହରିଣ, ସମ୍ବର, ବାଘଟା ଆଦି ବନ୍ୟଜନ୍ତୁ ଦେଖାଯାନ୍ତି । ଶୀତଦିନେ ଏ ଅଞ୍ଚଳକୁ ନାନାଜାତି ପକ୍ଷୀ ଆସନ୍ତି । ପ୍ରାକୃତିକ ଦୃଶ୍ୟ ଅତି ମନୋରମ । ଡିସେମ୍ବର-ମାର୍ଚ୍ଚ ମାସରେ ଏ ଅଞ୍ଚଳକୁ ଆସିବା ପ୍ରକୃଷ୍ଟ ସମୟ । 1975 ସାଲ ଏପ୍ରିଲ 22 ତାରିଖରେ ଏହି ଅଭୟାରଣ୍ୟ ଗଠିତ ହୋଇଅଛି । ଭଦ୍ରଖ ଠାରୁ ଚାନ୍ଦବାଲି 50 କିଲୋମିଟାର । ସେଠାରୁ ଅଭୟାରଣ୍ୟକୁ ବୋଟରେ ଆସିବାକୁ ହୁଏ ।

ଅଭୟାରଣ୍ୟ ଭିତରେ ଡାଙ୍ଗମାଲ ଠାରେ ବଉଳାକୁମ୍ଭୀରମାନଙ୍କର ସଂରକ୍ଷଣଲାଗି ଏକ ଗବେଷଣା କେନ୍ଦ୍ର ସ୍ଥାପିତ ହୋଇଅଛି । ଏ ସ୍ଥାନରେ ଡାକବଙ୍ଗଳା ଅଛି ।

### 16. ସାତକୋଶିଆ ଗଣ୍ଡ

1976 ମେ 19 ତାରିଖରେ ସାତକୋଶିଆ ଗଣ୍ଡ ଅଞ୍ଚଳର 795.52 ବର୍ଗ କିଲୋମିଟାର ପରିମିତ ସ୍ଥାନକୁ ଅଭୟାରଣ୍ୟ ଘୋଷଣା କରାଗଲା । ମହାନଦୀର ସାତକୋଶିଆ ଗଣ୍ଡ ସାତ କୋଶ (14 ମାଇଲ ବା 22 କିଲୋମିଟାର) ଲମ୍ବା । ଅନୁଗୋଳ, ରେଢ଼ାଖୋଲ, ଆଠଗଡ଼, ନୟାଗଡ଼ ଓ ଫୁଲବାଣୀର ଅରଣ୍ୟ ଏହି ଗଣ୍ଡ ଦୁଇପଟେ ରହିଛି । ଏ ସ୍ଥାନରେ ପର୍ବତର ଉଚ୍ଚତା 600 ରୁ 900 ମିଟାର । ଜଙ୍ଗଲରେ ହାତୀ, ବାଘ, କଲରପତ୍ରିଆ ବାଘ, ଚିତଳ ହରିଣ, ଖୁରଣ୍ଡ, କୁଟୁରା, ବାର୍ହା, ଭାଲୁ, ବଣିଆ କୁକୁର, ସମ୍ବର, ଗୟଳ, ଝିଙ୍କ, ଜଙ୍ଗଲି କୁକୁଡ଼ା ଓ କୋଚିଲ ଖାଇ ଆଦି ବନ୍ୟଜନ୍ତୁ ଓ ପକ୍ଷୀ ଦେଖାଯାନ୍ତି । ପୂର୍ବେ ଏହି ଗଣ୍ଡରେ ଶହ ଶହ ସଂଖ୍ୟାରେ ଘଡ଼ିଆଳ ବାସ କରୁଥିଲେ । ସେମାନେ ଏବେ ଭାରତରୁ ଲୋପ ପାଇବାକୁ ବସିଲେଣି । ଘଡ଼ିଆଳ-ସଂରକ୍ଷଣ ଲାଗି ଏହି ଅଞ୍ଚଳକୁ ଅଭୟାରଣ୍ୟରୂପେ ଗଠନ କରାଯାଇଅଛି । ଟିକରପଡାଠାରେ ଘଡ଼ିଆଳ ସମ୍ବନ୍ଧରେ ଗବେଷଣା କରାଯାଉଅଛି । ଏ ସ୍ଥାନ ଢେଙ୍କାନାଳ ଜିଲାର ଅନୁଗୋଳ ଠାରୁ 62 କିଲୋମିଟାର ଏବଂ କଟକର ପଶ୍ଚିମକୁ 180 କିଲୋମିଟାର ଦୂରରେ ଅବସ୍ଥିତ । ଟିକରପଡା ଠାରେ ଡାକବଙ୍ଗଳା ଅଛି । ପାଖଆଖର ଡାକବଙ୍ଗଳାଗୁଡ଼ିକ ହେଲା ପୁରୁଣାକୋଟ, ବାଘମୁଣ୍ଡା, ଟୁଲକା, ଲବାଙ୍ଗି, ରାଇଗଡା ଓ ନୂଆକ୍ଷେତ୍ର ।

ଅଭୟାରଣ୍ୟଗୁଡ଼ିକୁ ଭ୍ରମଣରେ ଯିବାର ଉତ୍କୃଷ୍ଟ ସମୟ ନଭେମ୍ବରରୁ ମାର୍ଚ୍ଚ ମାସ ।

## ପ୍ରସ୍ତାବିତ ଅଭୟାରଣ୍ୟ

### 1. ସୁନାବେଢ଼ା

କଳାହାଣ୍ଡି ଜିଲାର ଖଡ଼ିଆଳ ସବ୍‌ଡିଭିଜନର ଜଙ୍ଗଲ ଅଞ୍ଚଳରେ ଏବେ ମଧ୍ୟ ବାରଶିଙ୍ଗା ମୃଗ ବାସ କରନ୍ତି । ଏ ଅଞ୍ଚଳକୁ ଅଭୟାରଣ୍ୟ ଘୋଷଣା କରିବା ପାଇଁ ପ୍ରସ୍ତାବ ରହିଛି ।

2. କୋଣ୍ଡା କାମେରୁ

ଜୟପୁର ଜିଲ୍ଲାର କୋଣ୍ଡା କାମେରୁ ଅଞ୍ଚଳରେ ବାଘ ଓ କଲରପତ୍ରିଆ ବାଘ ଦେଖାଯାନ୍ତି । ପୂର୍ବେ ଦଳେ ଅରଣା ମଇଁଷି ବାସ କରୁଥିଲେ, ଏବେ ପ୍ରାୟ ଲୁପ୍ତ ହୋଇଅଛନ୍ତି । ଚିତ୍ରକୁଣ୍ଡା ନଦୀ ଓ ଜଲପୁଟ ଜଳଭଣ୍ଡାରରେ ଥଣ୍ଟିଆ କୁମ୍ଭୀର (Marsh crocodile) ବାସ କରନ୍ତି ।

# ପ୍ରାଣୀ ଉଦ୍ୟାନ

ନନ୍ଦନକାନନ ପ୍ରାଣୀ ଉଦ୍ୟାନ ବାରଙ୍ଗ ରେଲଷ୍ଟେସନର ଅଦୂରରେ କଟକ ଠାରୁ 22 କିଲୋମିଟାର ଦୂରରେ ଅବସ୍ଥିତ । ଏହାର କ୍ଷେତ୍ରଫଳ 505 ହେକ୍ଟାର (1250 ଏକର) । ଏହା 1960 ସାଲରେ ସ୍ଥାପିତ ହୋଇଥିଲା । ଉଦ୍ୟାନରେ ଏକ ମତ୍ସ୍ୟ ସଂରକ୍ଷଣାଗାର ମଧ୍ୟ ରହିଅଛି । ଏଥିରେ ଅନ୍ୟୂନ 30 ଜାତି ମାଛ ଅଛନ୍ତି । 1976-77 ସାଲର ଏକ ବିବରଣୀରୁ ଜଣାପଡ଼େ, ପ୍ରାଣୀଉଦ୍ୟାନରେ 50 ଜାତିର 530ଟି ସ୍ତନ୍ୟପାୟୀ ପ୍ରାଣୀ, 60 ଜାତିର 360 ଟି ପକ୍ଷୀ ଏବଂ 9 ଜାତିର 25 ଟି ସରିସୃପ ଅଛନ୍ତି । ନନ୍ଦନକାନନକୁ ଲାଗି ଚନ୍ଦକା ଜଙ୍ଗଲ । 1967 ସାଲ ଜାନୁଆରୀ ମାସରେ ଉଦ୍ୟାନରେ ପ୍ରାକୃତିକ ପରିବେଶରେ ରହିଥିବା ବ୍ୟାଘ୍ର ପ୍ରଦୀପ'ର ପ୍ରଣୟ ଡାକରେ ଆକୃଷ୍ଟ ହୋଇ ନିକଟସ୍ଥ ଜଙ୍ଗଲରୁ ଏକ ବାଘୁଣୀ ଭିତରକୁ ଲମ୍ଫ ଦେଇ ଆସିଥିଲା । ଏହାର ନାମ ରଖାଯାଇଛି 'କାନନ' । କୌଣସି ପ୍ରାଣୀ-ଉଦ୍ୟାନର ଇତିହାସରେ ଏପରି ଘଟଣା କେବେ ଘଟିଥିବାର ଜଣା ନାହିଁ । ଜଳ-ବିହାର ପାଇଁ ଉଦ୍ୟାନକୁ ଲାଗି 121 ହେକ୍ଟାର ପରିମିତ ଏକ ହ୍ରଦ ଏଠାରେ ଅବସ୍ଥିତ । ହ୍ରଦ ଆରପଟରେ ମନୋରମ ଉଦ୍ଭିଦ-ଉଦ୍ୟାନ ରହିଅଛି ।

# ଭାରତର ବିପଦଗ୍ରସ୍ତ ସ୍ତନ୍ୟପାୟୀ ପ୍ରାଣୀ ତାଲିକା

[ପ୍ରାକୃତିକ ସଂରକ୍ଷଣ ପାଇଁ ଆନ୍ତର୍ଜାତିକ ସଂସ୍ଥା (International Union for Conservation of Natue—I.U.C.N. ଦ୍ୱାରା ପ୍ରକାଶିତ 'ଲାଲ ସାଙ୍କେତ ତଥ୍ୟ ପୁସ୍ତକ" (Red Data book)

ଅନ୍ତର୍ଭୁକ୍ତ ହୋଇଥିବା ଭାରତୀୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ନାମ ତଳେ ଦିଆଗଲା । ଏହାର ଅର୍ଥ ଏହି ଯେ ଏହି ପ୍ରାଣୀମାନେ ବର୍ତ୍ତମାନ 'ବିପଦଗ୍ରସ୍ତ'; ଉପଯୁକ୍ତ ସଂରକ୍ଷଣ ବ୍ୟବସ୍ଥା ନ ହେଲେ ସେମାନେ ଲୋପ ପାଇଯିବେ । ]

୧ । କେଶରୀ ପାତି ମାଙ୍କଡ଼ (Lion-tailed macaque, Macaca silenus)

୨ । ସ୍ୱର୍ଣ୍ଣକେଶୀ ହନୁ ( Golden langur, Presbytis geei ) ।

୩ । ଜନ୍ ହନୁ (John's langur, Presbytis johnii ।

୪ । ଚେପ୍‌ଟା-ନାକ ହନୁ (Snub-nosed langur, Rhinopithecus roxellanae) ।

୫ । ଭାରତର ବାଘ (Indian tiger, Panthera tigris tigris) ।

୬ । ଏସିଆର ସିଂହ (Asiatic lion, Panthera leo persica) ।

୭ । କଲରା ପତ୍ରିଆ ବାଘ (Leopard, Panthera pardus) ।

୮ । ତୁଷାର କଲରା ପତ୍ରିଆ ବାଘ ( Snow leopard, Panthera uncia) ।

୯ । କୁଙ୍ଗ୍ (Clouded leopard, Neofelis nebulosus) ।

୧୦ । ମାଲବାର ଗନ୍ଧ ମାର୍ଜାର (Malabar large-spotted civet, Viverra megaspila civettina) ।

୧୧ । ନେକେଡ଼ା ବାଘ (Wolf, Canis lupus) ।

୧୨ । ଭାଲୁ (Sloth bear, Melursus ursinus) ।

୧୩ । ଆସାମ ଶଶକ (Assam rabbit, Coprolagus hispidus) ।

୧୪ । ଏସିଆର ହାତୀ (Asian elephant, Elephas maximus) ।

୧୫ । ଭାରତୀୟ ବନ୍ୟ ଗର୍ଦ୍ଦଭ (Indian wild ass, Equus hemionus khur) ।

୧୬ । ଭାରତୀୟ ଗଣ୍ଡାର (Great Indian rhinoceros, Rhinoceros unicornis ) ।

୧୭ । ସୁମାତ୍ରା ଗଣ୍ଡାର (Sumatran rhinoceros, Didermocerus sumatrensis ) ।

୧୮ । ଗୟଳ (Bison, Bos gaurus) ।

୧୯। ଚମରୀ ଗାଈ (Wild yak, Bos grunniens)।

୨୦। ଏସିଆର ଅରଣା ମଇଁଷି ( Asiatic buffalo, Bubalus bubalis )।

୨୧। ମାର୍ଖୋର (Markhor, Capra falconeri)।

୨୨। ନୀଳଗିରି ଟେହେର (Nilgiri tahr, Hemitragus hylocris)।

୨୩। ହାଙ୍ଗଲ (Kashmir stag or Hangul, Cervus elephas hanglu)।

୨୪। ବାରଶିଙ୍ଗା (Swamp deer, Cervus duvauceli)।

୨୫। ସାଙ୍ଗାଇ ହରିଣ (Manipur brow-antlered deer, Cervus eldi eldi)।

୨୬। କସ୍ତୁରୀ ମୃଗ ( Himalayan musk deer, Moschus moschiferus moschiferus )।

୨୭। ବାମନ ଶୂକର (Pygmy hog, Sus salvanicus)।

୨୮। ସମୁଦ୍ର ଗାଈ (Dugong, Dugong dugon)।

୨୯। ସିନ୍ଧୁ ନଦୀ ଶିଶୁମାର (Indus dolphin, Platanista indi)।



# ଭାରତର ଜାତୀୟ ଉଦ୍ୟାନ ମାନଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ବିବୃତି

| ନାମ ଓ ଅବସ୍ଥିତି | କ୍ଷେତ୍ରଫଳ (ବର୍ଗକିଲୋମିଟର) | ସ୍ଥାପନ ବର୍ଷ | କି କି ପ୍ରଧାନ ପ୍ରାଣୀ ଦେଖିବାକୁ ମିଳନ୍ତି | ପରିଦର୍ଶନ ପାଇଁ ଉତ୍କୃଷ୍ଟ ସମୟ |
|---|---|---|---|---|
| 1. କଜିରଙ୍ଗା (ଆସାମ) | 430 | | ଗଣ୍ଡାର, ଅରଣା ମଇଁଷି, ହାତୀ, ଗୟଳ, ବାଘଟା ବାର୍ହା, ବାରଶିଙ୍ଗା, ପାଗ-ହରିଣ, ସମ୍ବର ଓ ବାଘ । | ଫେବୃଆରୀ—ମାର୍ଚ୍ଚ |
| 2. ହଜାରିବାଗ (ବିହାର) | 184 | 1955 | ଗଧିଆ, ଭାଲୁ, ବାର୍ହା, ସମ୍ବର, ଚିତଳ ହରିଣ, କୁଟୁରା, ନୀଳଗାଇ, କଲରା ପତ୍ରିଆ ବାଘ । | ଫେବୃଆରୀ—ମେ |
| 3. ପାଲାମାଉ (ବିହାର) | 345 | 1959 | ବାଘ, କଲରା ପତ୍ରିଆ ବାଘ, ସମ୍ବର, ଚିତଳ ହରିଣ, ହାତୀ, ଗୟଳ । | |
| 4. ଗିର (ଗୁଜରାଟ) | 140.40 | | ସିଂହ, କଲରା ପତ୍ରିଆ ବାଘ, ସମ୍ବର, ନୀଳଗାଇ, ଚିତଳ ହରିଣ, ଚୌରିଶିଙ୍ଗା ଚିଙ୍କାରା, ବାର୍ହା । | ଡିସେମ୍ବର—ମେ |
| 5. ଭେଲାଭଦର (ଗୁଜରାଟ) | 17.83 | | କୃଷ୍ଣସାର, ହେଟାବାଘ । | ଅକ୍ଟୋବର—ଜୁନ୍ |

| 1 | 2 | 3 | 4 | 5 |
|---|---|---|---|---|
| 6. ବାନ୍ଦିପୁର (କର୍ଣ୍ଣାଟକ) | 874.20 | | ହାତୀ, ଗୟଳ, ସମ୍ବର, ଚିତଳ ହରିଣ, କୁଟୁରୁ, ବଳିଆ କୁକୁର, ବାରହା, ଭାଲୁ, କଲରା ପତ୍ରିଆ ବାଘ, ବାଘ, ଚଉଶିଙ୍ଗା । | ଏପ୍ରିଲ–ମେ |
| 7. ବାନେର ଘାଟ୍ଟା (କର୍ଣ୍ଣାଟକ) | 104.20 | | ହାତୀ, ଭାଲୁ, ଚିତଳ ହରିଣ, କୁଟୁରୁ ବାର୍‌ହା । | |
| 8. ନେଗେରହୋଲ (କର୍ଣ୍ଣାଟକ) | 571.55 | | ହାତୀ, ଗୟଳ, ସମ୍ବର, ଚିତଳ ହରିଣ, କୁଟୁରୁ, ବଳିଆ କୁକୁର, ବାର୍‌ହା, ଭାଲୁ, କଲରା ପତ୍ରିଆ ବାଘ, ବାଘ, ଚଉଶିଙ୍ଗା । | |
| 9. କନ୍‌ହା (ମଧ୍ୟପ୍ରଦେଶ) | 446.6 | | ଚିତଳ ହରିଣ, ସମ୍ବର, ଗୟଳ ବାରଶିଙ୍ଗା, ବାଘ, କୃଷ୍ଣସାର ଓ କଲରା ପତ୍ରିଆ ବାଘ । | ଏପ୍ରିଲ–ମେ |
| 10 ଶିବପୁରୀ (ମଧ୍ୟପ୍ରଦେଶ) | 155.55 | 1956 | ସମ୍ବର, ଚିତଳ ହରିଣ, ନୀଳଗାଇ, ଚଉଶିଙ୍ଗା, କଲରା ପତ୍ରିଆ ବାଘ ଓ ବାଘ । | ଫେବୃଆରୀ–ଜୁଲାଇ |

| 1 | 2 | 3 | 4 | 5 |
|---|---|---|---|---|
| 11. ବାନ୍ଧବଗଡ଼ (ମଧ୍ୟପ୍ରଦେଶ) | 267.75 | | ସମ୍ବର, କୁଟୁରା, ଚିତଳ ହରିଣ, ଚିଙ୍କାର, ବାର୍‌ହା, ଭାଲୁ, ବାଘ, କଲରା ପତ୍ରିଆ ବାଘ, ଗୟଳ ଓ ନୀଳଗାଈ । | |
| 12. ଟାଡୋବା (ମହାରାଷ୍ଟ୍ର) | 116.55 | 1956 | ବାଘ, କଲରା ପତ୍ରିଆ ବାଘ, ଭାଲୁ, ଗୟଳ; ସମ୍ବର, ଚିତଳ ହରିଣ, ନୀଳଗାଈ, ଚିଙ୍କାର । | |
| 18. ମରୁଭୂମି ଜାତୀୟ ଉଦ୍ୟାନ (ରାଜସ୍ଥାନ) | 250 | | ଚିଙ୍କାର, ମରୁଭୂମି କୋକିଶିଆଳି । | |
| 14. କରବେଟ୍ (ଉତ୍ତର ପ୍ରଦେଶ) | 525 | 1935 | ହାତୀ, ବାଘ, କଲରା ପତ୍ରିଆ ବାଘ, ଭାଲୁ, ନୀଳଗାଈ, ମାର୍ଚ୍ଚ—ଏପ୍ରିଲ ସମ୍ବର, ଚିତଳ ହରିଣ, ବାର୍‌ହା, ଝିଙ୍କ, ଗୋରାଲ, ଘୁରିଶିଙ୍ଗା । | |
| 15. ଦୁଧୱା (ଉତ୍ତର ପ୍ରଦେଶ) | 500 | | ବାଘ, କଲରା ପତ୍ରିଆ ବାଘ, ଭାଲୁ, ସମ୍ବର, ବାରଶିଙ୍ଗା, ଚିତଳ ହରିଣ, ପାରା-ହରିଣ, କୁଟୁରା, ନୀଳଗାଈ । | |

# ଶବ୍ଦ ସୂଚୀ

(ବନ୍ଧନୀ ମଧ୍ୟରେ ଇଂରାଜୀ ପ୍ରତିଶବ୍ଦ ଦିଆ ଯାଇଅଛି)

## ଅ

ଅନ୍ତରୀପ ବଜ୍ରକାୟା (Cape pangolin)
ଅରକ୍ (auroch)
ଅରଣା ମଇଁଷି (arna, wild buffalo)

## ଆ

ଆଣ୍ଡାମାନ ବାର୍‌ହା (Andaman wild pig)
ଆନନ ଗ୍ରନ୍ଥି (face gland)
ଆଫଗାନ ଶଲଢକୀ ମୂଷିକ (Afghan hedgehog)
ଆଫ୍ରିକୀୟ ବନ୍ୟ ଗର୍ଦ୍ଦଭ (African wild ass)
ଆମେଜନ ଶିଶୁମାର (Amazonian dolphin)
ଆର୍ମାଡ଼ିଲୋ (armadillo)
ଆରବ୍ୟ ଶଶା (Arabian hare)
ଆସାମ ଶଶା (Assam hare; hispid hare)

## ଇ

ଇଡେନ୍‌ଟାଟା (Edentata)

## ଉ

ଉଇଜେଲ (weasel)
ଉଡ଼ନ୍ତା ଗୁଣ୍ଡୁଚିମୂଷା (flying squirrel)
ଉଡ଼ନ୍ତା ଲେମୁର (flying lemur)
ଉରିଆଲ (urial, shapu)
ଉଲୁକ (hoolock)

## ଏ

ଏଣ୍ଟିଲୋପ ମୂଷିକ (antelope rat, gerbille)
ଏନୋଆ (anoa)

ଏରମିନ୍ ୱଇଜେଲ (Ermine, stoat)
ଏଲ୍କ (elk)
ଏସିଆର ଦୁଇଶୃଙ୍ଗୀ ଗଣ୍ଡାର (Asiatic two-horned rhinoceros)
ଏସିଆର ବନ୍ୟ ଗର୍ଦ୍ଦଭ (Asiatic wild ass, kulan)

## ଓ

ଓଧ, ଓଧୁଅ (Smooth Indian otter)
ଓଧ ବିଲେଇ (Common otter)
ଓ୍ୟାକ୍ ଡୋଙ୍ଗା (red panda)
ଓଟ (camel)
ଓ୍ୟାଲରସ (walrus)

## କ

କଙ୍କଡ଼ାଖିଆ ନେଉଳ (crab eating mongoose)
କଜିରଙ୍ଗା ଅଭୟାରଣ୍ୟ (Kaziranga)
କଟାଶ (toddy cat)
କଣ୍ଟାଳିଆ ପଡ଼ିଆ ଚୁଟିଆ ମୂଷା (spiny field mouse)
କନ୍‌ହା ଜାତୀୟ ଜୀବ ଉଦ୍ୟାନ (Kanha National park)
କେପ୍ ଶଶା (Cape hare)
କମଳା ପେଟ ହିମାଳୟ ଗୁଣ୍ଡୁଚିମୂଷା (Orange bellied Himalayan squirrel)
କଲରା ପତ୍ରିଆ ବାଘ (leopard, panther)
କଳା ଗଣ୍ଡାର (Black rhinoceros)
କଳାଗ୍ରୀବା ଠେକୁଆ (Black naped hare)
କଳାପେଟ ବଜ୍ରକାପ୍ତା (Black-bellied pangolin)
କସ୍ତୂରୀ ମୃଗ (Musk deer)
କସ୍ତୁରୀ ଗ୍ରନ୍ଥି (musk gland)
କାଇଭ (Ibex)
କାରିବାଉ (Caribou)

କାଶ୍ମୀର ଉଡ଼ନ୍ତା ଗୁଣ୍ଡୁଚିମୂଷା (Kashmir flying squirrel)

କାଶ୍ମୀର ଲୋମଶ ଉଡନ୍ତା ଗୁଣ୍ଡୁଚି ମୂଷା (Kashmir wolly flying squirrel)

କୁଙ୍ଗ (Clouded leopard)

କୁଜାପିଠି ତିମି (hump back whale)

କୁଜି ଘୁଷୁରୀ (pygmy hog)

କୁଜି ନେଉଳ (Small Indian mongoose)

କୁଟ୍ରା, କୁଟୁରା (Barking deer, muntijac, ribfaced deer)

କେପ୍ ଶଶା (Cape hare)

କେଶରୀ ପାତିମାଙ୍କଡ଼ (Lion-tailed macaque)

କୋକି ଶିଆଳ, କୋକିଶିଆଳି (fox, Indian fox)

କୋମଳ ଲୋମ ପଡ଼ିଆ ମୂଷା (metad, soft-furred field rat)

କ୍ୱେଟା ଭୋଲ (Quetta vole)

କ୍ରିଲ (krill)

କୃନ୍ତକ ପ୍ରାଣୀ (rodents)

କୃଷ୍ଣସାର (Black buck, Indian antelope)

## ଖ

ଖଚର (mule)

ଖଡ୍ଗଦନ୍ତୀ ବ୍ୟାଘ୍ର (Sabretoothed tiger)

ଖାପଲାଞ୍ଜ ବାଦୁଡ଼ି (sheath-tailed bat)

ଖର୍ବକାୟ ତୈଳତିମି (pygmy sperm whale)

ଖୁରଣ୍ଡ (chevrotain, Indian chevrotain mouse deer)

## ଗ

ଗଣ୍ଡାର (rhinoceros)

ଗଧ (ass)

ଗଧିଆ ଗଧୁଆ (hyaena, striped hyaena)

ଗନ୍ଧ ଗୋକୁଳ, ଗନ୍ଧମାର୍ଜାର (civet, small Indian civet)

ଗର୍ଦ୍ଦଭ (ass)
ଗୟଳ (gaur, Indian bison)
ଗାଡ ଭାଲୁ (honey badger, ratel)
ଗାତୁଆ ମୂଷା (Indian mole rat, mole rat)
ଗ୍ରୀନ୍‌ଲାଣ୍ଡ ଜାତିଆ ତିମି (Greenland right whale)
ଗୁଣ୍ଡୁଚି ମୂଷା (palm squirrel, squirrel)
ଗୁରଣ୍ଡ (chevrotain)
ଗୋରଲ (Goral)
ଗ୍ରେଭି ଜେବ୍ରା
ଗ୍ଲାଙ୍ଗ (glang)

ଘ

ଘର ମୂଷା (house rat)
ଘୋଟକ, ଘୋଡ଼ା (horse)
ଘୋଡାନାଲ ବାଦୁଡ଼ି (horseshoe bat)
ଘୁଷୁରି ମୁହାଁ ଗାଡଭାଲୁ (Hog-badger)

ଚ

ଚଉକୋଣି-ଓଷ୍ଠ ଗଣ୍ଡାର (square-lipped rhinoceros)
ଚମଚଟା
ଚମରୀ ଗାଈ (yak)
ଚଷମା ଆଖିଆ ଭାଲୁ (spectacled bear)
ଶ୍ୟାମଏସ୍ (chamois)
ଚଉଶିଙ୍ଗା (chowsingha, fourhorned antelope)
ଚିଙ୍କାରା (Chinkara, Indian gazelle)
ଚିତ୍ରିତ ବାଦୁଡ଼ି (paanted bat)
ଚିତ୍ରୋଲ (marten)
ଚିରୁ (chiru)
ଚୀନା ବଜ୍ରକାପ୍ତା (chinese pangolin)

ଚୀନା ଶିଶୁମାର (Chinese lake dolphin)

ଚୁଚୁନ୍ଦ୍ରା (musk shrew)

ଚୁଟିଆ ମୂଷା (house *mouse*, *mice*)

ଚୂଳ ଲଞ୍ଜି ଝିଙ୍କ (Brush *tailed* porcupine)



ଛାଗଳ-ଏଣ୍ଟିଲୋପ (goat-antelope)

ଛୋଟ ପଣ୍ଡା (red panda)

ଛୋଟ ଭାଲୁ (hon ) badger, ratel)



ଜଙ୍ଗ ଛାପି ବିଲେଇ (Rusty spotted cat)

ଜଳ ମାର୍ଜାର (otter)

ଜଳ ସିଂହ (sea lion)

ଜଳହସ୍ତୀ (hippopotamus )

ଜାତିଆ ତିମି (right whale)

ଜାଭା ଗଣ୍ଡାର ( Javan rhinoceros, smaller one-horned rhinoceros)

ଜିରାଫ (giraffe)

ଜେଓ୍ୱାଲସ୍କି ଅଶ୍ୱ (Przewalski's horse)

ଜେନେଟ୍

ଜେବ୍ରା (zebra)

ଜୋ (zho, zo)



ଝାଡି ମୂଷା (Indian bush rat)

ଝିଙ୍କ (porcupine)



ଟାମାରଉ(tamarau)

ଟାମିନ୍ (thamin, brow-antlered deer)

ଟାରସିଆର (tarsier)
ଟିକେଲ ବାଦୁଡ଼ି (Tickell's bat)
ଟୁପାଇଆ (tupaia)
ଟେପିର (tapir)
ଟେହେର୍ (tahr)
ଟୋପିଧାରୀ ହନୁ (Capped langur, leakf monkey)

ଠ

ଠେକୁଆ (hare)

ଡ

ଡାନବର ବ୍ରେଣ୍ଡାର (Dunbar Brander)
ଡ଼ିଙ୍ଗୋ (Dingo)
ଡୋରବେକ ନେଉଳ (stripe necked mongoose)

ତ

ଟଟୁ ଘୋଡ଼ା (pony)
ତାକିନ୍ (takin)
ତିନିଦାଗ କଟାଶ (three banded civet)
ତିନି ରେଖ ଗୁଣ୍ଡୁଚି ମୂଷା (three striped squirrel)
ତିବ୍ବତୀୟ ଏଣ୍ଟିଲୋପ (Tibetan antelope)
ତିବ୍ବତୀୟ ଚିଙ୍କାର (Tibetan gazelle)
ତିବ୍ବତୀୟ ବଣ୍ୟ ଗର୍ଦ୍ଦଭ (Tibetan wild ass)
ତିମି (whale)
ତିମି, ଖର୍ବକାୟ ଶୈଙ୍କ (pygmy sperm whale)
ତିମି, ଢାଡିଆ (right whale)
ତିମି, ଶୈଙ୍କ (cachalet, sperm whale)
ତିମି, ଧନୁମୁଣ୍ଡ (Bowhead whale)
ତିମି, ଧଳାପକ୍ଷ (Lesser rorqual, piked rorqual)
ତିମି, ନୀଳ (Blue whale, sulphur bottom, Sibbald's rorqual)

ତିମି ମହମ (spermaceti)

ତିମି, ସାଇ (Sei whale)

ତୁଷାର ଜଇଗ ପତ୍ରିଆ ବାଘ (snow leopard)

ତେଲ ତିମି (Cachalot, sperm whale)

## ଥ

ଥୁଣ୍ଟାଲଞ୍ଜ ହନୁ (Stumptailed macaque)

## ଦ

ଦନ୍ତହୀନ ତିମି (whale bone whale)

ଦକ୍ଷିଣ ଭାରତୀୟ ମୋଲ ମୂଷା (Southern mole-rat)

ଦାଢ଼ିଆ ଖାପଲଞ୍ଜ ବାଦୁଡ଼ି (Bearded sheathtail)

ଦାନ୍ତିଦାର ତିମି (toothed whale)

ଦୀର୍ଘବାହୁ ଖାପଲଞ୍ଜ ବାଦୁଡ଼ି (long armed sheathtail)

## ଧ

ଧନୁମୁଣ୍ଡ ତିମି (Bowhead whale)

ଧଳା ଗଣ୍ଡାର (white rhinoceros)

ଧଳା ପକ୍ଷ ତିମି (*Lesser rorqual, piked rorqual*)

ଧଳାପେଟ ବାଉଁଶ ମୂଷା (hoary bamboo rat)

ଧଳାପେଟ ହିମାଳୟ ଗୁଣ୍ଡୁଚି ମୂଷା (hoary bellied, Himalayan squirrel

ଧଳା ଲଞ୍ଜ ବିଲ ଛୁଚୁନ୍ଦ୍ରା (white-tailed mole)

ଧଳା ଲଞ୍ଜ ମୂଷା (white-tailed wood rat)

ଧୂସର ଗୋରଲ (grey goral)

ଧୂଳି ନାଗ (saw scaled viper)

ଧୂସର ନେପାଳି ମୂଷା (Grizzled giant squirrel)

## ନ

ନକ୍‌ଟିଉଲ (noctule)

ନରହ୍ୱାଲ (narwhal)

ନୟାନ୍ (nayan)

ନାକ ପତ୍ରୀ ବାଦୁଡ଼ି (leafnosed bat)
ନାଗା ପାହାଡ଼ ହନୁ (Pigtailed macaque)
ନୀଳଗାଈ (Blue bull, Nilgai, nylghaie)
ନୀଳଗିରି ଛାଗଳ
ନୀଳଗିରି ଟେହର (Nilgiri tahr)
ନୀଳଗିରି ହନୁ (Nilgiri langur)
ନୀଳ ତିମି (Blue whale, sulphur bottom, Sibbald's rorqual)
ନୀଳ-ମେଷ (Blue-sheep; Bharal)
ନୁ (gnu)
ନେଉଳ (mongoose)
ନେକେଡ଼ା ବାଘ (wolf)
ନେପାଳି ମୂଷା (Giant squirrel, Indian giant squirrel)

## ପ

ପଞ୍ଚରେଖ ଗୁଣ୍ଡୁଚି ମୂଷା (Five striped squirrel)
ପଡ଼ିଆ ଚୁଟିଆ ମୂଷା
ପଡ଼ିଆ ମୂଷା (Bandicoot rat)
ପଦ ଗ୍ରନ୍ଥି (foot gland)
ପରପଏଜ୍ (porpoise)
ପସିନ୍ (wild goat)
ପକ୍ଷତିମି (fin whale)
ପାତି, ପାତି ମାଙ୍କଡ଼ ( macaque, rhesus macaque, rhesus monkey)
ପାଟ୍ ସାଇମ (lynx)
ପାର୍ବତୀୟ ଜେବ୍ରା (mountain zebra)
ପାଗ ହରିଣ (hog-deer)
ପାହାଡ଼ି ମୂଷା (Bandicoot rat)
ପିନି ପେଡ଼ିଆ (Pinnipedia)

ପିପିଷ୍ଟ୍ରିଲ (pipistrelle)
ପୁଡୁ (pudu)
ପେକାରୀ (peccary)
ପେଶମୁହାଁ ବିଲେଇ (Pallas's cat)

ଫ

ଫାଲୋ ହରିଣ (fallow deer)
ଫିକା ଶଲ୍ଲକୀ ମୂଷିକ (pale hedgehog)
ଫୁ ମୃଡ଼ି
ଫେରେଟ୍ ବେଢାର (Ferret-badger)
ଫୋଲି ଡୋଟା (Pholidota)

ବ

ବଙ୍କ ଓଷ୍ଠ ଗଣ୍ଡାର (hook-lipped rhinoceros)
ବଜ୍ରକାପ୍ତା (pangolin, scaly ant eater)
ବଜ୍ରକାପ୍ତା, ଅନ୍ତରୀପ
ବଜ୍ରକାପ୍ତା, କଳାପେଟା
ବଜ୍ରକାପ୍ତା, ଚୀନା (chinese pangolin)
ବଜ୍ରକାପ୍ତା, ବିପୁଳକାୟ
ବଜ୍ରକାପ୍ତା, ମାଳୟ
ବଜ୍ରକାପ୍ତା, ଭାରତୀୟ (Indian pangolin)
ବଜ୍ରକାପ୍ତା, କ୍ଷୁଦ୍ରକାତି
ବରାହ (wild bear)
ବଡ ଗୁଣ୍ଡୁଚି ମୂଷା
ବଡ଼ ପଣ୍ଡା (Giant panda)
ବଡ଼ ଫଳଖିଆ ବାଦୁଡ଼ି
ବଣ୍ଡୋର ଉପତ୍ୟକା ସଂରକ୍ଷିତ ବନଭୂମି
ବନ୍ୟ ମହିଷ (wild buffalo)
ବନ୍ୟ ଶୂକର (wild boar)
ବହୁରଙ୍ଗୀ ଉଡ଼ନ୍ତା ଗୁଣ୍ଡୁଚି ମୂଷା (parti-coloured flying squirrel)

ବଲଗା ହରିଣ (rein deer)
ବାଉଁଶ ମୂଷା (Bamboo rat)
ବାଦାମୀ ଗୋରଲ (Brown goral)
ବାଦାମୀ ଡୋରିଆ ବିଲେଇ (rusty-spotted cat)
ବାଦାମୀ ମୂଷା (Brown rat)
ବାଦାମୀ ଲଞ୍ଜ ଶଶ (rufous-tailed hare)
ବାଦୁଡ଼ି (Bat, flying fox)
ବାନ୍‌ଟେଙ୍ଗ୍ (banteng)
ବାନର (monkey)
ବାମନ ଶୂକର (pygmy hog)
ବାରଚେଲ ଜେବ୍ରା
ବାରବାଷ୍ଟିଲ (Barbastelle)
ବାରଶିଙ୍ଗା (swamp deer)
ବାଲି ହରିଣ (Black buck, Indian antelope)
ବିପୁଳ କାୟ ବଜ୍ରକାପ୍ତା (Giant pangolin)
ବିଳ ଗୁଣ୍ଡୁଚି ମୂଷା (marmot)
ବିଳ ଚୁଚୁନ୍ଦ୍ରା (mole)
ବିଲତି ମୂଷା (guinea pig)
ବିଲୁଆ (jackal)
ବ୍ରିଡ଼େ (ହ) ତିମି (Bryde's whale)
ବେଜାର (Badger)
ବେଲଗ ମୂଷା (Indian giant squirrel)
ବୃହତ୍ ପୂର୍ବାଞ୍ଚଳୀୟ ଘୋଡ଼ାନାଲ ବାଦୁଡ଼ି (Great eastern horse shoe bat)
ବୃହତ୍ ବାଦାମୀ ଉଡ଼ନ୍ତା ଗୁଣ୍ଡୁଚି ମୂଷା (large brown flying squirrel)
ବୃହତ୍ ହିମାଳୟ ନାକପତ୍ରୀ ବାଦୁଡ଼ି ( Great Himalayan leaf-nosed bat)

ବୃକ୍ଷ ଚୁଚୁନ୍ଦ୍ରା (tree shrew, Tupaia)
ବ୍ୟାଘ୍ର ଗନ୍ଧମାର୍ଜାର (linsang, spotted linsang, tiger-cat)

## ଭ

ଭରଲ (Bharal, Blue sheep)
ଭାରତୀୟ ଏଣ୍ଟିଲୋପ ମୂଷିକ (Indian gerbille)
ଭାରତୀୟ ଓସାରିଆ ଥଣ୍ଟ ଶିଶୁମାର (Indian broad-beaked dolphin)
ଭାରତୀୟ ଗଣ୍ଡାର (Great Indian onehorned rhinoceros)
ଭାରତୀୟ କୂଟ ରକ୍ତଶୋଷକ ବାଦୁଡ଼ି (Indian false vampire)
ଭାରତୀୟ ପଡ଼ିଆ ଚୁଟିଆ ମୂଷା (Indian field mouse)
ଭାରତୀୟ ପିପିଷ୍ଟ୍ରିଲ (Indian pipistrelle)
ଭାରତୀୟ ବଜ୍ରକାଟ୍ଠ (Indian armadillo)
ଭାରତୀୟ ବୃକ୍ଷ ଚୁଚୁନ୍ଦ୍ରା (Indian tree shrew)
ଭାରତୀୟ ମରୁ-ଏଣ୍ଟିଲୋପ ମୂଷିକ (Indian desert gerbille)
ଭାରତୀୟ ଶଶ (Indian hare)
ଭାରତୀୟ କ୍ଷୁଦ୍ରଲାଞ୍ଜ ବିଳଚୁଚୁନ୍ଦ୍ରା (Indian short-tailed mole)
ଭାଲୁ-ବିରେଇ (Bear-cat; Binturong; Cat-bear)
ଭୁଆସୁଣୀ ମାଛ (dolphin)
ଭୋଲ (vole)

## ମ

ମଇଁଷି (buffalo, Indian buffalo, water buffalo)
ମଙ୍ଗୋଲୀୟ ବନ୍ୟ ଘୋଟକ (Mongolian wild horse)
ମଝିଆ ବୃହତ୍ ଉଡନ୍ତା ଗୁଣ୍ଡୁଚି ମୂଷା (lesser giant flying squirrel)
ମର୍ମର ବିଡାଳ (marbled cat)
ମରୁଭୂମି ଠେକୁଆ (Desert hare)
ମରୁଭୂମି ମୂଷିକ (Desert gerbille)
ମରୁଭୂମି ବିରେଇ (Desert cat)
ମହିଷ (buffalo)

ମାର୍ଖୋର (markhor)
ମାନାଟି (manatee)
ମାରକ ତିମି (grampus, Killer whale)
ମାରମୋଟ (marmot)
ମାଳୟ ଜେଆଣ୍ଟ ମୂଷା (Malayan giant squirrel)
ମାଲୟ ବଜ୍ରକାପ୍ତା (Malay pangolin
ମାଲୟ ଭାଲୁ (Malayan Sun Bear)
ମାଙ୍କ ମନୁଷ୍ୟ (slender loris)
ମାଷ୍ଟୋଡନ୍ (Mastodon)
ମୁରୀ ଭୋଲ (Murree vole)
ମୂଷା (rat)
ମୂଷା-ଠେକୁଆ (mouse-hare)
ମୂଷା–ବିଲେଇ (small Indian civet)
ମୂଷା–ଲାଞ୍ଜ ବାଦୁଡ଼ି (mouse-tailed bat)
ମୂଷକ–ଶଶକ (mouse-hare)
ମେରୁ ଗାଈ (musk-ox)
ମେରୁ ଭାଲୁ (polar bear)
ମୈରିଥେରିଅମ୍ (Moeritherium)
ମୃଗ (deer)

## ଯ

ୟୁରୋପୀୟ ବିଳ ଚୁଚୁନ୍ଦ୍ରା (European mole)

## ର

ରକ୍ତଶୋଷୀ ବାଦୁଡ଼ି (vampire)
ରୟେଲ ଭୋଲ (Royle's vole)
ରେକୁନ୍ (racoon)
ରେଖିତ ଗୁଣ୍ଡୁଚି ମୂଷା (striped squirrel)

## ଲ

ଲଜ୍ଜାବତୀ (slow loris)
ଲମ୍ବାକାନ ବାଦୁଡ଼ି (longeared bat)
ଲମ୍ବାକାନ ଶଲ୍ଲକୀ ମୂଷିକ (longeared hedgehog)
ଲମ୍ବାଲାଞ୍ଜ ବୃକ୍ଷମୂଷକ (longtailed tree mouse)
ଲମ୍ବାଲାଞ୍ଜ ମାରିମୋଟ (longtailed marmot)
ଲାଲ ଉଡନ୍ତା ଗୁଣ୍ଡୁଚି ମୂଷା (red flying squirrel)
ଲାଲ କୋକିଶିଆଳି (Desert fox ; red fox)
ଲାଲ ଝିଙ୍କ (red porcupine)
ଲାଲ ପଣ୍ଡା (red panda)
ଲପ୍ଲାଟା ଶିଶୁମାର (LaPlata doiphin)
ଲାଲ ଭାଲୁ (Brown bear)
ଲାଲ ମୃଗ (red deer)
ଲେମୁର (Lemur)
ଲୋମଶ ଗଣ୍ଡାର (woolly rhinoceros)
ଲୋମଶ ପାଦ ଉଡନ୍ତା ଗୁଣ୍ଡୁଚି ମୂଷା (hairyfooted flying squirrel)
ଲୋମଶ ଶଶା (wolly hare)
ଲୋମଶ ହସ୍ତୀ (wolly mammoth)
ଲୋହିତ ନେଉଳ (ruddy mongoose)
ଲୋହିତପିଙ୍ଗଳ ବାଉଁଶ ମୂଷା (Bay bamboo raf)
ଲୋହିତ ସାଗର ବୋତଲନାକ ଶିଶୁମାର (Red Sea bottlenosed dolphin)

## ଶ

ଶଲ୍ଲକୀ (porcupine)
ଶଲ୍ଲକୀ ମୂଷିକ (hedgehog)
ଶଶକ (hare, rabbit)
ଶଶା (hare)

ଶାଳିଆ ପତନି, ଶାଳିଆ ପୂତନି, ଶାଳୁଆ ପତନି, (Small Indian civet)
ଶିଳାସ୍ତୂପ ଉପ ପାହାଡ଼ିଆ ଛାଗ (rocky mountain goat)
ଶିଶୁମାର (dolphin, porpoise, susu)
ଶିଶୁମାର, ଆମେଜନ୍ (Amazonian dolphin
ଶିଶୁମାର, ଚୀନା (Chinese Lake dolphin)
ଶିଶୁମାର, ଲପ୍ଲାଟା (LaPlata dolphin)
ଶିଶୁମାର, ଲୋହିତ ସାଗର ବୋତଲ ନାକ (Red Sea bottlenosed dolphin)
ଶିଶୁମାର, ସାଧାରଣ (Common dolphin)
ଶିଶୁମାର, ସୀସକ ବର୍ଣ୍ଣ (Plumbeosus dolphin)
ଶୂକର (pig)
ଶ୍ୱେତ ତିମି (white whale)
ଶୃଗାଳ (jackal)
ଶୃଙ୍ଗହୀନ ଲଲ ମୃଗ (hummel)

## ସ

ସଜାରୁ (porcupine)
ସାଇଙ୍ଗ୍ (Banteng, tsaine
ସାଇ ତିମି (Rudolphi's rorqual, sei whale)
ସାଇରେନିଆ (Sirenia)
ସାଙ୍ଗାଇ ହରିଣ (Brow-antlered deer, thamin)
ସାଧାରଣ ଘର ମୂଷା (common house rat)
ସାଧାରଣ ବୃହତ୍ ଉଡ଼ନ୍ତା ଗୁଣ୍ଡୁଚି ମୂଷା (common giant flying squirrel)
ସାଧାରଣ ହଳଦିଆ ବାଦୁଡ଼ି (common yellow bat)
ସାଧାରଣ ଶିଶୁମାର (common dolphin)
ସାଗର (serow)
ସାଳିଆ ପତନି (small Indian civet)

ସିକ୍କିମ ଭୋଲ (Sikkim vole)
ସିଧାଶିଙ୍ଗ ଗୟଳ (straight-horned bison)
ସିଟେସିଆ (Cetacea)
ସିନ୍ଧୁ-ଗାଭୀ (sea cow)
ସୀଲ (seal )
ସୀସକ ବର୍ଣ୍ଣ ଶିଶୁମାର (Plumbeous dolphin)
ସେରୋଟିନ୍ (Serotine)
ସୋଉ (shou)
ସ୍ୱର୍ଣ୍ଣକେଶୀ ହନୁ (Golden langur)
ସ୍ଲୁଥ୍ (sloth)



ହଜସନ ଉଡ଼ନ୍ତା ଗୁଣ୍ଡୁଚି ମୂଷା (Hodgson's flying squirrel)
ହଜ୍‌ସନ ଝିଙ୍କ (ହିମାଳୟ ଝିଙ୍କ) (Hodgson's porcupine)
ହନୁ, ଟୋପିଧାରୀ (Capped langur, Leaf monkey)
ହନୁ, ହନୁ ମାଙ୍କଡ଼ (langur)
ହରିଣ (deer)
ହଳଦିଆ-ବାଦାମୀ ଫଳଖିଆ ବାଦୁଡ଼ି (Fulvous fruit bat, Rousette)
ହାଙ୍ଗୁଲ hangul Kashmir stag)
ହାତୀଆ ନେଉଳ (common mongoose)
ହିମାଳୟ ଉଇଜେଲ (Himalayan weasel)
ହିମାଳୟ କଳାଭାଲୁ (Himalayan black bear)
ହିମାଳୟ ଟେହେର (*Himalayan tahr*)
ହିମାଳୟ ମାରମୋଟ (Himalayan marmot)
ହିମାଳୟ ମୂଷା—ଠେକୁଆ (Himalayan mouse hare)
ହୁଣ୍ଡାର, ହୁଣ୍ଡା, ହୁଣ୍ଡାଳ (hyaena, striped hyaena,)
ହେଟା, ହେଟାବାଘ (hyaena, striped hyaena, wolf)



କ୍ଷୁଦ୍ରକାତି ବଜ୍ରକାପ୍ତା (small-scaled pangolin)

କ୍ଷୁଦ୍ର ଟ୍ରାଭାଙ୍କୋର ଉଡ଼ନ୍ତା ଗୁଣ୍ଡୁଚି ମୂଷା (small Travancore flying squirrel)

କ୍ଷୁଦ୍ର ନାକ ଫଳଭୋଜୀ ବାଦୁଡ଼ି (shortnosed fruit bat)

କ୍ଷୁଦ୍ର ଭାରତୀୟ ପରପଏଜ୍ (little Indian porpoise)

କ୍ଷୁଦ୍ରଲାଞ୍ଜ ରାତୁଆ ମୂଷା (short tailed bandicoot)

